ସାହିତ୍ୟ ଅକାଦେମି ଦ୍ୱାରା ପୁରସ୍କୃତ ଉର୍ଦ୍ଦୁ କାହାଣୀ

# ପତ୍ରଝରାର ସ୍ୱର

କୁର୍ରତୁଲାଏନ୍ ହୈଦର



ଅନୁବାଦ । ଶ୍ରୀନିବାସ ଉଦ୍‌ଗାତା

'ପତ୍ରଝରାର ସ୍ୱର'ରେ ସଂକଳିତ ସବୁ କାହାଣୀ ଭାରତୀୟ ସମାଜରେ ସଂରକ୍ଷିତ ମୂଲ୍ୟର ସଂଘର୍ଷ ଓ ବିଘଟନର ପୀଡ଼ାକୁ ନାନାରୂପରେ ବ୍ୟକ୍ତ ଓ ବ୍ୟଞ୍ଜିତ କରନ୍ତି । ବକ୍ତବ୍ୟହୀନ ପିଢ଼ି, ବ୍ୟକ୍ତି କୁଣ୍ଠା ଓ ବଦଳୁଥିବା ସମାଜର ତୀବ୍ର ଗତିକୁ ପଛରେ ପକେଇ ଦେଇ ଯିବାକୁ ତାର ବ୍ୟଗ୍ରତାପୂର୍ଣ୍ଣ ପ୍ରସ୍ତୁତି ଆଜି ମଣିଷକୁ ଆଣି କେଉଁଠି ପକେଇଛି; ତାକୁ ଲେଖିକା ଅତ୍ୟନ୍ତ କୁଶଳତାରେ କହିଛନ୍ତି । ମଣିଷର ଅନ୍ତର୍ମନକୁ ଦେଖୁଥିବା ଶାଣିତ ଅନ୍ତର୍ଦୃଷ୍ଟି ଆଉ ଚରିତ୍ରମାନଙ୍କର ନିଖୁଣ ଚିତ୍ରଣ ତଥା ସମକାଳୀନ ସମାଜର କ୍ରୂର ଯଥାର୍ଥତାକୁ ସଂବେଦନା ସହ ନିରୂପିତ କରିଥିବା ହେତୁ 'ପତ୍‌ଝର କୀ ଆୱାଜ' ୧୯୬୭ରେ ଉର୍ଦ୍ଦୁ ସାହିତ୍ୟର ସର୍ବଶ୍ରେଷ୍ଠ କୃତି ଭାବରେ ସାହିତ୍ୟ ଅକାଦେମି ଦ୍ୱାରା ପୁରସ୍କୃତ ହୋଇଛି । ଏଥିରେ ଲେଖିକା ଭାରତୀୟ ସଂସ୍କୃତି ଏବଂ ତାର ଗୌରବପୂର୍ଣ୍ଣ ଇତିହାସକୁ ତାର ବଦଳୁଥିବା ସନ୍ଦର୍ଭରେ ତଥା ସମୟ, ସମାଜ ଓ ସମଷ୍ଟିର ସଂଘର୍ଷକୁ ସେମାନଙ୍କର ଉତ୍କର୍ଷ ଓ ଅପକର୍ଷ ବିଚାରରେ ଅତ୍ୟନ୍ତ ପ୍ରାମାଣିକ ଓ ମାର୍ମିକ ଭଙ୍ଗୀରେ ପ୍ରସ୍ତୁତ କରିଛନ୍ତି ।

**ପ୍ରଚ୍ଛଦ: ମୁନୀନ୍ଦ୍ର ରାଜବଂଶୀ**

ସାହିତ୍ୟ ଅକାଦେମି ପୁରସ୍କାର ପ୍ରାପ୍ତ ଉର୍ଦ୍ଦୁ କାହାଣୀ ସଂକଳନ

# ପତ୍ରଝରାର ସ୍ୱର

କୁରର୍ତୁଲଐନ୍ ହୈଦର

ଅନୁବାଦ

ଶ୍ରୀନିବାସ ଉଦ୍‌ଗାତା



ସାହିତ୍ୟ ଅକାଦେମି

*PATRAJHARARA SWARA* : Oriya translation by Srinivas Udgata of Akademi award-winning Urdu short story collection *Patjhar Ki Awaz* by Quarratulain Hyder, Sahitya Akademi, New Delhi, 2000
Price : Rs.100.00



ISBN 81-260-0858-X

ପ୍ରଥମ ପ୍ରକାଶ : ୨୦୦୦

ସାହିତ୍ୟ ଅକାଦେମି
ରବୀନ୍ଦ୍ର ଭବନ, ୩୫, ଫିରୋଜଶାହ ରୋଡ୍, ନୂଆଦିଲ୍ଲୀ ୧୧୦୦୦୧
ବିକ୍ରୟକେନ୍ଦ୍ର : 'ସ୍ୱାତୀ', ମନ୍ଦିର ମାର୍ଗ, ନୂଆଦିଲ୍ଲୀ ୧୧୦୦୦୧
ଜୀବନତାରା ଭବନ, ୨୩ଏ/୪୪ଏକ୍ସ, ଡାଇମଣ୍ଡ ହାରବର ରୋଡ, କଲିକତା ୭୦୦୦୫୩
ଗୁନା ଭବନ, ଦ୍ୱିତୀୟ ମହଲା, ୩୦୪-୩୦୫, ଆନା ସାଲାଇ, ଟେନାମ୍‌ପେଟ୍, ଚେନ୍ନାଇ ୬୦୦୦୧୮
୧୭୨ ମୁମ୍ବାଇ ମାରାଠୀ ଗ୍ରନ୍ଥ ସଂଗ୍ରହାଳୟ ମାର୍ଗ, ଦାଦର, ମୁମ୍ବାଇ ୪୦୦୦୧୪
ସେଣ୍ଟ୍ରାଲ କଲେଜ କ୍ୟାମ୍ପସ, ୟୁନିଭର୍ସିଟି ଲାଇବ୍ରେରୀ ବିଲ୍ଡିଂ, ଡ. ଆମ୍ବେଦକର ଭିଧି, ବାଙ୍ଗାଲୋର ୫୬୦୦୦୧

ମୂଲ୍ୟ : ୧୦୦ ଟଙ୍କା

ଅକ୍ଷର ସଂଯୋଜନା :
ସଂସାର ପ୍ରେସ, କଟକ

ମୁଦ୍ରଣ :
ମିତ୍ର ପ୍ରେସ
୮୧ ବି, ପଟଲଡାଙ୍ଗା ଷ୍ଟ୍ରିଟ୍, କଲିକତା ୭୦୦୦୦୯

# ଅନୁକ୍ରମ

# ଡାଲନବାଲା

ବେଶ୍ ଦୁର୍ବଳ ପାତଳ ବୁଢ଼ାଟିଏ, ଘସରା ଆଉ ଠାଏ ଠାଏ ମଇଳା ଜୋଚଟା ଦାଗ, ଚମକିଲା ପେଣ୍ଟ୍ କୋଟ୍ ପିନ୍ଧି, କଳାଟୋପି ଲଗେଇ, ପାତଳ ଫ୍ରେମ୍‌ର ଛୋଟ ଛୋଟ କାଚବାଲା ଚଷମା ପିନ୍ଧି, ତିନିଦିନରେ ଥରେ ଦିନ ତିନିଘଡ଼ି ବେଳକୁ ବାହାରି ପୋର୍ଟିକୋରେ ହାଜର ହୋଇଯାଏ ଆଉ ହାତ ବାଡ଼ିରେ ଧୀରେ ଧୀରେ ବଜରୀ ଗୋଡ଼ି ଉପରେ ଠକ୍ ଠକ୍ କରି ବଜାଏ । ଫକୀରା ବାହାରିଆସି ବଡ଼ ଦିଦୀକୁ ଡାକ ପକାଏ— "ଦେଖ, ଆସ, ସାଇମନ ସାହବ ଆସିଗଲେ ।" ବୁଢ଼ା ବାହାରୁ ବାହାରୁ ବଗିଚ୍ଚ ରାସ୍ତାରେ ବୁଲିଆସି ପାଖ ବାରଣ୍ଡାରେ ପହଞ୍ଚିଯାଆନ୍ତି ସେତେବେଳକୁ । ଗୋଟାଏ କୋଣକୁ ପହଞ୍ଚି ପାକିଟରୁ ମଇଳା ରୁମାଲଟି ବାହାର କରି ନଇଁପଡ଼ି ଧୀରେ ଧୀରେ ଡାକେ— "ରେଶମ୍... ରେଶମ୍ !" ରେଶମ ଡାକ ଶୁଣି ଦଉଡ଼ି ଆସେ । ବଡ଼ଦିଦୀ ଭାରି ଯତ୍ନରେ ସିତାର କାନ୍ଧେଇ ବାରଣ୍ଡାକୁ ଆସନ୍ତି। ଆସନରେ ବସି ସିତାରର ଲାଲ ବନାରସୀ ଖୋଳ ଖୋଲନ୍ତି, ଆଉ ଅଭ୍ୟାସ ଆରମ୍ଭ ହୋଇଯାଏ ।

ବର୍ଷା ପରେ ବଗିଚ୍ଚ ଭିଜାଭିଜା ଥିଲାବେଳେ ଆଉ ଏକ ଅପୂର୍ବ ତାଜାପଣ ଆଉ ସୁଗନ୍ଧ ବାତାବରଣରେ ଖେଳିଯାଉଥିଲା ସମୟରେ, ବୁଢ଼ାର ଫେରିବା ବାଟରେ ଘାସ ଉପରେ ପଡ଼ିଥିବା କିଛି ଫଳ ମିଳିଯାଏ ବୁଢ଼ାକୁ । ଗୋଟେଇ ନେଇ ସେ ତାକୁ ପାକିଟରେ ପୂରେଇ ନିଏ । ରେଶମ ତା'ର ପଛେ ପଛେ ଚ୍ଚଲିଥାଏ । ରେଶମ, ପ୍ରାୟ ଶିକାର ଖୋଜାରେ କୋଉ ବୁଦା ତଳରେ ଲୁଚିଯାଏ ବା କୋଉ ଗଛର ଦୋହଲୁଥିବା ଡାଳକୁ ଅନେଇ ରହେ । ଆଉ ସେ ସେମିତି ମଥା ନୁଏଁଇ ଚ୍ଚଲିଯାଏ ଫାଟକ ବାହାରକୁ । ପ୍ରତି ତିନି ଦିନରେ ଦିନ ତିନିଘଡ଼ି ବେଳକୁ ପୁଣି ସେଇଭଳି ହାତ ବାଡ଼ିଟି ଗୋଡ଼ି ଦେହରେ ବାଜେ ଆଉ ତା'ର ସ୍ୱର ଶୁଭେ ।

ଏ ନିୟମଟି ଅନେକ ଦିନରୁ ଚ୍ଚଲି ଆସିଛି ।

ଯୋଉଦିନରୁ ମିସେସ୍ ଯୋଗମାୟା ଚ୍ଚଟର୍ଜୀ କଲିକତାରୁ ଆସି ରହିଲେଣି, ଏ ସାହିବାଲାଙ୍କ ଦୃଢ଼ ବିଶ୍ୱାସ ଯେ ସେମାନଙ୍କ ଜୀବନରେ ଆର୍ଟ ଆଉ କଲଚର ଅନେକ କମ । ସଙ୍ଗୀତର ଅନ୍ତିମ ସୀମା ଭଳି ସେଇମାନଙ୍କର 'ଗୋଲ ଗୋଲ କୋଠରି'ରେ ଗୋଟିଏ ଲେଖାଏ ଗ୍ରାମୋଫୋନ୍ ଥିଲା । ସେତେବେଳେ ରେଡ଼ିଓ ସାମାନ୍ୟ ଦରବଟିଏ ହୋଇ ନ ଥାଏ । ଫ୍ରିଜ୍ ଷ୍ଟାଟସ୍ ସିମ୍ବଲ ହୋଇ ନଥାଏ । ଟେପରେକର୍ଡ଼ର ଆବିଷ୍କୃତ ହୋଇ ନଥାଏ । ଆଉ ସେତେବେଳେ କେବଳ ବଙ୍ଗଳା, କାର ଆଉ ବୈରାକୁ ସାମାଜିକ ପ୍ରତିଷ୍ଠାର ପ୍ରତୀକ ଭାବରେ ଗଣାଯାଉଥାଏ । କିନ୍ତୁ ମିସେସ୍ ଯୋଗମାୟା ଚ୍ଚଟର୍ଜୀଙ୍କ କୋଠିରୁ ସଞ୍ଜ ସକାଳେ

ଯେତେବେଳେ ହାରମୋନିୟମ୍‌ର ସ୍ୱର ଶୁଭିବାକୁ ଲାଗିଲା, ସେତେବେଳେ ସର୍ଭେ ଅଫ୍ ଇଣ୍ଡିଆର ଉଚ୍ଚପଦସ୍ଥ ଅଧିକାରୀଙ୍କର ପତ୍ନୀ ମିସେସ୍ ଗୋସ୍ୱାମୀ ବନ ବିଭାଗର ଉଚ୍ଚ ପଦାଧିକାରୀଙ୍କ ପତ୍ନୀ ମିସେସ୍ ଫାରୁକୀଙ୍କୁ କହିଲେ— "ଭଉଣୀ, ଆମେମାନେ ସବୁ ଭାରି ବେକ୍‌ୱର୍ଡ଼ ହୋଇ ରହିଯାଇଛେ । ଏ ବଙ୍ଗାଳୀଙ୍କୁ ଦେଖ ସବୁ କଥାରେ ଆଗେ...ଆଗେ..."

"ଆଉ ମୁଁ ତ ଏଇଆ ବି ଶୁଣିଛି ଯେ, ଏମାନଙ୍କର ଝିଅମାନେ ଗାଇବା ବଜେଇବା ନ ଶିଖିଲା ଯାଏଁ, ବାହା ବି ହୁଅନ୍ତି ନାହିଁ ।" ମିଲଟାରୀ ଅଫିସରଙ୍କ ସ୍ତ୍ରୀ ମିସେସ୍ ଯଶବନ୍ତ ସିଂହ ତାଙ୍କ ରାୟ ଶୁଣେଇଲେ ।

"ଆମ ମୁସଲମାନଙ୍କ ଭିତରେ ତ ଗାଇବା ବଜେଇବାଟାକୁ ଭଲରେ ନିଆଯାଏ ନାହିଁ, ହେଲେ ଏଇନେ କାଳ ଅଲଗା ହେଲାଣି । ମୁଁ ତ 'ତାଙ୍କୁ' କହି ଦେଇଛି— ମୁଁ ମୋ ହମିଦାକୁ ହାରମୋନିୟମ ନିଶ୍ଚୟ ଶିଖେଇବି ।" ମିସେସ୍ ଫାରୁକୀ କହିଲେ ।

ଆଉ ଏମିତି ଧୀରେ ଧୀରେ ଡାଲନବାଲାରେ ଆର୍ଟ ଆଉ କଲଚରର ହାଓ୍ୱା ବହିବାକୁ ଲାଗିଲା । ଡାକ୍ତର ସିହ୍ନାଙ୍କ ଝିଅ ନାଚ ଶିଖିବା ଆରମ୍ଭ କରିଦେଲା । ସପ୍ତାହରେ ତିନିଦିନ ଜଣେ ପତଳା ଡ୍ୟାନ୍ସ ମାଷ୍ଟର ମୁହେଁ ମୁହେଁ ଅଜବ ଅଜବ ସ୍ୱର ବାହାର କରିବାକୁ ଲାଗିଲେ... "ଧା ଧା କତ୍ ତା ତୋମ୍ ତରଙ୍ଗ୍ ତକା ତୁନ୍ ତୁନ୍" ଆଦି ଆଦି । ସେ ତବଲା ବଜାନ୍ତି ଆଉ ଉଷା ସିହ୍ନାର ପାଦ ତାଳରେ ତାଳରେ ଚକାଭଉଁରୀ ମାରି ଘୁଙ୍ଘୁର ମାଡ଼ରେ ଘାଇଲା ହୋଇଯାଏ ।

ପଡ଼ିଶାର ଗୋଟାଏ ଧନୀ ଯୁବକ ସରଦାର ଅମରଜୀତ ସିଂହ ଭାୟୋଲିନରେ ହାତ ଚଳେଇବା ଆରମ୍ଭ କରିଦେଲା । ତା'ର ବାପା ଡଚ୍ ଇଷ୍ଟ ଇଣ୍ଡିଜ୍‌ର କେନ୍ଦ୍ର ବଟାବିଆରେ, ଯାହା ଏଇନେ ଇଣ୍ଡୋନେସିଆ ଗଣରାଜ୍ୟର କେନ୍ଦ୍ର ଜାକର୍ତ୍ତା ବୋଲାଉଛି, ସେଇଠି ବେପାର କରି ଢେର ପଇସା ରୋଜଗାର କରିଥିଲା । ସରଦାର ଅମରଜୀତ ସିଂହ ଭାରି ଶୌକୀନ ମିଜାଜର ଧନୀ । ଯେତେବେଳେ ସେ ଗ୍ରାମୋଫୋନ୍‌ରେ ବେଶ ତନ୍ମୟ ଭାବରେ ବିଭୋର ରେକର୍ଡ—

"ଖିଜାଁ ନେ ଆକେ ଚମନ କୋ ଉଜାଡ଼ ଦେନା ହୈ
ମେରୀ ଖିଲୀ ହୁଈ କଲିୟୋଁ କୋ ଲୁଟ ଲେନା ହୈ ।"

ଯଦି ବରମ୍ଭାର ବଜଉ ନଥିବେ, ତାହେଲେ ଝରକା ପାଖରେ ଠିଆହେଇ ଭାୟୋଲିନ୍‌ରେ ବେଶ ମଗ୍ନ ହୋଇ ବୋ' ଘଷି ଚ୍ଛଲିଥିବେ ବା ଫେରିବାଲାଠାରୁ ପଗଡ଼ି ପାଇଁ ରଙ୍ଗ-ବେରଙ୍ଗ ଛିଟ ଜରଜେଟ କିଣି ଚ୍ଛଲିଥିବେ । ସେ ବେଶ ବଢ଼ିଆ ପଗଡ଼ି ବାନ୍ଧି ଆଉ ଦାଢ଼ିରେ ଭାରି ଯତ୍ନରେ ପଟି ଭିଡ଼ି ମିସେସ ଫଲକନାଜ ମୁର୍ବାଁରଦ ଖାଁଙ୍କୁ ଭେଟିବାକୁ ଚ୍ଛଲିଯିବେ । ଆଉ ଏଣେ ପତ୍ନୀ ସରଦାରିନ୍ ଚରନ୍‌ଜୀତ କୌରଙ୍କୁ ଭାୟୋଲିନ ଶିଖିବାକୁ ଯାଉଛନ୍ତି ବୋଲି କହିଦେଇଥିବେ ।

ସେଇ କାଳରେ ବଡ଼ଦିଦୀଙ୍କର ସିତାର ବଜେଇବାର ସଉକ ଜାଗିଲା ।

ସେ ଶୀତ ଦିନରେ ଅନେକ ଘଟଣା ଘଟିଗଲା । ପହିଲେ ରେଶମର ଗୋଡ଼ ଜଖମ ହେଲା । ତା'ପରେ ମରଣ କୂଅରେ ମୋଟର ସାଇକେଲ ଚଲାଇଥିବା ମିସ ଜୋହରା ଡର୍ବି ଆସି ପେରେଡ୍ ଗ୍ରାଉଣ୍ଡରେ ତା' ଖ୍ୟାତିର ପତାକା ପୋତିଲା । ସୁନ୍ଦରୀ ଡାଇନା ବେକେଟ୍ ମିସ୍ ଲଣ୍ଡନ୍ ବୋଲେଇଲା । ଡାକ୍ତର ମିସ୍ ଜୁବୈଦା ସିଦ୍ଦୀକୀକୁ ରାତି ଦୁଇଟାରେ ଗଧ ଆକାରର କୁକୁର ଦିଶିଲା । ମିଷ୍ଟର ପିଟର ରବର୍ଟ ସରଦାର ଖାଁ ଆମ ଜୀବନରୁ ଅନ୍ତର୍ହିତ ହୋଇଗଲେ । ନୀଗସ ଆତ୍ମହତ୍ୟା କଲା ଆଉ ଫକୀରାର ଭାଉଜ ଘରଚଟିଆ ପାଲଟିଗଲା ।

ଯେହେତୁ ଏସବୁ ମହତ୍ତ୍ୱପୂର୍ଣ୍ଣ ଘଟଣା, ମୁଁ ସେଗୁଡ଼ିକୁ କ୍ରମରେ କହୁଛି ।

ମୋର ଭାରି ସୁନ୍ଦରୀ ଆଉ ପ୍ରିୟ ରେହାନା ଦିଦୀ, ଯିଏ ମୋର କକେଇ ଝିଅ ଭଉଣୀ ବି, ଏଇ ବର୍ଷ ବି.ଏ. ପାଶ କଲା । ସେ ଆଲିଗଡ଼ରୁ କିଛି ମାସ ପାଇଁ ଆମ ଘରକୁ ଆସିଥିଲା । ଦିନେ ତୋଫା ସକାଳରେ ହଠାତ୍ ବାହାର ପୋର୍ଟିକୋ ଘଣ୍ଟିରେ କଅଁଳ ସ୍ୱର ଶୁଭିଲା । ଜଣେ ଦୁର୍ବଳ ଆଉ ପତଳା ବୁଢ଼ାମଣିଷ ଖୁବ୍ ଧୀର ଆଉ କଅଁଳ ସ୍ୱରରେ ପଗ୍ଚରିଲେ— "ମୁଁ ଶୁଣିଛି ଏଇଠି ଜଣେ କେହି ଲେଡି ସିତାର ଶିଖିବାକୁ ଚ୍ହାନ୍ତି !"

ଦିଦୀଙ୍କର ପ୍ରଶ୍ନର ଉତ୍ତରରେ ସେ ଖାଲି ଏତିକି କହିଲେ ଯେ ତାଙ୍କର ମାସିକ ଫିସ ପାଞ୍ଚଟଙ୍କା ଆଉ ସେ ସପ୍ତାହରେ ତିନିଥର ଘଣ୍ଟାଏ ଲେଖାଏଁ ଆସି ଶିଖେଇବେ । ସେ କର୍ଜନ ରୋଡରେ ପାଦରୀ ସ୍କାଟଙ୍କର ଖାଲି କୋଠିର ଗୋଟାଏ ସର୍ଭେଣ୍ଟ କ୍ୱାଟରରେ ରହୁଛନ୍ତି । ତାଙ୍କର ସ୍ତ୍ରୀ ପିଲା ମରି ସାରିଲେଣି ଆଉ ଅନେକ ବର୍ଷ ହେଲା ଏଇ ଜୀବିକାରେ ହିଁ ସେ ଚଳୁଛନ୍ତି । ମାସକୁ ଆଠ ଦଶଟଙ୍କା ରୋଜଗାର ହେଇଯାଉଛି ।

"ହେଲେ ଏ ଶୋଇ ରହିଥିବା ସହରରେ ସିତାର ଶିଖିବା ଲୋକ କେତେଜଣ ଅଛନ୍ତି ?" ଦିଦୀ ପଗ୍ଚରିଲେ ।

ସେ ସେଇଭଳି କଅଁଳ ସ୍ୱରରେ କହିଲେ—"କେତେବେଳେ କେମିତି ଜଣେ ଅଧେ ଶିଷ୍ୟ ମିଳିଯାଆନ୍ତି ।" ଏହା ଛଡ଼ା ସେ ନିଜ ବାବତରେ କିଛି କହିଲେ ନାହିଁ । ସେ ବେଶ୍ ସ୍ୱାଭିମାନୀ ମଣିଷଟିଏ ଭଳି ଜଣାପଡୁଥିଲେ । ତାଙ୍କ ନାଁ ସାଇମନ୍ !

ସୋମବାର ଦିନ ସେ ଟ୍ୟୁସନ ପାଇଁ ଆସିଗଲେ । ସେତେବେଳେ ଦିଦୀ ପଛ ଲନ୍‌ରେ ବସି ଖରା ପୁଅଁଉ ଥାଆନ୍ତି । "ମିଷ୍ଟର ସାଇମନଙ୍କୁ ଏଇଠିକି ପଠେଇଦିଅ"—ସେ ଫକୀରାକୁ କହିଲେ । ଫକୀରା ଆସି ତାଙ୍କୁ ଦିଦୀ ପାଖକୁ ଭିତରକୁ ଡାକି ନେଇଗଲା । ସେଦିନ ବେଶ୍ ଥଣ୍ଡା ଜଣାପଡୁଥାଏ, ଆଉ ମୁଁ ମୋ କୋଠରିରେ କ'ଣ ଏଣୁତେଣୁ କାମରେ ଲାଗିଥାଏ । ମୋ କୋଠରି ସାମନାରେ ଘଡ଼ିଏ ରହିଯାଇ ସାଇମନ ଗ୍ଚରିପଟକୁ ଅନେଇଲେ । ଫାୟର ପ୍ଲେସରେ ନିଆଁ ଜଳୁଥାଏ । ସେ ସେଇପଟକୁ ବଢ଼ିଗଲେ ଆଉ ହାତ ବଢ଼େଇ ପାପୁଲି ସେକିନେଲେ; କିନ୍ତୁ ଅଟକିଲେ ନାହିଁ, ଚଞ୍ଚଳ ଫକୀରା ପଛେ ପଛେ ବାହାରି ଗଲେ ।

ରେଶମ ଅତି ଚଞ୍ଚଳ ତାଙ୍କର ବନ୍ଧୁ ପାଲଟିଗଲା । ସେଇଟା ଆଶ୍ଚର୍ଯ୍ୟ କଥା । କାରଣ ରେଶମ ଭାରି ଗର୍ବୀ ଆଉ ଏକ୍‌ଜିଦିଆ । ତା'ର ଶ୍ୟାମଳ ସୁନ୍ଦରତା ଲାଗି ଭାରି ଗର୍ବ ଆଉ ସେ ଅତି କମ୍ ଲୋକଙ୍କୁ ପସନ୍ଦ କରୁଥିଲା । ବିଶେଷ କରି ସେ ତା ଲାଗି ତିଆରି ସାର୍ଟିନ କନାରେ ରେଶମୀ ଝାଲରଲଗା ଖୋଳବାଲା ଟୋକେଇର ଗଦି ଉପରେ ଆରାମ କରୁଥାଏ ଆଉ ଖାଇବା ବେଳ ଆସିଲେ ବେଶ ଚତୁରତାରେ ଆଖିବୁଜି ଖାଇବା ଟେବୁଲ୍ ତଳେ ବସିଯାଏ ।

ଦିଦୀ ଚେହେରାରେ ସନ୍ତୋଷ ଭାବ ଓ ଆକର୍ଷକ ମଧୁର ସ୍ମିତ ହସ ଖେଳେଇ ବଗିଚ୍ଚାରେ ବସି ବସି ମୁଜଫ୍‌ର ଭାଇର ସେଇ ଅତି ମତାଣିଆ ଚିଠିଗୁଡ଼ିକ ପଢ଼ି ବସନ୍ତି, ଯାହା ତାଙ୍କ ନାଆଁରେ ପ୍ରତି ପାଞ୍ଚ ଦଶ ଦିନରେ ବମ୍ବେଇରୁ ଆସେ । ସେଇଠି ମୁଜଫ୍‌ର ଭାଇ ଇଞ୍ଜିନିୟରିଂ ପଢୁଥିଲେ । ଦିଦୀ ସାଙ୍ଗରେ ତାଙ୍କର ବାହାଘର ଠିକ୍ ହୋଇ ସାରିଥିଲା । ଯେତେବେଳେଯାଏଁ ସେ ବଗିଚ୍ଚାରେ ବସି ରହୁଥିଲେ, ସେତେବେଳଯାଏଁ ପାନ୍‌ଦାନୀ ଖୋଲି ଗଫୁର ବେଗମ ବି ତାଙ୍କରି ପାଖରେ ଘାସ ଉପରେ ବସି ରହୁଥିଲା । ଦିଦୀ ଭିତରକୁ ଚାଲି ଆସିଲେ ଗଫୁର ବେଗମ୍ ସାର୍ଭେଣ୍ଟ କ୍ୱାଟର ପଟକୁ ଚାଲିଆସି ଫକୀରାର ଭାଉଜ ସାଙ୍ଗରେ କଥା ହେଉଥିଲା କିମ୍ବା ତାର ନମାଜୀ ଆସନ ଉପରେ ଆସି ବସି ଯାଉଥିଲା ।

ଗଫୁର ବେଗମ ଦିଦୀଙ୍କର ଅତି ବିଶ୍ୱସ୍ତ ଆୟା ।

ସାଇମନ ଆସିବାମାତ୍ରକେ ରେଶମ ତାଙ୍କ ପାଖକୁ ପାଦ ଚିପି ଚିପି ଯାଇ ଗୁର୍‌ଗୁର୍ କରେ । ସେ ସାଙ୍ଗେ ସାଙ୍ଗେ ରୁମାଲ କାଢ଼ି ତାକୁ କିଛି ଖାଇବାକୁ ଦିଅନ୍ତି । ସନ୍ଧ୍ୟାବେଳେ ଫକୀରା ଯେତେବେଳେ ତାଙ୍କ ପାଇଁ ଚା' ଟ୍ରେ ନେଇ ବାରଣ୍ଡାକୁ ଆସେ, ସେତେବେଳେ ଅଧେ ଚା' ପ୍ଲେଟରେ ଢାଳି ତଳେ ରଖିଦେଲେ ରେଶମ ତାକୁ ସାଙ୍ଗେ ସାଙ୍ଗେ ପିଇନିଏ । ସେତେବେଳେ ଫକୀରା ଭଡ଼ରଭଡ଼ର ହୁଏ— "ଆମ ହାତରେ ତ ରାଣୀସାହିବା କ୍ଷୀର ପିଇବାକୁ ବି କେତେ ଛଇ କରନ୍ତି...."

ଫକୀରା ଖୁସି ମିଜାଜର ଗଡ଼ବାଲୀ ଯୁବକଟିଏ । ଦୁଇବର୍ଷ ତଳେ ସେ ଭାରି ଦୟନୀୟ ଅବସ୍ଥାରେ କେନାଲ କୂଳରେ ବସି କଣ୍ଟା ଧରି ମୋଜା ବୁଣୁଥିଲା । ସେଇ ତ ପାହାଡ଼ୀ ଅଞ୍ଚଳର ଲୋକଙ୍କର ସାଧାରଣ ରୀତି ! ସେଇଠି ସୁଖାନନ୍ଦନ ବବର୍ଚ୍ଚୀ ତାକୁ ପଚ୍ଚାରି-ଦେଲା— "କ'ଣ ବେ, ଚାକରି କରିବୁ ?" ଆଉ ସେ ସେତେବେଳେ ଖିଲଖିଲ ହସିଥିଲା । ସେଇ ହସ ଭିତରେ ଉତ୍ତର ଦେଇଥିଲା— "ମାସେ ହେଲାଣି ଉପାସରେ ମରୁଛି, ଚାକିରି କରିବି ନାହିଁ କାହିଁକି ?" ବାସ, ସେଇଦିନରୁ ସେ ଆସି ଆମ ଘରେ ଚାକିରି କରୁଛି । ଦିନେ ସେ ତା'ର ଦୁଇ ବଡ଼ଭାଇଙ୍କର ମରିଯାଇଥିବାର ଖବର ଦେଲା । ଆଉ କହିଲା ଯେ ସେ ତା'ର ଭାଉଜକୁ ଆଣିବାକୁ ଗଡ଼ବାଲ ଯିବ । କିଛିଦିନ ପରେ ତା'ର ଭାଉଜ ଜଳନ୍ଧରା ପାହାଡ଼ରୁ ଆସି ସାର୍ଭେଣ୍ଟ କ୍ୱାଟରରେ ରହିଲା ।

ଜଳନ୍ଧରା ପ୍ରୌଢ଼ା, ଗୋରୀ ଆଉ ଗଢ଼ଣର ମାଇପିଟିଏ । ତା କପାଳ, ଥୋଡ଼ି ଆଉ ବାହୁରେ ନୀଳ ରଙ୍ଗର ଗୋଦଣା, ନାକରେ ସୁନା ଲବଙ୍ଗ ଆଉ ଦଣ୍ଡୀ । ସେ କାନର ବଡ଼ ବଡ଼ କଣାରେ ଲାଖଫୁଲ ପିନ୍ଧିଥିଲା । ତା ବେକରେ ଭିକ୍ଟୋରିଆ ମହାରାଣୀ ଟଙ୍କାର ମାଳଟିଏ ବି ଥିଲା । ଏଇ ତିନୋଟି ଗହଣା ତା'ର ତିନୋଟି ପତିଙ୍କର ସମ୍ମିଳିତ ସମ୍ପତ୍ତି । ତା'ର ଦୁଇଟିଯାକ ମୃତ ପତି ମରିବାଯାଏ ଯାତ୍ରୀମାନଙ୍କର ବୋଝ ମୁଣ୍ଡଉଥିଲେ ଆଉ ଏକାସାଙ୍ଗରେ ପାହାଡ଼ ଉପରୁ ଖସିପଡ଼ି ମରିଗଲେ । ଜଳନ୍ଧରା ବେଶ୍ ମିଠା କଥା କହେ ଆଉ ଯେତେବେଳେ ଦେଖ ସ୍ୱେଟର ବୁଣୁଥାଏ । ସେ ଗଳଗଣ୍ଡର ପୁରୁଣା ରୋଗୀ । ଫକୀରା ତା'ର ଚିକିତ୍ସା ଲାଗି ବେଶ ଚିନ୍ତିତ ଥିଲା, ଆଉ ତାକୁ ଭାରି ଭଲପାଉଥିଲା । ଜଳନ୍ଧରା ଆସିଲା ପରେ ବାକି ଚାକରବାକରଙ୍କର ସ୍ତ୍ରୀମାନେ ତାଙ୍କ ତାଙ୍କ ଭିତରେ ଫୁସ୍‌ଫାସ ହୁଅନ୍ତି— "ଏ ପାହାଡ଼ୀ ଲୋକଙ୍କର ବିଚିତ୍ର ପ୍ରଥା । ଗୋଟେ ମାଇକିନାର ଦୁଇ ଦୁଇ ତିନି ତିନିଟି ଗେରସ୍ତ ।" ଆଉ ଯେତେବେଳେ ଦି'ପହରକୁ ଖାଇବା ଟେବୁଲରେ ଜଳନ୍ଧରାର କଥା ପଡ଼ିଲା, ସେତେବେଳେ ଦିଦୀ ଦ୍ରୌପଦୀଙ୍କ ଉଦାହରଣ ଦେଇ ପାହାଡ଼ୀମାନଙ୍କର ଏଇ ରୀତିକୁ ମହାଭାରତ କାଳରୁ ଚାଲିଆସୁଛି ବୋଲି କହିଲେ । ଦିଦୀଙ୍କ ମତ ଯେ ଦେଶର ଅନେକ ଭାଗରେ ସାମାଜିକ ବିକାଶ ଗୋଟାଏ ସୀମାରେ ପହଞ୍ଚି ସେଇଠି ରହିଯାଇଛି । ଏ ପାହାଡ଼ୀ ଅଞ୍ଚଳ ବି ସେମିତି ପଛୁଆ ଅଞ୍ଚଳଟିଏ । ଦିଦୀ ଏଇଆ ବି କହିଲେ ଯେ ପୋଲୀ ଏଣ୍ଡ୍ରୀ, ଯାହାକୁ ଉର୍ଦ୍ଦୁରେ ଚନ୍ଦଶୌହରୀ (ବହୁ ପତିତ୍ୱ) ବୋଲି କୁହାଯାଏ, ତାହା ମାତୃକ ପରମ୍ପରାର ସ୍ମରଣ କରାଏ । ଯେତେବେଳେ ସମାଜରେ ମାତୃକ ପରମ୍ପରା କ୍ରମଶଃ ପୈତୃକ ପରମ୍ପରା ଆଡ଼କୁ ଢଳିଲା, ସେତେବେଳେ ପୁରୁଷ ମଧ୍ୟ ବହୁ ପତ୍ନୀତ୍ୱକୁ ମନ ବଳେଇଲା । ମାତୃକ ପରମ୍ପରାର ହଜାର ହଜାର ବର୍ଷ ପୂର୍ବେ ତିନି ଚାରିଜଣ ଭାଇ ନୁହଁ, ଗୋଟାଏ ଗୋଟାଏ ଦଳର ସବୁ ପୁରୁଷ ମାତ୍ର ଗୋଟାଏ ନାରୀ ସହିତ ରହୁଥିଲେ । ବେଦମାନଙ୍କରେ ସେଭଳି ସମୁଦାୟର ଉଲ୍ଲେଖ ମଧ୍ୟ ରହିଛି । ମୁଁ ଆଡ଼ ମୁହଁ କରି ଏ ସବୁ ଶୁଣୁଥାଏଁ । ଦିଦୀ ବେଶ ଯୋଗ୍ୟା । ବି.ଏ. ପରୀକ୍ଷାରେ ସେ ପ୍ରଥମ ଶ୍ରେଣୀରେ ପାସ୍ କରିଥିଲେ ଆଉ ଆଲିଗଡ଼ ବିଶ୍ୱବିଦ୍ୟାଳୟରେ ପ୍ରଥମ ସ୍ଥାନ ପାଇଥିଲେ ।

ଦିନେ ମୁଁ ମୋର ଛୋଟ ସାଇକଲ ନେଇ ସାଙ୍ଗମାନଙ୍କ ଘରକୁ ବାହାରିଥାଏ । ମୋ ପଛେ ପଛେ ରେଶମ୍ ବି ଦଉଡ଼ି ଆସିଲା । ରାସ୍ତା ଉପରେ ଆସୁଥିବା ଗାଡ଼ି ମଟର ତା' ଉପରେ ମାଡ଼ି ନ ଯାଆନ୍ତୁ ବୋଲି ଭାବି ମୁଁ ସାଇକଲରୁ ଓହ୍ଲେଇ ପଡ଼ିଲି । ତାକୁ ଧମକ ଚମକ ଦେଇ ରାସ୍ତା ଉପରୁ ଉଠେଇନେଲି ଆଉ ବାଡ଼ ଉପର ଦେଇ ହତା ଭିତରକୁ ଫୋପାଡ଼ି ଦେଲି, ତା'ପରେ ଜୋର ଜୋର ପେଡ଼ାଲ ମାରି ପଳାଇଲି ।

ରେଶମ ହତା ଭିତରକୁ ଡେଇଁ ନଯାଇ ବାଡ଼ରେ ଲାଗିଥିବା ମୁନିଆଁ କଣ୍ଟା ତାରରେ ଛନ୍ଦି ହୋଇଗଲା । ତାର ଗୋଟାଏ ଜଂଘ ପୂରାପୂରି ଜଖମ ହୋଇଗଲା । ରକ୍ତ ସରସର ହେଇଗଲା । ସେ ଜୋରରେ ରଡ଼ି ଛାଡ଼ିଲା । ସେଇଭଳି ତାରରେ ଛନ୍ଦି ହୋଇ ରହିଥାଏ,

ଆଉ ରଡ଼ି ଛାଡୁଥାଏ । ବେଶ କିଛି ସମୟ ପରେ ସେଇ ବାଟ ଦେଇ ଯେତେବେଳେ ଫକୀରା ବାଡ଼ିରୁ ମରିଚ ଟମାଟୋ ତୋଳିବାକୁ ଗଲା, ସେ ବଡ଼ କଷ୍ଟରେ ରେଶମକୁ ସେଇ ଛନ୍ଦଣୀରୁ ମୁକୁଳେଇ ଭିତରକୁ ନେଇଗଲା ।

ମୁଁ, କମଳା ଆଉ ବିମଳା ଘରୁ ଫେରି ଘରେ ଦେଖିଲି ସବୁରି ଚେହେରା ମଉଳି ଯାଇଛି । ''ରେଶମ ମରିଯିବ।'' ଦିଦୀ କହିଲେ । ତାଙ୍କ ଆଖିରେ ଆଖିଏ ଲୁହ । ''ସଇତାନ, କେମିତି ଯାଇ କଣ୍ଟାବାଡ଼ରେ ଛନ୍ଦି ହୋଇଯାଇଥିଲା । କେଜାଣି କେମିତି ଏଡ଼େ ମୂର୍ଖ । ଚଢ଼େଇ ଧରିବା ଲୋଭରେ ସେଇଠି ଯାଇ ପଶିଥିବ । ଏଇନେ ଦରଜ ହେଉଛି ବୋଲି ରଡ଼ି ଛାଡୁଛି । ଡାକ୍ତର ଆସିଥିଲେ, ଏଇନେ ବ୍ୟାଣ୍ଡେଜ ବାନ୍ଧିଦେଇ ଯାଇଛନ୍ତି ।''

ମୋ ଛାତି ଥରିଗଲା । ରେଶମର ସେ ଅସହ୍ୟ କଷ୍ଟ ଲାଗି ମୁଁ ଗୋଟାପଣେ ଦାୟୀ । ତାର ସେ କଷ୍ଟ ଆଉ ଅବସ୍ଥା ଦେଖି ମୋ ଭିତରେ ଅପରାଧବୋଧ ଜାଗି ଉଠିଲା । ମୁଁ ଯାଇ ଘର ପଛପଟେ, ଗଛ ଗହଳିରେ ଲୁଚିଗଲି, ଯେମିତି ଦୁନିଆଁ ଆଖିରେ ବି ଲୁଚି ଯିବି । କିଛି ଦୂରରୁ କଣ୍ଢେଇ ବୁଢ଼ୀର ଚେହେରା ଭଳି ଚେହେରାବାଲୀ ମିସେସ୍ ବାରବର୍ଟନଙ୍କ ଘରୁ ୱାୟାରଲେସର ସ୍ୱର ଶୁଭୁଥିଲା । ଦୂରରେ ସର୍ଭେଣ୍ଟ କ୍ୱାଟର ଆଗରେ ଘାସ ଉପରେ ବସି ଫକୀରା ଭାଉଜ ଗଫୁର ବେଗମ ସାଙ୍ଗରେ କଥା ହେଉଥିଲା । ପଛ ବାରଣ୍ଡାରେ ଦିଦୀ ମୁଜଫ୍ଫର ଭାଇକୁ ଚିଠିଲେଖାରେ ବ୍ୟସ୍ତ ଥିଲେ । ଦିଦୀର ଅଭ୍ୟାସ, ଘରେ ଯଦି କିଛି ଟିକିଏ ଖାସ କଥା ଘଟିଗଲା, ତାହେଲେ ମୁଜଫ୍ଫର ଭାଇ ପାଖକୁ ଲମ୍ବା ଚିଠିଟିଏ ଲେଖି-ଦେବେ । ରେଶମ ପଟି ବନ୍ଧା ହେଇ ତା' ଟୋକେଇରେ ଆରାମରେ ଶୋଇଥିଲା । ସାରା ଜଗତ ଶାନ୍ତ ଥିଲା । କେବଳ ମୁଁ ଗୋଟେ ପଳାତକ ଅପରାଧୀ ଭଳି ସେ ଡେଙ୍ଗା ଡେଙ୍ଗା ଘାସ ଭିତରେ ଠିଆ ହୋଇ ତା'ପରେ କ'ଣ କରିବି ଭାବି ହେଉଥିଲି । ଶେଷକୁ ଧୀରେ ଧୀରେ ବାପାଙ୍କ କୋଠରିପଟକୁ ଗଲି । ଝରକା ବାଟେ ଭିତରକୁ ଅନେଇଲି । ବାପା ଆରାମ ଚଉକିରେ ବସି କ'ଣ ପଢୁଥିଲେ । ମୁଁ ଭିତରକୁ ଯାଇ ଚଉକି ପଛରେ ଠିଆ ହେଲି । ''କ'ଣ ହେଲା ମା''— ସେ ମୋର ଧୀର କଇଁ କଇଁ କାନ୍ଦଣା ସ୍ୱର ଶୁଣି ଚମକି ପଡ଼ି ପଗ୍ଭରିଲେ—

''ରେଶମକୁ.... ରେଶମକୁ ମୁଁ ବାଡ଼ ଭିତରକୁ ଫିଙ୍ଗି ଦେଇଥିଲି ।''

''ତୁ !''

''ହଁ... କମଳା ବିମଳା ଘରକୁ ଯିବାକୁ ତରତର ହେଉଥିଲି । ମନା କରୁଥିଲେ ବି ସେ ମୋର ପଛେ ପଛେ ଦଉଡ଼ିବା ଆରମ୍ଭ କରିଦେଲା । ଆଉ ମୁଁ ତାକୁ ଟେକି ତରତର ଥିଲି ବୋଲି ବଗିଗ୍ଭ ଭିତରକୁ ଫୋପାଡ଼ି ଦେଲି ।'' ଏତିକି କହିଦେଇ ମୁଁ ଭେଁ ଭେଁ କାନ୍ଦିବାକୁ ଲାଗିଲି ।

କାନ୍ଦିଦେଲା ପରେ ମନ ହାଲୁକା ଲାଗିଲା । ଅପରାଧର କିଛି ପ୍ରାୟଶ୍ଚିତ୍ତ ବି ହୋଇଗଲା । ତେବେ ସେଥିରେ ରେଶମର ପୀଡ଼ା କମ୍ ହେଲା ନାହିଁ ! ସନ୍ଧ୍ୟାରେ ସିତାର

ଶିଖେଇ ସାରି ସାଇମନ ତା ସାଙ୍ଗରେ ଅନେକ ବେଳ ଧରି କଥା ହେଲେ ।

ପ୍ରତିଦିନ ରେଶମର ପଟି ବଦଳା ଚାଲିଥାଏ । ସପ୍ତାହରେ ଦିନେ ଡାକ୍ତରଖାନାକୁ ନେଇଯିବାକୁ ହୁଏ । ତା'ର ଜଂଘ ଉପର ସୁନ୍ଦର କଅଁଳ ସୁର୍ମାରଙ୍ଗର ବାଳ କାଟି ଦିଆହୋଇଥାଏ । ଘା'ର ଲାଲ ଚିହ୍ନ ରେଖା ଭଳି ଅନେକ ଦୂର ଟାଣି ହୋଇଥାଏ । ତା'ର ଘା' ଶୁଖିବା ଲାଗି ଅନେକ ଦିନ ଲାଗିଲା । ସେ ତା'ପରେ ଛୋଟେଇ ଛୋଟେଇ ଚାଲିବା ଆରମ୍ଭ କରିଦେଲା । ପ୍ରାୟ ମାସେ ପରେ ସେ ସାଇମନଙ୍କୁ ଛୋଟେଇ ଛୋଟେଇ ଯାଇ ଫାଟକ ପାଖରେ ବଳେଇ ଦେଇ ଆସିପାରିଲା । ଯେତେବେଳେ ଫକୀରା ତା ପାଇଁ ବଜାରରୁ ମାଂସ ଛିଞ୍ଚଡ଼ା ଆଣିଦିଏ, ସେତେବେଳେ ପୂର୍ବଭଳି ଗୋଟାଏ କୋଣରେ ଥୁଆ ହେଇଥିବା ତା'ର ଖାଇବା ବାସନ ପାଖକୁ ବି ସେ ଯିବା ଆରମ୍ଭ କରିଦେଲା ।

ଦିନେ ସକାଳେ ମିଷ୍ଟର ଜର୍ଜ ବେକେଟ୍ ବାଡ଼ ପାଖକୁ ପହଞ୍ଚି ସଙ୍କୋଚରେ ମୋତେ ପାଖକୁ ଡାକି ପଚାରିଲେ—

"ଏଇନେ ରେଶମର ଦେହ କେମିତି ଅଛି ? ମିଷ୍ଟର ସାଇମନଙ୍କ ଠାରୁ ଶୁଣିଲି ଯେ ସେ ଭାରି ଜଖମୀ ହୋଇଯାଇଥିଲା ଏ ଭିତରେ ?"

ମିଷ୍ଟର ଜର୍ଜ ବେକେଟ୍ ବୋଧହୁଏ ଏଇ ପ୍ରଥମ କରି ଏ ସାହିରେ କାହା ସାଙ୍ଗରେ କଥା ହେଇଥିଲେ । ରେଶମର କଥା ପଚାରିଲେ ବୋଲି ମୁଁ ତାଙ୍କ ନିକଟରେ କୃତଜ୍ଞତା ପ୍ରକାଶ କଲି । ଆଉ ସେ ତାଙ୍କରି ଚାରି କଲୀଦାର କୋଟର ଚିରା ପକେଟରେ ଆଙ୍ଗୁଠି ପୂରେଇ ଧୀରେ ଧୀରେ ଆଗକୁ ଚାଲିଗଲେ ।

ମିଷ୍ଟର ବେକେଟ୍ ଜଣେ ଅତି ଗରିବ ଆଂଗ୍ଲୋଇଣ୍ଡିଏନ୍ । ତାଙ୍କ ନାଆଁ ହୋଇଯାଇଥାଏ— ଶୁକୁଟା ସାହେବ । ସେ ରାସ୍ତାକଡ଼ରେ ଗୋଟାଏ ଭଙ୍ଗା ଦଦରା ଶିଉଳିଲଗା କୁଡ଼ିଆରେ ରହୁଥିଲେ । ସବୁଦିନ ସକାଳୁ ସକାଳୁ ବାଲ୍‌ଟି ନେଇ କମିଟି ନଳରୁ ନିଜେ ଯାଇ ପାଣି ନେଇ ଆସୁଥିଲେ । ତାଙ୍କର ଝିଅଟିଏ ଥିଲା, ତା ନା' ଡାଇନା । ସେ ପେରେଡ଼ ଗ୍ରାଉଣ୍ଡର ଗୋଟାଏ ଇଂଲିଶ ସିନେମା ହଲରେ ଟିକଟ ବିକୁଥିଲା । ପ୍ରାୟ ରଙ୍ଗିନ ଫ୍ରକ୍ ପିନ୍ଧି ସେ ସାଇକଲରେ ଯିବାଆସିବା କରୁଥିଲା । ତା' ପାଖରେ ମାତ୍ର ଚାରିଖଣ୍ଡ ଫ୍ରକ୍ । ତାକୁଇ ସେ ଧୋଇ ଶୁଖେଇ ପିନ୍ଧେ । ମିସେସ ଗୋସ୍ୱାମୀ, ମିସେସ ଫାରୁକୀ ଆଉ ମିସେସ ଯଶବନ୍ତ ସିଂହ କହନ୍ତି— "ତାକୁ ତ ସିନେମା ହଲରୁ କେବଳ ପଚିଶଟଙ୍କା ମିଳେ। ସେଥିରେ ପୁଣି ଏତେ ଠାଣିରେ ପୋଷାକ ପିନ୍ଧୁଚି । ତାକୁ ତ ଗୋରାମାନେ ପଇସା ଦିଅନ୍ତି ନା !" (ଗୋରାମାନେ କାହିଁକି ବା ପଇସା ଦେବେ ମୁଁ ଜମା ବୁଝିପାରୁ ନଥିଲି ।) ଯଦି ସେମାନେ ଦେଉଥିଲେ, ତେବେ ତା'ର ବୁଢ଼ା କାହିଁକି ନଳକୁ ନିଜେ ପାଣି ଆଣିବାକୁ ଯାଉଥିଲା ?

ଏ ସାହିଟି ସେହି ସମ୍ପନ୍ନ ପେନସନଭୋଗୀ ଇଂରେଜମାନଙ୍କର ବସତି । ବେଶ୍ ଆକର୍ଷକ ସୁନ୍ଦର କୋଠିମାନଙ୍କରେ ସେମାନେ ଚୁପଚାପ୍ ରହୁଥିଲେ । ସେମାନଙ୍କର ସୁରୁଚିପୂର୍ଣ୍ଣ

ଢଙ୍ଗରେ ସଜା ହୋଇଥିବା କୋଠରି ଆଉ ବାରଣ୍ଡାରେ ଲଣ୍ଡନ ଇଲଷ୍ଟ୍ରେଟେଡ଼ ନିଉଜ ଲେଟର, କଣ୍ଟ୍ରୀ ଲାଇଫ୍ ଆଉ ପଞ୍ଚର ନୂଆ ସଂଖ୍ୟାଗୁଡ଼ିକ ମେଜ ଉପରେ ସଜଡ଼ା ହୋଇଥାଏ । ତା'ଛଡ଼ା ଟାଇମ୍ସ ଓ ଡେଲି ଟେଲିଗ୍ରାଫ୍‌ର ପ୍ୟାକେଟ ସମୁଦ୍ରି ଡାକରେ ଆସି ପହଞ୍ଚେ । ପ୍ରତି ସକାଳରେ ସେମାନଙ୍କର ପତ୍ନୀମାନେ ନିଜ ନିଜ 'ମୋନିଙ୍ଗ୍ ରୁମ'ରେ ବସି ଅତି ତନ୍ମୟତା ସହିତ 'ହୋମ'କୁ ଚିଠି ଲେଖନ୍ତି ଏବଂ ସେମାନଙ୍କର 'ଗୋଲକୋଠୀ'ରେ ସେମାନଙ୍କର ପୁଅମାନଙ୍କର ଫଟୋ 'ସିଲ୍‌ଭର' ଫ୍ରେମରେ ବନ୍ଧାହୋଇ ସଜା ହୋଇ ରହିଥାଏ । ସେହି ପୁଅମାନେ ପୂର୍ବ ଆଫ୍ରିକା ବା ଦକ୍ଷିଣ ପୂର୍ବ ଏସିଆରେ ଇଂଲିଶ ସାମ୍ରାଜ୍ୟକୁ ଅଧିକରୁ ଅଧିକ ବଢ଼େଇବାରେ ଲାଗିଥା'ନ୍ତି । ସେମାନେ ବର୍ଷ ବର୍ଷ ଧରି ଏ ଦେଶରେ ରହି ଆସିଥିଲେ ମଧ୍ୟ... 'କିଏ ଅଛ !'... 'ଅବଦୁଲ ଛୋଟା ହାଜିରୀ ମାଙ୍ଗଟା'... ଆଦି କେତୋଟି ଶବ୍ଦରୁ ଅଧିକ ଜାଣି ନଥିଲେ । ଏହି ଏକାନ୍ତପ୍ରିୟ ଲୋକେ ଦିନସାରା ବଗିଗ୍ୱ କାମ, 'ବାର୍ଡ ୱାଚିଙ୍ଗ୍' ବା ଡାକଟିକଟ ଜମେଇବାରେ ଲାଗିଥାଆନ୍ତି । ଭାରି ବିଚିତ୍ର ଲୋକଗୁଡ଼ାକ । ମିଷ୍ଟର ହାର୍ଡ କେସଲ ତିବ୍‌ବତୀ ଭାଷା ଓ ରୀତିନୀତିର ବିଶେଷଜ୍ଞ ଥିଲେ । ମିଷ୍ଟର ଗ୍ରୀନ ଆସାମର 'ଖାସୀ' ଜନଜାତିର ବିଶେଷଜ୍ଞ ଥିଲେ । ଉତ୍ତର ପଶ୍ଚିମ ସୀମାନ୍ତ ଲଢ଼େଇରେ ନିଜର ଗୋଡ଼ଟିଏ ହରେଇ କାଠ ଗୋଡ଼ ଲଗଉଥିବା କର୍ଣ୍ଣେଲ ବାଇଟ ହେଡ଼ 'ଖୁଶହାଲ ଖାଁ ଖଟକ'ଙ୍କ ବିଷୟରେ ପୂର୍ଣ୍ଣଜ୍ଞାନର ଅଧିକାରୀ ଥିଲେ । ମେଜର ସଲନ୍ ଷ୍ଟେଟସ୍‌ମେନ୍‌ରେ ଶିକାରସମ୍ବନ୍ଧୀ ଲେଖା ଲେଖୁଥିଲେ ଆଉ ମିଷ୍ଟର ମାର୍ଚମେନ୍ ଚେସ୍ ପାଗଳ ଥିଲେ । ମିସ୍ ଡ୍ରିଂକୱାଟର ପ୍ଲାନ୍‌ଚେଟରେ ଆତ୍ମାମାନଙ୍କୁ ଡାକୁଥିଲେ ଏବଂ ମିସେସ ବାର୍ବରଟନ ଚିତ୍ର ଆଙ୍କୁଥିଲେ ।

ମିସେସ୍ ବାର୍ବରଟନ ଜଣେ ବ୍ରିଗେଡିୟରଙ୍କର ବିଧବା ପତ୍ନୀ । ସେ ଆମର ପଛପଟେ ରହୁଥିଲେ । ତାଙ୍କର ବୁଢ଼ୀ କୁମାରୀ ଭଉଣୀ ବି ତାଙ୍କରି ସାଙ୍ଗରେ ରହୁଥିଲେ । ଏଇ ଦୁଇ ଭଉଣୀଙ୍କ ଚେହେରା ଲମ୍ବଥଣ୍ଟୀ ଚଢ଼େଇଙ୍କ ଭଳି ଥିଲା । ସେ ଦୁହେଁ ସେମାନଙ୍କର ଲମ୍ବ ଚଉଡ଼ା ଡ୍ରଇଁରୁମ୍‌ର କୋଉ ଗୋଟାଏ କୋଣରେ ବସି ଜଳରଙ୍ଗର ଛବି ଆଙ୍କନ୍ତି । ସେମାନେ ଏତେ ଛୋଟ ଛୋଟ ଥିଲେ ଯେ ପୋଷାକର ଖୋଳ ଭିତରେ ଏବଂ ଖୋଳଲଗା ଫର୍ଣ୍ଣିଚର ଓ ଅନ୍ୟାନ୍ୟ ଜିନିଷମାନଙ୍କ ଭିତରେ ଏମିତି ହଜିଯାଉଥିଲେ ଯେ ଥରକ ଦେଖାରେ ଆଦୌ ବାରିହେଉ ନଥିଲେ ।

ଡାଲନବାଲାର ଆଉ ଗୋଟାଏ କୋଠୀରେ 'ଇଂଲିଶ ଷ୍ଟୋର' ଥିଲା । ଜଣେ ପାର୍ସୀ ତାର ମାଲିକ । ସାହିଟାଯାକର ଇଂରେଜ ଓ ଅନ୍ୟ ସ୍ତ୍ରୀମାନେ ସେଇଠି ଆସି କିଣାକିଣି କରନ୍ତି । ସେଇମାନଙ୍କ ଭିତରେ ସ୍କାଣ୍ଡେଲ ଏବଂ ଅନ୍ୟାନ୍ୟ ଖବର ବିନିମୟ ହୁଏ ।

ଏହି ସୁଖୀ ଓ ସମ୍ପନ୍ନ ଇଂରେଜ ସାହିର ଏକମାତ୍ର ନିର୍ଧନ ଆଂଗ୍ଲୋ-ଇଣ୍ଡିଆନ୍ ଥିଲେ ସେଇ ମହଲ ମିଞ୍ଜି ମିଞ୍ଜି ଓ ନେଳି ଆଖିବାଲା ମିଷ୍ଟର ଜର୍ଜ ବେକେଟ; କିନ୍ତୁ ସେ ଅତ୍ୟନ୍ତ ସମ୍ମାନନୀୟ ଆଂଗ୍ଲୋ-ଇଣ୍ଡିଆନ୍ । ଯଦିଓ ସେ ନିଜକୁ ପକ୍କା ଇଂରେଜ ମନେକରୁଥିଲେ,

ତେଣୁ ଇଂଲଣ୍ଡକୁ ସେ 'ହୋମ' ବୋଲି କହୁଥିଲେ। କିଛି ବର୍ଷ ପୂର୍ବେ ଯେତେବେଳେ ସମ୍ରାଟ ଜର୍ଜ ପଞ୍ଚମଙ୍କର ମୃତ୍ୟୁରେ କୋଲାଗଡ଼ରେ 'ସ୍ଲୋମାର୍ଚ୍ଚ'ର ବିରାଟ ପେରେଡ଼ ହେଲା ଆଉ ଗୋରା ବେଣ୍ଡ ପାର୍ଟି ମୃତ୍ୟୁକାଳୀନ ଧୂନ ବଜେଇଥିଲା, ସେତେବେଳେ ମିଷ୍ଟର ଜର୍ଜ ବେକେଟ୍ ବି ନିଜ ହାତରେ ଶୋକ ପାଳନର କଳା ପଟି ବାନ୍ଧି କୋଲାଗଡ଼ ଯାଇଥିଲେ ଆଉ ଇଂରେଜ ଲୋକଙ୍କ ସାଙ୍ଗରେ ବସିଥିଲେ । ସେତେବେଳେ ତାଙ୍କ ଝିଅ ଡାଇନା ତା'ର ସୁନେଲୀ ବାଳକୁ ଓ ସୁନ୍ଦର ମୁହଁଟିକୁ କଳା ହ୍ୟାଟ୍ ଓ କଳା ଜାଲିରେ ଢାଙ୍କି ରଖିଥିଲା । ଅନେକ ଦିନ ଯାଏଁ ସେ କଳାପଟି ଖଣ୍ଡିକ ମିଷ୍ଟର ଜର୍ଜ ବେକେଟଙ୍କର ବାହୁରେ ବନ୍ଧାହୋଇ ରହିଥିଲା ।

ତେବେ ପିଲାମାନେ ଭାରି ନିର୍ଦ୍ଦୟ । ଡାଲନ୍‌ବାଲାର ସବୁ ଭାରତୀୟ ପିଲା ମିଷ୍ଟର ଜର୍ଜବେକେଟଙ୍କୁ ଖାଲି ଶୁକୁଟା ସାହେବ ବୋଲି କହୁନଥିଲେ; ପନ୍ଦର ବର୍ଷର, ଡୁନ୍ ପବ୍ଲିକ ସ୍କୁଲରେ ପଢୁଥିବା କମଳା ବିମଳାର ଭାଇ ସ୍ୱର୍ଣ୍ଣ ମିଷ୍ଟର ବେକଟଙ୍କ ଝିଅ ଡାଇନାକୁ ଚିଡ଼େଇବାର ଆଉ ଏକ ଉପାୟ ଖଞ୍ଜିଥିଲା ।

କମଳା ଓ ବିମଳାର ବାପା ଭାରି ସଉକିଆ ଓ ଭଲ ସ୍ୱଭାବର ମଣିଷଟିଏ । ସେ ୧୯୨୮ରେ ଲଣ୍ଡନ୍‌ରୁ ଏକ ଇଂଲିଶ ରେକର୍ଡ କିଣିଥିଲେ । ସେଥିରେ ଅଜଣା ବାଜେ ଗୀତଟିଏ ଥିଲା । ତା'ର ଆଂଗ୍ଲୋ-ଇଣ୍ଡିଆନ ଉର୍ଦ୍ଦୂ ଅନୁବାଦ ବି ତା'ରି ସାଙ୍ଗରେ ସେଇ ଧୂନ୍‌ରେ ରେକର୍ଡ କରାଯାଇଥିଲା । ତାକୁ କେହି ଜଣେ ଫାଜିଲ ଇଂରେଜ ତିଆରି କରିଥିଲା । ସେଇ ରେକର୍ଡଟା ଏଇନେ ସ୍ୱର୍ଣ୍ଣ ପାଖରେ । ଯେତେବେଳେ ଡାଇନା ସାଇକଲରେ ସେମାନଙ୍କର ଘର ସାମନା ଦେଇ ଯାଉଥିଲା, ସେତେବେଳେ ସ୍ୱର୍ଣ୍ଣ ଝରକା ପାଖରେ ଗ୍ରାମୋଫୋନର ପୁଙ୍ଗୀ ମୁହେଁଇ ଦେଇ ସେଇ ରେକର୍ଡଟାକୁ ବଜେଇ ଦେଇ ଲୁଚି ଯାଉଥିଲା । ଗୀତଟି ଖୁବ୍ ଜୋରରେ ଶବ୍ଦ କରି ବାଜୁଥିଲା । ଗୀତଟିର ଅନୁବାଦ ପ୍ରାୟ ଏଇଆ—

ଥରେ ଜଣେ ସୌଦାଗର ଥିଲା ଲଣ୍ଡନ ସହରେ
ତାହାର ଗୋଟାଏ ଝିଅ, ତା ନାଆଁ ଡାଇନା ।
ନାଆଁ ତା ଡାଇନା ହେବ ଷୋହଳ ବରଷ
ତା' ପାଖରେ ବେଶ୍ ଥିଲା ଲୁଗା ରୂପା ସୁନା ।
ଦିନେ ସେ ଡାଇନା ଥିଲା ଆସି ବଗିଚ୍ଚରେ
ତା ବାପ ଆସି କହିଲା ତାକୁ "ଶୁଣ ଆଲୋ ଝିଅ !
ଯାଆ ପିନ୍ଧିନେ ପୋଷାକ ହୋଇ ସଫାଆ
କାହିଁକି ନା ମୁଁ ଆଣିଛି ତୋ ପାଇଁକି ବର !"
କହିଲା ତା' ଶୁଣି ଝିଅ "ଶୁଣ ବାପ ମୋର,
ମୋର ଇଚ୍ଛା ନାହିଁ ତିଳେ ହେବା ପାଇଁ ବାହା
ଯଦି ବର୍ଷେ ଦି' ବରଷ କରିବୁନି ଗୋଳ

ଆ ଆ ଆ ରେ ଧନ ମୁଁ ଛାଡ଼ିଦେବି ପୂରା ।''
ତା' ପରେ କହିଲା ବାପା ''ଶୁଣ ଆଲୋ ଝିଅ
ଯଦି ତୁହି ମାଇକିନା ହେବୁନି ଏହାର
ମାଲମତା ସବୁ ତୋର ନିଲାମରେ ଯିବ
ଆଉ ମୁହିଁ କାଣି କଉଡ଼ି ବି ଦେବିନାଇଁ ତୋତେ ।''
ଦିନେ ଯେବେ ବିଲୀ କିନ୍ତୁ ହାଓ୍ୱା ଖାଇ ଗଲା
ଡାଇନାର ଶବ ଗୋଟେ କୋଣରେ ମିଳିଲା ।
ବାଦଶାହୀ ପିଆଲା ଏ ଥିଲା ଅଣ୍ଟା ପରେ
'ଜହର ଖାଇ ମରିଛି' ଲେଖିଛି ଚିଠିରେ ।

ଏ ଗୀତ ବାଜିବା ମାତ୍ରେ ଡାଇନା ସାଇକଲର ସ୍ପିଡ଼ ବଢ଼େଇଦିଏ ଆଉ ତା'ର ସୁନେଲୀ କେଶ ଉଡ଼େଇ ଜୋର୍‌ରେ ଆଗକୁ ଚ୍ଚଲିଯାଏ ।

ସେଇ ଶୀତରେ ଆଉ ଏକ ବଡ଼ ଘଟଣା ଥିଲା— ପେରେଡ୍ ଗ୍ରାଉଣ୍ଡରେ 'ଦି ଗ୍ରେଟ ଇଷ୍ଟ ଇଣ୍ଡିଏନ ସର୍କସ ଏଣ୍ଡ କର୍ନିଭାଲ'ର ଖେଳ ଦେଖେଇବାକୁ ଆସିବା । ତା'ର ବିଜ୍ଞାପନ ମାଙ୍କଡ଼ ଆଉ ଜୋକରମାନଙ୍କର ଏକ ଲମ୍ବ ଶୋଭାଯାତ୍ରାରେ ବଣ୍ଟା ଯାଇଥିଲା । ସେଥିରେ ଲେଖାଥିଲା—

ବିଂଶ ଶତାବ୍ଦୀର ଆଶ୍ଚର୍ଯ୍ୟଜନକ ଖେଳ
ସିଂହ ଭଳି କଲିଜାବାଲୀ
ସୁନ୍ଦରୀ ମିସ ଜୋହରା ଡର୍ବି
ମରଣ କୂଅରେ... ଆଜି ରାତି ।।

ପ୍ରଥମେ ଫକୀରା ସର୍କସ ଦେଖି ଫେରିଲା । ସେ ତାର ଭାଉଜକୁ ବି ସାଙ୍ଗରେ ସର୍କସ ଦେଖେଇବାକୁ ନେଇଥିଲା । ସକାଳେ ଖବର ଦେଲା— ''ବେଗମ ସାହିବା... ବଡ଼ଦିଦୀ, ଦିଦୀ.. ବୁଝିଲ, ସେ ମାଇକିନାଟା 'ଡେଥ ଅଫ ଓ୍ୱେଲ'ରେ ଏମିତି ମଟରସାଇକେଲ ଚଳଉଛି, କ'ଣ କହିବି ? ମାଇକିନା ନା ସିଂହଛୁଆ... ବାପ୍‌ରେ ବାପ୍... ।''

ତା' ପରଦିନ ସ୍କୁଲରେ ମୋତେ କମଳା ଆଉ ବିମଳା କହିଲେ ''ମିସ୍ ଜୋହରା ଡର୍ବି ତ ଜଣେ ବେଶ ସାହସୀ ମାଇକିନା !'' କାରଣ ସେ ଦୁହେଁ ବି ତା'ର ବୀରତ୍ୱ ଦେଖି ଆସିଥିଲେ ।

ମୁଁ ତ ଆଗରୁ ସର୍କସପାଗଳୀ, ତେଣୁ ଖୁବ୍ ଶୀଘ୍ର ଦିଦୀ ସାଙ୍ଗରେ ପେରେଡ଼ ଗ୍ରାଉଣ୍ଡ ପହଞ୍ଚିଗଲି । ସେଠାରେ ତମ୍ବୁ ବାହାରେ ଗୋଟାଏ ଉଚ୍ଚ ବେଦୀ ଉପରେ ମୋଟର ସାଇକଲଟିଏ ଘଡ଼ଘଡ଼ ହେଉଥାଏ । ଆଉ ତାରି ପାଖରେ ମିସ୍ ଜୋହରା ଡର୍ବି ଚଉକି ପକେଇ ବସିଥାଏ । ସେ ନୀଳରଙ୍ଗର ସାର୍ଟିନ କନାର ସେଇଭଳି ପୋଷାକ ପିନ୍ଧିଥିଲା, ଯେମିତି ପୋଷାକ ସିନେମାରେ ମିସ୍ ନାଦିଆ ପିନ୍ଧିଥିଲା, ହଣ୍ଟରବାଲୀରେ । ସେ ମୁହଁରେ

ବେଶ ଗୋଲାପୀ ପାଉଡ଼ର ବୋଳି ହେଇଥିଲା । ତାହା ବିଜୁଳି ଆଲୁଅରେ ନୀଳ ଦିଶୁଥିଲା । ଓଠ ଗାଢ଼ ଲାଲ ରଙ୍ଗରେ ରଙ୍ଗେଇଥିଲା । ତା' ପାଖରେ ବେଶ ଭୟଙ୍କର ନିଶୁଆ ମଣିଷଟିଏ ସେମିତିକା ରଙ୍ଗ-ବେରଙ୍ଗ 'ବ୍ରୀଜେସ୍' ପିନ୍ଧି, ଲମ୍ବା ଲମ୍ବ କଲି ସଜେଇ, ଗଳାରେ ରୁମାଲ ବାନ୍ଧି ବସିଥାଏ । ମିସ୍ ଜୋହରା ଡର୍ବିର ମୁହଁରେ ବେଶ ବିରକ୍ତିଭାବ ଉକୁଟି ଉଠୁଥାଏ ଆଉ ସେ ଅନ୍ୟମନସ୍କ ଭାବେ ସିଗାରେଟ୍ ଟାଣୁଥାଏ ।

ତା'ପରେ ସେମାନେ ଦୁହେଁ ମରଣ କୂଅ ଭିତରେ ପଶିଲେ । କୂଅ ଭିତର ଟଟାଣରେ ମୋଟର ସାଇକଲଟିଏ ଥୁଆ ହୋଇଥାଏ । ନିଶୁଆ ଲୋକଟା ପ୍ରଥମେ ମୋଟର ସାଇକଲ ଉପରେ ବସିଲା । ତା'ପରେ ମିସ୍ ଜୋହରା ଡର୍ବି ସାମନାରେ ତା'ର ବାହୁ ଉପରେ ବସିଗଲା । ସେଇ ଭୟଙ୍କର ମଣିଷଟିଏ କୂଅ ଭିତରେ ମୋଟର ସାଇକଲରେ ଚକ୍କର କାଟିଲା ଆଉ ଓହ୍ଲେଇଗଲା । ମିସ୍ ଜୋହର ଡର୍ବି ତା'ପରେ ଏକୁଟିଆ ଘନଘନ କରତାଳି ଧ୍ୱନି ଭିତରେ ଚକ୍କର କାଟି ଉପର ପର୍ଯ୍ୟନ୍ତ ଯାଇ ହାତ ଛାଡ଼ିଦେଲା । ମୋଟର ସାଇକଲର ପ୍ରଚଣ୍ଡ ଗତି ଫଳରେ ମରଣ କୂଅ ଜୋର ଜୋର ଦୋହଲିବାକୁ ଲାଗିଲା । ମୁଁ ମିସ୍ ଜୋହରା ଡର୍ବିର ଏହି ଆଶ୍ଚର୍ଯ୍ୟଜନକ ବୀରତ୍ୱ ମନ୍ତ୍ରମୁଗ୍ଧ ଆଖିରେ ଅନେଇ ରହିଥାଏ । ଖେଳ ପରେ ସେ ପୂର୍ବଭଳି ସେଇ ବେଦୀଟି ଉପରେ ପୁଣିଥରେ ବସିପଡ଼ି ସହଜ ଭାବରେ ସିଗାରେଟ୍ ଟାଣୁଥାଏ, ସତେ ଯେମିତି କିଛି ହୋଇନାହିଁ ।

ଭାବିଲେ, ମିସ ଜୋହରା ଡର୍ବି ଜାପାନୀ ଛତା ଧରି ତାର ଉପରେ ଗ୍ଲୁଥିବା 'ମେମ୍' ଆଉ ବାଘ ଯନ୍ତା ଭିତରେ ପଶୁଥିବା ବା ଖୁବ୍ ଉଚ୍ଚରେ ଟଣା ହୋଇଥିବା ତାର ଆଉ ଦୋଳିରେ ନାନା ଆଶ୍ଚର୍ଯ୍ୟଜନକ ଖେଳ ଦେଖାଉଥିବା ଝିଅଙ୍କଠାରୁ ଅଧିକ ବାହାଦୁର । ଗତବର୍ଷ ସେଠିକି 'ମହାନ ଅଖିଳ ଭାରତୀୟ କୁସ୍ତି' ଆସିଥିଲା । ସେଥିରେ ହମିଦା ବାନୋ ପହଲମାନ ଘୋଷଣା କଲା ଯେ ଯଦି କୌଣସି ପହଲମାନ ମରଦ ତା ସାଙ୍ଗରେ ଲଢ଼େଇ କରି ତାକୁ ହରେଇଦବ, ତାହେଲେ ସେ ତାକୁ ବାହା ହବ । ମାତ୍ର ଫକୀରାର କଥା ଅନୁସାରେ କୌଣସି ମା' କ୍ଷୀର ଖାଇଥିବା ମରଦପୁଅ ତାକୁ ହରେଇ ପାରିଲା ନାହିଁ । ସେଇ କୁସ୍ତିରେ ପ୍ରଫେସର ତାରାବାଈ ବି ବେଶ କୁସ୍ତି ଲଢ଼ିଥିଲେ । ସେଇ ଦୁଇଜଣ ପହଲମାନ ସ୍ତ୍ରୀଙ୍କ ଛବି ଇସ୍ତାହାରରେ ଛପା ହେଇଥିଲା । ସେଥିରେ ସେମାନେ କାଛା ବନିଆନ ପିନ୍ଧି ଗୁଡ଼ାଏ ମେଡ଼ାଲ ଓହଳେଇ ଗର୍ବରେ କେମେରାକୁ ଅନେଇଥିଲେ ।

ସତରେ କେମିତିକା ବ୍ୟକ୍ତିତ୍ୱ ଏମାନଙ୍କର ! ଯେ ତାର ଉପରେ ଗ୍ଲେ, ମରଣ କୂଅରେ ମୋଟର ସାଇକଲ ଚଳାଏ, ଆଖଡ଼ାରେ କୁସ୍ତି କରେ ! ମୁଁ ସମସ୍ତଙ୍କୁ ପଚାରିଛି ହେଲେ କାହାରି ଠାରୁ ଏଭଳି ମହିଳାଙ୍କ ବିଷୟରେ କିଛି ଜାଣିପାରି ନାହିଁ !

''ଦି ଗ୍ରେଟ୍ ଇଷ୍ଟ ଇଣ୍ଡିଅନ ସର୍କସ'' ଖେଳ ଦେଖାଉଥିବା ସମୟରେ ଦିନେ ଫକୀରା ପଲଟଣ ବଜାରରୁ ସଉଦାପତ୍ର ଧରି ଆସି ଆଶ୍ଚର୍ଯ୍ୟଜନକ ଖବରଟିଏ ଶୁଣେଇଲା । ଖବରଟି ହେଲା— ମିସ୍ ଜୋହରା ଡର୍ବିର ପ୍ରେମିକ ମାଷ୍ଟର ଗୁଲକନ୍ଦ ଆଉ ମଚ୍ଛନ୍ଦରଙ୍କ ଭିତରେ

ଛୁରୀ ମାଡ଼ ହେଇଛି । ମାଷ୍ଟର ମଛନ୍ଦର ମିସ୍ ଜୋହରା ତର୍ବିକୁ ବି ଜଖମ କରିଦେଇଛି । ତାକୁ ଡାକ୍ତରଖାନାରେ ଭର୍ତ୍ତି କରାହୋଇଛି । ଆଉ ତା'ଠାରୁ ବଳି ଚମକ୍‌ପ୍ରଦ ଖବର, ଯାହା ଫକୀରା ନଳଠେଇଁ ଶୁଣି ଆସି ଶୁଣେଇଲା, ତାହା ହେଲା—ପିଲପିଲୀ ସାହବର ଝିଅ ସର୍କସରେ ଭର୍ତ୍ତି ହେଇଛି ।

"ଡାଇନା ବେକେଟ୍... ?" ଦିଦୀ ପାଳିଆ ଧରିଲା ଭଳି ପଗ୍ଚରିଲେ !

"ହଁ..ହଁ.. ବଡ଼ଦିଦୀ" ପିଲପିଲୀ ସାହବଙ୍କ ମିସିଆ । ଶୁଣିଛି, ସେ କୁଆଡ଼େ କହୁଥିଲା— ବାପର ଗରିବୀ ଆଉ ଦୁର୍ଦ୍ଦଶା ଆଉ ଦେଖି ହେଉନି । ଦୁନିଆଁ ତ ଯାହା ହଇରାଣ ହରକତ କରୁଛି । ଓଡ଼ିୟନ୍ ସିନେମାରୁ ତାକୁ ପଚିଶଟଙ୍କା ମିଳୁଥିଲା, ସର୍କସରୁ ପଅଷ୍ଠରୀ ମିଳିବ । ତା'ହେଲେ ଏହା ସତ ନା ବଡ଼ଦିଦୀ ଯେ ସେମାନେ ଭାରି ଗରିବ ।..."

"ଆଉ ଗୋରାମାନେ ତାକୁ ଯୋଉ ପଇସା ଦଉଥିଲେ ?" ମୁଁ ପଗ୍ଚରିଦେଲି ।

ଗଫୁର ବେଗମ ମୋତେ କଟମଟ କରି ଅନେଇଲା । କହିଲା— "ଯ' ପଳା ଏଇଠୁ !" ଆଉ ମୁଁ ସେଇଠୁ ପଳେଇ ଆସି ରେଶମର ଚୋକେଇ ପାଖରେ ବସି ଡାଇନା ବେକେଟ୍‌ର ବୀରତ୍ୱ ସମ୍ପର୍କରେ ଚିନ୍ତା କରିବାକୁ ଲାଗିଲି ।

ତା'ପରେ ମାଙ୍କଡ଼ ଓ ଜୋକର୍‌ମାନେ ଯୋଉ ପ୍ରଗ୍ଚରପତ୍ର ବାଣ୍ଟିଲେ, ସେଥିରେ ଛପା ହେଇଥିଲା—

"ସର୍କସପ୍ରେମୀଙ୍କ ପାଇଁ ଶୁଭ ସମ୍ବାଦ
ପରୀଶ୍ରେଷ୍ଠ ୟୁରୋପୀୟନ ସୁନ୍ଦରୀର ଆଶ୍ଚର୍ଯ୍ୟଜନକ ଖେଳ
ଲଣ୍ଡନ ସୁନ୍ଦରୀ
ମିସ୍ ଡାଇନା ରୋଜ
ମରଣ କୂଅରେ
ଆଜି ରାତି ।"

ସେ ସମୟରେ ସିନେମାର କଥା ପଡ଼ିଲା । ସେମିତି ସିନେମାର ଇସ୍ତାହାର କାଠ ଠେଲା ଗାଡ଼ିରେ ମଢ଼େଇ ସାମନା ଦେଇ ଯାଏ—

ଏ ବର୍ଷର ସର୍ବଶ୍ରେଷ୍ଠ ଫିଲ୍ମ
ଗ୍ଲେଞ୍ଜ
ଏଥିରେ କାମ କରିଛନ୍ତି ମିସ୍ ସରଦାର ଅଖ୍‌ତାର
ଅଦ୍ୟ ରଜନୀ
ପେରେଡ଼ ସାମନା
ପ୍ଲେଡିୟମ୍ ସିନେମାରେ !
ଆଉ
ଏ ବର୍ଷର ସର୍ବଶ୍ରେଷ୍ଠ ଫିଲ୍ମ

ଦିଲ୍ଲୀ ଏକ୍ସପ୍ରେସ୍
କାମ କରିଛନ୍ତି ମିସ୍ ସରଦାର ଅଖତାର
ପେରେଡ ସାମନା
ରକ୍ସି ସିନେମାରେ... ଅଦ୍ୟ ରଜନୀ...

ମୋତେ ଭାରି ଆଶ୍ଚର୍ଯ୍ୟ ଲାଗୁଥିଲା ଭାବିଦେଲେ ଯେ: ଏକା ମାନ୍ଟରେ ଦି' ଦି ଜାଗାରେ ସରଦାର ଅଖତାର 'କାମ' କେମିତି କରିବ ? ତେବେ ସେତେବେଳେ ଭାଗ୍ୟ ଏମିତି ବାଜିମାତ୍ କଲା ଯେ ବଡ଼ଦିଦୀ ଆଉ ତାଙ୍କର ସାଙ୍ଗମାନଙ୍କ ସାଙ୍ଗରେ ଗୋଟାଏ ପରେ ଦୁଇ, ଦୁଇ ପରେ ତିନିଟି ଫିଲ୍ମ ଦେଖିବାକୁ ମିଳିଲା । 'ଅଛୁତ କନ୍ୟା'— ଯେଉଁ ଫିଲ୍ମ ପାଇଁ ମିସେସ୍ ଯୋଗମାୟା କହିଲେ ଯେ ତାଙ୍କ ଦେଶରେ ବଡ଼ଧରଣର ସାମାଜିକ କ୍ରାନ୍ତି ଆସିଗଲା । ଗୁରୁଦେବ ଟାଗୋରଙ୍କର ଭାଣିଜୀ ଦେବିକା ରାଣୀ ଏଇନେ ଫିଲ୍ମରେ କାମ କରୁଛି । ଆଉ 'ଜୀବନ ଲତା', ସେଥିରେ ସବିତା ଦେବୀ ଧୀର କୋମଳ କଣ୍ଠରେ ଗାଇଛନ୍ତି— ''ମୋହେ ପ୍ରେମ ଝୁଲେ ମେଁ ଝୁଲା ଦେ କୋଈ...'' ଆଉ ''ଜୀବନ ପ୍ରଭାତ'', ଯୋଉଟାକୁ ଦିଦୀ ବେଶ ଆଗ୍ରହରେ ଦେଖିବାକୁ ଯାଇଥିଲେ; ଯେହେତୁ ସେଥିରେ ଖୁର୍ଶୀଦ ଆପା 'କାମ' କରିଛି । ସିଏ ଏଇନେ ରେଣୁକା ଦେବୀ ବୋଲଉଛି । ଏସବୁ ସେହି ମହାନ କ୍ରାନ୍ତିର ପ୍ରମାଣ । ମିସେସ୍ ଯୋଗମାୟା ଗ୍ୟଟର୍ଜୀଙ୍କର ଭବିଷ୍ୟବାଣୀ ଅନୁସାରେ ତା ଦୁଆର-ମୁହଁରେ ସାରା ଭାରତବର୍ଷ ଠିଆ ହୋଇ ରହିଥିଲା । ସେତେବେଳେ, ତେଣୁ ହୁଏତ ମିସେସ୍ ଯୋଗମାୟା ଗ୍ୟଟର୍ଜୀଙ୍କର ଝିଅମାନେ ହାରମୋନିୟମରେ ସିନେମା ଗୀତ ବଜେଇବା ଆରମ୍ଭ କରିଦେଇଥିଲେ... ''ବାଁକେ ବିହାରୀ ଭୁଲ ନ ଜାନା... । ପ୍ରୀତମ ପ୍ୟାରୀ ପ୍ରୀତ ନିଭାନା'' ଆଉ ''ଗ୍ୱେର ଚୁରାଓ୍ୱେ ମାଲ ଖଜାନା, ପିୟା ନୈନୌଁ କୀ ନିନ୍ଦିୟା ଚୁରାଓ୍ୱେ...'' ଆଉ ''ତୁମ ଔର ମୈ ଔର ମୁନ୍ନା ପ୍ୟାରା... । ଘରଓ୍ୱା ହୋଗା ସ୍ୱର୍ଗ ହମାରା... ।''

ଗଫୁର ବେଗମ କାମ କରୁ କରୁ ଏଇ ସ୍ୱରକୁ କାନେଇବା ବାଦ ଅଣ୍ଟାରେ ହାତ ରଖି କହେ— ''ବୁଢ଼ା ବୁଢ଼ା ବଡ଼ଲୋକେ ସତ କହି ଯାଇଛନ୍ତି । ପ୍ରଳୟ ପାଖେଇ ଆସିଲାଣି, ଏଇ ତା'ର ପ୍ରମାଣ ଯେ କୁଆଁରୀମାନେ ମୁହଁ ଖୋଲି ବର ବାଛିବେ ।''

ସେତିକିବେଳକୁ ମନୋରମା ଗ୍ୟଟର୍ଜୀ ମଧୁର କଣ୍ଠରୁ ଭାସି ଆସିବ... ''ମୋହେ ପ୍ରେମ କେ ଝୁଲେ ଝୁଲା ଦେ କୋଈ... ।''

''ବେହିଆମି.. ତୁଇ ଏକା ଆଶ୍ରା.. ।'' ଗଫୁର ବେଗମ ଶୀତେଇଯାଏ ଆଉ ପ୍ରାର୍ଥନା କରେ । ତା'ପର ସ୍ଲିପର ଲଗେଇ ସପଡ଼ ସପଡ଼ ଗ୍ୱଲି ତା କାମରେ ବ୍ୟସ୍ତ ହୋଇଯାଏ ।

ସେତେବେଳେ ଫକୀରା ବି ତା ଭାଉଜକୁ ନେଇ ଏ ସବୁ ସିନେମା ସେକେଣ୍ଡ ସୋ ଦେଖେଇ ଆଣିଲା । ହେଲେ ଯୋଉଦିନ ଜଳନ୍ଧରା 'ଚଣ୍ଡୀଦାସ' ଦେଖି ଫେରିଲା, ସେଦିନ ତାକୁ ଅସମ୍ଭାଳ ଜର ହେଲା । ଡାକ୍ତର ହୁନ ଆସି ସକାଳେ ଦେଖିଲେ ଆଉ ତା'ର ରୋଗ ଅନେକ କିଛି ବଢ଼ିଯାଇଛି ବୋଲି କହିଲେ । ତେଣିକି ସେ ଟାଙ୍ଗାରେ ପ୍ରତିଦିନ ବୁହା ହେଇ

ଡାକ୍ତରଖାନା ଗଲା ଆଉ ଫେରିଲା ପରେ ଘାସ ଉପରେ କମ୍ବଳ ପାରି ଶୋଇ ରହିଲା । କିଛିଦିନ ପରେ ତା'ର ଅବସ୍ଥା ସୁଧୁରିଲା । ସୁଖନନ୍ଦନ ବବର୍ଚ୍ଚୀର ସ୍ତ୍ରୀ ଧନକଲିଆ ତାର ଟିକିଏ ଦୂର ଛଡ଼ା ବସି ତା'ର ମନ ଖୁସି ଲାଗି ପରିହାସ ଛଳରେ ପୂର୍ବୀଗୀତ ଗାଇ ବସେ—

"ନାଜୋ ଅଦାସେ ସରମୋ ହୟା ସେ
ବାଲେ ସଇର୍ଯ୍ୟା ସେ ସରମାଏ ଗଈ ମୈଁ ତୋ ।"

ଯେତେବେଳେ ଗଫୁର ବେଗମ ତା କଥା ବୁଝାବୁଝି କରିବାକୁ ଯାଏ, ସେତେବେଳେ ସେ କହେ— "ଧାଈମା, ମୋର ତ ବେଳ ଆସି ହେଲା । ଆଉ କେତେ ଦିନ !"

ଆଉ ଗଫୁର ବେଗମ ତା'ର ମନ ରଖିବାକୁ କହେ— "ଆରେ ତୁ ବେଶ ଜୀଇଁବୁ.. ଆରେ ଏ ଜଳନ୍ଦରୀ... କହ ତ ଏ ଫଙ୍କୀରାକୁ କୋଉ ମହନୀ ଲଗେଇଚୁ... ଟିକିଏ ମୋତେ ବି ତ ସେ ମନ୍ତ୍ର ବତେଇ ଦେ ! ମୋତେ ତ ମୋ ଘରବାଲାକୁ ବଶ କରିବାର ଗୋଟିଏ ବି ବାଗ ଜଣାନାହିଁ । ତୁ ହେଲେ କ'ଣ ଟିକିଏ ବତେଇ ଦେ । ଶୁଣିଛି ତମର ସେ ପାହାଡ଼ୀ ଅଞ୍ଚଳରେ ବେଶ ଯନ୍ତ୍ର-ମନ୍ତ୍ର ଅଛି । ଫଙ୍କୀରା କେମିତି ତୋ ନାଆଁ ଜପୁଚି । ଆରେ ତୁ ତ ତା' ମା' ଭଳି ।' ସେ ଭାରି ଲାଜରେ ହସିଦେଇ ଜବାବ ଦିଏ... "ଧାଈମା, ତମେ କ'ଣ ଜାଣିନ, ପୁରୁଣା ଗୁଡ଼ଉଳରେ..."

"ପୁରୁଣା ଗୁଡ଼ଉଳ ?" ମୁଁ ପାଳି ଧରେ— ଆଉ ଗଫୁର ବେଗମ କିଛିଟା ଘାବରେଇ ମୋତେ ଦେଖି ଝଟଝଟ କହେ— "ତମେ ଏଇଠି କ'ଣ କରୁଛ— ଯାଅ ବଡ଼ ଝିଅ ଡାକୁଛନ୍ତି ତମକୁ !" ତେଣୁ ମୁଁ ମୁଣ୍ଡ ନୁଆଇଁ ବଜରୀରୁ ରଙ୍ଗ-ବେରଙ୍ଗ ଗୋଡ଼ି ସବୁକୁ ଯୋତାର ମୁନିଆଁ ତିଖରେ ଗୋଇଠା ମାରି ମାରି ବଡ଼ଦିଦୀ ପାଖକୁ ଗୁଲିଯାଏ । ହେଲେ ସେ ଦର୍ଶନଶାସ୍ତ୍ରର ମୋଟା ମୋଟା ବହି ପଢୁଥିବେ ବା ମୁଜଫ୍‌ର ଭାଇର ଚିଠି ପଢୁଥିବେ, ନହେଲେ ଚିଠିର ଉତ୍ତର ଦେବାରେ ବୁଡ଼ି ରହିଥିବେ । ସେ ମୋତେ ଆଉ କୁଆଡ଼େ ପଠେଇ ଦେଲେ ମୁଁ ବୁଲିବାଲି ଆସି ରେଶମର ଟୋକେଇ ପାଖରେ ବସିପଡ଼ି 'ସେ ଚଞ୍ଚଳ ଭଲ ହୋଇଯାଉ' ବୋଲି ପ୍ରାର୍ଥନା କରିବସେ ।

ସ୍କୁଲରେ ବଡ଼ଦିନ ଛୁଟି ଆରମ୍ଭ ହୋଇଯାଇଥିଲା । ମୁଁ ସକାଳେ କମଳା ବିମଳାଙ୍କ ଘରକୁ ଯାଉଥିବା ବେଳେ ବାଟରେ ମିଷ୍ଟର ବେକେଟ୍ ଦେଖାହେଲେ । ସେ ବେଶ୍ ଘାବରେଇ ପାଗଳଙ୍କ ଭଳି ଗୋଟାଏ ପଟକୁ ଦଉଡ଼ିଲା ଭଳି ଗ୍ଲୁଲିଥିଲେ । ସେତିକିବେଳେ ମେଜର ସଲ୍‌ଟନ୍ ତାଙ୍କର ୧୯୨୬ ମଡେଲ ଖଡ଼ଖଡ଼ୀ ଫୋର୍ଡ ଗାଡ଼ି ଅଟକେଇ ତାଙ୍କୁ ସେଥିରେ ବସେଇ ନେଲେ । ଫୋର୍ଡ ୟୁରୋପିୟନ ଡାକ୍ତରଖାନା ପଟକୁ ମୁହେଁଇଲା ।

ମୁଁ କମଳା ଘରେ ପହଞ୍ଚିଲି । ସ୍ୱର୍ଣ୍ଣ ତାର ସ୍ୱଭାବର ପୂରା ଓଲଟା ଚୁପ୍‌ଚାପ ମନେହେଲା । ମୁଁ ପଚାରିଲାରୁ କହିଲା— ସେ ଏଇନେ ପେରେଡ଼ ଗ୍ରାଉଣ୍ଡରୁ ସବୁ ଘଟଣା ଶୁଣି ଆସୁଛି ।

ଡାଇନା ବେକେଟ ମାଷ୍ଟର ମଚ୍ଛନ୍ଦର ସାଙ୍ଗରେ ମୋଟର ସାଇକଲରେ ବସୁଥିଲା କି ନାହିଁ, ଦେଖଣାହାରୀଙ୍କ କହିବା ଅନୁସାରେ ତା'ର ଚେହେରା ଡରି ଧଳା ପଡ଼ିଯାଉଥିଲା । ଆଉ ସେ ଆଖିବୁଜି ରହୁଥିଲା । ହେଲେ ସର୍କସ ମେନେଜର ଜୋର ଦେଇ କହୁଥିଲା ଯେ ସେ ବି ଏକୁଟିଆ ମୋଟର ସାଇକଲ ଚଳେଇବା ଆରମ୍ଭ କରିଦେଉ । ତାହେଲେ ଯାଇ ତାର ଡର ଭାଙ୍ଗିବ । ଡର ଭାଙ୍ଗିବା ଲାଗି ସେ ମୋଟର ସାଇକଲରେ ଏକୁଟିଆ ବସି କୂଅ କାନ୍ଥକୁ ଚଢ଼ିବାକୁ ଚେଷ୍ଟାକଲା । ହେଲେ ମୋଟର ସାଇକଲ ତା'ର ଆୟତ୍ତରେ ରହିଲା ନାହିଁ ଆଉ ଡାଇନାର ଦୁଇଗୋଡ଼ ମୋଟର ସାଇକଲ ଚକରେ ଛନ୍ଦି ହୋଇ ଚୂରମାର ହୋଇଗଲା । ତାକୁ ସାଙ୍ଗେ ସାଙ୍ଗେ ୟୁରୋପୀୟନ ଡାକ୍ତରଖାନାକୁ ନିଆହେଲା । କର୍ଣ୍ଣଲ ବାଇକୋମ ସିଭିଲ ସର୍ଜନଙ୍କ କହିବା ଅନୁସାରେ— ତା'ର ଦୁଇଗୋଡ଼ ପୂରାପୂରି ବେକାର ହୋଇଯାଇଛି ଆଉ ତାକୁ ସାରା ଜୀବନ ଚକଲଗା ଚଉକିରେ କଟେଇବାକୁ ପଡ଼ିବ ।

ସେ ଦିନସାରା ଆମର ମନ ଆଉ କୋଉ ଖେଳକୁ ବଳିଲା ନାହିଁ । ଆମେ ସମସ୍ତେ ଯାଇ ଗୋଟାଏ ଗଛ ତଳରେ ବସି ରହିଲୁ । କିଛି ସମୟ ପରେ ସ୍ୱର୍ଣ୍ଣ ହଠାତ୍ ଗଛତଳରୁ କୁଦି ପଡ଼ିଲା ଆଉ ଲମ୍ବ ଲମ୍ବ ପାହୁଣ୍ଡ ପକେଇ କ୍ରିକେଟ ଖେଳିବାକୁ ଚାଲିଗଲା । ମୁଁ ଦେଖିଲି ସବୁରି ଚେହେରାକୁ କେମିତି ଏକ ପଶ୍ଚାତାପ ଆବୋରି ରହିଥିଲା । କେମିତି ଏକ ଅଜଣା ଅପରାଧବୋଧ ଘେରି ରହିଥିଲା... ।

ତା'ପରଦିନ 'ଦି ଗ୍ରେଟ ଇଷ୍ଟ ଇଣ୍ଡିଅନ୍ ସର୍କସ ଏଣ୍ଡ କର୍ନିଭାଲ'ର ମୁନିଆଁ ନିଶ ଆଉ ଅସଂଖ୍ୟ ମେଡାଲବାଲା ମେନେଜର ଆଉ ରିଙ୍ଗ ମାଷ୍ଟର ପ୍ରୋ. ଶାହବାଜ ଘୋଷଣା କଲା ଯେ ସର୍କସ ସେଠୁ ଚାଲିଯିବ । ଆସନ୍ତା ବର୍ଷ ସର୍କସପ୍ରେମୀଙ୍କୁ ଅଧିକ ଆଚମ୍ବିତ କଲା ଭଳି ନୂଆ ନୂଆ ଖେଳ ଦେଖେଇବୁ । ହେଲେ ଫକୀରାର ସୂଚନା ଅନୁସାରେ ସେ ଡରିଯାଇଥିଲା । ଆଉ ସର୍କସରେ ଲାଗଲାଗ ଦୁଇଟି ଭୟଙ୍କର ଦୁର୍ଘଟଣା ହେବା ଫଳରେ ତା' ପଛରେ ପୋଲିସ ବି ଲାଗିଥିଲା ।

ସର୍କସ ଚାଲିଗଲା ଆଉ ଜୋହର ଡର୍ବି ବି ଡାକ୍ତରଖାନାରୁ କେଜାଣି କୁଆଡ଼େ ଚାଲିଗଲା ।

ବଡ଼ଦିନ ଛୁଟିର ସପ୍ତାହେ ଖଣ୍ଡେ ଯାଇଥିବ ଆମ ଘରେ ଜଣେ ଅତିଥି ଆସି ପହଞ୍ଚିଲେ । ଡେଙ୍ଗା ପାତଳୀ ମହିଳା ଜଣେ । ତାଙ୍କ ନା ଡାକ୍ତର ଜୁବୈଦା ସିଦ୍ଦିକୀ । ସେ ଦିଲ୍ଲୀରୁ କଲିକତା ଯିବା ବାଟରେ ସପ୍ତାହକ ଲାଗି ଆମ ଘରେ ରହିଯାଇଥିଲେ । ସେ ବିଲାତରେ କୌଣସି ବିଜ୍ଞାନ ବିଷୟରେ ପି.ଏଚ୍.ଡ଼ି କରିଥିଲେ । ସେ କୌଣସି ଏକ ଦେଶୀୟ ରାଜ୍ୟର ମହିଳା କଲେଜର ପ୍ରିନ୍ସିପାଲ ଥିଲେ । କଳା ଧଡ଼ିର ଧଳା ଶାଢ଼ୀ ଆଉ ଲମ୍ବ ହାତବାଲା ଧଳା ବ୍ଲାଉଜ ପିନ୍ଧୁଥିଲେ । ତାଙ୍କର ଡେଙ୍ଗା ଦେହ, ତେଣୁ ସାମାନ୍ୟ ନଇଁ ଚାଲୁଥିଲେ ଆଉ ଯାହାକୁ ଦେଖୁଥିଲେ ବେଶ ନିରେଖି ଦେଖୁଥିଲେ । ସେ ସେତେବେଳେ

ସେଇ ଆଙ୍ଗୁଠି ଟିପରେ ଗଣିହେଲା ଭଳି କେତେଜଣ ମହିଳାଙ୍କ ଭିତରେ ଜଣେ ଥିଲେ ଯେ ସମୁଦ୍ର ସେପାରି ଉଚ୍ଚଶିକ୍ଷା ପାଇଥିଲେ ।

ପହିଲା ଦିନ ଯେତେବେଳେ ସେ ଖାଇବାକୁ ବସିଲେ, ବିରକ୍ତ ହେଇ କହିଲେ—''ଆପଣଙ୍କର ସବୁ ଗୃକର ଦେଖୁଛି ହିନ୍ଦୁ । ଆଉ ମୁଁ ହିନ୍ଦୁ ହାତରନ୍ଧା ଖାଏ ନାହିଁ ।''

''ମୁସଲମାନ ହେଇ ବି ଆପଣ ଛୁଆଁଅଛୁଆଁ ମାନନ୍ତି ? ବିଚିତ୍ର କଥା । ଆପଣ ପୁଣି ବିଲାତ ଯାଇ ଫେରିଲେଣି ।'' ବଡ଼ଦିଦୀ ତାଙ୍କର ବେଶ ସୁନ୍ଦର ଆଖି ନଚେଇ ପଗ୍ଋରି ଦେଲେ ।

''ଅସଲ କଥା ହେଲା... ମୁଁ... ମୁଁ... ଗୋଟାଏ 'ବଜୀଫା' (ଜପ) କରୁଛି ଆଜି-କାଲି ।'' ସେ ଅପ୍ରତିଭ ହୋଇ ଉତ୍ତର ଦେଲେ । ତା'ପରେ ତାଙ୍କର ଖାଇବା ଗଫୁର ବେଗମ ତାର ପବିତ୍ର-ନିର୍ମଳ ହାତରେ ରାନ୍ଧିବା ଆରମ୍ଭ କରିଦେଲା ।

ପଡ଼ୋଶୀ ମୁସଲମାନ ସ୍ତ୍ରୀମାନଙ୍କୁ ଡ. ସିଦ୍ଦୀକୀଙ୍କର ଏ ଧାର୍ମିକତା ବିଶେଷ ଭାବରେ ପ୍ରଭାବିତ କରିଥିଲା । 'ଝିଅ ହେବ ତ ଏମିତି । ସାତ ସମୁଦ୍ର ପାରି ହୋଇ ଆସିଛି, ତେବେ ଶାଢ଼ୀର ପଣତକାନି ଟିକିଏ ହେଲେ ଖସିଯିବ ମଥାରୁ !' ମିସେସ୍ ଫାରୁକୀ କହିଲେ ।

''ଇସ୍ଲାମୀ ପର୍ଦ୍ଦା ବାସ୍ତବିକ ଏଇଆ ଯେ ସ୍ତ୍ରୀ ଖାଲି ତା'ର ଚେହେରା ଆଉ ହାତ ଖୋଲା ରଖିବ । ତା'ର ରୂପ ଯୌବନ ମରଦଠାରୁ ଲୁଚେଇ ରଖିବ । ପବିତ୍ର କୋରାନ୍‌ରେ ଏଇଆ ଲେଖା ହୋଇଛି ।'' ମିସେସ୍ କୁରେଶୀ ଉତ୍ତର ଦେଲେ ।

''ପ୍ରତିଦିନ ନମାଜରେ ବନ୍ଧା, ଲଜ୍ଜା ମର୍ଯ୍ୟାଦାର ପ୍ରତୀକ'' ମିସେସ୍ ଅଂସାରୀ ପ୍ରଶଂସା କଲେ । ଡା. ସିଦ୍ଦୀକୀ ସବୁବେଳେ ଘାସ ଉପରେ ଚଉକିରେ ବସି ବଡ଼ଦିଦୀଙ୍କୁ କେଜାଣି କୋଉ କୋଉ କଥା, ଧର୍ମ ପ୍ରବଚନ ଶୁଣେଇବାରେ ବ୍ୟସ୍ତ ରହିଥିଲେ । ଆଉ ଫକୀରାର ଭାଉଜଙ୍କୁ ଦେଖି କହିଥିଲେ—''କେମିତି ଭାଗ୍ୟବତୀଟିଏ !''

ଯେତେବେଳେ ଡା. ସିଦ୍ଦୀକୀ ସକାଳୁ ସଞ୍ଜଯାଏଁ ଏକାକୀ ଗମ୍ଭୀର ଓ ଦୁଃଖୀ ଭାବରେ ବସି ରହନ୍ତି, ତାଙ୍କୁ ଖୁସି କରିବାକୁ ବଡ଼ଦିଦୀ ମୋତେ ଡକେଇ ନିଅନ୍ତି । ସତେଅବା ତାମସା ଦେଖଉଥିବା ଭାଲୁଟିଏ ମୁଁ । ଆଉ ବଡ଼ଦିଦୀ ଆଦେଶ ଦିଅନ୍ତି... ''ଅମୁକ ଗୀତ ଗା', ଅମୁକ କାହାଣୀ ଶୁଣେଇ ଦେ ଜୁବୈଦା ଅପାଙ୍କୁ ! ଯାଇ ଡାକିଆଣ ତୋର ସାଙ୍ଗମାନଙ୍କୁ, ଏକା ସାଙ୍ଗରେ ନାଚିବ ।''

ଦିନେ ଡ. ସିଦ୍ଦୀକୀ ପଛ ଲନ୍‌ରେ ବସି ବଡ଼ଦିଦୀଙ୍କୁ କହୁଥିଲେ—''ମଲା ମଣିଷ ପାଇଁ ତ ଧଇର୍ଯ୍ୟ ଆସେ ରେହାନା ଖାତୁନ୍, ହେଲେ ଥିଲା ଲୋକ ପାଇଁ ଧୈର୍ଯ୍ୟ ଧରିବି କେମିତି ?'' ଆଉ ସେଦିନ କୌଣସିମତେ ବି ଟିକିଏନାକୁ ମୁରୁକି ହସିବା ନାଆଁ ବି ସେ ନେଲେନାହିଁ ଯେତେବେଳେ, ସେତେବେଳେ ବଡ଼ଦିଦୀ ମୋତେ ଡକେଇ କହିଲେ—''ଆରେ... ସେ ବ୍ୟଙ୍ଗ ଆଁଗ୍ଲୋ-ଇଣ୍ଡିଆନ ଗୀତ ଗାଇ ଶୁଣେଇଲୁ ଜୁବେଦା ଆପାଙ୍କୁ !''

'ଆଚ୍ଛା ଠିକ୍' କହି ମୁଁ ଆଜ୍ଞାକାରୀ ଭଳି ଉତ୍ତର ଦେଲି ଆଉ ସଳଖି ଠିଆହୋଇ ହାତ ଖୋଲା ଛାଡ଼ି ଯେମିତି ସ୍କୁଲରେ ଇଂରେଜୀ ଗୀତ ଗାଇବା ଶିଖେଇଛନ୍ତି ବା କବିତା ପଢ଼ିବାକୁ ବତେଇଛନ୍ତି ସେମିତି ଗାଇବା ଆରମ୍ଭ କରିଦେଲି—

''ଥରେ ଜଣେ ସୌଦାଗର ଥିଲା ଲଣ୍ଡନ ସହରେ
ତାହାର ଗୋଟାଏ ଝିଅ, ତା ନାଆଁ ଡାଇନା
ନାଆଁ ତା ଡାଇନା ହେବ ଷୋହଳ ବରଷ
ତା ପାଖରେ ବେଶ୍ ଥିଲା ଲୁଗା... ରୂପା.. ସୁନା...''

ହଠାତ୍ ମୋ ତୋଟିରେ କିଛି ରୁନ୍ଧି ହେଇଗଲା ଭଳି ଲାଗିଲା ମୋତେ ! ମୁଁ ଅଟକିଗଲି । ଡା. ସିଦ୍ଦୀକୀ ମୋତେ ବ୍ୟସ୍ତ ହୋଇ ଅନେଇଲେ ।

ସନ୍ଧ୍ୟାରେ ମୁଁ ବିମଳାକୁ କହିଲି—''ଏ ଜୁବୈଦା ଅପା ଯେତେବେଳେ ଦେଖ, ବିବ୍ରତ ଥିଲାଭଳି ଦିଶନ୍ତି କେମିତି ?''

''ମୁଁ ଜାଣିଛି ।'' ବିମଳା ଉତ୍ତର ଦେଲା । ''ସେ ମୋ'ଠାରୁ ବୟସରେ ଅଳ୍ପ ବଡ଼ ଆଉ କୌଣସି କଥାର ଖିଅ ଧରିବାକୁ ବେଶ ଚାଲାକ ।''

''କାଲି ସକାଳେ ଫାରୁକୀ ଆଣ୍ଟି ଗୋସ୍ୱାମୀ ଆଣ୍ଟିକୁ ଇଂଲିଶ ଷ୍ଟୋରରେ କହୁଥିଲେ ଯେ କେହି ଜଣେ ସାଇଣ୍ଟିଷ୍ଟ ଅଛନ୍ତି, ତାଙ୍କ ନାଁ ବି ଡାକ୍ତର କ'ଣ ଗୋଟେ—ମୁଁ ମନେପକେଇ ପାରୁନି । ଆଣ୍ଟି ଫାରୁକୀ ସେ ନାଁଟି କହିଥିଲେ ବି ।... ତ ସେ କଲିକତା ୟୁନିଭରସିଟିରେ ଜୁବୈଦା ଆପାଙ୍କର ସହପାଠୀ ଥିଲେ, ଆଉ ଜୁବୈଦା ଆପା ଯେତେବେଳେ ବିଲାତ ଗଲେ, ସେତେବେଳେ ସିଏ ବି ମାଞ୍ଚେଷ୍ଟର ବିଶ୍ୱବିଦ୍ୟାଳୟରେ କିଛିବର୍ଷ ପଢ଼ିଥିଲେ, ଏକା ସାଙ୍ଗରେ । ତେଣୁ ଜୁବୈଦା ଆପା ଏଇ ପନ୍ଦର ବର୍ଷ ହେଲା ସେଇ ଡାକ୍ତର 'କ'ଣ'ଙ୍କ ନାଆଁର ମାଳା ଗଡ଼ଉଛନ୍ତି ।''

''ଏ କାହା ନାଆଁର ମାଳା କେମିତି ଜପାଯାଏ ?'' ମୁଁ ପଚାରିଲି

''ମୁଁ କେମିତି ଜାଣିବି ?''

ମୁଁ ଯେତେବେଳେ ଘର ଭିତରକୁ ଆସିଲି, ସେତେବେଳେ ଜୁବୈଦା ଆପାଙ୍କୁ ଗଫୂର ବେଗମ ସାଙ୍ଗରେ କ'ଣ ସବୁ ବିଚାରବିମର୍ଷ କରୁଥିବା ଦେଖିଲି ।

ସେତେବେଳେ ଜାଣିଲି ଯେ ଯୋଉ ଗଡ଼ଜାତରେ ଜୁବୈଦା ଆପା କାମ କରନ୍ତି, ତାହା ଆଜମିର ଶରୀଫ୍ ପାଖରେ ଅଛି । ସେଇଥିଲାଗି ଜୁବୈଦା ଆପା ବେଶ ଧାର୍ମିକ ପାଲଟି ଯାଇଛନ୍ତି । ଯୋଉଦିନରୁ ଖବର ମିଳିଛି ଯେ ଡା. ମେହମୂଦ ଖାଁ ଜୁବୈଦା ଆପାଙ୍କର ନିଜ ଭାଣିଜୀ ସାୟରାକୁ ବାହା ହେବାକୁ ଚାହାନ୍ତି, ଯିଏ ମୋଟେ ସତର ବର୍ଷର, ବେଶ ସୁନ୍ଦରୀ ଆଉ କଲିକତା ଲରେଟୋ ହାଉସରେ ପଢୁଛି; ସେଇଦିନଠାରୁ ଜୁବୈଦା ଆପା ପାଞ୍ଚଥର ନମାଜ ପଢ଼ିବା ଛଡ଼ା 'ଚାଶ୍‌ତ' (ସୂର୍ଯ୍ୟୋଦୟଠାରୁ ଗୋଟାଏ ପ୍ରହର ଭିତରର

ନମାଜ), 'ଇଶରାକ୍' (ସୂର୍ଯ୍ୟୋଦୟ ପରେ ପରେ), 'ତହଜ୍ଜୁଦ' (ଅର୍ଦ୍ଧରାତ୍ର ନମାଜ) ବି ପଢ଼ିବା ଆରମ୍ଭ କରିଦେଇଛନ୍ତି । ଏଠାରେ ସେ ଗଫୁର ବେଗମ ଠାରୁ 'ପଞ୍ଜସୂର ଶରୀଫ୍', 'ଦୁଆଏ ଗଂଜୁଲ', 'ଅର୍ଶ' ଆଉ 'ଦରୁଦ୍ ତାଜ' ଭଳି ଧାର୍ମିକ ପୁସ୍ତକ ନେଇ ପଢ଼ାପଢ଼ି କରୁଛନ୍ତି । କାରଣ ସେ ଆସିବାବେଳେ ଘରେ ଏହିସବୁ ଗ୍ରନ୍ଥ ଭୁଲି ଆସିଛନ୍ତି ।

ଦିନେ ରାତି ଦୁଇଟା ପାଖାପାଖି ଅତିଥି କୋଠରିରୁ ଛାତିକୁ ଭେଦିଲା ଭଳି ଚିତ୍କାର ଶୁଣାଗଲା । ଘରଟାଯାକର ଲୋକ ଧଡ଼ପଡ଼ ହୋଇ ଉଠିପଡ଼ିଲେ ଏବଂ ସେଇ କୋଠରି ପାଖକୁ ଦଉଡ଼ିଗଲେ । କିନ୍ତୁ କୋଠରି ଦରଜା ଭିତରପଟୁ ବନ୍ଦ ହୋଇ ରହିଥିଲା । ବଡ଼ଦିଦୀ ଜୋର ଜୋରରେ କବାଟ ବାଡ଼େଇଲେ । ଅନେକବେଳ ପରେ ଜୁବୈଦୀ ଆପା କୋଠରି ଭିତରୁ ଅତି ଦୁର୍ବଳ ସ୍ୱରରେ କହିଲେ... "ମୁଁ ଠିକ୍ ଅଛି... ତମେମାନେ ବ୍ୟସ୍ତ ହୁଅନାହିଁ— ଈଶ୍ୱରଙ୍କ ରାଣ, ଯାଅ.. ଯାଅ ଶୋଇଯାଅ... ମୁଁ ପୂରା ଭଲ ଅଛି... ନିଦ ବାଉଳାରେ ଡରି ଉଠିପଡ଼ିଲି... ।"

"ଜୁବୈଦା ଆପା, ଦରଜା ତ ଖୋଲ ।" ବଡ଼ଦିଦୀ ପାଟିକରି କହିଲେ—

"ଚାଲି ଯା ତମେମାନେ, ନହେଲେ ମୁଁ ପୁଣି ଚିତ୍କାର କରିବି" ଜୁବୈଦା ଆପା ହିଷ୍ଟରିକ୍ ସ୍ୱରରେ ରଡ଼ିଲା ଭଳି କହିଲେ...

ସକାଳେ ଦେଖିଲାବେଳକୁ ତାଙ୍କ ଚେହେରା ପୂରା ମଉଳି ଯାଇଥିଲା । ଧଳା ରକ୍ତହୀନ ଦିଶୁଥାଏ । ଜଳଖିଆ ପରେ ଡାଇନିଂ ଖାଲି ହୋଇଗଲା ଯେତେବେଳେ, ସେତେବେଳେ ସେ ଧୀର ଗଳାରେ ଦିଦୀଙ୍କୁ କହିଲେ— "ମୁଁ କାହାକୁ କିଛି କହି ନଥିଲି । ମୁଁ 'ଚିଲ୍ଲା' କରୁଥିଲି (ଚାଳିଶ ଦିନିଆ ମନ୍ତ୍ର-ସାଧନା) ଅଣଚାଳିଶ ରାତି ପୂରା ହୋଇଯାଇଥିଲା । କାଲି ଚାଳିଶ ଓ ଶେଷ ରାତି । ଆଦେଶ ଥିଲା— ଯାହା ବି ହେଉ ନା କାହିଁକି ମୁଁ ଏଇ ସଂକଳ୍ପିତ ଜପ ମଝିରେ ପଛକୁ ଲେଉଟି ଚାହିଁବି ନାହିଁ । ନହେଲେ ତା'ର ସବୁ ପ୍ରଭାବ ନଷ୍ଟ ହୋଇଯିବ । ଆଉ କାଲି ରାତିରେ ପ୍ରାୟ ଦୁଇଟାବେଳେ ଜପ କରୁଥିବାବେଳେ ହଠାତ୍ ଦେଖିଲି ନମାଜ ସାମନାରେ ଗଧ ଭଳି ଆକାରର ଭୟଙ୍କର କଳା କୁକୁରଟିଏ ବସି ଦାନ୍ତ ନେଫେଡେଇ ରହିଛି । ମୁଁ ଡରିଯାଇ ଚିତ୍କାର କଲି ଆଉ ସେ ସାଧନା ନଷ୍ଟ ହୋଇଗଲା । କୁକୁର କୁଆଡ଼େ ଅନ୍ତର୍ଦ୍ଧାନ ହୋଇଗଲା । ଆଉ ମୋର ସବୁକିଛି ଭ୍ରଷ୍ଟ ହୋଇଗଲା । ଏବେ ଆଉ କିଛି ବି ହୋଇପାରିବ ନାହିଁ ।" ତାଙ୍କ ଆଖିରୁ ଝରଝର ଲୁହ ଝରିବାକୁ ଲାଗିଲା । ସେ ଚଷମା ଖୋଲି ଲୁହ ପୋଛିଲେ । ଦିଦୀ ଆବାକାବା ହୋଇ ତାଙ୍କୁ ଅନେଇ ରହିଲେ । "ହେଲେ ଜୁବୈଦା ଆପା... ଆପଣ ତ.. ଆପଣ ତ ନିଜେ ଜଣେ ସାଇଣ୍ଟିଷ୍ଟ... ବୈଜ୍ଞାନିକ । ମାଞ୍ଚେଷ୍ଟର ୟୁନିଭରସିଟିରୁ ପାଠ ପଢ଼ି ଆସିଛନ୍ତି । ଆପଣ ଏମିତି ଅନ୍ଧବିଶ୍ୱାସ ରଖିଛନ୍ତି କେମିତି ? ବିଶ୍ୱାସ କରନ୍ତୁ । ଆପଣଙ୍କର ହେଲୋସିନେସନ ହୋଇଥିବ ।... ଗଧ ଆକାରର କୁକୁର... ସେ ପୁଣି ନିଜେ ନିଜେ ଅନ୍ତର୍ଦ୍ଧାନ ହୋଇଗଲା ?" ଏତିକି କହି ଦିଦୀ ଖିଲଖିଲ ହସିଲେ ।

'ରେହାନା ଖାତୁନ !' ଡା. ସିଦ୍ଦୀକୀ ଦିଦୀକୁ ଅପଲକ ଓ ଗମ୍ଭୀର ଦୃଷ୍ଟିରେ ଦେଖିଲେ । ଧୀର ଗଳାରେ କହିଲେ— "ତମର ଏଇନେ ମୋଟେ ବାଇଶ ବର୍ଷ । ତମକୁ ଭଲ ପାଉଥିବା ବାପ-ମା ଆଉ କାକା ଅଛନ୍ତି । ତମେ ଗୋଟାଏ ପରିପୂର୍ଣ୍ଣ ପରିବାରରେ ତମର ସ୍ନେହର ଭାଇଭଉଣୀଙ୍କ ସାଙ୍ଗରେ ସୁଖରେ ଅଛ । ତମ ପସନ୍ଦର ଯୁବକ ସାଙ୍ଗରେ ତମର ବାହାଘର ହେବ । ସେ ସାରା ଜୀବନ ତମକୁ ଅପେକ୍ଷା କରି ରହିଛି । ଦୁନିଆର ସବୁ ଖୁସି ତମକୁ ଅନେଇ ରହିଛି । ଈଶ୍ୱର ନ କରନ୍ତୁ ତମର ବି ଏମିତି ଅବେଳ ଆସୁ, ଦୁଃଖ ଆସୁ, ଯାହା ମୁଁ ଭୋଗୁଛି । ଈଶ୍ୱର ନ କରନ୍ତୁ ଯେ ତମେ ବି ମୋ ଭଳି ଏକାକୀପଣର ସାମନା କର... କାହାର ବାଧ୍ୟ, ବିବଶ ଆଉ ଦୁଃଖୀ ମନର ପରିହାସ କରନାହିଁ... ।' କହିଲାବେଳେ ହଠାତ୍ ସେ ମୋତେ ଦେଖିପକେଇଲେ । ମୁଁ ଟେବୁଲ କୋଣକୁ ବସି ବେଶ ତତ୍‌ପରତାରେ ଗୁପ୍ତଚରୀ କରୁଥିଲି । କାରଣ ଗଧ ଆକାରର କୁକୁରଟିଏ ବେଶ ଗୁରୁତ୍ୱଲ୍ୟକର । ମୋତେ ଦେଖିବା ମାତ୍ରକେ ସେ ଚୁପ୍ ହୋଇଗଲେ । ଦିଦୀ ମୋତେ ଆଖିର ଇଙ୍ଗିତରେ ଚାଲିଯିବାକୁ କହିଲେ ଆଉ ମୁଁ ଉଠି ଚାଲିଗଲି । ଏଇ ଘଟଣାର ପରଦିନ ଡା. ସିଦ୍ଦକୀ କଲିକତା ଚାଲିଗଲେ ଆଉ ତାଙ୍କର ଚାଲିଯିବାର କିଛିଦିନ ପରେ ଆଉ ଜଣେ ବିଚିତ୍ର ଅଡ଼କାହକା ଅତିଥି ଆସି ପହଞ୍ଚିଲେ ।

ଡାଲନବାଲାର ରାସ୍ତା ପ୍ରାୟ ଶୂନଶାନ ଥାଏ । ଜଣେ ଦି'ଜଣ ମଣିଷ, ଖଣ୍ଡିଏ ମୋଟର କି ଟାଙ୍ଗାଗାଡ଼ି ଛଡ଼ା କେବେ କେମିତି କୋଉ ଶିଖ ଜ୍ୟୋତିଷ ତା'ର ପ୍ରମାଣ-ପତ୍ରର କାଗଜପୁଡ଼ା ଧରି ଏଣେତେଣେ ଅନେଇ ସାମନା ରାସ୍ତାରେ ଚାଲିଯାଏ ବା ମୋଟାମୋଟା 'ଚାଇନାମେନ୍' ବେଶ କୁଶଳୀ ହାତରେ ବେଶ ବଡ଼ ଆଉ ଓଜନିଆଁ ଗଣ୍ଠିଲୀ ସାଇକଲରେ ଲଦି ଏଣେତେଣେ ଘୂରିବୁଲେ ବା କାଶ୍ମୀରୀ ଦରୀ କପଡ଼ା, ଏଣୁତେଣୁ କୃତ୍ରିମ ଅଳଙ୍କାର ବିକାଳୀ ଫେରିବାଲା ଯାଆନ୍ତି । ମିଷ୍ଟର ପିଟର ରବର୍ଟ ସରଦାର୍ ଖାଁ ସେମିତି ଜଣେ ଫେରିବାଲା । ତେବେ ସେ ନିଜେ ନିଜକୁ ଟ୍ରାଭେଲିଂ ସେଲ୍‌ସମେନ କହନ୍ତି । ବେଶ୍ ପ୍ରଗଲ୍‌ଭ । ମୁସଲମାନରୁ ଖ୍ରୀଷ୍ଟିଆନ ହୋଇଥିଲେ । ତୁର୍କୀ ଟୋପି ପିନ୍ଧନ୍ତି ଆଉ ସାଇକଲରେ ପ୍ଲାଷ୍ଟିକ ବାସନ ଲଦି ବିକି ବୁଲନ୍ତି । ମାସେ ଦି'ମାସରେ ଥରେ ଅଧେ ଆମ ପଟେ ଘେରାଏ ବୁଲିଯାଆନ୍ତି । ସେ ତାଙ୍କର ସବୁକଥା 'ଈଶ୍ୱରଙ୍କ ଦୟା'ରୁ ଆରମ୍ଭ କରନ୍ତି ଆଉ ବେଳେ-ବେଳେ ପ୍ରଚାର ବି ଆରମ୍ଭ କରିଦିଅନ୍ତି ।

ସେଦିନ ମିଷ୍ଟର ପିଟର ରବର୍ଟ ସରଦାର ଖାଁ, ପୋର୍ଟିକୋରେ ପହଞ୍ଚିଲାକ୍ଷଣି ସାଇକଲ ଡେରିଦେଇ ନାକସିଧା ଆସି ଆମର ଗେଷ୍ଟରୁମ୍‌କୁ ଅନେଇଲେ । ତା'ର ଦରଜା ମେଲା ଥିଲା । ସେ ବେଶ ବିଶ୍ୱାସରେ କହିଲେ—

"ଏ କୋଠରିଟି ତ ପ୍ରାୟ ସବୁବେଳେ ଖାଲି ରହୁଛି ।... କଥା କ'ଣ କି ମୋର ଭଉଣୀଟିଏ କିଛି ଦିନ ପାଇଁ ଡେରାଡୁନରୁ ଆସୁଛି ! ସେ ଲେଡି ଡାକ୍ତର ।" ଆଉ ତା'ପରେ କୌଣସି ଉତ୍ତରର ଅପେକ୍ଷା ନକରି ସାଇକଲରେ ବସି ଚାଲିଗଲେ ।

ତା'ପରଦିନ ଜାପାନୀ ଜର୍ଜେଟର ବୁନ୍ଦିଲଗା ଶାଢ଼ି ପିନ୍ଧି ବେଶ୍ ମୋଟୀ ମାଇକିନାଟିଏ ଟାଙ୍ଗାରୁ ଓହ୍ଲାଇଲା । ମିଷ୍ଟର ସରଦାର ଖାଁ ବି ସାଇକଲରେ ତା' ସାଙ୍ଗରେ ଆସିଥିଲେ । ସେ ଜିନିଷ ଟାଙ୍ଗାରୁ ଓହ୍ଲାଇ ଗେଷ୍ଟରୁମ୍‌ରେ ରଖିଲେ । ମା ଆଉ ଦିଦୀଙ୍କ ସାଙ୍ଗରେ ତାଙ୍କର ପରିଚୟ କରେଇଲେ— "ଇଏ ମୋର ଭଉଣୀ । ଆପଣଙ୍କ ଏଇଠି ଦୁଇ ତିନିଦିନ ରହିବ ।... ମୁଁ ଯାଉଛି ତା'ହେଲେ !" ତା'ପରେ ସେ ମହିଳାଙ୍କୁ କହିଗଲେ... "ଦେଖ୍ ତୋର ଯାହା ଦରକାର ନିଃସଙ୍କୋଚ ବେଗମ ସାହିବାଙ୍କୁ କହିବୁ... ନିଜ ଘର ଭଳି ଭାବିବୁ ! ଆଚ୍ଛା... ବାଇ.. ବାଇ... ।" କହି ସାଇକଲ ଧରି ବାହାରି ପଡ଼ିଲେ...

ସେ ଜଣେ ମୁସଲମାନ ମହିଳା । ସେ କୁଆଡ଼ୁ ଆସିଲେ, କୁଆଡ଼େ ଯିବେ ସେ କଥା କହିଲେ ନାହିଁ । କେବଳ ଏତିକି କହିଲେ ଯେ ସେ ଘରୋଇ ଭାବରେ ହୋମିଓପେଥି ଡାକ୍ତରୀ ପଢୁଛନ୍ତି । ସନ୍ଧ୍ୟାବେଳେ ଆଟେଚୀରୁ ଗୋଟାଏ ମୋଟା ଉର୍ଦ୍ଦୂ ବହି ବାହାର କରି ଦେଖେଇଲେ । ସେଇଆ ତାଙ୍କର ହୋମିଓପେଥି ଡାକ୍ତରୀର କୋର୍ସ । ସେ ଏ କଥା ମଧ୍ୟ କହିଲେ ଯେ 'ଦି ରୟଲ ହାରମୋନିୟମ୍ ଗାଇଡ଼ ସିରିଜ୍'ର ପତ୍ରିକାମାନଙ୍କ ସାହାଯ୍ୟରେ ସେ ସେଇ କଳା ଶିଖିଛନ୍ତି । ଦଦରା ବେସୁରା କଣ୍ଠରେ ହାରମୋନିୟମ୍ ବଜେଇ ଗୀତ ଶୁଣେଇ ଦେଲେ—"ଏ ମାଁଓ, ବହନୋ, ବେଟିଓ ଦୁନିଆ କୀ ଇଜ୍ଜତ ତୁମ୍ ସେ ହୈ ।" ସେ ଏକଥା ବି ସ୍ପଷ୍ଟ କରିଦେଲେ ଯେ ସେ ନାରୀ ସ୍ୱତନ୍ତ୍ରତାର ସମର୍ଥନ କରନ୍ତି ଆଉ ନିଜ ଇଚ୍ଛାରେ ବାହା ହେବେ । ତୃତୀୟ ଦିନ ମିଷ୍ଟର ସରଦାର ଖାଁ ପୁଣି ଆସିଲେ । ସେ ସାଙ୍ଗରେ ଟାଙ୍ଗା ନେଇ ଆସିଥିଲେ । ସେଇଥିରେ ସାଙ୍ଗରେ ସେଇ ହୋମିଓପାଥି ଲେଡି ଡାକ୍ତରକୁ ନେଇ ଚାଲିଗଲେ ।

ତା'ପରେ ମିଷ୍ଟର ପିଟର୍ ରବର୍ଟ ଖାଁ ଆଉ କେବେହେଲେ ଆସିନାହାନ୍ତି ।

ନୀଗସ ଆମର କଳା, ଧଳା କାନବାଲା ଅସୁନ୍ଦର ଛୋଟିଆ ବର୍ଣ୍ଣସଂକର କୁକୁରଟିଏ । ସେ ଦିନସାରା ବାହାର ପୋର୍ଟିକୋର ଗୋଟାଏ କୋଣକୁ ବସିଥାଏ । ଯେହେତୁ ସେ ଅପବିତ୍ର କୁକୁରଟାଏ, ତା'ର ଘର ଭିତରକୁ ଯିବା ମନା । ଶୀତଦିନ ସେ ଗୋଟାଏ ବାହାର କୋଠରିରେ ତା' ଖଟୁଲି ଉପରେ ଶୋଇରହେ । ରେଶମ କାନ୍ଧ ଫୁଲେଇ ତାକୁ ଦେଖି ଗରଗର ହେଲେ ବି ସେ ଖରାପ ଭାବେ ନାହିଁ । ସେ ବେଶ ବିଶ୍ୱସ୍ତ ଆଉ ଆପଣା କପାଳକୁ ନେଇ ସନ୍ତୁଷ୍ଟ ଥିଲା, କାରଣ ଈଶ୍ୱର ତାକୁ ଗୋଟାଏ ଅପବିତ୍ର କୁକୁର କରି ଜନ୍ମ ଦେଇଥିଲେ । ସେ ଜାଣେ ଯେ ରେଶମର ଏ ଘରେ ଇଜ୍ଜତ ଅଛି, ଆଦର ଅଛି । ସେ ଏଇ ବାସ୍ତବିକତା ବି ଜାଣେ ଯେ ଏ ଅକୃତଜ୍ଞ ଦୁନିଆରେ କେବଳ ଲୋକଦେଖାଣିଆ ରଙ୍ଗ ରୂପର ଆଦର ହୁଏ । ଗୋଟାଏ ଦାର୍ଶନିକ ଭଳି ଆଖିବୁଜି ସେ ସମ୍ଭବତଃ ଦିନସାରା ଏହି ସବୁ କଥା ଭାବୁଥାଏ ଆଉ ଅପରିଚିତ ପାଦ ଶବ୍ଦ ଶୁଣିଲା ମାତ୍ରକେ ଭୁକିବା ଆରମ୍ଭ କରିଦିଏ । ସେ ଇଟାଲୀ ଓ ଆବିସିନିଆଁ ଲଢ଼େଇ ସମୟରେ ମେଜର ସଲ୍‌ଟନଙ୍କର ଭଲ

ଜାତି କୁକୁର ମେଗୀର ଛୁଆ । ମେଜର ସଲ୍‌ଟନ ଯେହେତୁ ଅନ୍ତର୍ରାଷ୍ଟ୍ରୀୟ ରାଜନୀତିରେ ଗଭୀର ରୁଚି ରଖିଥିଲେ, ସେ ତା'ର ନା ଦେଇଥିଲେ ନୀଗସ୍ ।

ଯୋଉଦିନ ବଡ଼ଦିଦୀ ତାଙ୍କର କେତେଜଣ ସାଙ୍ଗଙ୍କୁ ଘରକୁ ଡାକିଲେ, ସେଦିନ ଆଲୋକ ବ୍ୟବସ୍ଥା କରିବାକୁ ବାହାର ବଗିଚ୍ଚକୁ ବିଜୁଳି ତାର ନିଆହେଲା । ସେଦିନ ପାଗ ବେଶ୍ ଭଲ ଥିଲା । ଦିଦୀ ଆଉ ତାଙ୍କର ସାଙ୍ଗମାନେ ସୂର୍ଯ୍ୟାସ୍ତ ପରେ ବି ବଗିଚ୍ଚରେ ଓଭର କୋର୍ଟ ପିନ୍ଧି ବୁଲୁଥିଲେ । ପାର୍ଟି ସରିବା ପରେ ଦିଦୀ ସାଙ୍ଗମାନଙ୍କୁ ବିଦା ଦେବାକୁ ତାଙ୍କରି ସାଙ୍ଗରେ ରାସ୍ତାଯାଏଁ ଚ୍ଚାଲିଗଲେ । ନୀଗସ ବାହାର ବାରଣ୍ଡାରେ ଥୁଆ ହୋଇଥିବା ପାର୍ଟିର ଜିନିଷପତ୍ର ଜଗିବାକୁ ସତର୍କ ହୋଇ ପାହାଚ ଉପରେ ବସି ରହିଥାଏ । ଯେତେବେଳେ ଦିଦୀ ଫେରିଲେ, ସେ ନୀଗସକୁ ଦେଖି ନଇଁପଡ଼ି ଦୂରରୁ ଗେଲ କଲେ । ନୀଗସ ସେଇ ଅନପେକ୍ଷିତ ଆଉ ଅସାଧାରଣ କୃପାଦୃଷ୍ଟିରେ ଅତି ଖୁସିରେ ଜୋର ଜୋର ଡେଙ୍ଗିବା ଆରମ୍ଭ କରିଦେଲା । ଦିଦୀକୁ ଅଧିକ ପ୍ରସନ୍ନ କରିବା ପାଇଁ ସେ ସେସବୁ ଖେଳ ଦେଖେଇବା ଆରମ୍ଭ କରିଦେଲା, ଯାହା ତାକୁ ବରକତ ମସୀହ ଜମାଦାର ଶିଖେଇଥିଲା । ସେଇଭଳି ଖେଳ ଭିତରେ ସେ ପାମ୍ ଗମଲା ପଛରେ ପଡ଼ିଥିବା ତାରକୁ କାମୁଡ଼ି ଉଠେଇ ନେଲା ।

ତାରରେ କରେଣ୍ଟ ଥିଲା । କାମୁଡ଼ି ଟେକିନେଲା ମାତ୍ରକେ ନୀଗସ ଧଡ଼ାସ୍ କରି ପଡ଼ିଗଲା ଆଉ ତା ପାଟିରୁ ଧୂଆଁ ଭଳି କ'ଣ ବାହାରିଲା...

ଦିନେ ଡା. ଜୁବେଦା ସିଦ୍ଦୀକୀଙ୍କର ଚିଠି ଆସିଲା, ଦିଦୀ ପାଖକୁ କଲିକତାରୁ । ସେ ଲେଖିଥିଲେ—''ମୁଁ ଯୋଉଦିନ ଏଠାରେ ପହଞ୍ଚିଲି, ସେହିଦିନ ମେହମୂଦ ସାହବ ମୋ ଭାଣିଜୀକୁ ବାହାହେଲେ । ବାହାଘର ବେଶ୍ ଧୁମ୍‌ଧାମରେ ହେଲା । ତମେ ଇଲଷ୍ଟ୍ରେଟେଡ଼ ଉଇକ୍ଲିରେ ବାହାରିଥିବା ଫଟୋ ଦେଖିଥିବ । ବରକନ୍ୟାଙ୍କର ଛବି ବାହାରି ଥିଲା ।''

ନୋଟ— ମୁଁ ଏବେ ଅଲ୍‌ହା ମିଆଁଙ୍କ ବିରୋଧରେ ଷ୍ଟ୍ରାଇକ୍ କରିଛି । ଆଉ ପଅରିଦିନ ମୁଁ ଡା. ଉପ୍ପଲଙ୍କ ସାଙ୍ଗରେ ସିଭିଲ୍ ମେରେଜ କରିନେଲି । ଡା. ଉପ୍ପଲ ହିନ୍ଦୁ । ସେ ବର୍ଦ୍ଧମାନ କଲେଜରେ ଅଧ୍ୟାପକ ଅଛନ୍ତି ।

ଶୁଭାର୍ଥୀନୀ
ଜୁବେଦା ଉପ୍ପଲ ।

ଡିସେମ୍ବର ପ୍ରଥମ ସପ୍ତାହରେ ଜଳନ୍ଧରାର ଅବସ୍ଥା ହଠାତ୍ ଶୋଚନୀୟ ହୋଇପଡ଼ିଲା । ତାକୁ ଚଞ୍ଚଳ ଡାକ୍ତରଖାନା ନିଆହେଲା । ସେଇଠି ତୃତୀୟ ଦିନ ସେ ଚ୍ଚାଲିଗଲା ।

ଫକୀରା ଛାତି ଫଟେଇ କାନ୍ଦି ବୁଲିଲା । 'ଧୈର୍ଯ୍ୟ ଧର ପୁଅ, ଧୈର୍ଯ୍ୟ ଧର' କହି ଗଫୂର ବେଗମ ତାକୁ ସାନ୍ତ୍ୱନା ଦେଲା ।

''ଧାଈମା', ଧୈର୍ଯ୍ୟ ଧରିବି କେମିତି ? ମୋ ପାଇଁ ସେ ମାଆ ଥିଲା, ଭାଉଜ ଥିଲା... ପତ୍ନୀ ଥିଲା ।'' ଆଉ ସେ କାନ୍ଦି କାନ୍ଦି ପୁଣି ବାହାରକୁ ଗ୍ଲିଗଲା ।

ତା'ପରଦିନ ସେ ଅସ୍ଥି ସଞ୍ଚୟନ କରି ଶ୍ମଶାନରୁ ଫେରିଲାବେଳକୁ ବେଶ ଖୁସି ଥିଲା ଭଳି ଲାଗିଲା । ତା ହାତରେ ମାଟି ପଲମଟିଏ ଥିଲା, ଯୋଉଥିରେ ଜଳନ୍ଧରାର ଚିତାଭସ୍ମ ଥିଲା । ସେ କହିଲା— ଆଜି ସେ ତାକୁ ମୁଣ୍ଡ ପାଖରେ ରଖି ଶୋଇବ । ଜଳନ୍ଧରା ଯୋଉ ଯୋନିରେ ଜନ୍ମିଥିବ, ସେଇ ପାଦଚିହ୍ନ ଏଇ ଭସ୍ମରେ ପଡ଼ିଯିବ ।

ଦିଦୀ ଏମ.ଏ. ଲାଗି ଦର୍ଶନଶାସ୍ତ୍ରର ଅଧ୍ୟୟନ କରୁଥିଲେ । ସେ ବେଶ ଯୋଗ୍ୟ । ଫକୀରାର କଥା ସେ ଆଗ୍ରହରେ ଶୁଣିଲେ । ରାତିରେ ଖାଇବା ଟେବୁଲରେ ଅନେକ ବେଳ ଧରି ପୁନର୍ଜନ୍ମ ଓ ଲୋକଙ୍କର ଅନ୍ଧବିଶ୍ୱାସ ସମ୍ବନ୍ଧରେ ଆଲୋଚନା କଲେ ।

ରାତିରେ ଫକୀରା ପଲମଟି ମୁଣ୍ଡ ପଟକୁ ଖଟ ତଳେ ରଖିଦେଇ ଶୋଇଲା ।

ସକାଳେ ସେ ବେଶ ଖୁସି ମନରେ ଖାଇବା କୋଠରିକୁ ଆସିଲା । ଅଧିକ ଆନନ୍ଦ ଫଳରେ ଆଖିରେ ତା'ର ଲୁହ ଭରି ଯାଉଥାଏ । 'ବେଗମ ସାହିବା.. ବଡ଼ଦିଦୀ.. ଦିଦୀ'.. ସେ ସୂଚନା ଦେଲା 'ମୋର ଜଳନ୍ଧରା ଘରଚଟିଆ ହେଲା ।'

''ଘରଚଟିଆ ହେଲା ?'' ଦିଦୀ କହିଲେ । ଆଉ ତଞ୍ଚଳ ଶାଲ ଘୋଡ଼େଇ ହୋଇ ସାର୍ଭେଣ୍ଟ କ୍ୱାଟର ପଟକୁ ଦଉଡ଼ି ଗଲେ । ମୁଁ ବି ତାଙ୍କ ପଛେ ପଛେ ଗୋଡ଼େଇଲି ।

ଫକୀରା କୋଠରି ଭିତରୁ ପଲମଟି ନେଇ ଆସିଲା । 'ବଡ଼ଦିଦୀ ଦେଖ... ଏଇଠି ଦେଖ... ଦେଖ !' ମୁଁ ଆଉ ଦିଦୀ ସେଇ ପାଉଁଶକୁ ଦେଖିଲୁଁ, ଯୋଉଠି ପକ୍ଷୀ ପାଦର ଚିହ୍ନ ଭଳି ପଡ଼ିଥିଲା ।

'ଘରଚଟିଆ ପକ୍ଷୀଟିଏ ବଡ଼ଦିଦୀ...' ସେ କହିଲା ଆଉ ବେଶ ସାବଧାନ ହୋଇ ପଲମଟିକୁ ଘର ଭିତରକୁ ନେଇଗଲା ।

ସେଦିନ ଠାରୁ ଫକୀରା ପ୍ରତିଦିନ ସକାଳେ ଚଢ଼େଇମାନଙ୍କୁ ଦାନା ଦିଏ । ସେମାନଙ୍କ ଲାଗି ମାଟି ସରାରେ ଭରି ପାଣି ରଖିଦିଏ । କୋଉ ଘରଚଟିଆ ସ୍କାଇଲାଇଟ ବା ଝରକା ବାଟେ ଘର ଭିତରକୁ ପଶିଆସିଲେ ଘରକାମ ପକେଇ ଦେଇ... ''ଆ ଆ... ନେ ନେ...'' କରେ... ଚୁଟ୍‌କୀ ବଜାଏ । ବାଜରା ଦାନା ହାତରେ ଧରି ନିଶ୍ଚଳ ଠିଆହୋଇ ଦେଖେଇଥାଏ । ସେଇଥିପାଇଁ ଯେତେବେଳେ ଦେଖ, ସେ ତା'ର ଜାମା ପାକିଟରେ ଦାନା ପୂରେଇଥିବ । ଏଇନେ ତା'ର ଏକମାତ୍ର ଚିନ୍ତା ରେଶମ ଯେମିତି କୋଉ ଘରଚଟିଆକୁ ଧରି ନପାରୁ ।

ଏ ବର୍ଷ ଭାରି ଶୀତ । ଡାଇନା ରୋଜ ସେ ଯାଏଁ ଡାକ୍ତରଖାନାରେ ପଡ଼ିଥାଏ । ମିଷ୍ଟର ବେକେଟ ଏବେ ନଳ ପାଖରେ ଦେଖା ପଡୁନାହାନ୍ତି । ଏବେ ସେ ସାରାଦିନ ପେରେଡ଼ ଗ୍ରାଉଣ୍ଡର ବେଞ୍ଚ ଉପରେ ଖରାରେ ମୁଣ୍ଡପୋତି ବସି ରହନ୍ତି । ଆଉ ସେଇଭଳି ବସି ବସି ସେଇଠି ଢୁଳେଇ ପଡ଼ନ୍ତି । ତାଙ୍କର ଟୋପିଟି ସେଇ ବେଞ୍ଚ ଉପରେ ଭିକ୍ଷାପାତ୍ର

ଭଳି ପଡ଼ିରହିଥାଏ । ଆଉ ବେଳେ ବେଳେ ତା'ରି ଭିତରକୁ ଗଛର ହଳଦିଆ ପତର ଝରି ଜମା ହେଉଥାଏ ।

କ୍ରିସ୍‌ମସ୍ ପାଖେଇ ଆସିଥାଏ । କୈରଲ (କ୍ରିସମସ ସଙ୍ଗୀତ) ଗାଇଗାଇ ଦଳଦଳ ରାତିରେ ଡାଲନବାଲାର ରାସ୍ତାରେ ଘୂରନ୍ତି । ଆକର୍ଡ଼ିୟନ୍ ଗୀଟାରରେ ଯୀଶୁଖ୍ରୀଷ୍ଟଙ୍କର ଜନ୍ମଗୀତି ଗାଇବୁଲନ୍ତି । ସକାଳୁ ମାଛି ଅନ୍ଧାର ଥିଲାବେଳକୁ କୋଇଲା ବିକାଳୀ ପାହାଡ଼ୀ ଲୋକଙ୍କ ଡାକରା ଶୁଭେ । ସେମାନେ ଫଟା ଅଖାରେ ବାନ୍ଧି କୋଇଲା ଭର୍ତ୍ତି ବୋଝ ମୁଣ୍ଡେଇ 'କୋଇଲା ନବ କୋଇଲା' ଡାକ ପକାଇ ଚାଲିଥାଆନ୍ତି । ସୂର୍ଯ୍ୟ ଉପରକୁ ଉଠିଗଲେ ବରଫଢଙ୍କା ହିମାଳୟର ଶୃଙ୍ଗ ଉପରେ କିରଣ ପଡ଼ି ଝଲସି ଉଠେ । ରାତି ପାହିଲା ବେଳକୁ ମାଟିସରାରେ ଫକୀରାର ରଖିଥିବା ପାଣି ବରଫ ପାଲଟି ଯାଇଥାଏ ।

ରାତିରେ କୋଉ ପାହାଡ଼ୀ ପଥିକର ବଇଁଶୀ ସ୍ୱର କୁହୁଡ଼ିରେ ପହଁରି ଆସି ଶୁଭି ଯାଉଥାଏ ।

କ୍ରିସମସ୍‌ର ଦିନେ ଆଗରୁ ସାଇମନ କହିଲେ ଯେ ସେ ବଡ଼ି ସକାଳୁ ଉଠି ଷ୍ଟୋଭରେ କ୍ରିସ୍‌ମସ ପୁଡ଼ିଙ୍ଗ୍ ତିଆର କରନ୍ତି । ଗୀର୍ଜାକୁ ଯାଆନ୍ତି, ତା'ପରେ ସାରାଦିନ ଘରେ ବସି ବାଇବେଲ ପାଠ କରନ୍ତି । କ୍ରିସ୍‌ମସ ପରଦିନ ସେ ପୁଡ଼ିଂ ନେଇ ଆସିବେ ।

ବଡ଼ଦିନ ଉପହାର ଭାବରେ ସେ ଦିଦୀ ପାଇଁ ଗୋଲାପୀ ରଙ୍ଗର ନକଲି ମୋତି ମାଳଟିଏ ଆଣିଥିଲେ । ମୋ ପାଇଁ ଲାଲ ଆଉ ସାଗୁଆ ଦୁଇଟି ରିବନ୍ ଆଉ ରେଶମ ପାଇଁ ରବରର ଛୋଟ ବଲ୍‌ଟିଏ ଆଣି ଦେଇଥିଲେ । ଆମେ ତାଙ୍କୁ ବଡ଼ଦିନ ଉପହାର ଭାବରେ ଦଶଟଙ୍କା ନୋଟଟିଏ ଦେଲୁଁ । ଏ ଟଙ୍କା ଏତେ ବେଶୀ ଯେ ସେ ତା'ର କଳ୍ପନା ପର୍ଯ୍ୟନ୍ତ କରି ନଥିଲେ । ଦଶଟଙ୍କି ନୋଟଟିକୁ ସେ ଅପଲକ ଆଖିରେ ଅନେଇ ରହିଲେ ଆଉ ଥରିଲା ଥରିଲା ହାତରେ ବେଶ ଯତ୍ନରେ ତାଙ୍କର ଓ୍ୱେଷ୍ଟ୍ କୋର୍ଟ ପାକିଟରେ ରଖିନେଲେ ।

କ୍ରିସମସ୍ ପରେ ତିନିଦିନ ବିତିଗଲା ପରେ ବି ସାଇମନ ଆସିଲେ ନାହିଁ । ଚତୁର୍ଥ ଦିନ ତାଙ୍କର ଖବର ଆଣିବାକୁ ଆମେ ଫକୀରାକୁ ପାଦ୍ରୀ ସ୍କଟ୍‌ଙ୍କ ପାଖକୁ ପଠେଇଲୁଁ । ସେ ଆସି ମୁଣ୍ଡ ନୁଆଇଁ ଧୀରେ ଧୀରେ କହିଲା—"ସାଇମନ ସାହବ ଚାଲିଗଲେ ।" ପାଦ୍ରୀ ସାହବଙ୍କ ମାଳି କହୁଥିଲା— "ବଡ଼ଦିନରେ ସେ କୋଠରି ଦୁଆର ଖୋଲିଲା ବେଳକୁ ସାଇମନ ସାହବ ତାଙ୍କ ବିଛଣାରେ ମରି ପଡ଼ିଥିଲେ ଥଣ୍ଡାରେ !"

"ତାଙ୍କ ପାଖରେ ଗୋଟିଏ ବୋଲି କମ୍ବଳ ଥିଲା ବେଗମ ସାହିବା । ରାତିରେ ସେଇ କୋଟ୍ ପେଣ୍ଟ ପିନ୍ଧି ଶୋଇ ଯାଉଥିଲେ ।"

"ଏ ବର୍ଷ ଭାରି ଥଣ୍ଡା ପଡୁଛି ବଡ଼ଦିଦୀ । ଆମ ସେଇଠି ଗଢ଼ୱାଲରେ ଲୋକେ ଥଣ୍ଡାରେ ଆଣ୍ଠେଇ ମରୁଥାଆନ୍ତି । ଏତେ ଗରମ ଲୁଗା ଅବା କୋଉଠୁ ପାଇବେ ! ଥଣ୍ଡା ତ ସବୁ ବର୍ଷ ପଡୁଛି ।"

ଦିନ ତିନିଘଡ଼ି ବେଳକୁ ଯେତେବେଳେ ସାଇମନଙ୍କ ଆସିବା ସମୟ ହେଲା, ସେତେବେଳେ ଗଲା ସପ୍ତାହେ ହେଲା ତା'ର ନରମ ପଶମିନା ଶାଲ ଘୋଡ଼େଇ ହୋଇ ଟୋକେଇର ନରମ ଗଦିରେ ଜାକିଜୁକି ହୋଇ ଶୋଇ ରହୁଥିବା ରେଶମ ଟୋକେଇରୁ ଓହ୍ଲେଇ ଆସିଲା ଆଉ ଛୋଟେଇ ଛୋଟେଇ ଫାଟକ ପର୍ଯ୍ୟନ୍ତ ଯାଇ ଛୋଟ ପୋଲଟି ଉପରେ ଚଢ଼ି ଅପେକ୍ଷା କରି ବସି ରହିଲା । ସାଇମନ ପ୍ରତିଦିନ ଆସିଲା ବେଳେ ମେଜର ସଲ୍ଟନ୍‌ଙ୍କ କିଚେନରୁ କୁକୁଡ଼ା ଆଉ ଅନ୍ୟ ପକ୍ଷୀଙ୍କର ମଜା ମଜା ହାଡ଼ ବାଛି ତାଙ୍କର ମଇଳା ରୁମାଲରେ ଗୁଡ଼େଇ ତା ପାଇଁ ବେଶ ଯତ୍ନରେ ଆଣି ଦଉଥିଲେ ।

ସାଇମନ ଆସିଲେ ନାହିଁ । ଖରା ବଢ଼ି ଗ୍ଲିଲା, ଯେତେବେଳେ ସେ ଅତିଷ୍ଠ ହୋଇ ଭିତରକୁ ଫେରି ଆସିବାବେଳେ ଗୋଟେ ଘରଚଟିଆକୁ ଛକି ବସିଲା । ଘରଚଟିଆ ଫୁରକିନା ଉଡ଼ିଯାଇ ସିଲଭର ଓକ୍ ଡାଳରେ ବସିଲା । ରେଶମ ତାକୁ ଗୋଡ଼େଇ ଗଛକୁ ଚଢ଼ିବ ବୋଲି ଚେଷ୍ଟା କଲା, ହେଲେ ଭଙ୍ଗା ଗୋଡ଼ରେ ଚଢ଼ି ନପାରି ତଳେ ପଡ଼ିଗଲା । ଘରଚଟିଆ ଉଡ଼ିଯାଇ ତା' ଉପର ଡାଳକୁ ଗ୍ଲିଗଲା । ରେଶମ ମୁହଁ ଟେକି ତାକୁ ସତୃଷ୍ଣ ନୟନରେ ଅନେଇଲା ଆଉ ଦୁର୍ବଳିଆ ମ୍ୟାଉଁ କଲା । ଘରଚଟିଆ ଡେଣା ମେଲିଲା ଆଉ ଖୋଲା ନୀଳ ଆକାଶକୁ ଉଡ଼ିଗଲା ।

# ଦେଶାନ୍ତର

ସୁନ୍ଦରଲାଲା ସଜେଦୁଲାଲା ନାଚେ ଶ୍ରୀହରି କୀର୍ତ୍ତନ ମେଁ ।
ନାଚେ ଶ୍ରୀହରି କୀର୍ତ୍ତନ ମେଁ
ନାଚେ...

ଏରୁଣ୍ଡିବନ୍ଧରେ ଚକାପାରି ବସି ରାମରକ୍ଷୀ ମନ ଲଗେଇ ଗୁଡ଼ଳ ବାଛୁଥିଲା । ତା' ଗୀତର ସ୍ୱର ଅନେକ ବେଳଧରି ଲାଲ ଇଟାବାଲା ଗଳିରେ ଗୁଞ୍ଜିତ ହେଉଥିଲା । ସେତେବେଳେ ମୁଖ୍ୟ ସାହାଲାର ଚଉପାଢ଼ୀ ପଟୁ ବଡ଼ ଫାଟକ ଆଡ଼କୁ ଆସୁଥିବା ଡା. ଆଫତାବ ରାୟ ଦେଖାଗଲେ ।

'ଜୁହାର ଭାଇ ସାହେବ !' ରାମରକ୍ଷୀ ଓଢ଼ଣା ଆହୁରି ଲମ୍ବଟାଣି ଡାକ ପକେଇଲା—

'ଜୁହାର... ଜୁହାର !' ଡା. ଆଫତାବ ରାୟ ପାହାଚ ଉଠି ଯାଉଁ ଯାଉଁ ତା' ଆଡ଼କୁ ଟିକିଏ ବି ନଜର ନଦେଇ ଉତ୍ତର ଦେଲେ ।

'ଭଲରେ ଅଛନ୍ତି ତ ଭାଇ ସାହେବ !' ଔପଚାରିକତାରେ ପଚାରିଲା ରାମରକ୍ଷୀ ।

'ଆଉ କ'ଣ... କ'ଣ ହୋଇଛି ମୋର ଯେ ଭଲରେ ନଥିବି ?... ଆରେ ଏ କୁଲାଟା ଉଠା ମଝିରୁ !' ସେ ବିରକ୍ତ ହୋଇ କହିଲେ ।

'ଭାଇ ସାହେବ ଗୁଡ଼ଳ ପାଛୁଡ଼ି ବସିଥିଲି !'

'ହେଲା, ଗୁଡ଼ଳ ପାଛୁଡ଼ିବାକୁ ତୋର ଗାଡ଼ିଏ ରାସ୍ତା ଦରକାର କି ?... ଉଠା... ଉଠା... ଏସବୁ ଏଇଠୁ !'

ଡା. ଆଫତାବ ରାୟ ଜଗତଯାକର ଡିଗ୍ରୀ ହାସଲ କରିଥିଲେ ସିନା, ହେଲେ ଟିକିଏ ଟିକିଏ କଥାରେ ପିଲାଙ୍କ ଭଳି ରୁଷି ଯାଉଥିଲେ । ରାମରକ୍ଷୀ ଉପରେ ବରଷି ଯାଇ ଉପରକୁ ଆସିଲେ ଆଉ ମୋଢ଼ା ଉପରେ ଗୋଡ଼ ରଖି ଭଉଣୀକୁ ଡାକିଲେ— 'ନାନୀ... ନାନୀ' । 'ପିଲା ବକଟେ ଏ ଯାଏଁ ମୋ ଭାଇ' ବୋଲି ହେମକିରଣ ସ୍ନେହରେ କହୁଥିଲେ । ସିଡ଼ିଘର ଆଗକୁ ଖୋଲା ଛାତ ଉପରକୁ ନଇଁ ଆସିଥିବା ନିମଡାଳ ସବୁ ପଶ୍ଚିମୀ ପବନରେ ଦୋହଲି ଶନ୍‌ଶନ୍ ହେଉଥିଲେ । ସନ୍ଧ୍ୟାର ଗାଢ଼ପଣଟି ପାଗର ଉଦାସୀ ସାଙ୍ଗରେ ସେ ଥାନଟି ସାରା ବୁଣିହେଇ ଥିଲା । ଦିନସାରା ତଳେ ମହୁଲ ବଗିଚାରେ ମହୁମାଛିଗୁଡ଼ିକ ଭଣ ଭଣ ହେଉଥିଲେ, ଆଉ ସବୁ ଜିନିଷରେ ଯେମିତି ମାଦକତା ବୋଳି ହୋଇ ରହିଥିଲା । ଆମ୍ବ ଏଇନେ ହଳଦିଆ ଧରୁଥିଲା । 'ଠକୁରାଇନ'ଙ୍କ ବଗିଚାରେ ସକାଳ ଠାରୁ ରାତିଯାଏଁ ପାଣି ଟେଣ୍ଡାର ଗଁ ଗଁ ଶୁଭୁଥିବ ।

'ଆସୁଛି ଭାଇ !' କହି ହେମକିରଣ ବାରଣ୍ଡାରେ ଲାଗିଥିବା ପିତଳଫୁଲୀଲଗା କବାଟ ଖୋଲି ଘରୁ ବାହାରିଆସି କଣ୍ଟିଥୋଲାକ କାନିରେ ବାନ୍ଧି ଛନ୍‌କିନା ପିଠି ଉପରକୁ ଫୋପାଡ଼ି ଦେଇ ଅଗଣାରେ ଛୋଟ କୋଠରିକୁ ଆସିଗଲା ।

'ଜୟ ରାମଜୀ କୀ ଭାଇସାହେବ ।' ରାନ୍ଧୁଣିଆ ରୋଷେଇଶାଳରୁ ଡାକଦେଲା । କହିଲା— 'ପଣସ ତରକାରି ଖାଇବ ଆଜି ?'

'ହଁ, ହଁ ନିଶ୍ଚୟ ।' ଡା. ଆଫତାବ ରାୟ ମୋଡ଼ା ଠଉଁ ହଟିଆସି ବୁଲିଲା ଭଳି ତୁଳସୀ ଚଉରା ପାଖକୁ ଆସିଗଲେ । ଅଗଣାର ଛୋଟ କୋଠରିଟିରେ ଗୋଲ ପଥରର ଶାଳଗ୍ରାମ, ବଜରଙ୍ଗବଲୀ ମହାରାଜ ଆଉ ସିନ୍ଦୂରରେ ଲିପାପୋଛା ହେଇ ଗଙ୍ଗାଜଳରେ ଧୁଆ ରଙ୍ଗ-ବେରଙ୍ଗ ମୂର୍ତ୍ତି ସବୁ ସଜା ହୋଇ ରହିଥିଲେ । ଏଇନେ ସରୀନ ଆଉ ରମାକାନ୍ତ ଖେଳପଡ଼ିଆରୁ ଫେରିବେ । ଆଠଟାରେ ଖେମ କତ୍‌ଥକ ନାଚ ଶିଖି ଯମୁନା ମହାରାଜଙ୍କ ଘରୁ ଫେରିବ । ତା'ପରେ ଖନ୍ଦାରେ ଖାଇବା ବଡ଼ାବଡ଼ି ହେବ । ପିତଳ ବାସନ ସବୁ ଥଣ୍ଡା ଜହ୍ନ ଆଲୁଅରେ ଝଲମଲ ହେବେ । ତଳ ଅଗଣାରେ ରାମରକ୍ଷା କୋଉ କଜରୀ ଗାଇବା ଆରମ୍ଭ କରିଦେବ । ସେଠି ସ୍ୱରିପଟେ କେତେ ଶାନ୍ତି !

ଖେମ ତଳର ପକ୍କା ଗଳି ବାଟଦେଇ ଉପରକୁ ଆସୁଥିଲା । ଠକୁରାଇନଙ୍କ ବଗିଚ୍ଚାରୁ ସେ ଏଇମାତ୍ର କଣ୍ଟେଇକୋଳି, କରମଙ୍ଗା, ନଅରକୋଳି ତୋଳି ଝଅଟ ଝଅଟ ଠୁଙ୍କି ଦେଇଆସିଛି । ଧାକର ଦା ଧୀ ନା କତ୍ ତା ଧା କରଦା... । ''ଆଲୋ ବୋପାଲୋ !' ସେ ପାହାଚ ଉପର ଥାକରୁ ଭିତରକୁ ଅନେଇ ଦମୟନ୍ତୀକୁ କହିଲା— 'ମାମୁ ଆସିଲେଣି ପଳା, ନହେଲେ ମୋତେ ମାରିବେ, କହିବେ ଯେ ସବୁବେଳେ ଖେଳୁଛି ।' ଦମୟନ୍ତୀ ପଳେଇଗଲା ।

ଖେମ ଛାତ ଉପରକୁ ଆସିଲା । ସେ ଲମ୍ବ ଢିଲା ଫ୍ରକ୍ ପିନ୍ଧିଥିଲା । ଫ୍ରକ୍ ଦେହରେ ମୋତିରେ ଅନେକ ପ୍ରଜାପତି ଆଉ ଫୁଲପତ୍ର ତିଆରି ହେଇଥିଲା । ବାଳକୁ କଷିକରି ଗୁନ୍ଥି ଦୁଇଟି ବେଣୀ କରାହେଇଥିଲା ଆଉ ହାତର ଚୂଡ଼ି ଖନଖନ୍ କରି ଖେମବତୀ ରାୟଜାଦା ତାର ସୁନ୍ଦର ସ୍ନେହର ମାମୁଙ୍କୁ ଦେଖି ବେଶ ଖୁସି ହେଇଗଲା ।

'ମାମୁ ନମସ୍କାର, ବହିପତ୍ର ନେଇଆସୁଛି । ଖାଲି ଟିକିଏ ମୁହଁ ହାତ ଧୋଇନିଏଁ ।'

'ଗ୍ୱଲ ଡାହାଣୀ ! ବାହାନା କରୁଛି । ପାଠ ଶୁଣା ଆଗ !' ଡା. ଆଫତାବ୍ ରାୟ ଗେଲରେ କହିଲେ । ତେବେ ତାଙ୍କର ସେଭଳି ଅଭିଜ୍ଞତା ଥିଲା । ଯାହାଫଳରେ ନିଜଠାରୁ କମ୍ ବୟସର ଲୋକଙ୍କୁ ଆଉ ଆତ୍ମୀୟସ୍ୱଜନଙ୍କୁ ସେଭଳି ଘରୁଆ ଆଉ ଲାଡ଼ ଗେଲ କଥା ଅଧିକ ସଫଳତାରେ କହିପାରୁ ନଥିଲେ ।

'ତତେ ତ ମୁଁ ଇଣ୍ଟରମିଡିଏଟ୍‌ରେ ବି ହିସାବ ଦିଏଇ କରିବି । ଦେଖୁଥା ।' ସେ ପୁଣି ବଡ଼ପଣିଆର ଚେଷ୍ଟା କଲେ ।

'ଆରେ ବାପରେ !' ଖେମ କୃତ୍ରିମ ଡରରେ କହିଲା ।

'ତୁ ଭାରି ସୁନ୍ଦରିଆ ଚୂଡ଼ି ସବୁ କିଣିଛୁ ।''

'ହଁ... ହଁ... ହଁ... ମାମୁ ।' ଖେମ ଭାରି ଖୁସିରେ ତାର ଚୂଡ଼ିଗୁଡ଼ିକୁ ଦେଖିଲା ।

'ଆରେ ତୁ ଏଣିକି ଶାଢ଼ି ପିନ୍ଧ, ଏମିତି କ'ଣ ଫ୍ରକ୍ ପିନ୍ଧୁଥିବୁ !' ସେ ତାଙ୍କ ନିଜର ବଡ଼ପଣିଆର ଆସ୍ଥାକୁ ନିଜ ଉପରେ ଲଦିଦବାକୁ ଚାହିଁଲେ ।

'ହଁ ମାମୁ !' ଖେମର ଆଖି ଆଗରେ ସେଇ ଝଲମଲ ଶାଢ଼ି ସବୁ ଝଲସି ଉଠିଲେ, ଯୋଉ ସବୁରେ ମା'ର ବାକ୍ସ ଭର୍ତ୍ତି ହେଇ ରହିଥିଲା । ସେ ତ ଭଗବାନ୍‌ଙ୍କ ଠେଇଁ ଏଇ ପ୍ରାର୍ଥନା କରୁଥାଏ— ଯାହା କାଲି ପିନ୍ଧିବ, ତାକୁ ଆଜି ପିନ୍ଧିପକେଇବ । ତେବେ ହେମକିରଣର ମୁଣ୍ଡ ଉପରେ ବି ଇଂରେଜପଣ ସବାର ହୋଇ ରହିଥିଲା । ଏତକ ସେ ଭୁଲି ନଥିଲା ଯେ ସେ ଜୌନପୁରର ସେହି ବିଶୁଦ୍ଧ ରୁଢ଼ିବାଦୀ ଶ୍ରୀବାସ୍ତବ ଘରର ଝିଅ । ତେବେ ତାର ବାହାଘର ଏଲ୍‌ହାବାଦର ଏତେ ଫେଶନେବୁଲ ପରିବାରରେ ହୋଇଥିଲା, ଯେଉଁ ପରିବାରର ସମସ୍ତେ ସିଭିଲ ଲାଇନ୍ସରେ ରହୁଥିଲେ ଆଉ ଜୋତାପିନ୍ଧି ଖାଉଥିଲେ । ତାଙ୍କର ବିଧବା ହେବା ଆଜିକି ସାତବର୍ଷ ହୋଇଗଲା । ସେଦିନରୁ ସେ ମାଆ ଘରେ ଆସି ରହୁଥିଲା । ତେବେ ସାରା ସାହିରେ ତା'ର ପ୍ରଭାବ ଥିଲା, ଯେହେତୁ ସେ ଏଲ୍‌ହାବାଦ ରାୟଜାଦା ପରିବାରର ବୋହୂ । ଦ୍ୱିତୀୟ କଥା ହେଲା— ଫ୍ରକ ପିନ୍ଧିବାର ଏ ଫେଶନଟି ଡା. ସେନଗୁପ୍ତାଙ୍କ ଘରୁ ଆସିଛି । ଡା. ସେନଗୁପ୍ତା ଜିଲ୍ଲା ଡାକ୍ତରଖାନାରେ ଏସିଷ୍ଟେଣ୍ଟ ସର୍ଜନ ଥିଲେ । ଆଉ ଡାକ୍ତରଖାନାରୁ ମିଳିଥିବା ତାଙ୍କର ଉଜୁଡ଼ା ପ୍ରାୟ ହଳଦିଆ ଘର ଆଗରେ ତାଙ୍କର ପାଞ୍ଚୋଟିଯାକ ଝିଅ ରଙ୍ଗରଙ୍ଗିଆ ଫ୍ରକଟି ମାନ ପିନ୍ଧି ଦିନସାରା ନଗ୍ୱ-ଡ଼ିଆଁ କରୁଥିଲେ । ସନ୍ଧ୍ୟା ହେଲେ ଡାକ୍ତର ସେନଗୁପ୍ତ ଆଗେ ଆଗେ ଧୋତିର କୁଞ୍ଚକୁ କଳାତ୍ମକ ଢଙ୍ଗରେ ହାତରେ ଗୁଡ଼େଇ ସାନ୍ଧ୍ୟ ଭ୍ରମଣରେ ବାହାରି ପଡୁଥିଲେ । ଟିକିଏ ପଛରେ ଲାଲ ଧଡ଼ିବାଲା ଧଳା ଶାଢ଼ି ପିନ୍ଧି ତାଙ୍କର ପତ୍ନୀ ଆଉ ପାଞ୍ଚୋଟିଯାକ ଝିଅ ସିଧା ସିଧା କାନ୍ଧକୁ କାନ୍ଧ ମିଳେଇ ବାହାରି ପଡୁଥିଲେ । ବାସ୍, ସବୁ ବଙ୍ଗାଳୀ ପରିବାରରେ ଝିଅଙ୍କର ଏମିତିକା ଫଉଜଟାଏ ଦେଖିବ ।

ହେମକିରଣଙ୍କର ଡାକ୍ତର ସେନଗୁପ୍ତାଙ୍କ ପ୍ରତି ବେଶ ଦରଦ ଥିଲା । ଖେମର ସେଇ ସମସ୍ତଙ୍କ ସାଙ୍ଗରେ ଭାରି ଭଲ ପଡୁଥିଲା । ବିଶେଷ କରି ମନ୍ଦିରା ସାଙ୍ଗରେ । ଆଉ ସ୍କୁଲର ଡ୍ରାମାବେଳକୁ ତ ଖେମ ଆଉ ମନ୍ଦିରା ସବୁରି ଉପରେ ଛାଇହେଇ ରହିଥାଆନ୍ତି । କେତେ କ'ଣ ନାଟକ ମହାଦେବୀ କନ୍ୟା, ପାଠଶାଳାରେ ହେଇ ନଥିଲା ! 'ନଳଦମୟନ୍ତୀ', 'ଶକୁନ୍ତଳା', 'ରାଜା ହରିଶ୍ଚନ୍ଦ୍ର', 'ରାଜରାଣୀ ମୀରା', ତା' ସାଙ୍ଗକୁ ଡାନ୍ସ । ଗର୍‌ବା ବି ହେଉଥିଲା 'ଆର ତୀରେ ଗଙ୍ଗାପାର, ତୀରେ ଜମୁନା ବୀଚ ମେ ଠାଡ଼େ ହେଁ ନନ୍ଦଲାଲ ।' ଈଶ୍ୱର ଆପଣଙ୍କର ମଙ୍ଗଳ କରନ୍ତୁ, ଦେଖନ୍ତୁ ରାଧାକୃଷ୍ଣ ଡାନ୍ସ— 'କି ମୈଁତୋ ଗିରିଧର ଆଗେ ନାଚୁଁଗୀ ।' ଆଉ ସେ ଗଗରୀ ନାଚ— 'ଚଲୋ ଚଲୋ ସଖୀ ସୁଖିୟାରୀରେ ଚଲୋ'

ପନଘଟ ଭରବା ପାନୀ ।' ଆଉ ସାଙ୍ଗରେ ମନ୍ଦିରା ସେନଗୁପ୍ତା ଅଛି, ଜୋରରେ ବଜେଇ ଚ୍ୱଲିଛି ହାରମୋନିୟମ ।

ସେଇଠି ମୁସଲମାନ ସ୍କୁଲଟିଏ ବି ଥିଲା— ଅଞ୍ଜୁମନ ଇସ଼୍ଲାମ ଗାର୍ଲ୍ସ ସ୍କୁଲ । ସେଇଠି ଏସବୁ ଥାଟ୍ କୋଉଠି ମିଳିବ ? ବାସ ବାରାବଫାତ୍ କି ବାରାବଫାତ୍ ! (ହଜରତ୍ ମୁହମ୍ମଦ ସାହବଙ୍କର ଜନ୍ମ ଓ ମୃତ୍ୟୁ), ମୀଲାଦ ଶରୀଫ ହେଉଥିଲା । ସେଥିରେ ଠିଆହୋଇ ଝିଅ-ଗୁଡ଼ିକ ବେଶ ବେସୁରା କରି ପଢ଼ି ପକଉଥିଲେ— 'ତୁମ ହୀ ପଂଖରେ ଅମ୍ବିୟା ହୋ ୟା ନବୀ ସଲାମ ଅଲେକ । (ତୁମେ ହିଁ ପୈଗମ୍ବରମାନଙ୍କ ଭିତରେ ଗର୍ବ କରିବା ଯୋଗ୍ୟ) ହେଲା, କଥା ଶେଷ ! ଥରେ ଗୋଟେ ପାଗଳୀ ହେଡ଼ମାଷ୍ଟ୍ରାଣୀ, ଯିଏ ନୂଆ ନୂଆ ଲକ୍ଷ୍ନୌରୁ ଆସିଥିଲା, ମହିଳାମାନଙ୍କର ବାର୍ଷିକୋତ୍ସବରେ 'ରୂପମତୀ ବାଜ ବାହାଦୁର' ନାଟକ ଦେଖେଇଦେଲା । ସେଇଥିରେ ସ୍କୁଲ ଫାଟକ ଆଗରେ ଲୋକେ ଘେରାଓ କଲେ ଆଉ ଦୈନିକ ଖବରକାଗଜ 'ସଦା-ଏ-ହକ'ର ପ୍ରଥମ ପୃଷ୍ଠାରେ 'ଗାର୍ଲ୍ସ ସ୍କୁଲର ଷ୍ଟେଜରେ ଇସ଼୍ଲାମୀ ସଂପ୍ରଦାୟର ଲଜ୍ଜାକର ଶବଯାତ୍ରା' ବୋଲି ସମ୍ବାଦ ବାହାରିଲା ।

'ମୁସଲମାନ୍ ! ତମକୁ ଖୋଦାଙ୍କ ଆଗରେ ଉତ୍ତର ଦେବାକୁ ପଡ଼ିବ । ମୁସଲମାନ ସ୍ତ୍ରୀମାନଙ୍କର ନାଚଗୀତର ଶିକ୍ଷା ବନ୍ଦ କର ।' ଏସବୁ କାହାଣୀ ପଡ଼ିଶା ଘରେ ରହୁଥିବା ଖେମର୍ ମୁସଲମାନ ସାଙ୍ଗ କିଶବରୀ ତାକୁ ଶୁଣଉଥିଲା... ଚଉତରାର ସାମନା ଘରେ । ସେ ସେଇ ଇସ଼୍ଲାମିୟା ଗର୍ଲ୍ସ ସ୍କୁଲରେ ପଢ଼ିଥିଲା । ତାର ବଡ଼ଭାଇ ଅସଗର ଅବ୍‌ବାସ ସଗୀନ ଓ ରମାକାନ୍ତ ସାଙ୍ଗରେ ହକି ଖେଳିବାକୁ ଆସୁଥିଲା । ସେମିତି ସେମାନେ ବି ଅଲଗା ଅଲଗା ପଢୁଥିଲେ । ସଗୀନ ଓ ରମାକାନ୍ତ ଡି.ଏ.ବି. କଲେଜରେ ପଢ଼ିଥିଲେ । ଆଉ ଅସଗର ଅବ୍‌ବାସ ଫୈଜଲ ଇସ଼୍ଲାମ୍ କିଙ୍ଗ ଜର୍ଜ ଇଣ୍ଟର କଲେଜରେ ।

'କ'ଣ, ଇଣ୍ଟର ପଢ଼ିବାକୁ କୋଉଠିକି ଯିବୁ ? ଜୁଲାଇ ଆସୁଛି, ବନାରସ ନା ଲକ୍ଷ୍ନୌ ?' ଡାକ୍ତର ଆଫତାବ୍ ରାୟ ରୋଷେଇ ଘରେ ବସୁ ବସୁ ପଚ୍ଚରିଲେ ।

ହଠାତ୍ ପଚରା ଯାଇଥିବା ଭଳି ଏକ ଜଟିଳ ପ୍ରଶ୍ନର ଉତ୍ତର ଦେବାକୁ ଖେମବତୀ ସେତେବେଳେ ଆଦୌ ପ୍ରସ୍ତୁତ ନଥିଲା । ଦୁଇଟି ଜାଗା ବିଷୟରେ ସେ ବେଶ ଭଲ କରି ଜାଣିଥିଲା । ତେବେ କୋଉ ଗୋଟିକ ସପକ୍ଷରେ ହଠାତ୍ ଫଇସଲା ଶୁଣେଇ ଦେଇ ପାରିବ ନାହିଁ । ବନାରସରେ ଭରି ବଢ଼ିଆ ଚୁଡ଼ି ମିଳେ, ତେବେ ଲକ୍ଷ୍ନୌ ବି ଅନେକ କଥାରେ ତା'ଠୁ ବଳି । ଉଦାହରଣ ସ୍ୱରୂପ— ସିନେମା କଥାଟା । ଦଶଟି ସିନେମାରୁ ଗୋଟିଏ ସିନେମା ତ ନିଜେ ମହିଳା ବଦ୍ୟାଳୟ, ଯେଉଁଠିକି ପଠେଇବେ ବୋଲି ତା'ର ମାମୁଁ ଭାବୁଥିଲେ । ପର୍ଦ୍ଦା ତ ତାକୁ ସବୁଠେଇଁ ଦରକାର । ଏଇଠି ବା ତା'ପାଇଁ ଟାଙ୍ଗାଗାଡ଼ିରେ ପର୍ଦ୍ଦା ବନ୍ଧେଇ ଦିଅନ୍ତି ହେମକିରଣ । ତା'ପରେ ମୁଣ୍ଡ ଉପରକୁ ଠେଙ୍ଗା ଉଠେଇ ମାମୁଁ ବି ସବୁବେଳେ ଉପସ୍ଥିତ ।

ଏ ମାମୁଁ ଏ ଯାଏଁ ତା'ର ବୁଝିବା ପାସଙ୍ଗରେ ପଡ଼ି ନଥିଲେ । ବିଲାତ ଯାଇ କେଜାଣି କେତେ ଯେ ଡିଗ୍ରୀ ନେଇ ଆସିଲେ । ୟୁନିଭରସିଟିରେ ପ୍ରଫେସର ଥିଲେ, ଇତିହାସ ବହି ଲେଖୁଥିଲେ, ଫାରସୀରେ କବିତା ଲେଖିଛନ୍ତି । ସେ ଖାଲି ଖେମର ମାମୁଁ ନୁହନ୍ତି, କଥା କଥାକେ ଆପତ୍ତିର ଅବତାର ବି !

ବାକି ସଗୀନ ଓ ରମାକାନ୍ତ । ରମାକାନ୍ତ ତ କବି । ସବୁ ସ୍ଥାନୀୟ କବି ସମ୍ମିଳନୀକୁ ଯାଇ କବିତା ପଢ଼େ । ଗଜଲ ପଢ଼େ ଆଉ ହଜରତ ନିଶାଦ୍ ଜୌନପୁରୀ ନାଆଁରେ ପରିଚିତ। ସଗୀନ ତା'ଠାରୁ ପୂରା ଅଲଗା, ଇଂଜିନିୟର । ଏ ବର୍ଷ ସେ ଇଣ୍ଟର କରି ଇଂଜିନିୟରିଂ ପଢ଼ିବାକୁ ବନାରସ ଚାଲିଯିବ । ବାକି ସାରା କୁଟୁମ୍ବ ଭାଇବନ୍ଧୁଙ୍କ ପିଲାଗୁଡ଼ା ତୁଚ୍ଛ । ଏ ବାବତରେ ତା'ର ବାନ୍ଧବୀ କିଶବରୀ ମାନେ କିଶବର ଆରା ବେଗମର ଭାରି ଥାଟି । ତାର ଅନେକ ସଂପର୍କୀୟ ଭାଇ ଆଉ ସମସ୍ତେ ଏକୁ ଆରେକ ବଳୀଆର । ଆଉ ଏଇଠି କା'ର ବଳୀଆରପଣର ପ୍ରଶ୍ନ ହିଁ ଉଠୁନାହିଁ । କେହି ହେଲେ ତାକୁ ଏ ପର୍ଯ୍ୟନ୍ତ କହିନାହିଁ, ''ଚାଲ ଖେମ, ସର୍କସ କି ନୌଟଙ୍କୀ ଦେଖିଆସିବା ।'' ନୌଟଙ୍କୀ ବେଳକୁ ରାନ୍ଧୁଣିଆ ପର୍ଯ୍ୟନ୍ତ ଝୁଲିଝୁଲି ଗାଏ— ଅବ ୟହୀ ହେି ମୈନେ ଠାନୀ ଲାଉଁଗା ନୌଟଂକୀ ରାନୀ । କିଶବରୀର ମାଜିଦ୍‌ଭାଇ ଅଛନ୍ତି । ତା'ଲାଗି ଲକ୍ଷ୍ନୌରୁ ଚୂଡ଼ି ନେଇ ଆସିବେ । ଇକରାମ ଭାଇ ଅଛନ୍ତି, ଯା' ପାଇଁ ଚଟାପଟ କିଶବରୀ ସ୍ୱେଟର ବୁଣି ଦେଇଚି । ଅଶଫାକ୍ ଭାଇ ଅଛନ୍ତି, କିଶବରୀକୁ ଇଂରାଜୀ କବିତା ପଢ଼େଇ ଦେବେ । ଏଇ ଭାଇମାନଙ୍କର ଓ ଖେମର ଭାଇଙ୍କ ଭିତରେ ଆକାଶ ପାତାଳ ପ୍ରଭେଦ । ସେଠାରେ ଚୂଡ଼ି ଆଉ ସ୍ୱେଟର, ଆଉ ଏଇଠି ...

ହେମକିରଣଙ୍କୁ ଘରର କାମଧନ୍ଦାରୁ ଫୁରସତ ମିଳେନାଇଁ । ଆଫତାବ୍ ରାୟ ଥିଲେ ତାଙ୍କର ବଡ଼ ଭରସା । ସେ ପ୍ରାୟ ତିନି ଚାରି ମାସରେ ଆସି ସବୁ ଖବର ବୁଝାବୁଝି କରି ଯାଆନ୍ତି । ଭାଇସାହେବ ନିଜେ ଜୌନପୁରର ହେଲେ ବି ତାଙ୍କର ଏଇଠି କାହାରି ସାଙ୍ଗରେ ପରିଚୟ ନଥିଲା । ଜିଲ୍ଲାର ଅମୀର ଆଉ ସ୍ଥାନୀୟ ସଂପନ୍ନ ଲୋକଙ୍କ ଭିତରେ ସିଏ ବି ଗଣା ଯାଉଥିଲେ । ଯଦି ଆପଣ ଭାବୁଥାଆନ୍ତି ଯେ ଡାକ୍ତର ଆଫତାବ ରାୟ ଆସି ଜୌନପୁରର ସେହି ସମ୍ମାନନୀୟ ବ୍ୟକ୍ତିମାନଙ୍କ ସହିତ ତାଙ୍କର ସମୟ ନଷ୍ଟ କରିବେ, ତେବେ ଆପଣ ଭୁଲ୍ ଭାବୁଛନ୍ତି । ପ୍ରଶାସନିକ ଅଧିକାରୀଙ୍କ ସାଙ୍ଗରେ ତାଙ୍କର କେବେହେଲେ ପଡ଼ିନାଇଁ। ସେ ବୁଦ୍ଧିଜୀବୀ । ସରକାରୀ ଓ ପୁଲିସବାଲାଙ୍କ ସାଙ୍ଗରେ କାହିଁକି ମୁଣ୍ଡ ଖେଳେଇବେ ? ଜଗନ୍ନାଥ ଜୈନ ଯେତେବେଳେ ନୂଆ ନୂଆ ଜିଲା କଲେକ୍ଟର ହେଇ ଆସିଲେ, ସେ ତାଙ୍କୁ ଅନେକ ଥର କ୍ଲବକୁ ଡାକିଛନ୍ତି; କିନ୍ତୁ ସେ ଥରେ ବି ଯାଇନାହାନ୍ତି । ରଈସୁଦ୍ଦୀନ କାଜମୀ ଜିଲ୍ଲା ସେସନ୍ସ ଜଜ୍ ବି ଆମନ୍ତ୍ରିତ, ସେ କିନ୍ତୁ ଗଲେ ନାହିଁ । ଆଉ ବିଲାତ ଫେରନ୍ତା ମିଷ୍ଟର ଚାର୍ଲସମାର୍ଟିନ ତାଙ୍କୁ କ୍ୱିନ ଭିକ୍ଟୋରିଆ ଗଭର୍ଣ୍ଣମେଣ୍ଟ ଇଣ୍ଟର କଲେଜର ପ୍ରିନ୍ସିପାଲ ପଦ ଅଫର କଲେ, ହେଲେ ଖେମର ମାମୁଁ ତାକୁ ମଧ୍ୟ ଅସ୍ୱୀକାର କରିଦେଲେ । କଂଗ୍ରେସ ଓ୍ୱର୍କର ହେବା କିଛି ବଡ଼ କଥା ନୁହେଁ । ନଗର ଓ ଛୋଟ

ସହରମାନଙ୍କରେ ଯେଉଁ ହିନ୍ଦୁମାନେ ଥିଲେ, ସେମାନେ ସେମାନଙ୍କ ଘରେ ତ୍ରିରଙ୍ଗ ପତାକା ଉଡ଼ଉଥିଲେ । ଆଉ ପ୍ରତ୍ୟେକ ମୁସଲମାନଙ୍କର ଆହୁରି ଦଶଟି ଧନ୍ଦା ଥିଲା । ଅହରାର ପାର୍ଟି, ଶିୟା କନ୍‌ଫରେନ୍ସ, ଜିଲ୍ଲା କଂଗ୍ରେସ କମିଟିରେ ମୁସଲମାନ ଭରିଥିଲେ । ମୁସଲିମ ଲିଗର ନାଆଁ ପର୍ଯ୍ୟନ୍ତ ସେ ଯାଏଁ କେହି ଶୁଣି ନଥିଲେ । ଆଉ କେହି ଯଦି ପଗ୍ରରେ ନ୍ୟାୟତଃ ଅନେକ ମୁସଲମାନ କିଛି ବି ନଥିଲେ । ଶାୟରୀ କରୁଥିଲେ ବା ମୁହର୍ରମ କାହାଣୀ ମଜଲିସ ପଢୁଥିଲେ ।

କହିବା ଅର୍ଥ ହେଲା—ଏହା କିଛି ଚିନ୍ତାର ବିଷୟ ନଥିଲା । ଡାକ୍ତର ଆଫତାବ ରାୟଙ୍କର ଅଧିକାଂଶ ଲୋକଙ୍କ ସାଙ୍ଗରେ ପଡୁନଥିଲା । ଆରେ ଭାଇ, ଏଇଆ ବି ଶୁଣିବାକୁ ମିଳେ ଯେ ହୀରାପୁର କଂଗ୍ରେସର ବୈଠକରେ ସେ ସମସ୍ତଙ୍କୁ ସିଧାସିଧା ଶୁଣେଇ ଦେଇଥିଲେ ।

ଜିଲ୍ଲା ସୋସାଇଟିର ପ୍ରମୁଖ ଲୋକଙ୍କଠାରୁ ଡାକ୍ତର ଆଫତାବ ରାୟ କୋଶକୋଶ ଦୂରେଇ ରହୁଥିଲେ । ମଝି ସହରରେ ମହାଜନ, ସାହୁକାର, ଜମିଦାରମାନଙ୍କର ଉଚ୍ଚାଉଚ୍ଚା ପ୍ରାସାଦ ଥିଲା । ସେମାନେ ସରକାରୀ କୋଷକୁ ହଜାର ହଜାର ଟଙ୍କା ଚାନ୍ଦା ଦଉଥିଲେ । ସ୍କୁଲ ଖୋଲୁଥିଲେ, ମୁଶାୟରା ଆଉ କୁସ୍ତିର ଆୟୋଜନ କରୁଥିଲେ । ସମାରୋହ ଶୋଭାଯାତ୍ରା, ମୁଣ୍ଡ ଫଟାଫଟି ସେଇମାନଙ୍କର ମୁଖିଆ ପଣରେ ହେଉଥିଲା । ହିନ୍ଦୁ-ମୁସଲମାନଙ୍କର ଚଳଣି ପ୍ରାୟ ଏକପ୍ରକାର । ସେଇ ପର୍ବପର୍ବାଣୀ, ମେଳା ମଉଚ୍ଛବ, ମୁହର୍ରମ ଆଉ ରାମଲୀଳା । ତା'ଠାରୁ ଉଚ୍ଚସ୍ତରକୁ ଗଲେ ମାଲି ମୋକଦ୍ଦମା, ଓକିଲ, ସାକ୍ଷୀ, ପେଶକାର, ସମନ, କୋଟକଚେରୀ ଆଉ ସାହେବଙ୍କ ଘରକୁ ଉପହାର ଡାଲା ।

ସହର ବାହାରେ ଜିଲ୍ଲା ଡାକ୍ତରଖାନା ଥିଲା । ବେଶ ଅନେକ ଦୂର ବିସ୍ତୀର୍ଣ୍ଣ ଶାଗୁଆ ଘାସ ପଡ଼ିଆରେ ଏଣେତେଣେ ଅବିନ୍ୟସ୍ତ ହଳଦିଆ ରଙ୍ଗର ଘର, କଣ୍ଟ ଖୋଲା ଥାନ, ନିମ ଗଛ ଛାଇରେ ଆଉ ଢେର ରୋଗୀଙ୍କର ଭିଡ଼ । ଧୂଳିଧୂସର ଟାଙ୍ଗାଗାଡ଼ୀର ଆଡ୍ଡା । ରାସ୍ତା କଡ଼ରେ ବସି ଦି'ଦି ଅଣାରେ ଚିଠି ଲେଖିଦେଉଥିବା ମଣିଷ, ବେଶ ବୁଢ଼ା ଆଉ ଦୁର୍ବଳ ମୁନ୍‌ସୀ; ଯେଉଁମାନେ ସୂତାବନ୍ଧା ଚଷମା ପିନ୍ଧି ଧୂଆଁଳିଆ ଆଖିରେ ଗ୍ଧଲିଗଲା ଲୋକଙ୍କୁ ଦେଖୁଥିଲେ । ତାପରେ ଗଳି, ଯେଉଁଠି ଛୋଟ ଛୋଟ ଇଟା ଚଟାଣ ଉପରେ ପାଣି ଗ୍ଧଲିଥିଲା । ଶିଉଳିଲଗା ଆଉ କଳାକଳା କାନ୍ଥରେ କୋଇଲାରେ ବିଜ୍ଞାପନ ଇସ୍ତାହାର ଲେଖା ହେଇଥିଲା— ''ହାକିମ ମାର୍କା ସୂତା କିଣନ୍ତୁ । ପରୀବ୍ରାଣ୍ଡ ବିଡ଼ି ପିଅନ୍ତୁ । ପଇସାଟିଏ ବାପାଠୁଁ ନେଇ ଗ୍ଧ ମା'କୁ ଦିଅ । ଆସିଗଲା ଆସିଗଲା ଏ ବର୍ଷର ସବୁଠାରୁ ରୋମାଞ୍ଚକର ଫିଲ୍ମ 'ସହରୀରାଜା' । ଏଥିରେ କାମ କରିଛନ୍ତି ମିସ ମାଧୁରୀ ।''

ଛାଇଘେରା ରାସ୍ତାର କିଛି ଆଗକୁ ଆମ୍ବ ଆଉ କୃଷ୍ଣଚୂଡ଼ା ଗଛ ଲାଗି ଲୁଚିଲା ଭଳି ହୋଇଥିବା ଜିଲ୍ଲା ଅଧିକାରୀମାନଙ୍କର ଘର ସବୁ ଥିଲେ । ଇଂରେଜ କ୍ଲବ ଥିଲା.... ସେଠାରେ ବେଶ ନୀରବତା । ଥଣ୍ଡା ଚୁପ୍‌ଗ୍ଧପ ଛାଇ ଭଳି ଚଳପ୍ରଚଳ ହେଉଥିବା ସଭ୍ୟ ଓ ଶାଳୀନ

ବୈରାମାନେ, ଇଂରେଜ ଆଉ କଳା ସାହେବମାନଙ୍କ ପାଇଁ ଥଣ୍ଡା ପାଣି ବୋତଲ ଆଉ ବରଫ ବାଲ୍‌ଟି ଆଣି ଘାସ ଉପରେ ରଖୁଥିଲେ । ଟେନିସ ବଲ ସବୁ ଘାସ ଉପରେ ଗଡ଼ି ଯାଉଥିଲେ ।

(୨)

କମଳକୁମାରୀ ଜୈନ, ଜଗନ୍ନାଥ ଜୈନ ଆଇ.ସି.ଏସ୍‌ଙ୍କର ବାଳକାଟୀ ପତ୍ନୀ ସିଭିଲ ଲାଇନ୍ସର ଏ ଦୁନିଆକୁ ଉପରୁ ଉପରୁ ଆସିଗଲେ । ସେ ଲକ୍ଷ୍ନୌର ପ୍ରସିଦ୍ଧ ଆମେରିକାନ୍ କଲେଜ ଏଲିଜାବେଥ୍ ଥୋର୍ବନରେ ପଢ଼ିଥିଲେ, ଯେ ବେଟ୍ ବଲ ନେଇ ଖେଳନ୍ତି । ତାଙ୍କର ଆସିବା ମାତ୍ରକେ ବେଶ୍ ଚହଳ ପଡ଼ିଗଲା । ଆଙ୍ଗୁଠିଗଣାରେ ମାତ୍ର ତିନୋଟି ମେମ୍ ଥିଲେ କ୍ଲବରେ । ଏକରେ କ୍ୱିନ ଭିକ୍‌ଟୋରିଆ ଇଣ୍ଟର କଲେଜର ଇଂରେଜ ପ୍ରିନ୍ସିପାଲର ମେମ୍ । ଦୁଇରେ ମହିଳା ଡାକ୍ତରଖାନାର ଡାକ୍ତରାଣୀ ମେମ୍ ମିସ୍ ମେକେଂଜୀ ଆଉ ତିନରେ ଏ.ପୀ. ମିଶନ ଗାର୍ଲ୍ସ ହାଇସ୍କୁଲର ପ୍ରିନ୍‌ସିପାଲ ମିସ୍ ସାଲ୍‌ଫର୍ଡ, ଯେ ଚୁନଚୁନିଆଁ ମେମ ନାଆଁରେ ପରିଚିତ । କାରଣ ସେ ଗ୍ୱକରବାକରଙ୍କ ଉପରେ ସବୁବେଳେ ଚିଡ଼୍ ଚିଡ଼୍ ହେଇ ପାଟି କରେ । ଏଇ ତିନିଜଣଙ୍କ ବାହାରେ ନୈନିତାଲରୁ ଆସିଥିବା ଡାକ୍ତରାଣୀ ମେମ୍ ସାହବର ଛୋଟ ଭଉଣୀ ମିସ୍ ଓଲିଭ ମେକେଂଜୀଙ୍କର ଜିଲ୍ଲାର ଅବିବାହିତ ଅଫିସରଙ୍କ ସାଙ୍ଗରେ ଟେନିସ୍ ଖେଳିବାକୁ ଭାରି ସଉକ । ଖେଳରେ ମନ ଏତେ ମଜ୍ଜି ଯାଇଥିଲା ଯେ ସେ ଫେରିବା ନାଆଁ ବି ନେଉ ନଥିଲେ । ସଂଧ୍ୟା ହେଲା ମାତ୍ରକେ ସେ କ୍ଲବକୁ ଆସି ହାଜର ହୋଇଯାଉଥିଲେ । ଆଉ ମିଷ୍ଟର ସକସେନା, ମିଷ୍ଟର ଫରହତ ଅଲ୍ଲୀ ଆଉ ମିଷ୍ଟର ପାଣ୍ଡେ ତା'ର ଗ୍ୱରିପଟେ ଘେରି ଦାନ୍ତ ନେଫେଡ଼ି ରହୁଥିଲେ ।

ସେଇ ଗୋଟିଏ ଚିଜ ସବୁଲୋକଙ୍କୁ ପୁତୁଳି ନାଚ ନଚେଇ ରଖିଥିଲା ଯେମିତି । ଅନ୍ୟ ମରଦମାନେ ବି କହୁଥିଲେ "କ୍ଷତି କ'ଣ, ଜୌନ୍‌ପୁର ଭଳି ନୀରସ ଜାଗାରେ ମିସ୍ ମେକେଂଜୀରେ ସନ୍ତୋଷ ହେବା କଥା । ବିଗ୍ୱରିବା ଭଳି କଥାଟିଏ ଯେ ଯୋଉ ଅନ୍ୟ ଡାକ୍ତରାଣୀ ଥିଲେ ମିସ୍ ଶବ୍ଦୀରା ହିମାୟତ ଅଲ୍ଲୀ, ତାଙ୍କର ତ ନାଆଁ ଶୁଣିଲେ ହିଆ ଦୋହଲି ଯାଉଥିଲା । ତେବେ ସେ ଭାରି ସ୍ପୋର୍ଟିଙ୍ଗ ବ୍ୟକ୍ତିତ୍ୱର । ବେଶ ସାହସ କରି ଟେନିସ୍ ଖେଳିବାକୁ ଆସୁଥିଲେ । ଲକ୍ଷ୍ନୌ କିଙ୍ଗ୍ ଜର୍ଜର ଛାତ୍ରୀ । ଲଣ୍ଡନରୁ ବି ଡିପ୍ଲୋମାଟିଏ ମାରି ଆଣିଥିଲେ । ତେବେ କା'ର ବହପ ହେବ ଯେ କଣେଇ ଦେଖିଦେବ ! ଲୋକେ କହନ୍ତି— ସାହେବ ଭାରି ଭଦ୍ର ଡାକ୍ତରାଣୀ । ବିଲକୁଲ ଗାଈ ଭାବକୁ ଗାଈ । ସିଏ ନିଆରା କଥା ଯେ ସବୁ କାହାଣୀ ଉପନ୍ୟାସର ପରମ୍ପରା ଅନୁସାରେ ଡାକ୍ତରାଣୀ ଗ୍ୱନ୍ଦଠୁ ସୁନ୍ଦର ଅପୂର୍ବ ପରୀ ହେବା କଥା ବୋଲି ଆପଣ ଆଶା କରିବେ ! ଦେଖିବାକୁ ସେ ଠିକ୍‌ଠାକ୍ । ଥରେ ଜିଲ୍ଲା ନ୍ୟାୟାଧୀଶ ମିଷ୍ଟର କାଜମୀଙ୍କର ବେଗମ ମିଷ୍ଟରେ ଫରହତ ଅଲ୍ଲୀଙ୍କୁ ପରାମର୍ଶ ଦେଇଥିଲେ— "ଭାଇ, ଜମାନ ସ୍ୱାଧୀନ । ତମେ ମିସ୍ ଶବ୍ଦୀରାକୁ ବାହା ହେଇ ପଡ଼ୁନ ! ପ୍ରତିବର୍ଷ ଛୁଟିରେ

ତମ ମାଆ ଜାଗା ଜାଗା ଝିଅ ଦେଖିବାକୁ— କେତେବେଳେ ନୈନିତାଲ, କେତେବେଳେ ଯୋଉ ମସୁରୀ ପଠଉଛନ୍ତି: ସେଇ ମୁଣ୍ଡବଥାରୁ ତ ତାହି ମିଳିଯିବ !''

ସେତେବେଳେ ଉତ୍ସାହୀ ପୋଲିସ୍ ଅଧ୍ୟକ୍ଷକ ଥିବା ଫରହତ ଅଲ୍ଲୀ ବେଗମ କାଜମୀଙ୍କ ଆଗରେ କାନଧରି ଉଠବସ୍ ହେଲେ ଆଉ ଥରିବାକୁ ଲାଗିଲେ । କହିଲେ— ସେ ଯେତେବେଳେ ବି ଏଣିକି ମିସ୍ ଶଙ୍ଖୀରା ହିମାୟତଙ୍କୁ ଭେଟିବେ ଆଉ କଥା ହେବେ, ସେଥିରେ ମାତ୍ର ଗୁରୋଟି ଶବ୍ଦ ଥିବ । ''ନମସ୍କାର ! ଭଲ ଅଛନ୍ତି ତ ? ଆଜ୍ଞା ହଁ । ଧନ୍ୟବାଦ... ନମସ୍କାର !''

ଦୁର୍ଭାଗ୍ୟ ତ ଏଇଆ ଯେ ଯଦି କେହି ଦୁର୍ଦ୍ଦଶାଗ୍ରସ୍ତ ମଣିଷ କୋଉ ଅବିବାହିତ ମହିଳା ସାଙ୍ଗରେ କଥାବାର୍ତ୍ତା ହେଲାବେଳେ ଏଇ ଗୁରୋଟି ଶବ୍ଦ ଛଡ଼ା କିଛି ଅଧିକା ଶବ୍ଦର ବ୍ୟବହାର କରୁଛି; ତେବେ ଧରିନେବେ, କିଛି ଘଟିଗଲା । ସଂକ୍ଷେପରେ କହିଲେ କମଳକୁମାରୀ ଜୈନଙ୍କର ନିଯୁକ୍ତି ସେଇ ଜାଗାରେ ହୋଇଥିଲା । ଯାହା ଇଂରେଜ ଅଧିକାରୀମାନଙ୍କର ପାରିଭାଷିକ ଶବ୍ଦାବଳୀରେ ରାଜ୍ୟର ଜିଲ୍ଲା ଷ୍ଟେସନ୍ ବୋଲଉଥିଲା ।

ଜୌନପୁର ପ୍ରତିଷ୍ଠିତ ଧନୀ କୁଁବର ନିରଂଜନ ଦାସ ଜିଲ୍ଲା ଅଧିକାରୀଙ୍କ ସମ୍ମାନରେ ତାଙ୍କର ବଗିଗ୍ରରେ ବେଶ ଧୁମ୍‌ଧାମରେ ଭୋଜି ଆୟୋଜନ କରିଥିଲେ । ଚଉତରାରେ ସୁନେଲୀ ଜରିଲଗା ସାମିଆନା ଟଙ୍ଗା ହେଲା । ଅନେକ ରାତିଯାଏଁ ଭୋଜି ଗ୍ରଲିଥିଲା । ମହିଳାମାନଙ୍କ ପାଇଁ ସ୍ୱତନ୍ତ୍ର ବ୍ୟବସ୍ଥା ହୋଇଥିଲା । ରାନ୍ଧୁଣିଆମାନେ କେତେ ନା କେତେ ପ୍ରକାର ଖାଦ୍ୟ ତିଆରି କରିଥିଲେ ! ମୁସଲମାନ ଅତିଥିମାନଙ୍କ ଲାଗି ପାଗଳ ଡେପୁଟୀଙ୍କଠାରୁ ବବର୍ଚ୍ଚୀ ଆସିଥିଲେ । ପାଗଳ ଡେପୁଟୀ ନାଆଁରେ ଗୋଟାଏ ବଂଶ ଥିଲା । ଅନେକ ଦିନ ତଳେ ଗୋଟାଏ ଡେପୁଟୀ ସାହେବଙ୍କ ମୁଣ୍ଡ ଗୋଳମାଳ ହେଲା ଯେ ତା'ପରେ ପୂରାବଂଶର ସେଇ ନାଆଁ ପଡ଼ିଗଲା । ପାଣି ଭରିଲାବାଲା ଡାକ ଛାଡ଼ନ୍ତି— ''ଆରେ ପାଗଳ ଡେପୁଟୀ ଘରୁ ଜିନିଷ ଆସିଛି, ଓହ୍ଲେଇପକା !'' ଗଉଡୁଣୀକୁ କୁହାଯାଏ— ''ଆରେ ପାଗଳା ଡେପୁଟୀ ଘରେ ଗୁଆ ଦେଇ ଆସିବୁ ଲୋ ରାମରକ୍ଷୀ !''

ହେମକିରଣ ସେମିତି କୁଆଡ଼େ ହେଲେ ଯା' ଆସ କରୁ ନଥିଲେ । ତେବେ ରାଣୀ ନିରଂଜନ ଦାସଙ୍କୁ ବହୁତ କରି କହିବା ଫଳରେ ସିଏ ବି ଯାଇଥିଲେ । କଲେକ୍ଟରଙ୍କ ପତ୍ନୀଙ୍କ ସାଙ୍ଗରେ ଭେଟ ହେବ ବୋଲି ସହରର ସଂପନ୍ନ ମହିଳାମାନେ କେତେକ'ଣ ବସ୍ତ୍ର ଅଳଂକାର ମଣ୍ଡି ହୋଇ ନଥିଲେ, କିନ୍ତୁ ସ୍ୱୟଂ କମଳକୁମାରୀଙ୍କୁ ଦେଖିଲାବେଳକୁ ସେ ପୂରାପୂରି ମେମ୍ । ହାତରେ ଚୂଡ଼ି ପର୍ଯ୍ୟନ୍ତ ନଥିଲା । ନାକଫୁଲ ପଛକେ ଚୂଲି କି ଯାଉ ! ଫିକା ନୀଳରଙ୍ଗର ଶାଢ଼ୀ ପିନ୍ଧି ମସନଦକୁ ଟିକିଏ ଛାଡ଼ି ବସି ସବୁରି ସାଙ୍ଗରେ ହସି ହସି କଥା ହେଉଥା'ନ୍ତି ।

''ଆଲୋ ଝିଅ, ତୁମେ ତ ତମର ସଧବାପଣକୁ ବି ସତ୍ୟାନାଶୀ ଫେସନକୁ ସଅଁପି ଦେଇଛ !'' ନଗରପ୍ରମୁଖଙ୍କ ବେଗମ ନାକ ଉପରେ ଆଙ୍ଗୁଠି ରଖି ତାଙ୍କୁ କହିଲେ ।

"ଆରେ ହଁ, ସତେ ତ ? କ'ଣ ଏମିତି ବାଡ଼ିଭଳି ହାତ ନେଇ ବସିଛ । ଏମିତି ମେଲା ହାତ ଦେଖିଲେ କେମିତି ଛାତି ଥରିଯାଏ ।" ବେଗମ କାଜମୀ ତାଙ୍କ ହଁରେ ହଁ ଭରିଲେ ।

ଖେମର ଆଜି ଯେମିତି ଇଦ୍ ଥିଲା । ସେ ତା'ର ଗାଢ଼ ଯାମୁନୀ ରଙ୍ଗର ବନାରସୀ ଶାଢ଼ୀ ପିନ୍ଧିନେଇ ଥିଲା । ସାହିସାରା ବଡ଼ଭାଉଜ ଭାବରେ ଜଣା କିଶବରୀର ମା କୁଆଁରୀ ଝିଅଙ୍କ ଏତେ ସାଜିମାଜି ହେବାଟାର ଘୋର ବିରୋଧୀ । ତାଙ୍କ ଘରେ ତ ଝିଅମାନେ ଘୁଂଘଟ ବି ପାରି ପାରୁ ନଥିଲେ । ଜଗତର ଗତି ପ୍ରଭାବରେ ନୂଆ ନୂଆ ଝିଅମାନେ ସିଧାବଙ୍କା କରି ଘୁଂଘଟ ପକେଇବା ଆରମ୍ଭ କରି ଦେଇଥିଲେ । ଖେମ ଦୂରରୁ ଥାଇ କମଳକୁମାରୀଙ୍କୁ ଅନେଇ ରହିଥାଏ । କେତେ ସୁନ୍ଦର ! ପୁଣି ଏମ୍.ଏ.ପାସ । ଏମ୍.ଏ. ପାସ କରିଥିବା ଝିଅ ଖେମ ଆଉ କିଶବରୀ ଆଖିରେ ପୂରାପୂରି ଦିଅଁଦେବତା ଭଳି ।

କମଳ କୁମାରୀ ଜୈନ ସବୁ ଅତିଥି-ମହିଳାଙ୍କ ସାଙ୍ଗରେ ହସି ହସି ବେଶ ଶାଳୀନତାରେ କଥା ହେବାରେ ବ୍ୟସ୍ତ ଥିଲେ । ଆଉ ସେତେବେଳେ ସମସ୍ତଙ୍କର ମତ ହେଲା— ସେ ପୂର୍ବ କଲେକ୍ଟରର, ସେ ଡାହାଣୀ ମିସେସ ଭାର୍ଗବଠାରୁ ଢେର ଭଲ, ମିଳାମିଶା କଲାବାଲୀ ରାଣୀ ଝିଅଟେ !

ବାରଣ୍ଡାରେ ଥୁଆ ହେଇଥିବା ଫୁଲ ଗମଲାଗୁଡ଼ିକର ଉଢୁଆଳରେ ଖେମ ଆଉ କିଶବରୀ ବସିଥିଲେ । ମିନିଟେ ମିନିଟିଏରେ ହସି ବେଦମ ହେଇଯାଉଥିଲେ । ଗୋଟେ କଥା ହୋଇଥିଲେ ବା କୁହାଯାଇପାରନ୍ତା ! ଦଶ କଥା । ଉଦାହରଣ ସ୍ୱରୂପ, ମୋଟୀ ମିଶ୍ରାଣୀର ଗ୍ୱଲି ଦେଖ ! ଉପରେ ଥାଇ କୁଁବର ନିରଂଜନ ଦାସଙ୍କର ଷ୍ଟେଟ୍ ମେନେଜର ଲାଲ ଗଣେଶ ମହାଶୟ ବାରଂବାର ଅଗଣାକୁ ଆସି ପାଟି କରନ୍ତି— "ଏଁ ଓଢ଼ଣା ଟାଣିନିଅ, ଗଉଡ଼ ଭିତରକୁ ଆସୁଛନ୍ତି !" ତ ତାଙ୍କ ଗଳାରୁ ଏମିତି ସ୍ୱର ବାହାରୁଥିଲା, ଯେମିତି ହାରମୋନିୟମ ପର୍ଦ୍ଦାଗୁଡ଼ିକୁ ବର୍ଷା ଫିମ୍ପି ମାରିଯାଇଛି ।

ଏଥର ଯେତେବେଳେ ମାମୁଁ ଲକ୍ଷ୍ନୌରୁ ଘରକୁ ଆସିଲେ, ସେତେବେଳେ ସେ ଭୋଜିର ସବୁକଥା ମାମୁଁଙ୍କୁ ଶୁଣେଇଲା । କମଳ କୁମାରୀ ଏମିତି... କମଳ କୁମାରୀ ସେମିତି... । ମାମୁଁ ଚୁପ୍‌ଚାପ ସବୁ ଶୁଣିଗଲେ ।

(୩)

ଖେମ ଖାଇନେଇ ଶୋଇବାକୁ ଗଲା ଆଉ ଘରସାରା ଯେତେବେଳେ ନୀରବତା ଖେଳିଗଲା, ସେତେବେଳେ ଡାକ୍ତର ଆଫତାବ ରାୟ ଛାତ ଉପରକୁ ଆସି ଠିଆହେଲେ । ବଗିଚା ସେତେବେଳେ ଶୁନ୍‌ଶାନ୍ ଥିଲା । ଗରମ ଦିନ ସରିସରି ଯାଉଥିଲା । ଶୀତ ଆରମ୍ଭ ହୋଇ ଯାଇଥାଏ । ପୂର୍ବଦିଗିଆ ପବନ ଧୀରେ ଧୀରେ ବହୁଥାଏ । ତଳେ ଠାକୁରାଇନ୍‌ଙ୍କ ବଗିଚାପଟ ଗଳିରୁ ମୁସଲମାନ ସାହି ଆରମ୍ଭ ହୋଇଯାଏ । ତା'ପରେ ବଜାର । ମନ୍ଦ ଗେସ୍ ଲାଇଟ୍

ଲଣ୍ଡନ ଆଲୁଅ ଝଟକୁ ଥାଏ । ତା'ପରେ ପୁଲିସ ଲାଇନର ମଇଦାନ, ତା'ପରେ କଚେରୀ ଓ ସିଭିଲ୍ ଲାଇନ୍ । ସିଭିଲ୍ ଲାଇନ୍‌ରେ ଜିଲ୍ଲା ମେଜିଷ୍ଟ୍ରେଟ୍‌ଙ୍କ ବଡ଼ କୋଠି । ତା' ଉପରେ ୟୁନିୟନ୍ ଜେକ୍ ସଂଧ୍ୟା ଯାଏଁ ଶାନ୍ତିରେ ଉଡୁଥିଲା । ଏଇନେ ସବୁଠେଇଁ କେମିତି କ୍ଲାନ୍ତିର ନୀରବତା ଘେରି ରହିଥିଲା । ସାମନାରେ ସୁଲତାନ୍ ହୁସେନ୍ ଶର୍କୀଙ୍କ ସମୟର ଉଚ୍ଚା ଫାଟକ ଆଉ ମସ୍‌ଜିଦର ଉଚ୍ଚା ଉଚ୍ଚା ମୀନାର ଆକାଶ ତଳେ ପାଞ୍ଚଶହ ବର୍ଷରୁ ଅଧିକ ହେଲା ଏଇଭଳି ସ୍ତମ୍ଭିତ ଶାନ୍ତ ମୁଦ୍ରାରେ ଠିଆ ହୋଇ ରହିଥିଲେ ।

ସାରା ଜୀବନ ଆଫତାବ୍ ରାୟ ଏଇଆ ଭାବିଥିଲେ ଯେ ସେ ଆଉକିଛି କରିବେ ନାହିଁ । ତେବେ ଦୁନିଆ ତା ବାଟରେ ଥିଲା । ସେ କାମ ବି କରନ୍ତି, ଖାଆନ୍ତି, ବର୍ଷକୁ ଚାରିଥର ଜୌନପୁର ଆସି ଭଉଣୀ କଥାରେ ମୁଣ୍ଡ ଖେଳାନ୍ତି । ଜୀବନର ବୋଝ ଥାଇ କୌଣସି ପ୍ରକାରେ ଗାଡ଼ି ଚାଲିଥିଲା ।

କମଳ କୁମାରୀ ଏଇ ଦୃଶ୍ୟରୁ ଅଲଗା ହୋଇ କୃଷ୍ଣଚୂଡ଼ା ଗଛଗୁଡ଼ିକର ସେପଟେ ୟୁନିୟନ୍ ଜେକ୍ ଛାଇରେ ବିରାଜିତ ହୋଇଥିଲେ । ଅନେକ ଲୋକ ଅଛନ୍ତି, ଯୋଉ ପଛା ଭାବିବେ ତାକୁ ଆଦରି ନେବେ । ଆରାମରେ ସେଇଆରେ ଚାଲିବେ । ଏଇଠି କୌଣସି ପଛାର ନିର୍ଣ୍ଣୟ ହିଁ ହୋଇପାରୁ ନଥିଲା । ଜଣେ ପରେ ଜଣେ ଏଣେତେଣେ ଚାଲିଗଲେ ସମସ୍ତେ । ଆଫତାବ୍ ରାୟ ଯୋଉଠି ଥିଲେ ସେଇଠି ରହିଗଲେ ।

'କମଳ କୁମାରୀ.... ? ଲା ହୌଲ ବିଲା କୁବ୍‌ବତ' (ଶଇତାନକୁ ଧିକ୍)

ଯେତେବେଳେ ସେ ଡକ୍ଟରେଟ୍ ପାଇଁ ବିଶ୍ୱବିଦ୍ୟାଳୟରୁ ବିଲାତ ଗଲେ, ସେତେବେଳେ କମଳ କୁମାରୀ ତାଙ୍କୁ କହିଥିଲେ, 'ଆଫତାବ୍ ବାହାଦୁର, ତମର ତମ ନିଜଲାଗି ଭାରି ଗର୍ବ । ତେବେ ଦିନେ ତମର ସେ ଗର୍ବ ଭାଙ୍ଗିଯିବ, ଯେତେବେଳେ ମୁଁ କୁଆଡ଼େ ଚାଲିଯିବି ।'

'ତମେ କୁଆଡ଼େ ଚାଲିଯିବ ?'

'ଓଃ ହୋ ! .... ଝିଅଗୁଡ଼ା କୁଆଡ଼େ ଯାଆନ୍ତି !'

'ତାହେଲେ, ତମ ମତଲବ ହେଲା ଯେ ତମେ ବାହା କରିନବ ?'

''ମୁଁ କଣ ଆଉ ବାହା କରିନେବି ? ମୋର ବାହାଘର କରେଇ ନିଆଯିବ !'' ସେ ଚିଡ଼ିଲା ଭଳି ଉତ୍ତର ଦେଲା ।

''ଆରେ ଯା' ଆଉ ଆଫତାବ୍ ରାୟ ମନ ଖୋଲି ହସିଥିଲେ । ମୁଁ ଏ ଜାଲରେ ପଡ଼ିବା ମଣିଷ ନୁହେଁ । ତମ ଝିଅମାନଙ୍କର ପସନ୍ଦ ବି କେମିତି । ତମଭଳି ମଡର୍ଣ୍ଣ ଝିଅମାନେ ମନେ ମନେ ତାକୁ ପସନ୍ଦ କରନ୍ତି ଯେ ତାଙ୍କରି ଆର୍ଥିକ ଓ ସାମାଜିକ ସ୍ତରକୁ ସୁହାଏ । ବାକି ସବୁ ତୁଚ୍ଛା କଥା । ପସନ୍ଦ ତ କୋଉ ଗୋଟେ ଖାସକୁ ହେଇଥିବ ନା ତମର !''

'ହଁ ଏକଦମ ଖାସ୍.... ଆଫତାବ୍ ବାହାଦୁର ।' ସେ ରାଗରେ ପୂରା ମଉନ ହୋଇଯାଇଥିଲା ।

ସେ ଗ୍ରନ୍ଥାଗାରରେ ଥିଲା । ଆଉ ସେ ନିଜେ ବେଶ ଧୁମଧାମ୍‌ରେ ବାଦଶାହ୍ ବାଗରେ ବିରାଜିତ ହୋଇ ରହିଥିଲେ । ୟୁନିୟନର ସଭାପତି, ଭାଷଣ ଦେଉଥିଲେ । ଗୋଟାଏ ମିନିଟ୍ ବି ଶାନ୍ତିରେ ବସୁ ନଥିଲେ, ଯେମିତି କମଳ ନୋଟିସ ନଉ ନଥିଲେ ବି ନବ । ସେ ଏ.ପି ସେନ୍ ରୋଡ୍‌ରେ ରହୁଥିଲା ଆଉ ପ୍ରତିଦିନ ସାଇକଲରେ ଗ୍ରନ୍ଥାଗାର ଆସୁଥିଲା । ଲକ୍ଷ୍ନୌରେ ବଡ଼ ପ୍ରଦର୍ଶନୀଟିଏ ହେଲା । ସେ ବି ପରିବାର ସାଙ୍ଗରେ ସଂଗୀତ ସମ୍ମିଳନୀକୁ ଯାଇଥିଲା । ସେଠି ୟୁନିଭରସିଟିବାଲେ ମହଗଲ ସାହବଙ୍କୁ ଘେରି ରହିଥିଲେ । ଯୋଉ ଗୀତର ପରମାତ୍ମା ୟୁନିଭର୍‌ସିଟି ଆଉ ଗ୍ରନ୍ଥାଗାର ଭିତରୁ ହେଉଥିଲା, ସେଇ ଗୀତ ବାରମ୍ବାର ମହଗଲଙ୍କୁ ଗାଇବାକୁ ପଡୁଥିଲା । ଭାଇ ଆଫତାବ ବି ପାର୍ଟି କରିବାକୁ ସାମନାରେ ଥିଲେ । ଆଗ ଧାଡ଼ିରେ କମଳଙ୍କୁ ବସିଥିବା ଦେଖି ଅପ୍ରତିଭ ହୋଇ ତୁରନ୍ତ ଚୁପ୍ ପଡ଼ିଗଲେ । ବେଶ ଗମ୍ଭୀର ହୋଇ ବନ୍ଧୁମାନଙ୍କୁ କହିଲେ, "ଆରେ ରହ, କ'ଣ ଏମିତି ହୋ ହଲ୍ଲା କରୁଛ ?" ସେ କଥାରେ ବେଶ ସମ୍ମାନ ହେଲାଭଳି ଅସକରୀ ବିଲଗ୍ରାମୀ କହିଲେ, "ଉସ୍ତାଦ୍ ! ଏ ଆମର ଆଫତାବ୍, ଏ ଝିଅଟି ଉପରେ ଭଲ ଇଂପ୍ରେସନ୍ ପକେଇବା ମତଲବରେ ଲାଗିଛି । ଏଣିକି ଈଶ୍ୱର ଭରସା ।"

"ବି.ଏ. ପରେ ତମେ କରିବ କ'ଣ ?" ଦିନେ ଆଫତାବ୍ ରାୟ କମଳଙ୍କୁ ପଚାରିଲେ ।

"ମୁଁ ଜାଣିନି !" କମଳ ଉତ୍ତର ଦେଲା । ସେଇ କଥାରେ ହୁଏତ ଏଇ ସଂକେତ ଥିଲା— ମୁଁ ତ କିଛି ଜାଣିନାହିଁ ତମେ ହେଲେ କିଛି ପ୍ରୋଗ୍ରାମ କର ।"

କିଛି ଦିନ ପରେ ସେ ସିଧାସଳଖ ବିଲାତ ଚାଲିଗଲେ । ସଂଭବତଃ ତାଙ୍କର କେରିଅର ତାଙ୍କପାଇଁ, ତାଙ୍କର ପରିବାର ପାଇଁ କମଳର ବ୍ୟକ୍ତିତ୍ୱଠାରୁ ଅନେକ ମହତ୍ତ୍ୱପୂର୍ଣ୍ଣ ଥିଲା ।

କିନ୍ତୁ ଦିନେ ଲଣ୍ଡନରେ ସେ ଯେତେବେଳେ ସିନେଟ୍ ହାଉସ ଲାଇବ୍ରେରୀରୁ ଘରକୁ ଫେରୁଥିଲେ, ସେତେବେଳେ ବାଟରେ ମହିପାଳ ସାଙ୍ଗରେ ଭେଟ ହେଲା । ସେଇ ଦୂରରୁ ଡାକ ପକେଇଲା, "ଚା ପିଇବାକୁ ଯିବ ତ ଘଟଣାଟିଏ ଶୁଣେଇବି । କମଳ କୁମାରୀର ଜଗନ୍ନାଥ ଜୈନ ସାଙ୍ଗରେ ବାହା ହେଇଗଲା ! ସେଇ ପଇଁତ୍ରିଶ ବେତ୍‌ବାଲା ।"

"ଏ ଝିଅମାନେ ବି ବେଶ ବିଚିତ୍ର ଆଉ ଫାଲତୁ ।" ସେଦିନ ଏଇ ଫଇସଲାରେ ପହଞ୍ଚିଥିଲେ ଆଫତାବ ରାୟ । 'ଏମାନଙ୍କୁ ବୁଝିବା ଆମ କ୍ଷମତାର ବାହାର କଥା । ମିଆଁ ସେ ଯୋଉ ଭାରି ଇଣ୍ଟଲେକ୍‌ଚୁଏଲଙ୍କ ଗୁରୁ ଦେଖେଇ ହେଉଥିଲା, ଏଇନେ ଗ୍ଳେଡ୍ ହୋଇଥିବ । ଜଗନ୍ନାଥ ଜୈନ ମାଇଁ ଫୁଟ୍ । କିଏ ଥିଲା ସେଇ ଉଲ୍ଲୁ ! ମୁଁ ତାକୁ ଦେଖିଛି କେବେ ?" ମହିପାଳର କୋଠରିରେ ପହଞ୍ଚି ଫାୟାରପ୍ଲେସ୍‌ରେ ନିଆଁ ଧରେଇ ସେ ପଚାରି ଦେଲେ ।

ମହୀପାଳ ରାୟଜାଦା ଝରକାରୁ ନଇଁ ବାହାର ସଡ଼କକୁ ଦେଖିଥିଲା, ଯେଉଁଠି ସାରାଦିନ ଠେଲାବାଲାଏ ପାଟି ଚିରିଚିରି ରଡ଼ି ଛାଡ଼ିଲା ପରେ ଏଇ ସେମାନଙ୍କ ପରିବା

ଗାଡ଼ିଟି ମାନ ଟାଣି ମୁଣ୍ଡ ନୁଏଇଁ ଗ୍ଲଲିଥିଲେ । ସଂଧ୍ୟାରେ କାଳିମା ଆକାଶରେ ଘେରି ଆସୁଥିଲା । ଜୀବନ ବେଶ ବିଷଣ୍ଣ ବୋଲି ସେ ଭାବିଥିଲା । ସେ ଆଫତାବ୍ ରାୟଙ୍କୁ କହିଥିଲା— ମୁଁ ତାକୁ ପାଟଣାରେ ଦେଖିଥିଲି । କଳା ହୋଇ ମଣିଷଟିଏ, ଚଷମା ଲଗାଏ। ତା'ର ଚେହେରା କିଛିଟା ବିଲୁଆ ଭଳି ।

'ଓଲୁ ଟେ ବି ନା କ'ଣ ?' ଆଫତାବ୍ ରାୟ ପଗ୍ଗରିଥିଲେ ।

'ନିପଟ...ନିପଟ ଓଲୁ !' ମହିପାଳ ରାୟଜାଦା ଉତ୍ତର ଦେଲା

'ତାହେଲେ କମଳ ତା' ସାଙ୍ଗରେ ସୁଖରେ ରହିବ କେମିତି ?' ଆଫତାବ୍ ରାୟ୍ ମହୀପାଳକୁ ପଗ୍ଗରିଥିଲା ।

'ମିଆଁ ଆଫତାବ ବାହାଦୁର !' ମହୀପାଳ ଓଲଟି ଗ୍ଲହିଁ ସଂବୋଧିତ କଲା । କହିଲା, ''ଏ ଝିଅଗୁଡ଼ିକ, ଯେତେ ଗ୍ଲାକ ଦିଶନ୍ତି, ସେତିକି ସୁଖରେ ରହନ୍ତି ଓଲୁଙ୍କ ସାଙ୍ଗରେ ! ପଶିଲା ମଗଜରେ, ମୁଁ ଯାହା କହୁଛି !''

'କ'ଣ ସବୁ ବକୁଛୁ ?' ଆଫତାବ୍ ରାୟ ବେଶ ଉଦାସ ହୋଇ କହିଲେ ।

ମହୀପାଳକୁ ରାଗ ଚଢ଼ିଲା ସେତିକିବେଳେ । ବିରକ୍ତ ହୋଇ ଉତ୍ତର ଦେଲା— ''ତାହେଲେ ମିଆଁ, କିଏ ତତେ ମନାକଲା ସେତେବେଳେ ତାକୁ ବାହାହେବାକୁ ଯେ ଏଇନେ ବୋର୍ କରୁଛୁ ? ସେ କ'ଣ ତୋତେ ଆଫତାବ୍ ବାହାଦୁର ମୁଁ ତମକୁ ବାହା ହେବାକୁ ଗ୍ଲହୁଁଛି ବୋଲି କହିଥା'ନ୍ତା ! ଆଉ ଧରିନେ ସେ ଯଦି ନିଜେ ଅସ୍ୱୀକାର କରିଦେଇ ଥାଆନ୍ତା, ତା'ହେଲେ କୋଉ ପ୍ରଳୟ ହୋଇଯାଇଥା'ନ୍ତା ? ମିଆଁ ସେ ଝିଅଟିଏ ନା ଖୋଦ୍ ଆଦିମାତା ? ତୋତେ ଛାଞ୍ଚୁଣୀ ଧରି ପିଟି ଥାଆନ୍ତା ନା କ'ଣ ? କିନ୍ତୁ ତୁ କହି ମଧ୍ୟ ଦେଲୁନାଇଁ। ରାଜି ଖୁସିରେ ସବୁ ତୁଟିଗଲା । ଭଲ ହେଲା, କିଆଁ ମୁଣ୍ଡକୁ ନେଇଥା'ନ୍ତୁ ସେ ଝମେଲା ? କାରଣ ମୋ ବିଗ୍ଲରରେ ସେ ଆଙ୍ଗୁଠି ଉଠେଇ ଭାରି ବୁଦ୍ଧିମାନୀରେ କହିଛି— ବାହାଘରର ବରଷେ ପରେ ସବୁ ବାହା ଏକା ଭଳି ହୋଇଯାଏ । ତୁ ତ ଜଗନ୍ନାଥ ଜୈନଙ୍କୁ ଧନ୍ୟବାଦ ଦେବା କଥା ଯେ ସେ ତତେ ଏକ ବଡ଼ ବୋଝରୁ ମୁକ୍ତି ଦେଇଛି । ବରଂ ସେ ତୋ ପାଇଁ ପୂରାପୂରି ସଂକଟମୋଚନ ।''

''ଭାରି ଫାଲତୁ ତୁ !'' ଆଫତାବ୍ ରାୟ ବି ବିରକ୍ତ ହୋଇ କହିଥିଲେ ।

ଲକ୍ଷ୍ନୌ ଆସି ସଂଯୋଗକୁ ଦିନେ ଆଫତାବ୍ ରାୟ ଏ.ପି.ସେନ୍ ରୋଡ୍ ଦେଇ ଗଲେ । ସାମନାରେ କମଳର ବାପାଙ୍କର ଲାଲ ରଙ୍ଗର ବଡ଼ କୋଠାର ପୋର୍ଟିକୋରେ ଯାମୁନୀ ଫୁଲର ଲତା ବେଢ଼ି ରହିଥିଲା । ଏକଦା ଏଠି କେତେ ଗହଳଚହଳ ହେଉ ନଥିଲା ! କମଳର ସବୁ ଭାଇଭଉଣୀ ମିଶି ନିଜର ଅର୍କେଷ୍ଟ୍ରା କରିଥିଲେ । କିଏ ବଂଶୀ ବଜେଇଲେ କିଏ ଜଳ ତରଙ୍ଗ । କମଳ ତବଲା ବଜଉଥିଲା । ଗୋଟାଏ ଭାଇ ଭାୟୋଲିନ୍‌ର ଓସ୍ତାଦ୍ ଥିଲା । ସମସ୍ତେ ମିଶି ଜୟଜୟନ୍ତୀ ଆରମ୍ଭ କରି ଦେଉଥିଲେ— 'ମୋରେ ମନ୍ଦିର ଅବଲୋ ନହୀଁ ଆଏ... କୈସୀ ଚୁକ ଭୈୟୀ ମୋସେ ଆଲୀ ।' ସେଠିକି ଅର୍ଚ୍ଚନା ବେନର୍ଜୀ

ଆସିଯାଏ, ଆଉ କୋକିଳଭଳି ମଧୁର କଣ୍ଠରେ ଗାଏ..... 'ଆମି ପାହାଡ଼ୀ ଝୋରନା ମୁକୁର ମୁକୁରା ବୋଜାଏ ହୋ.... ।' ରବିବାର ସାରାଦିନ ବେଡ୍‌ମିଣ୍ଟନ ଜମେ । ପ୍ରତିଥର ଆଫତାବ ରାୟ ଏମାନଙ୍କ ସାଙ୍ଗରେ ପ୍ରାୟ ରହୁଥିଲେ । ଆଉ ଯଦି ଦିନେ ବିଲାତ ଯିବାକୁ ଖସି ଗ୍ଲଲିଯିବେ ତ ସେମାନଙ୍କର ଦୋଷ କ'ଣ ? ସେମାନେ ତ ଆଉ ମନେ ମନେ ଝିଅକୁ ବେଙ୍କ୍‌ର ସେଫ ଡିପୋଜିଟ୍‌ରେ ରଖିଦେଇ ପାରିବେ ନାହିଁ ! ତା'ପରେ ଜଗନ୍ନାଥ ଜୈନଙ୍କ ଭଳି ଏକ ସଂବନ୍ଧ ଭାଗ୍ୟଶାଳୀମାନଙ୍କ ଭାଗ୍ୟରେ ହିଁ ଜୁଟିଥାଏ ।

ତା'ପରେ ଦିନେ ସେ କମଳକୁ ଅମୀନାବାଦରେ ଦେଖିଲେ । ସେ କାରରୁ ଓହ୍ଲେଇ ତା'ର ଶାଶୁଘର ଲୋକଙ୍କ ସାଙ୍ଗରେ ମନ୍ଦିରକୁ ଯାଉଥିଲା । ସେ ଲାଲ ଶାଢ଼ୀ ପିନ୍ଧିଥିଲା । ପାଦରେ ଅଳତା ନାଇଥିଲା । 'ଆଲୀରୀ ସାଇଁ କେ ମନ୍ଦିର ଦୀୟା ବାର ଆଉଁ କର ଆଉଁ ସୋଲହ ସିଂଗାର ।'

ଖରାଦିନର ସଂଧ୍ୟା । ଅମୀନାବାଦ ଆଲୁଅ ଝଲମଲ ଦିଶୁଥିଲା । ପବନରେ ଖସ୍ ଆଉ ଯୂଇର ମହକ ଭରି ରହିଥିଲା । ମନ୍ଦିରରେ ଆରତି ଘଣ୍ଟା ନିରନ୍ତର ବାଜୁଥିଲା ।

ସେତେବେଳେ ଆଫତାବ ରାୟ ବିଶ୍ୱବିଦ୍ୟାଳୟରେ ଇତିହାସ ବିଭାଗର ଗାଦି ସଂଭାଳି ରହିଥିଲେ । ସାଥୀମାନଙ୍କ ସାଙ୍ଗରେ ଗୋଷ୍ଠୀ ଜମୁଥିଲା- ମଉଜ ହେଉଥାଏ । ଟେନିସ୍ ଖେଳା ଗ୍ଲଲିଥାଏ । ସୂଫୀ ମତର ଇତିହାସ ଉପରେ ବହିଟିଏ ଲେଖୁଥିଲେ— ମୁଁ ଯାହା ନୁହେଁ ତାହା, ମୁଁ ସେଇଆ ଯାହା ମୁଁ ନୁହେଁ । ସବୁ ଜିନିଷ ବାକି ସବୁ ଜିନିଷ । ଭଗବାନ୍ କୃଷ୍ଣ ଯେତେବେଳେ ଅର୍ଜୁନଙ୍କୁ କହିଲେ.... ଆଉ ପ୍ରିନ୍ସ ଅର୍ଜୁନ.... 'ଆରେ ଯା' ମଝିରେ ଅସକରୀ ଧମକେଇଲା ଭଳି କହେ— "ଯଦି ତୁ ଏଇ ମତଲବରେ ଥାଉ ଯେ ପ୍ରଫେସର ଡି.ପି. ମୁଖାର୍ଜୀଙ୍କ ଭଳି ମହାଗୁରୁ ପାଲଟି ବସିଯିବୁ, ତା'ହେଲେ ତୁ ଭୁଲ୍ କରୁଛୁ । ଡାକ୍ତର ଆଫ୍‌ତାବ୍ ରାୟ, ଆମେ ମାରି ମାରି ତୋର ଚେହେରା ବିଗାଡ଼ି ଦେବୁଁ ।" ମହୀପାଳ କହୁଥିଲା ।

ଜୌନପୁର ଆସି ସେ ଖେମକୁ ଦେଖନ୍ତି । ଯୋଉ ଆଗ୍ରହରେ ସେ ଲୁଣ ମରିଚ ଗୋଳେଇ ଆଳୁ ସିଝା ଖାଉଛି— କଲ୍ପକ ନାଚ ନାଚୁଛି— 'ଜଲ ଭରନେ ଚଲୀ ଗୀ ଗୋଇୟାଁ । ଆଁ ଆଁ ଗାଇ ବୁଲୁଛି ।' ସିଏ ବି ସେଇ କମଳ କୁମାରୀ ଜାତିର ।

"ଆରେ ଏ ପାଗଳୀ, କହୁନୁ କ'ଣ କରିବୁ ତୁ ?" ସେ ପ୍ରଶ୍ନ କରନ୍ତି ।

"କିଏ ଜାଣେ ମାମୁଁ," ସେ ଭାରି ନିରୀହ ପଣରେ ଉତ୍ତର ଦିଏ ।

ଛାତ ଉପରେ ବୁଲୁ ବୁଲୁ ସେ ନିମ ଛାଇ ତଳକୁ ଆସିଗଲେ । ସାମନାରେ ଅନେକ ଦୂରରେ ସିଭିଲ ଲାଇନ୍ସର ଗଛମାନଙ୍କ ଭିତରେ ଲୁଚି ରହିଥିବା ଜିଲ୍ଲା ଅଧିକାରୀଙ୍କ କୋଠିରେ ଗେସ ଲାଇଟ୍ ଜଳିଲାଣି । ସେଦିନ ଜହ୍ନ ରାତି । ଆଉ ମୁସଲମାନ ସାହି ପଟୁ ମୋହର୍ରମର ନିଷାଣ- ସ୍ୱର ଧୀରେ ଧୀରେ ଜୋର ଜୋର ଶୁଭିବାକୁ ଆରମ୍ଭ କରିଥାଏ ।

ମୋହର୍ରମ ଆସିଗଲା । ଆଫତାବ୍ ରାୟଙ୍କର ମନେପଡ଼ିଲା, ହେଲପାରେ ଏ ବର୍ଷ ମୁଣ୍ଡ ଫଟାଫଟି ହେବ । ଅନେକ ଦିନରୁ ହେଇନାହିଁ । ସେ ଭାବିଲେ ।

ତେବେ ଇଂରେଜମାନଙ୍କ ନୀତି ହେଲା— ଯୋଉ ଇଲାକାରେ ମୁସଲମାନ ଅଧିକ, ସେଠାରେ ହିନ୍ଦୁ ଅଧିକାରୀ ରହିବେ ଆଉ ହିନ୍ଦୁଙ୍କ ଇଲାକାରେ ମୁସଲମାନ ନିଯୁକ୍ତ ହେବେ। ସେଥିରେ ଭାରସାମ୍ୟ ରହିପାରିବ ।

ହିନ୍ଦୁ ମୁସଲମାନଙ୍କ ମଧ୍ୟରେ ସାମାଜିକ ସ୍ତରରେ ସେଭଳି ବିଶେଷ କିଛି ତଫାତ୍ ନଥିଲା । ବିଶେଷକରି ଗାଁଗହଳରେ ସ୍ତ୍ରୀଲୋକମାନେ ଅଧିକାଂଶ ଶାଢ଼ୀ ଆଉ ଢିଲା ପାଇଜାମା ପିନ୍ଧୁଥିଲେ । ଅବଧର ଅନେକ ପୁରୁଣା ପରିବାରରେ ବେଗମମାନେ ଏ ପର୍ଯ୍ୟନ୍ତ ଲହଙ୍ଗା ହିଁ ପିନ୍ଧୁଥିଲେ । କୁମାରୀ ଝିଅମାନେ, ଉଭୟ ହିନ୍ଦୁ ଓ ମୁସଲମାନ, ସିଧା ପାଇଜାମା ପିନ୍ଧୁଥିଲେ । ହିନ୍ଦୁମାନେ ତା'କୁ 'ଅଜାର' କହୁଥିଲେ । ପେଶା ବେଉସାର ବିଭାଜନ ବି ବେଶ୍ ରୋଚକ ଥିଲା । ପୋଲିସ୍ ବିଭାଗରେ ଶତକଡ଼ା ଅଶିଭାଗ ମୁସଲମାନ ଥିଲେ । ଶିକ୍ଷା ବିଭାଗରେ ସେମାନେ ସେତିକି କମ । ବେପାର ତ କେତେବେଳେ ବି କୋଉ ମୁସଲମାନ ଭାଇ ଠିକ୍ ବାଗରେ କରିନାହିଁ । କେତୋଟି ପେଶା ଏମିତି ବି ଥିଲା, ଯାହା ଖାସ୍ ମୁସଲମାନଙ୍କର । ତାରି ଦମ୍ଭରେ ରାଜ୍ୟର ଉଦ୍ୟୋଗ କଳା ସ୍ଥାପିତ ହୋଇ ରହିଥିଲା । ତେବେ ଈଶ୍ୱରଙ୍କ କୃପାରୁ କିଛିଟା ଏଭଳି ବ୍ୟବସ୍ଥା ଥିଲା, ଯାହା ଫଳରେ ସବୁ ଲାଭ ମଧ୍ୟସ୍ଥି ମାରି ଖାଇ ଯାଉଥିଲେ । ଯେତିକି ବଂଚି ଯାଉଥିଲା ସେତିକିରେ କରଜ ସୁଝିବା, ଝିଅ ପାଇଁ ଯୌତୁକ ଖଂଜିବା ଆଦି କାମ ହେଉଥିଲା ।

ଭାଷା ଓ ବ୍ୟଂଜନା ଏକାଭଳି ଥିଲା । ମୁସଲମାନ୍ ପିଲାମାନେ ବର୍ଷାପାଇଁ ପ୍ରାର୍ଥନା କରିବାକୁ ମୁହଁ ଲାଲ ହଳଦିଆ କରି ଗଳିକନ୍ଦିରେ ଟିଣ ବାଡ଼େଇ ପାଟି ଫିଟେଇ ଯାଉଥିଲେ— 'ବରସେ ରାମ ଧଡ଼ାକେ ସେ.... ବୁଢ଼ିୟା ମରଗୟୀ ଫାକେ ସେ ।' ଖେଳ କଣ୍ଢେଇର ବରଯାତ୍ରୀ ବାହାରୁଥିଲା । ଜପା ଗ୍ୱଲିଥାଏ... 'ହାତୀ ଘୋଡ଼ା ପାଲକୀ— ଜୟ କହ୍ନୈୟା-ଲାଲକୀ ।' ପର୍ଦ୍ଦା କରୁଥିବା ମୁସଲମାନ ମାଇକିନାମାନେ, ଯୋଉମାନେ କୋଉ ହିନ୍ଦୁପୁରୁଷ ସାଙ୍ଗରେ କେବେହେଲେ କଥା ବି ହେଇ ନାହାନ୍ତି, ରାତିରେ ଢୋଲକ ବାଜିଲେ ଝୁମି ଝୁମି ଗାଉଥିଲେ— 'ଭରୀ ଗଗରୀ ମୋରୀ ଡରକାୟୀ ଶ୍ୟାମ' । କୃଷ୍ଣ କହ୍ନୈୟାର ଏଇ ବର୍ଣ୍ଣନାରେ ସେମାନଙ୍କ ଇସ୍ଲାମ ଉପରେ କୌଣସି ଆଞ୍ଚ ଆସୁନଥିଲା । ଏ ଗୀତ, କଜରୀ ଆଉ ଖ୍ୟାଲ, ଏ ବ୍ୟଂଜନା ଓ ଭାଷା ସମସ୍ତଙ୍କର ଅତ୍ୟନ୍ତ ପ୍ରିୟ, ଆକର୍ଷକ, ମଧୁର ଆଉ ଇଜମାଲୀ ସଂପତ୍ତି ଥିଲା । ସେଇ ସଭ୍ୟତା, ଯା'ର କ୍ଷେତ୍ର ମିର୍ଜାପୁର, ଜୌନପୁରଠାରୁ ଲକ୍ଷ୍ନୌ ଆଉ ଦିଲ୍ଲୀ ପର୍ଯ୍ୟନ୍ତ ବିସ୍ତୃତ ହୋଇଥିଲା ଆଉ ଏକ ସଂପୂର୍ଣ୍ଣ ସ୍ପଷ୍ଟ ରୂପରେ ରୂପବନ୍ତ ହୋଇଥିଲା । ତା'ରି ଭିତରେ ଆଠଶହ ବର୍ଷର ସାଂସ୍କୃତିକ ବିକାଶ ଅତ୍ୟନ୍ତ ଗଭୀର ଓ ସୁନ୍ଦର ରଙ୍ଗ ଭରିଥିଲା ।

ଡାକ୍ତର ଆଫତାବ୍ ରାୟ, ଯାହାଙ୍କ ନାମ ହିଁ ଏଇ ମିଳିତ ସଂସ୍କୃତିର ସୌନ୍ଦର୍ଯ୍ୟ ବୋଧ କରଉଥିଲା; ଥରେ ଗୋଟାଏ ପୁସ୍ତକ ଲେଖିବେ ବୋଲି ଭାବିଥିଲେ— କିଭଳି ଭାବରେ ପଞ୍ଚଦଶ ଶତାବ୍ଦୀରେ ସୁଫୀ ଆଉ ଭକ୍ତି ଆନ୍ଦୋଳନଦ୍ୱାରା ନୂତନ ଚେତନାର ବିକାଶ ହେଲା । ତେବେ ମୁଣ୍ଡକୁ କେତେବେଳେ ଘଡ଼ିଏ ହେଲେ ଆରାମ ମିଳିଲା ? ପହିଲା କରି ଡେଇଁ ପଡ଼ିଲା କମଳକୁମାରୀ, ତା'ପର ତାଙ୍କର ଆର୍ଥିକ ଅଭାବ । ତାଙ୍କୁ ବିଲାତରୁ ଫେରିଆସି ବନାରସରେ ଅଧ୍ୟାପକ ହେବାକୁ ପଡ଼ିଲା । ଯୋଉଠି ହିନ୍ଦୀ ବା ହିନ୍ଦୁ ଘାନୀର ଗୁଣ ଦିନରାତି ଗାଇବାକୁ ହୁଏ । "ମୁଁ ତୁମମାନଙ୍କୁ କହୁଛି କି ଶୁଦ୍ଧ ହିନ୍ଦୁ; ଗୋ ରକ୍ଷା ଆଉ ରାମରାଜ୍ୟ; ଏସବୁ ଗୋଟାଏ ଲେଖାଏଁ ବଡ଼ ବିପତ୍ତି । ଏ ବିପତ୍ତିରୁ ଦୂରେଇ ରହ ।" ସେ ଥରେ ଗୋଟାଏ କନଫରେନ୍ସର ପେଣ୍ଡାଲରୁ ଜୋର ଦେଇ ଦେଇ କହିଥିଲେ ।

ଆଫତାବ୍ ରାୟଙ୍କର ସାଙ୍ଗମାନେ ତାଙ୍କୁ 'ଜୌନପୁରର କାଜୀ' ବୋଲି ଥଟ୍ଟାରେ କହୁଥିଲେ । 'ଏ ଯୋଉ ପୁସ୍ତକ ତମେ ଲେଖିବାକୁ ଚାହୁଁଛ, ତା' ନାଁ ରଖିବ 'ଜୌନପୁରର କାଜୀ' ଓରଫ ମୁଁ ଏଇ ସହରର ଚିନ୍ତାରେ ଝଡ଼ିଗଲି କାହିଁକି ?'

ରାତି ପବନରେ ଥଣ୍ଡା ବଢ଼ି ସାରିଥାଏ । ନିମପତ୍ର ପବନ ହାନ୍ଦୋଳାରେ ଶନ୍ ଶନ୍ କରୁଥା'ନ୍ତି । ହଁ, ଜୀବନରେ ଅନେକ କିଛି ଉଦାସୀ ନୀରବତା ଓ ଅନ୍ଧକାର ଭରି ରହିଥିଲା ।

ସାହିର ଘରମାନଙ୍କରେ ମନ୍ଥର ଆଲୋକ ଦିଶୁଥାଏ । ବଡ଼ ଭାଉଜଙ୍କ ଘରେ ବଡ଼ ଅଗଣାରେ ମଜଲିସ୍ ପାଇଁ ଯୋଉ ଗେସ ହାଣ୍ଡି ବସିଥିଲା, ତା'ର ଆଲୁଅ ରାତିର ନୀରବତାରେ ବେଶ ଡରେଇଲା ଭଳି ଲାଗୁଥିଲା, ଯେମିତି ମହୁଲ ବଣରେ ଅଗି-ଭୂତ ।

ମଜଲିସ୍‌ରେ କାନ୍ଦଣା ସ୍ୱର ପୂରବୀ ପବନରେ ଭାସିଆସି ଘଡ଼ିଘଡ଼ିକେ ଜୋର ଜୋର ଶୁଭୁଥାଏ । ଛକରେ ନିରଂଜନ ଦାସଙ୍କ ସେଇଠି ମୋହର୍ରମର ସରବତ ବ୍ୟବସ୍ଥା ଜାଗାରେ ନିରନ୍ତର ନହବତ ବାଜୁଥାଏ ।

## (୪)

'ଆଶୂର ରାତିର ପାଗଳୀ, ତା'ପୁଣି ମୁଣ୍ଡଠେଇଁ ବଇଠାଜାଳି' ମୁନ୍ଦନ ପିଉସୀ ତକିଆ ଉପରେ ଉଇଖିଆ ବହିରଖି ପଢ଼ିବା ଆରମ୍ଭ କରିଦେଲା । (ଆଶୂ-ର ମୋହର୍ରମର ଦଶମ ଦିନ । ଶବ-ରାତି । ବ୍ୟଂଜକ ଅର୍ଥ— ମନ ନଥାଇ ଔପଚାରିକ କାମ କରିବା= ମୋହର୍ରମ ବେଳେ ଦୀପଜାଳି ରଖିବା ବିଧି ମଧ୍ୟ) ।

'ଏ ଅନେଇ ରହ ଅଲୀ ଅକବର ଚେହେରାକୁ ।' ବୁଙ୍କନ୍ ପାତଳା ଅଥଚ ତୀବ୍ର ସ୍ୱରରେ କଥାଟିର ସମର୍ଥନ କଲା । (ବ୍ୟଂଜକ ଅର୍ଥ— ନିରର୍ଥକ, ଅଥଚ ମହତ୍ତ୍ୱପୂର୍ଣ୍ଣ ଭଳି ଲାଗିଥିବା)

'ଦେଖ ଦେଖ ଏ ଦୁହିଁଙ୍କ ବୁଦ୍ଧି ବାଉଳା ଧଇଲାଣି । ଆଲୋ ଏ ନଣନ୍ଦେଇ, ଶୁକ୍ଳପକ୍ଷ ନଅଁମୀ ରାତିର ଶୋକ-ଗୀତ କାଢ଼ି ବସିଗଲୁ ନା' ।' ବଡ଼ ଭାଉଜ ରୋଷେଇ ଘରୁ ଡାକ ଛାଡ଼ିଲେ ।

'ରାମ ରାମ ! ରଇପୋଡ଼ା ଏମିତି ତତବଡ଼ୀ ପଡ଼ିଛି । ଏଣିକି କୋଉ କଥା ବି ମନେରହୁନି । ଏ ଝିଅ ! ମୁଁ ତ ମୋର ଚଷମା ଆଣିବା ବି ଭୁଲିଗଲି । ମତେ କିଛି ହେଲେ ବୁଝାପଡୁଛି ଏବକୁ ? ଆଉ ମୁଁ ଆସି ଆଉଜି ପଡ଼ି ପଡ଼ି ବସିଲିଣି । ଏ ଭଉଣୀ ନିୟାଜୀ ବେଗମ୍, ଦବୁଟି ତୋ ଚଷମାଟା !' ମୁଦ୍ଦନ ପିଉସୀ ଦୀର୍ଘନିଶ୍ୱାସ ପକେଇ କହିଲା ।

ନିୟାଜୀ ବେଗମ ଚଷମା ଖୋଲି ଦେଇଦେଲେ । ମୁଦ୍ଦନ ପିଉସୀ ନାକ ଉପରକୁ ଚଢ଼େଇ ଦେଇ ପୁଣି ପଢ଼ିବା ଆରମ୍ଭ କରିଦେଲେ ।

'ମୁଦ୍ଦନ ପିସି ମ, ନିଜମୁଲ ମିଲ୍ଲତ କୀ ବ୍ୟାସ (ଧର୍ମପୋଥି) ଆଣିଛ ନା ନାହିଁ !' ବଡ଼ ଭାଉଜ ଆସନ ତଳକୁ ଆସି ବେଶ୍ ଆତ୍ମବିଶ୍ୱାସରେ ବସିପଡ଼ି ପଗ୍ରରିଲେ ।

'ଝିଅଙ୍କୁ ପଗ୍ରର ବଡ଼ ଭାଉଜ ! ନଜମୁଲ ମିଲ୍ଲତର କାନ୍ଦ-ଗୀତ ତ ସେଇମାନେ ପଢ଼ନ୍ତି ।' ବୁଗ୍ନନ ଉତ୍ତର ଦେଲା ।

'ହଁ ଲୋ ଝିଅ, ଆମେ ସବୁ ତ ପୁରୁଣା ଫେଶନର ମଣିଷ । ଏଇନେ ତ କାନ୍ଦ-ଗୀତର ବି କେତେକେତେ ରାଗ ବାହାରିଲାଣି ।' ମୁଦ୍ଦନ ପିଉସୀ ମଧ୍ୟସ୍ଥ ଭଳି କଥାକୁ ଆଗକୁ ବଢ଼େଇନେଲେ ।

ଏ ତାହା ଝିଅଙ୍କ ଉପରେ ସିଧାସଳଖ ପ୍ରହାର । ମୁଦ୍ଦନ ପିଉସୀ ଝିଅଙ୍କର ଏ 'ନୋହା ଖୁବାନୀ' (ଶୋକଗାୟନ)କୁ କେବେ ବି ଭଲ ଆଖିରେ ଦେଖନ୍ତି ନାହିଁ ।

ଘର କୁଟୁଂବ ଆଉ ସାହିର ସବୁଝିଅ ବେଶ୍ ଷ୍ଟାଇଲରେ କଳା ଜର୍ଜେଟ ଓଢଣୀରେ ମଥା ଢାଂକି କାଛ ଆଉଜି ଚୁପ୍‌ଚାପ୍ ବସିଥିଲେ । ମୁଦ୍ଦନ ପିଉସୀଙ୍କର ଏଇ ଟିପ୍ପଣୀକୁ ସେମାନେ ନଜର ବି କଲେନାହିଁ ।

'ବୋଝ ଉତାରି ନିଅ !' ବାହାରୁ ରାମଭରୋସେର ପାଟି ଶୁଭିଲା ।

'ପର୍ଦ୍ଦା କରିନିଅ, ଭାରୁଆ ଭିତରକୁ ଯିବେ ।'

ଫିରନୀ (ଦୁଧ ଆଉ ଚାଉଳ ଚୂନାର କ୍ଷୀରି) ଥାଳିକୁ ଘଡ଼ୌଚୀ (ଗରା ରଖିବା ପାଇଁ ଲୁହା ବା କାଠରେ ତିଆରି ଷ୍ଟେଣ୍ଡ) ଉପରେ ଧଡ଼ମ୍‌କିନା ରଖିଦେଇ ମମୋଲା ବଡ଼ ପାଟିରେ ଘୋଷଣା କଲା— 'ଛମ୍ମୋ ବେଗମ ଆସିଗଲେ ।'

ଛମ୍ମୋ ବେଗମ ପାଲକୀରୁ ଓହ୍ଲେଇଲେ ଆଉ ପାଇଜାମା ପଟି ସଳଖି ଟେକି ପାଣି ଭରା ନାଳ ପାରିହେବା ମତଲବରେ ଆଗେଇ ଆସିଲେ । ''ଭଗବାନ୍ ରକ୍ଷା କରନ୍ତୁ— ବଡ଼ ଭାଉଜଙ୍କ ଘରେ ତ ସବୁବେଳେ ବଢ଼ି ।'' ସେ କିଛିଟା ଚିଡ଼ିଲା ଭଳି କହିଲେ ।

କୋଉଠି ଥାଇ ମମୋଲା ଶୁଣିନେଲା.. 'ଏଁ ହେଁ ଛମ୍ମୋ ବେଗମ ! ଟିକିଏ ମୁହଁ

ସମ୍ଭାଳି କଥା କହ । ବଢ଼ି ଆସୁ ବଡ଼ ଭାଉଜଙ୍କ ବଇଗୀ ଘରକୁ । ଶୈତାନ କେ କାନ ବେହରେ, (ବ୍ୟଂଜକ ଅର୍ଥ— ଶଇତାନ ଏ ଭଲ କଥା ଶୁଣି ନପାରୁ, କାରଣ ଶୁଣିପାରିଲେ ଭଲ କଥାରେ ବାଧା ଦେବ )— ମୁଁ ତ ଅଗଣାଯାକର ପାଣି ଶୁଖେଇ ଦେଇଛି । ନିଜ ଘର ଦେଖୁନ ? ଗଳିଟା ସାରାର ପାଣିରେ 'ନୌବତ ରାୟ' ପୋଖରୀ ପାଲଟି ଯାଇଛି । ଏତେ-ଏତେ ପାଣି ତମ ଘରେ... ହାଁ... ।' ସେ ଚଟାପଟ୍ ଜବାବ ଦେଲା ।

'ଏ ଏ ମମୋଲା— ସଂଭାଳ ନିଜକୁ । ମୁଁ ମୋ ମନକୁ ଏଠି ଆସି ପହଞ୍ଚି ଯାଇନି । ବଡ଼ ଭାଉଜଙ୍କ ଶହେ ଡାକରା... ଆସି ମଜଲିସ୍ ପଢ଼ି ଯିବ— ପଢ଼ିଯିବ । ମୁଁ ମୋ ଘରେ ଫାଲତୁ ନୁହେଁ ଯେ ଘରଘର ଘୂରି ବୁଲୁଥିବି ଆଉ ଦି'କଡ଼ାର ଘାସିଆଣୀଙ୍କ ସାଙ୍ଗରେ କଥା ହଉଥିବି ।... ମୁଁ ସବାରୀ ଫେରେଇ ନଉଛି ।' ଛମ୍ମୋ ବେଗମ ଅଗଣା ତଳକୁ ଠିଆ ହେଇ କହିଲା ।

ବଡ଼ ଭାଉଜ ଝଅଟ ଉଠି ବାହାରକୁ ଆସିଗଲେ । 'ଆରେ ହେ... କ'ଣ ଏମିତି କାଉ ହାଟ ବସେଇଲ ମ ? ଇମାମଙ୍କ (ମୁସଲମାନ ପଣ୍ଡିତ) କାଳ ମହରଗ ଆଉ ତମେ ସବୁ ଅଛ ଯେ ନିଜ ଭିତରେ ଲଢ଼ି ପଡୁଛ । ଏ ମମୋଲା, ତୁ ଗଲୁ ଏଇଠୁ ! ଯେତେବେଳେ ଦେଖ ସବୁ ଝଗଡ଼ା ମୂଳରେ ସେଇ ! ଆସ ମ ଛମ୍ମୋ ବେଗମ୍... ବସ... !'

ବାରଣ୍ଡା ଦୁଆରବନ୍ଧ ଠେଇଁ ମୂଲିଆ ଜୋରରେ ଠେଙ୍ଗା ବାଡ଼େଇଲେ— ''ଆଜ୍ଞା ମଜୁରୀ ପଇସା ପଠେଇ ଦିଅନ୍ତୁ ! ବାପ୍‌ରେ ସାରା ଦେହ ଘୋଳି ହେଲାଣି ।' ରାମଭରୋସା କାଲ୍ଲକୁ ଆଉଜି ଆସି ମାତାଦୀନ ବିଡ଼ିରୁ ବିଡ଼ି ଧରେଇଲା । ସେମିତି ଏଇନେ ମୋହର୍ରମ ପାଇଁ ଭଲ ଦୁଇପଇସା ମିଳିବ । ଚେହଲ୍ଲୁମ (ମୋହର୍ରମ ପର ୪୦ ଦିନ) ଯାଏଁ ଗୋଟାଏ ଗଳିରେ ଦଶଦଶ ଘେରା ହେଇଯାଉଥିଲା । ଘେରାଏକୁ ତିନି ପଇସା । ଦୂର ସାହିକୁ ଯିବାକୁ ହେଲେ ଦି'ଅଣା ବି ହଉଥିଲା । ଆଜିକାଲି ସୁନା ଫଳୁଥିଲା ରାମଭରୋସା ଆଉ ତା' ଦଳର; ତା'ପର ରେହଡ଼ା ବି ଚାଲିଛି । ସିଏ ଅଲଗା । ରେହାଡ଼ା, ଗୋଟାଏ ପ୍ରକାର ଠେଲାଗାଡ଼ି । ତା' ଚାରିପଟେ ପରଦା ବାନ୍ଧି ଦିଆ ହେଉଥିଲା । ଭିତରେ ଠେଲିପେଲି ହେଇ ତିନି ଚାରି ଜଣ ବସି ଯାଉଥିଲେ ପିଲାଙ୍କ ଇଂଲିଶ ଟ୍ରାମ ଗାଡ଼ି ଭଳି । ପଛରୁ ଠେଲା ଯାଏ । ଚରଖ୍ ଚୁଁ କରିକରି ଗଳିଗୁଡ଼ିକର ପଥର ଚଟାଣରେ ବେଶ୍ ଫୁର୍ତ୍ତିରେ ଚାଲେ । ପାଲିଙ୍କି ଭଡ଼ା ସେତେବେଳେ ଖୁବ୍ ବେଶି ଥିଲା... ଛଅ ଅଣା, ଘେରାଏକୁ । ପ୍ରାଇଭେଟ୍ ପାଲିଂକୀ, ଚାରିକୋଣିଆ, ଖାଲି ନଗର-ପାଳଙ୍କ ଘରେ ଥିଲା ।

ଛମ୍ମୋ ବେଗମ୍ ଏଇ ଯୁଦ୍ଧ ପରେ ବେଶ ଠାଣିରେ ଢଳି ଢଳି ଚାଲିଆସି ଚାନ୍ଦୁଆ ତଳେ ବସିଯାଇ ଚଷମା ଲଗେଇ ଥରେ ଚାରିପଟେ ଗର୍ବରେ ଆଖି ବୁଲେଇ ନେଲେ । ମୁଦ୍ଦନ ପିଇସୀ ବି ବେଶ ଭଲ ଶୋକ-ଗୀତ ପଢ଼ନ୍ତି । ସେ କେବେହେଲେ ଛମ୍ମୋ ବେଗମଙ୍କୁ ଅନେଇ ରହନ୍ତି ନାହିଁ ।

ସୋଜ (ଶୋକ-ଗୀତ) ସରି ସାରିଥିଲା । ଗୋଟା (ଶୁଖା ଧନିଆଁ, ନଡ଼ିଆ ଏମିତି ସବୁ ପଡ଼ି ତିଆରି ହେଉଥିବା ଖାଇବା ମସଲା) ପାଟିରେ ପକେଇ ମୁଦ୍ଦନ ପିଇସୀ ଆରାମରେ ଗୋଟାଏ କ'ଣକୁ ଯାଇ ବସିଗଲେ । ଗାଢ଼ ଚମକି ଯାଉଥିବା ରଙ୍ଗରଙ୍ଗିଆ ବୁଟାଲଗା ଯାମୁନୀ ରଙ୍ଗର ଘାଘରା ଆଉ ଶୁଆପକ୍ଷୀ ଭଳି ଶାଗୁଆ ରଙ୍ଗର ଓଢ଼ଣୀ ପକେଇ କାନ୍ଥକୁ ଆଉଜି ଏମିତି ବସିଥା'ନ୍ତି ଯେ ଦୂରରୁ ଅନେଇଲେ ବି ଜାଣିହେବ, ରାମପୁରର ରାଣୀ; ଅଙ୍ଗା ନୁହଁ !

ଛମ୍ମୋ ବେଗମ୍ ଏକେ ତ ସୌଦାନୀ (ମୁସଲମାନମାନଙ୍କ ମଧ୍ୟରେ ଏକ ଉଚ୍ଚ ଜାତିର ସ୍ତ୍ରୀ), ତା'ପରେ ବୁଙ୍ଗନର ବାହାଘର ନେଇ ତାଙ୍କ ସାଙ୍ଗରେ ଝଗଡ଼ା ବି ହେଇଯାଇଛି । ତେଣୁ ସେ ମୁଦ୍ଦନ ପିଉସୀକୁ କୋଉ ପାସଙ୍ଗରେ ନେଉ ନଥିଲେ । ମୁଦ୍ଦନ ପିଉସୀଙ୍କର ଏଇ ଗର୍ବ ଯେ ମାଲକୋଶ, ସୋହନୀ ଆଉ ବିହାଗରେ ସେ ଯେମିତି 'ସୋଜ' ଗାଇବେ, ସେଥିରେ ମଜଲିସ୍ ଜମିଯିବ । ଆଉ ଛମ୍ମୋ ବେଗମ୍‌ର ବି ନିଜର କ୍ଷମତା ନେଇ ଗର୍ବ ଥିଲା ଯେ ଅଷ୍ଟମୀର ମୀର ଅନୀସର ଅଧ୍ୟାୟଟି ରାଗ ଆଧାରରେ ତାଙ୍କ ଭଳି ପଢ଼ି ପାରିବା ବାଲା କେହି ହେଲେ ନାହିଁ ।

ଛମ୍ମୋବେଗମ ପରସ୍ତ ପରସ୍ତ ରେଶମୀ ଖୋଳ ଖୋଲି ଜହ୍ନରାତିର ବର୍ଣ୍ଣନା-ବ୍ୟାଖ୍ୟା କରିଗଲେ ଆଉ ଶୁଣିବାବାଲାଙ୍କୁ ଥରେ ନିରେଖି ଦେଖିଲେ ।

ଝିଅଙ୍କ ଦଳଟି ସେମାନଙ୍କ ଜାଗାରେ କିଛିଟା ସଜାଗ ହୋଇଗଲା । ସେଇ ଝିଅଙ୍କ ଲାଗି ଜରୁରୀ ଥିଲା ବି ଯେ ଛମ୍ମୋବେଗମ ହଦୀସ (ମୋହମ୍ମଦ ସାହେବଙ୍କ ପ୍ରବଚନ) ବା ଉପଦେଶ ପଢ଼ିଲାବେଳେ ସେମାନେ ମୁହଁ ଆଗରେ ଓଢ଼ଣୀ ମାଡ଼ି ରଖିବେ ଆଉ ଖିଲ୍ ଖିଲ ହସିବେ । ହସିଲେ ବି ଏମିତି ଜଣାଯିବ, ଯେମିତି ଛାତି ଫଟେଇ କାନ୍ଦୁଛନ୍ତି । ଛମ୍ମୋ ବେଗମ୍ କେଜାଣି କେତେ ଦରଦ ଦେଇ ହଦୀସ ପଢ଼ନ୍ତି ଯେ ସମସ୍ତେ ବ୍ୟାକୁଳ ହୋଇ ଉଠନ୍ତି ।

ଛମ୍ମୋ ବେଗମଙ୍କ ବର୍ଣ୍ଣନା ବେଶ ମର୍ତ୍ତର୍ଣ୍ଣ । କବ୍‌ବନ ସାହବ କାହିଁକି, ସ୍ୱୟଂ ମାନନୀୟ ଜାର୍ଜବୀ ସାହବ ଇମାମ ହୁସେନ୍‌ଙ୍କ ପବିତ୍ର ଦେହାବସାନର ଘଟଣାରୁ ଇଂରେଜୀ ଦର୍ଶନରୁ ବି ତତ୍ତ୍ୱ ବାହାର କରିଦେଇ ପାରିବେ ନାହିଁ, ଯେଉଁକଥା ଛମ୍ମୋ ବେଗମ ଗୋଟାଏ ମୁହୂର୍ତ୍ତରେ ସାଗରକୁ ଗଗରୀରେ ଭରି ଦେଖେଇ ଦେଇ ପାରିବେ ।

'ହେ ମଜଲିସର୍, ଭଦ୍ରମଣ୍ଡଳୀ ! ଯେତେବେଳେ ଈଶ୍ୱର ଆପଣା ପ୍ରକାଶକୁ ଦୁଇଭାଗ କରିଦେଲେ' ଏହି ଭୂମିକାରୁ ଆରମ୍ଭ କରି ଯେତେବେଳେ ସେ ବ୍ୟାଖ୍ୟାର ଚରମ ସୀମାରେ ପହଞ୍ଚିଲେ— 'ହେ ଭଦ୍ରମହିଳାଗଣ ! ଜନାବ ଅବ୍‌ବାସ କାନ୍ଦି କାନ୍ଦି କହିଲେ, "ଝିଅ ସକୀନା ଉଠ !" ସେତେବେଳେ ମଜଲିସ୍‌ରେ ଛାତିଫଟା କାନ୍ଦଣା ସ୍ୱର ଆରମ୍ଭ ହୋଇ ଯାଉଥିଲା । ବାହାରେ ଭିତରେ ସମସ୍ତେ ସମସ୍ୱରରେ କହି ଉଠୁଥିଲେ, "ଛମ୍ମୋ ବେଗମ୍ ଜମେଇ ଦେଲେ । ତାଙ୍କର ବର୍ଣ୍ଣନାରେ ସେହି କଳା ଚାତୁରୀ ଥିଲା, ଯାହା ଫଳରେ ମୁହୂର୍ତ୍ତକରେ କଥା କାହିଁରୁ କାହିଁ ଯାଇ ପହଞ୍ଚି ଯାଉଥିଲା । ଏଇନେ ହଜରତ ଜିବରାଇଲଙ୍କ

ବର୍ଣ୍ଣନା କରୁଛନ୍ତି । ଏଇନେ ମରଦୂଦ ଯଜୀଦ୍‌ଙ୍କ କଥା ଆସିଗଲଣି । 'ଜଙ୍ଗେ-ଜମ୍‌ଲ' କଥା ଶୁଣଉଛନ୍ତି, ତା ସାଙ୍ଗକୁ ଇଂରେଜ-ଜର୍ମାନୀ ଯୁଦ୍ଧର ତୁଳନା ବି ଚାଲିଥିବ । 'ଖୁଦାତାଲା'ଙ୍କ ସଂବନ୍ଧରେ କହୁଥିବେ— 'ଭଉଣୀମାନେ ଏ ଯେ' ଇଂରେଜମାନେ, ନାସ୍ତିକ, ଈଶ୍ୱରଙ୍କୁ ମାନନ୍ତି ନାହିଁ, ତାଙ୍କ କଥା ମୋ'ଠୁଁ ଶୁଣିନିଅ । ମନ ଲଗେଇ ଶୁଣ ଯେ ଈଶ୍ୱର କୃପାଳୁ । ସେଇ ସବୁ ଶୈତାନୀ, ପୈଶାଚିକ ବିଗ୍ରହ ଆଉ ଷଡ଼ଯନ୍ତ୍ରକୁ ଜାଣିଛନ୍ତି, ଯାହା ଶଇତାନ ତମ ମୁସଲମାନମାନଙ୍କର ମନ ଭିତରେ ଭରିଦେଉଛି । ବରଂ ମୁଁ ତମମାନଙ୍କୁ ଏହା କହିଦେବାକୁ ଚାହୁଁଛି— ହେ ପବିତ୍ରାତ୍ମା ଭଉଣୀମାନେ 'କୁର୍ଆନ ହକୀମ' (ପବିତ୍ରତମ କୋରାନ୍)ରେ ଈଶ୍ୱର ସ୍ୱୟଂ ଇଂରେଜୀରେ 'ଏକ' ହୋଇଥିବାର ପ୍ରମାଣ ଦେଇଛନ୍ତି । 'ଫରମାତା ହୈ ବହ ରବ କି କୁଲ ହୋବଲଲା ହୋ ଅହଦ । ଅଲ୍ଲହୁସ୍‌ସମଦ ଲମ ଯଲିଦ ବଲମ ଯୁଲଦ ଯୁକୁଲ୍ଲହୁ କୁଫବନ୍ ଅଦଦ ।' (କହିଦେ ମହମ୍ମଦ ଯେ ଅଲ୍ଲାହ ଏକ । ତା' ଭଳି କେହି ନାହାନ୍ତି । ନା' ସେ କାହାଠାରୁ ଜନ୍ମ ହେଇଛି ନା କାହାକୁ ଜନ୍ମ ଦେଇଛି । ତା'ର ସମକକ୍ଷ ହୋଇ କେହି ନାହିଁ ।) ଏ 'ବନ୍' କ'ଣ ? ବନ୍ ଇଂରେଜୀରେ ଏକକୁ ବୁଝାଏ । ମସଲା ତୌହୀଦ (ଏକେଶ୍ୱରବାଦ)ର ତତ୍ତ୍ୱ ଆଣି କରବଲାର ଘଟଣା । ଆଉ ଅଲୀ ଅକବରଙ୍କ ପ୍ରାଣୋତ୍ସର୍ଗକୁ ଏଭଳି ଭାବରେ ମିଳେଇ ଦେବେ ଯେ... ତାକୁ ଛମ୍ମୋ ବେଗମଙ୍କର ଆର୍ଟର କମାଲ ବୋଲି କହିବାକୁ ହେଉଥିଲା ।

ବଡ଼ ଭାଉଜ କାହିଁକି, ସାହିଟା ସାରା ସମସ୍ତଙ୍କୁ ଜଣା ଯେ ଛମ୍ମୋ ବେଗମ ପୂରା ଫ୍ରଡ୍ ! ତେବେ ବି ସେ ନ ଆସିଲେ ମଜଲିସ୍‌ର ଜୀବନ ଆସୁ ନଥିଲା । ତେଣୁ ତାଙ୍କର ବଦ୍-ସ୍ୱଭାବକୁ ବି ସହିବାକୁ ପଡୁଥିଲା ।

ଅନେକ ବର୍ଷ ହେଲା, ଯେଉଁଦିନଠାରୁ ବଡ଼ ଭାଉଜ ଜନ୍ମହେଲେ, ବଡ଼ ହେଲେ, ବିଦା ହେଇ ବାରହବାଂକୀରୁ ଜୌନପୁର ଆସିଲେ; ସେଇଦିନରୁ ଜୀବନର ଏକ ଚଳଣି ହୋଇଯାଇଛି । ଯୋଉଥିରେ ବାହାଘର, ପର୍ବପର୍ବାଣୀ, ଲଢ଼େଇ-ଝଗଡ଼ା, ମୁହର୍ରମ, ଯୋଗୀ ରାମପୁରର ବାର୍ଷିକ ତୀର୍ଥ— ପ୍ରତ୍ୟେକ ଜିନିଷର ମହତ୍ତ୍ୱ ନିଶ୍ଚିତ ହୋଇ ରହିଥିଲା । ଡେପୁଟୀ ଜାଫରଙ୍କ ସାଙ୍ଗରେ ତାଙ୍କର ବାହାଘର ବଡ଼ ଯାକ୍‌ଯମକରେ ହୋଇଥିଲା । ସେତେବେଳେ ତାଙ୍କର ବୟସ ପନ୍ଦର । ସେ କାଳରେ ବାହାଘରର ଶୋଭାଯାତ୍ରା ଦୁଇ ଫର୍ଲଙ୍ଗ ଲମ୍ବା ହେବ । ବରାତରେ ଆସିଥିବା ଲୋକଙ୍କୁ ରୂପା ଥାଳିଆରେ ଲଡୁ ବଣ୍ଟା ହୋଇଥିଲା । ଆଉ ଝିଅଘର ଗାଆଁବାଲାଙ୍କ ଠେଇଁ ସପ୍ତାହେ ମାସେ ଆଗରୁ ଢୋଲକ ରଖା ଯାଇଥାଏ । ତାଙ୍କର ମାଆଘର ଆଉ ଶାଶୁଘର ଦୁଇପଟେ ଈଶ୍ୱରଙ୍କ ଦୟାରୁ ପରିପୂର୍ଣ୍ଣ ପରିବାର । ବାସ୍, ଖାଲି ଗୋଟାଏ ସାନ ମା ସାଙ୍ଗରେ ତାଙ୍କର ଆଦୌ ପଡ଼ିଲା ନାହିଁ। ଜେଠାଣୀ-ଦେରାଣୀ ଘର ମଝିରେ କାନ୍ଥ । ତେବେ ଝରକାରେ ଦିନଦିନ ଧରି ତାଲା ପଡ଼ିରହିଲା । ମୋକଦ୍ଦମାର କାହାଣୀ ପ୍ରକୃତପକ୍ଷେ ଇମାମବାଡ଼ାର ଆମ୍ବତୋଟାରୁ ଆରମ୍ଭ ହେଲା । ପରେ ଦି' ଭାଇଙ୍କ ଘରେ କଥା ପର୍ଯ୍ୟନ୍ତ ବନ୍ଦ ହୋଇଗଲା । କଥାରେ ଅଛି— ଜର, ଜମୀନ ଆଉ

ଜନ୍ (ସ୍ତ୍ରୀ) ଏ ତିନୋଟି କଥା ଘରକୁ ବୁଡ଼େଇ ଦିଏ । ସହୋଦର ଭାଇ ପର ହେଇଯାଆନ୍ତି । କିନ୍ତୁ ଯେତେବେଳେ ସାନମା' ବେମାର ପଡ଼ିଲେ, ସେତେବେଳେ ବଡ଼ ଭାଉଜ ଶିଷ୍ଟାଗ୍ରହରେ ଆଞ୍ଚ ଆସିବାକୁ ଦେଇ ନଥିଲେ । ଆଉ ମରିବା ପୂର୍ବରୁ ସାନ ଜାଆଠୁଁ ଆଗପଛ ସବୁ ଅଭିଯୋଗ ଭୁଲି ମାଫ୍ କରେଇ ନେଲେ । ସେତିକିରେ ହେଲେ କହିବା ଲୋକର ମୁହଁ କୋଉ ବନ୍ଦ ହୁଏ ! ସାହିସାରା ସେଇ ଗୁଜବ ଖେଳିଗଲା ଯେ ସାନ ମା' ଧାନ ଘରେ ସୁନା ମୋହର ସବୁ ପୋତି ରଖିଥିଲେ । ଏଇଟା ସେ ସବୁକୁ ହାସଲ କରିବାର ଉପାୟଟିଏ । ପଗ୍ର ବଡ଼ ଭାଉଜଙ୍କ ପାଖରେ ଭଗବାନ୍‌ଙ୍କ ଦିଆ କ'ଣ ନାହିଁ ଯେ ସେ ଏଭଳି କଥା ମନରେ ପୂରେଇବେ ! ସତ ଏଇଆ ଯେ ସାନ ମାଆର ସେଇ ସୁନା ମୋହରବାଲା ଥାନ, ଯାହା ଉପରେ ସେ ଜୀବନ ସାରା ମାୟାର ସାପ ହେଇ ଫଣା ଉଠେଇ ଜଗି ବସିଥିଲେ, ଶେଷକୁ ଆଣ୍ଠୁକୁଡ଼ା ଧନରୁ ବି ମନ୍ଦ ହେଲା । ପିଲାଏ ସବୁକିଛି ନେଇ ଦୁଇଟି ବର୍ଷରେ ଉଡ଼େଇ ବୁଡ଼େଇ ଦେଲେ । ବରଂ ମୁଦ୍ଦନ ପିଇସୀ କହନ୍ତି ଯେ ବଡ଼ ଭାଉଜ ଆଉ ସାନମା'ଙ୍କୁ ଲଗେଇ ଦେବାରେ ସବୁଠୁଁ ବଡ଼ ହାତ ଛମ୍ମୋ ବେଗମ୍‌ର । ଏକଥା ତେଣେ ସେକଥା ଏଣେ କରନ୍ତି ଆଉ ଉଚ୍ଚଆସନରେ ବସି ପଢ଼ି ନିଶାପ କରନ୍ତି.... ପିଶାଚୁଣୀ !

ସେତିକିବେଳେ କାନ୍ଦିବା ନିହାତି ଜରୁରୀ, ଛମ୍ମୋ ବେଗମ ଭଳି କୁଟୁଣୀ ପଚ୍ଛୁଆଉ ପଛକେ ! ତେଣୁ ମୁଦ୍ଦନ ପିଇସୀ ସିଲ୍‌କ ରୁମାଲରେ ମୁହଁ ଢାଙ୍କି ବେଶ ଶାଳୀନତାରେ କଇଁ କଇଁ କାନ୍ଦୁଥାଆନ୍ତି । ଝିଅଗୁଡ଼ିକ ଦୁଆର ବନ୍ଧଠେଇଁ ବସି ଢୁଳଉଥାଆନ୍ତି; କେତେବେଳକୁ ମୁହମ୍ମଦ ସାହବଙ୍କ ପ୍ରବଚନ ସରିବ ଯେ ନୋହା (ଶୋକଗୀତ) ପଢ଼ିବାର ପାଳି ଆସିବ ।

ନୋହା ପଢ଼ିବା ଲାଗି ବଡ଼ ଭାଉଜଙ୍କ ଝିଅ କିଶବରୀ ବେଶ କୃତିତ୍ୱ ହାସଲ କରିଥିଲା । ''ହାଥ ଆୟେ ଥେ କ୍ୟା-କ୍ୟା ଗୁଲେ ଜେହରା କୋ ଫିଦାଇ— ତୋ ମାଓଁ ନେ ଦେଖୀ, ଦରେ ଖେମା ସେ ଲଡ଼ାଇ— ଅରେ ଲଡ଼ତେ ହୁଏ, ଗିରତେ ହୁଏ ମରତେ ହୁଏ, ଦେଖା ।'' ଆଉ କେଜାଣି କେତେ କ'ଣ ନୂଆ ନୂଆ କାନ୍ଦଣା ଗୀତ । ଏମିତି ବିସ୍ତାରିତ ସ୍ୱରରେ ଶେଷଛନ୍ଦ ଉଠେଇବ ଯେ ଖେମ ଘର ଯାଏଁ ଶୁଣାଯିବ ।

ନୋହାର ନୂଆ ନୂଆ ଧୂନ, ଲୟ ବାହାର କରିବା ଯେମିତି ଝିଅଙ୍କର ଗୋଟାଏ ଖାସ କାମ ଥିଲା ସେତେବେଳେ । ଯେତେ କେହି କୋଉଁଠି ବି ଦୁଃଖର ଗୀତଟିଏ ରେକର୍ଡରେ ବାଜୁଥିବା ଶୁଣିଦେଲା ତ, ଚଟାପଟ୍ କିଛି ଟିକିଏ ଏଣେତେଣେ କରିଦେଇ ନଜମୁଲମିଲ୍ଲତର ଶୋକଗୀତଟିଏକୁ ତା'ଉପରେ ମଢ଼େଇ ଦେଲା । ତଲତଆରା ଏସବୁ ବାବଦରେ ବେଶ ପୁରୁଣା ବିଗ୍ରହର । ତା କହିବା ଅନୁସାରେ ଏ ସବୁ କରିବା ଭୁଲ୍ କଥା । ସପ୍ତମୀ ରାତିରେ ଜଣାଯିବ ଯେମିତି କାନନବାଳାର ରେକର୍ଡ ବାଜୁଛି, ତେବେ କିଶବରୀ କ'ଣ କାହା କଥା ଶୁଣିବ ? ତୌବା ତୌବା ! ସେମିତି ବି ସେ ଭାରି ସ୍ୱତନ୍ତ୍ର ବିଗ୍ରହ ଆଉ ଖୋଲା ମନର ଝିଅ । ସେ ତ ହାଇସ୍କୁଲ ପାଶ କରି ସାରିଥିଲା । ଲକ୍ଷ୍ନୌ ଯାଇ ଇଣ୍ଟର ଆଉ ବି.ଏ ବି କରିଦେଇ ଆସିବ । ତେବେ ସାନମାଆ ଯେତେବେଳେ ବଡ଼ ଭାଉଜଙ୍କ ସାଙ୍ଗରେ ସବୁ

ପଟେଇ ତୁଟେଇ ଦେବାକୁ ଇଚ୍ଛା କଲେ, ସେତେବେଳେ ସେ ଏଇଆ ବି ସ୍ଥିର କରିଗଲେ ଯେ ତାଙ୍କର ବଡ଼ପୁଅ ମିଆଁ ଏଜାଜ ସାଙ୍ଗରେ ତା'ର ବାହା ବି ହେଇଯାଉ ।

ଏଣିକି ମୁସ୍ଲିମ ଶୋସିଏଲ୍ ପିକ୍ଚର ବି ତିଆରି ହେବା ଆରମ୍ଭ ହେଲା । କିଶବରୀ ନିହାତି ପ୍ରଖର ବୁଦ୍ଧିମତୀ । ସବୁ କିଛି ନିଟିଙ୍ଗର ନମୁନା ତାଙ୍କୁ ଜଣା । ସେଠି ପରଦାବାଗରେ କୌଣସି ନୂଆ ନମୁନାର ସ୍ୱେଟରଟିଏ କାହାକୁ ପିନ୍ଧିଥିବା ଦେଖିଲେ ସେ ଆସି ଚଟାପଟ୍ ତିଆରି କରି ଦେଇ ପାରିବ । ଗପ ପଢ଼ିବାକୁ ତା'ର ଭାରି ମନ । ଫୈୟାଜ ଅଲ୍ଲୀଙ୍କର 'ଅନବର' ଆଉ 'ଶମୀମ'ଠୁଁ ଆରମ୍ଭ କରି କୃଷ୍ଣଚନ୍ଦ୍ରଙ୍କ 'ନଜାରେ' ଆଉ ହିଜାବ ଇମତିୟାଜ ଅଲ୍ଲୀଙ୍କ 'ଜାଲିମ ମୁହବତ' ପର୍ଯ୍ୟନ୍ତ ତା ଆଲମାରୀରେ ଥିଲା । ଅବସର ମିଳିଲେ ସେ ସିନେମା ବି ଦେଖି ପକଉଥିଲା । ମିଆଁ ଏଜାଜ ଏକେ ତ ରୁଚିରେ ମୌଲବୀ ମଣିଷ । ପି.ସି. ଏସ୍‌ରେ ମନୋନୀତ ହୋଇଯାଇଥିଲେ । କେନିଙ୍ଗ କଲେଜରୁ ଏମ୍.ଏ. ଏଲ୍.ଏଲ୍.ବି କରିଥିଲେ, ତେବେ ସେଇ ଗୋଟାଏ କଥା ପାଇଁ ଆଦୌ ପ୍ରସ୍ତୁତ ନଥିଲେ ଯେ ଘରର ଝିଅ କୋଉଠି ଟିକିଏ ମଉଜ କରିଆସନ୍ତୁ । ସେ ନିଜେ ଆପଣା କଥାକୁ ଗର୍ବରେ କହନ୍ତି— ମିସ୍ ସିଦ୍ଦୀକୀଙ୍କ ଘରୁ ଚ୍ୟ' ଖାଇ ଆସିଲେ, ମିସ୍ ସକ୍‌ସେନାଙ୍କ ସାଙ୍ଗରେ ଏମିତି ଯୁକ୍ତିତର୍କ ହେଲା । ତେବେ ନିଜ ପରିବାରର ଝିଅଙ୍କ ବିଷୟରେ ତାଙ୍କର ମତ ଭିନ୍ନେ । ତାଙ୍କର ଧାରଣା ଘର ଝିଅ ଘରୁ ପଦାକୁ ଗୋଡ଼ କାଢ଼ିଲେ ଦୁନିଆ ଖରାପ, କାହାକୁ ବଦନାମ ହେବାକୁ କେତେବେଳ ଲାଗିବ !

ମଜା କଥା ହେଲା— ବଡ଼ ଭାଉଜ କିଶବରୀ ଲାଗି କେତେପ୍ରକାର ପୂଜା ଯାଚଜ୍ଞା କରୁଥିଲେ । ଆଶୂରା ଦିନ ଯେତେବେଳେ ଜୁଲଜିନାହ ଇମାମ୍ ହୁସୈନ୍‌ଙ୍କ ଘୋଡ଼ାକୁ ଭିତରକୁ ଅଣାଯାଏ, ସେତେବେଳେ ତାକୁ ଜିଲେବୀ ଖୁଏଇ ସାରି ତା' କାନ ପାଖରେ ମୁହଁ ଲଗେଇ ସବୁ ମାଇପି, ଗ୍ୱକରାଣୀ ବାକରାଣୀ ପ୍ରାର୍ଥନା କରି ମାଗନ୍ତି— ମୌଲା (ଈଶ୍ୱର) ଏ ବର୍ଷ କିଶବରୀର କପାଳ ଖୋଲୁ ।

ଏଇନେ ପଗ୍ୱର, ମିଆଁ ଏଜାଜଙ୍କ କାନିରେ ବନ୍ଧା ହୋଇ ରହିବାଟାକୁ କପାଳ ଖୋଲିବା କୁହାଯାଉଥିଲା, ତେବେ କିଶବରୀ ବି ନିଶ୍ଚୟ କରିନେଇଥିଲା ଯେ ଠିକ୍ ବେଳକୁ ଅସ୍ୱୀକାର କରିଦେବ । ବରାତରେ ହୋହଲ୍ଲା ଗ୍ୱଞ୍ଚଲ୍ୟ ଖେଳିଯିବ । ଯେମିତି ଆମର ଶୋସିଏଲ୍ ସିନେମାମାନଙ୍କରେ ହୋଇଥାଏ । ଯେତେବେଳେ ହାତଗଂଠି ପଡ଼ିବାକୁ ଥିବ, ସେତେବେଳେ ଡାକ୍ତରଖାନା କି ଜେଲରୁ ଖଲାସ ହୋଇ ହିରୋ ଆସି ପହଞ୍ଚିଯିବେ ଆଉ ଗରଜି ଉଠି କହିବ— "ବନ୍ଦ କର ! ଏ ବାହାଘର କଦାପି ହୋଇପାରିବ ନାଇଁ !"

(୪)

କିଶବରୀର ବାପା ସୈୟଦ ଜାଫର ଅବ୍‌କାସ ଡେପୁଟୀ କଲେକ୍ଟର ଥିଲେ । ଆଉ ଦୃଢ଼ମନା ଜାତୀୟତାବାଦୀ ମୁସଲମାନ ଥିଲେ । ଯେତେବେଳେ କଂଗ୍ରେସ ମନ୍ତ୍ରୀମଣ୍ଡଳ ହେଲା, ସେତେବେଳେ ସେ ମଧ୍ୟ ଉଲ୍ଲସିତ ହୋଇଥିଲେ । ହାଫିଜ ଇବ୍ରାହିମ ଯେତେବେଳେ

ଜିଲ୍ଲାକୁ ଆସିଲେ, ସେତେବେଳେ ସେ ଯାଇ ତାକୁ ସ୍ନେହରେ କୁଣ୍ଢେଇ ପକେଇଥିଲେ । ଯେତେବେଳେ ଯୁଦ୍ଧ ଆରମ୍ଭ ହୋଇଗଲା, କଂଗ୍ରେସ ମନ୍ତ୍ରୀମାନେ ଇସ୍ତଫା ଦେଇଦେଲେ, ଆଉ ମୁସ୍‌ଲିମଲିଗ ଲିବରେସନ ଡେ ପାଳନ କଲା, ସେତେବେଳେ କିଶବରୀର ବାପାଙ୍କୁ ବେଶ୍ ଦୁଃଖ ହେଲା । ସେ ରିଟାୟର ହୋଇ ସାରିଥିଲେ ଆଉ ବାହାର ଚଉତରାରେ ହୁକ୍କା ଧରି ବସି ଏଇଆ ଭାବୁଥିଲେ ଯେ ଦୁନିଆଁ ବଦଳି ବଦଳି ଯାଉଛି । ଚ୍ଚାକିରି ମିଳୁନଥିବା ପିଲାମାନେ ଫଉଜରେ ଭରତି ହୋଇଯାଉଥିଲେ । ଆମ ଅସଗର ଅବ୍‌ବାସ ଏଇନେ ଲେଫ୍‌ଟ୍‌ନାଣ୍ଟ । ମହରଗ ବେଶ ବଢ଼ି ସାରିଥିଲା । ନେତାମାନେ ସବୁ ଜେଲରେ, ତେବେ ଜୀବନରେ ଗୋଟାଏ ନୂଆ ରଙ୍ଗ ଲାଗିଥିଲା । ହାଫିଜ୍ ଇବ୍ରାହିମ ଗଲାବେଳେ ଜିଲ୍ଲାର ଉର୍ଦ୍ଦୁ ଖବରକାଗଜମାନେ ଲେଖିଥିଲେ... 'କୁଆଡ଼େ ସେ ଗାଡ଼ି ସରକାରୀ— ବିକ୍ ପରିବା ତରକାରି' । ଏଇଆ ଦେଖାହେଲା, ସେଇଆ ବି ହେଇଥିଲା... । କିଶବରୀର ବାପା ସେସବୁ ପଢ଼ି ଅତି ଦୁଃଖିତ ହେଉଥିଲେ । ସେ ପକ୍କା ମୁସଲମାନ ଥିଲେ । ସତ କହିବାକୁ ଗଲେ, ମୁସଲମାନମାନଙ୍କର ସାଂସ୍କୃତିକ ସ୍ଥିରତା ଏହି ପୁରୁଣା ଚିନ୍ତାଧାରାର ଡେପୁଟୀ କଲେକ୍‌ଟରଙ୍କ ବଳର ଆଧାରରେ ରହିଥିଲା । ପରଦାର ଅତ୍ୟନ୍ତ ସମର୍ଥନକାରୀ । କା'ର ସାହସ ହେବ ଯେ ଝିଅମାନେ ବିନା 'କନାତ ଚ୍ଚଦର'ରେ ଘରୁ ବାହାରକୁ ଗୋଡ଼ କାଢ଼ିବେ ? (ସେ ସମୟରେ ଉତ୍ତର ପ୍ରଦେଶର ପୂର୍ବାଞ୍ଚଳ ଜିଲ୍ଲାମାନଙ୍କରେ ବୁରକା ପ୍ରଥା ନଥିଲା) ସମ୍ମାନନୀୟ ମଧ୍ୟବର୍ଗୀୟ ମୁସଲମାନ ଓ ହିନ୍ଦୁ ସ୍ତ୍ରୀମାନେ ଚ୍ଚଦର ଶାଲ ଘୋଡ଼େଇ ହେଇ ବାହାରୁଥିଲେ। ହିନ୍ଦୁ ସ୍ତ୍ରୀମାନେ ହେଲେ ଓଢ଼ଣା ଟାଣି ରାସ୍ତାରେ ଯାଇପାରୁଥିଲେ; କିନ୍ତୁ ମୁସଲମାନ ସ୍ତ୍ରୀଲୋକ ଦିନବେଳା ବାହାରକୁ ବାହାରିବାଟାକୁ ବେଶ ଖରାପ ଦୃଷ୍ଟିରେ ନିଆ ଯାଉଥିଲା ।

ଅସଗର ଅବ୍‌ବାସ ଫୌଜରେ ଭର୍ତ୍ତି ହେଇ ଧୀରେ ଧୀରେ ଇଂରେଜ ପାଲଟି ଯାଉଥିଲା । ସେଥର ସେ ଛୁଟିରେ ଆସି ବାପାଙ୍କ ଆଗରେ କେତୋଟି ସର୍ତ୍ତ ରଖିଲା—

୧ । ସେ ନିଜର ସଂବନ୍ଧଥିବା ଘରେ ବାହା ହେବ ନାହିଁ ।

୨ । କିଶବରୀ ତା ସାଙ୍ଗରେ ଯେତେବେଳେ ଜବଲପୁର ଯିବ, ସେଇଠି ପରଦା କରିବ ନାହିଁ ।

୩ । ଏଜାଜ୍ ମିୟା ସାଙ୍ଗରେ ବାହାଘର ବନ୍ଦ ।

୪ । କିଶବରୀକୁ ଏଫ୍.ଏ. କରିବା ପାଇଁ ମୁସ୍ଲିମ ଗାର୍ଲସ କଲେଜ, ଲକ୍ଷ୍ନୌକୁ ପଠାଯିବ।

ବେଶ୍ କିଛି ବାଦ ବିବାଦ ପରେ ବାପା ଆଉ ବଡ଼ ଭାଉଜ ଏଇ ସର୍ତ୍ତଗୁଡ଼ିକରୁ ଅନେକ କିଛିକୁ ମାନିନେଲେ ।

ଭାରତବର୍ଷର ମଧ୍ୟବର୍ଗୀୟ ମୁସଲମାନ ପରିବାର ଭାବରେ ହୁଏତ କୋଉଠି ଗୋଟାଏ ପରିବାର ବି ଥାଇପାରେ, ଯେଉଁ ପରିବାରର ଝିଅଟିଏ କେବେ ନା କେବେ ଆଲିଗଡ଼ ମୁସ୍ଲିମ କଲେଜ ବା ଲକ୍ଷ୍ନୌ ମୁସ୍ଲିମ କଲେଜରେ ପଢ଼ିନାହିଁ । ଅଧିକାଂଶ ଝିଅ, କିଛିଦିନ ପାଇଁ ବି ହେଉନା କାହିଁକି ମୁସ୍ଲିମ ସ୍କୁଲରେ ପଢ଼ିଛି ବୋଲି ଗର୍ବ କରୁଥିଲା ।

ଠିକ୍ ଏଇ ସ୍ଥିତି ଥିଲା ଲକ୍ଷ୍ନୌ ମହିଳା ବିଦ୍ୟାଳୟର । ଉତ୍ତର ପ୍ରଦେଶର ସବୁ ସଂଭ୍ରାନ୍ତ ହିନ୍ଦୁ ମଧ୍ୟବର୍ଗୀୟ ସୁପୁତ୍ରୀମାନେ ଏହି ବିଦ୍ୟାଳୟର ଛାତ୍ରୀ । ସରକାରୀ ଆଉ ଖ୍ରୀଷ୍ଟିୟାନ ସଂସ୍ଥାର ବାତାବରଣ ଭିନ୍ନେ ଥିଲା । ସେଠାରେ ଇଂରେଜମାନଙ୍କର ପ୍ରଭୁତ୍ୱ ଫଳରେ ବାଘ ଛେଳି ଗୋଟାଏ ଘାଟରେ ପାଣି ପିଉଥିଲେ ।

ଏଥର ଜୁଲାଇରେ ଖେମ ଆଉ କିଶବରୀ ଏକା-ସାଙ୍ଗରେ ଜୌନପୁରରୁ ଟ୍ରେନରେ ଆସି ଲକ୍ଷ୍ନୌରେ ପହୁଞ୍ଚିଲେ । ଗ୍ୱରବାଗ ଷ୍ଟେସନ୍‌କୁ ଭାଣିଜୀକୁ ପାଛୋଟି ନବାକୁ ମାମୁଁ ନିଜେ ଆସିଥିଲେ । କିଶବରୀକୁ ପହଞ୍ଚାଇ ଦେବାକୁ ଅଲଗା ମରଦ ଡବାରେ ମଜିଦ ଭାଇ ଯାଇଥିଲେ । ଷ୍ଟେସନର ସେଡ୍‌ରେ ପହଞ୍ଚି ଖେମ କିଶବରୀ ଦୁହେଁ ଦୁହିଁଙ୍କୁ ଖୁଦା-ହାଫିଜ୍ କହି କାନ୍ଦିଲେ । କେବେ କେମିତି ଭେଟାଭେଟିର ଚେଷ୍ଟା କରିବେ ବୋଲି କଥା ଦେଲେ ଆଉ ଅଲଗା ଅଲଗା ଟାଙ୍ଗା ଗାଡ଼ୀରେ ବସି ଗ୍ୱଲିଗଲେ ।

(୬)

''ଖେମବତୀ ରାୟଜାଦା ସାଙ୍ଗରେ ମୋର ଭେଟ ଏତେ ଦିନପରେ ବେନେଟ କଲେଜର ସିଡ଼ିରେ ହେଲା । ସେ ଚୌଧୁରୀ ସୁଲତାନର ଲେକଚର ପାଇଁ ଉପରକୁ ଯାଉଥିଲା । ମୁଁ ଏହତଶାମ ସାହେବଙ୍କ କ୍ଲାସ ପରେ ପରସିୟନ ଥିଏଟରକୁ ଓହ୍ଲେଇ ଆସୁଥିଲି ।'' କିଶବରୀ କହି ଗ୍ୱଲିଥାଏ ଆଉ ମଝିରେ ଚୁପ୍‌ହେଇ ଝରକା ବାହାରକୁ ଅନେଇ ରହିଲା, ଯୋଉଠୁ ଶିଶିର ବିନ୍ଦୁ ଧୀରେ ଧୀରେ ଝରିଆସୁଥିଲା ।

'କ'ଣ ତୁମେମାନେ କେବେହେଲେ ଭାବିଛ ?' ସେ ସାଙ୍ଗମାନଙ୍କୁ ସଂବୋଧିତ କରି କହିଲା— ''ଆମେ ଯୋଉ ଛଅଶହ ବର୍ଷ ଧରି ଗୋଟାଏ ପାଚେରୀ ଛାଇରେ ଥିଲୁ, ଗୋଟାଏ ମାଟିରେ ଆମର ଆଉ ତା'ର ନିର୍ମାଣ ହୋଇଥିଲା— ଗ୍ୱରିବର୍ଷ ପରେ ସେତେ-ବେଳେ ଖେମ ମୋତେ ଦେଖି ଘଡ଼ିକ ପାଇଁ ଅପ୍ରତିଭ ହେଲା, ପରେ ''ହେଲୋ କିଶବରୀ' କହି ଆଗକୁ ବଢ଼ିଗଲା ।''

'ଆଉ ମୁଁ ବି ଭାବିନେଲି ଠିକ୍ ଅଛି । ମୁଁ ଆଉ ସେ ଏଇଦିନଟି ଲାଗି ପ୍ରସ୍ତୁତ ହେଉଥିଲୁଁ । ସେ ମହିଳା ବିଦ୍ୟାଳୟର ଝିଅ । କଂଗ୍ରେସ ପ୍ରତି ତା'ର ଆସ୍ଥା । ମୋର ବାପା ଭାରି ନେଶନେଲିଷ୍ଟ ମନେହେଉଥିଲେ, ତେବେ ମୁଁ ଉଗ୍ର ମୁସ୍ଲିମ୍ ଲିଗୀ । ପାକିସ୍ଥାନ ଦିବସର ସମାରୋହ ବେଳକୁ ଖେମ ଆଉ ତା'ର ସାଥୀମାନେ ଆମ ଉପରକୁ ଟେକାମାଡ଼ କଲେ । 'ଅଖଣ୍ଡ ଭାରତ ସପ୍ତାହ' ପାଳନ ବେଳେ ଆମ ସହଯୋଗୀମାନେ ତାଙ୍କ ପେଣ୍ଡାଲରେ ପିକେଟିଂ କଲେ । ଏସବୁ ଯାହାକିଛି ବି ହେଉଛି ସବୁ ଠିକ୍ । ଆଉ ଯେମିତି ଜୀବନ ନୁହଁ, ଭି.ଶାନ୍ତାରାମଙ୍କ ଫିଲ୍ମ । ଭଲ ପଡ଼ୋଶୀ ହୁଅ । ଭାଇ ଭାଇ ହୁଅ । କିଆଁ କରିବୁଁ ସୋଦର-ପଣିଆ ? କିଛି ଜବରଦସ୍ତି ଅଛି ନା ! ଏଇ ଗୋଟାଏ ଉଦାହରଣ ମୋର ଆଉ ଖେମର ଦେଖିନଉନ ! ଜନ୍ମ ଜନ୍ମର ପଡ଼ୋଶୀ ଆମେ । କିଭଳି ବନ୍ଧୁତା ଆଉ ଆପଣାପଣ ନଥିଲା !

ତେବେ ଆମେ ସେମାନଙ୍କ ପାଇଁ ମ୍ଲେଚ୍ଛ । ତାଙ୍କର ରୋଷଘରର ପାଖକୁ ବି ଯାଇପାରିବୁଁ ନାହିଁ । ଆମ ମା ଶିୟାବୋଲି ଯଦି ହିନ୍ଦୁ ଦୋକାନରୁ କିଛି ଜିନିଷ କେତେବେଳେ ଆସି ଯାଉଥିଲା, ସେ ତା'କୁ କୁଣ୍ଡରେ ବୁଡ଼େଇ ଧୋଇ ପବିତ୍ର କରିପକଉ ଥିଲା । ଗୋଟାଏ ଦେଶ ଏମିତି ତିଆରି ହୁଏ ! ବିଭାଜନର ଦାବି ଭାରତବର୍ଷର ସଂପୂର୍ଣ୍ଣ ଇତିହାସ ଅତି ସ୍ୱାଭାବିକ ଆଉ ତର୍କପୂର୍ଣ୍ଣ ପରିଣାମ !'

କିଶବରୀ ଚୁପ୍ ହୋଇଗଲା ।

ଫାୟର ପ୍ଲେସରେ ନିଆଁ ଲହରେଇ ଲହରେଇ ଜଳୁଥିଲା । କେହି ଜଣେ ଧୀରେ ସେଥିରୁ ଜଳନ୍ତା ଅଙ୍ଗାରଟିଏ କାଢ଼ି ବାହାରେ ପକେଇଦେଲା । କିଛି ବେଳ ଜଳି ତାହା ପୁଣି ଲିଭିଗଲା । ତଳେ ସଡ଼କ ଉପରେ ଭିକାରୀଟିଏ ଆକର୍ଡିୟନରେ 'ମୌଜୋ କେ ଉପର୍'ର ବାଲ୍‌ଜ ବଜେଇ ବଜେଇ ଚାଲି ଯାଉଥିଲା ।

'ଆଜି ମୁଁ କମଳ କୁମାରୀ ଘରକୁ ଚା' ପାଇଁ ଡାକରାରେ ଯାଇଥିଲି ।' ଉର୍ମିଳା କହିଲା । 'ସେଠିକି ଅନେକ ଲୋକ ଆସିଥିଲେ । ମୁଁ ସେ ସମସ୍ତଙ୍କୁ ଆମର ମଜଲିସ ମେଳାକୁ ସଫଳ କରିବାକୁ ଚେଷ୍ଟା କରିବାକୁ ଅନୁରୋଧ କଲି ।'

'କମଳ କୁମାରୀ !' କିଶବରୀ କିଛି ମନେପକେଇଲା ଭଳି କହିଲା

'ହଁ, ସେ ଆମର ନୂଆ ଫାଷ୍ଟ ସେକ୍ରେଟେରୀଙ୍କ ପତ୍ନୀ । ଭାବିଲି ବେଶ ସମର୍ଥ ମହିଳାଟିଏ । ତା'ଦ୍ୱାରା ମେଳାବେଳେ ଭାରୀତୟ କଳା ଉପରେ ଭାଷଣ ବି ହେବ ! ପାମଦତ୍ତ ଆଜି ଥିବେ । ସେ ବିଚାରୀ ସ୍ୱୀକୃତି ଦେଲା ।'

'ସୂର୍ଯ୍ୟ ଅସ୍ତ ହୋଇଗଲା— ସୂର୍ଯ୍ୟ ଅସ୍ତ ହୋଇଗଲା' ପାଖ କୋଠରିରୁ ମେଳାର ପ୍ରୋଗ୍ରାମ ରିହର୍ସଲ କରୁଥିବା ଝିଅମାନେ ହାରୀନ୍ଦ୍ରନାଥ ଚଟ୍ଟୋପାଧ୍ୟାୟଙ୍କ କୋରସ ଅଗ୍ରନକ ଗାଇବା ଆରମ୍ଭ କରିଦେଲେ ।

'ମୁଁ ଅନେକ ଚେଷ୍ଟାକରି ଭାବିଲି ଯେ ମୁଁ ଯେତେବେଳେ ୟୁନିଭରସିଟିରେ ଲୋକଙ୍କୁ ଭେଟୁଛି; ଇଟାଲୀର ଲୋକ ଅଛନ୍ତି, ବ୍ରାଜିଲ୍, ଇରାକ ଆଉ ମିଶରିଏନ୍, ମୁଁ ଏମାନଙ୍କ ସାଙ୍ଗରେ ଏମିତି କଥା ହେବାକୁ ଚାହୁଁନାଇଁ କାହିଁକି ? ତା'ପରେ ଆମର ପ୍ରଫେସର ଅଛନ୍ତି । 'ହମ ଅସର ଫନୂନ କୀ ଅଂଜୁମନ (ସମକାଳୀନ କଳା ସଂସ୍ଥାନ)ର ସଦସ୍ୟ । ସେ ଆମର ସମସ୍ୟା ଉପରେ ବଡ଼ ବଡ଼ ବହି ଲେଖିଛନ୍ତି । ଆମର ଗହନ ଅଧ୍ୟୟନ କରିଛନ୍ତି । ଖବରକାଗଜରେ ସେ ଆମ ଉପରେ ଏଡ଼ିଟୋରିୟଲ ଲେଖନ୍ତି । ପାର୍ଲିଆମେଣ୍ଟ (ବିଦ୍ୟାଳୟ)ରେ ଆଉ ରେଡ଼ିଓରେ ଆଲୋଚନା କରନ୍ତି ।' କିଶବରୀ କହିଲା ।

'ଚଉଦିଗେ ଜଳିଲା ନିଆଁ, ହୃଦୟେ ଜାଗିଲା କ୍ଷୁଧା ତୃଷା- ପଦେ ପଦେ ଆମେ ଯିବା ଗାଇ.... ଯିବା ଗାଇ... ଯିବା ଗାଇ—' ଝିଅମାନେ ଗାଉଥିଲେ । 'ମୋର ମନ କରୁଛି, ସବୁ କଥା କହି ଦିଅନ୍ତି । ସବୁ ପ୍ରହେଳିକା ବୁଝେଇ ଦିଅନ୍ତି ।' ସେ ତା'ର ସାଙ୍ଗମାନଙ୍କୁ ଉଦାସ ସ୍ୱରରେ କହିଲା— ''ଯେମିତି କି ତମେମାନେ ବି ମୋତେ କୌଣସି

ଜୋକର ବା କମେଡିଏନ୍ ବୋଲି ମନେକରିବ ନାହିଁ । ଏ ସବୁ ପୃଷ୍ଠଭୂମି, ସବୁ କାହାଣୀକୁ ଦୂରରେ ରହି ଦେଖ, ଆଉ କିଛି ଏକ ନୂଆ ପନ୍ଥା ବାଛି ନିଅ ।'' ରାସ୍ତାରେ କୈରଲ ଗାଇବା ଦଳମାନଙ୍କର ବଢ଼ିଗ୍ଭଲିବା ଆରମ୍ଭ ହୋଇ ସାରିଥାଏ ।

'କ୍ରିସ୍‌ମସ୍‌ର ବେଳ ବି ସରିବା ଉପରେ ଆସିହେଲା—' ରୋଜ୍‌ମେରୀ କହିଲା ।

''ହଁ ଜୌନ୍‌ପୁରରେ ଆମ ସାହିରେ ବି ଶୋକାକୁଳ ଲୋକେ ଚେହଲମ (ମୁହର୍ରମର ୪୦ ଦିନ ବାଦ)ର ତାଜିଆ ଛାଇରେ ବସି ଆପଣା ଆପଣା ମନ୍ଦ କପାଳ ନେଇ କାନ୍ଦୁଥିବେ। ହୁଏତ ମୁହର୍ରମର ବେଳ ବି ଆଖର ହୋଇଥିବଣି । ପୁରୁଣା କେଲେଣ୍ଡର ବେକାର ହେଲାଣି । ମୋତେ କିଛି ଜଣାନାଇଁ—'' କିଶବରୀ ଛାତି ଭିତରୁ କହିଲା ।

'ବରଫ ବେଶ ଅଧିକ ପଡୁଛି । ଏହା ବାଦ ବସନ୍ତ ଆସିବ । କ'ଣ ପୂରା କାଳ, ସବୁ ପାଗ ଏତେ ବେକାର ହୁଅନ୍ତି ?' ରୋଜ ମେରୀ ନିଜେ ନିଜକୁ କହିଲା

'ନା' କିଶବରୀ ଉତ୍ତର ଦେଲା ।

'ପଦେପଦେ ଆମେ ଯିବା ଗାଇ'— ଝିଅମାନେ ପୁଣି ଗାଇଲେ ।

(୭)

ଗ୍ଭରବାଗ ଷ୍ଟେସନରେ ଶେଷଥର ପାଇଁ ଖେମକୁ 'ଖୁଦାହାଫିଜ୍' କହିବା ପରେ କିଶବରୀକୁ ନିଶ୍ୱାସ ନେବାକୁ ହେଲେ ବେଳ ମିଳିଲା କେତେବେଳେ ! ପ୍ରଥମେ ମୁସ୍ଲିମ ସ୍କୁଲ, ତା'ପରେ ଗ୍ଭନ୍ଦବାଗ, ତା'ପରେ କେନିଙ୍ଗ କଲେଜ । ଜମାନା କେଉଠୁ କୋଉଠି ପହଞ୍ଚି ଯାଇଥିଲା । ପ୍ରତ୍ୟେକ କାର୍ଯ୍ୟକ୍ରମରେ କିଶବରୀ ସାମନାରେ ରହିଥାଏ । ତର୍କସଭା ହେଉ କି ବେଡମିଣ୍ଟନ୍ ଟୁର୍ଣ୍ଣାମେଣ୍ଟ । ମୁସ୍ଲିମ୍ ଷ୍ଟୁଡେଣ୍ଟସ ଫେଡେରେସନକୁ ଉପରକୁ ଉଠେଇବା କାମ । ତେଣେ ହିନ୍ଦୁ ଷ୍ଟୁଡ଼େଣ୍ଟସ ଫେଡ଼େରେସନ ଥିଲା । ମହାସଭାବାଲା ବିଦ୍ୟାର୍ଥୀଙ୍କର ସମାରୋହ ଶୋଭାଯାତ୍ରା ଥିଲା, ଯେଉଁଥିରେ କେତେବେଳେ କେମିତି ଖେମ ରାୟଜାଦା ଦୂରରୁ ଦିଶିଯାଉଥିଲା । ଛାତ୍ରମାନଙ୍କର ଦୁନିଆ ବେଶ କିଛିଟା ରାଜନୀତିର ଆଖଡ଼ା ପାଲଟି ଯାଇଥାଏ। ଘରକୁ ଫେରିଲେ ବି ସେଇ ରାଜନୀତି । କାଲିର ଚିନ୍ତା, ଭବିଷ୍ୟତର ଚିନ୍ତା, ଦେଶର ବିଭାଜନ, ହେବ... ହେବନାହିଁ— ହେବ... ହେବ ନାହିଁ... ।

ୟୁନିଭର୍‌ସିଟିରେ ଲେକଚର୍ସ ମଝିରେ ପ୍ରଫେସରଙ୍କ ସାଙ୍ଗରେ ଝଗଡ଼ା ହୋଇଯାଏ । ଉପରେ ଉପରେ ବନ୍ଧୁତା ଓ ଭାଇଭାଇ ଭାବ ଥାଏ, ତେବେ ଅନ୍ତିମ 'ଶୋ ଡାଉନ୍' ପାଇଁ ଷ୍ଟେଜ୍ ପୂରା ପ୍ରସ୍ତୁତ ହୋଇରହିଥିଲା ।

ଡାକ୍ତର ଆଫତାବ ରାୟ ସେ ପର୍ଯ୍ୟନ୍ତ ଇତିହାସ ବିଭାଗରେ ଥା'ନ୍ତି । ଦିନେ ଗୋଟାଏ ଲେକ୍‌ଚର ମଝିରେ ତାଙ୍କ ସାଙ୍ଗରେ ବି ଝଗଡ଼ା ହେଲା । ଗୋଟାଏ ହିନ୍ଦୁ ଛାତ୍ର କହିଲା— 'ସ୍ୱାଧୀନତାର ଅର୍ଥ ହେଲା— ପୂର୍ଣ୍ଣ ସ୍ୱରାଜ୍ୟ । ଭାରତର ମାଟିକୁ ପୁଣିଥରେ ଶୁଦ୍ଧ କରିବା । ସେଇ ସବୁ ଜାତିର ପ୍ରଭାବରୁ ମୁକ୍ତ ହେବା, ଯେଉଁମାନେ ବାହାରୁ ଆସି ଆକ୍ରମଣ କରିଛନ୍ତି । ଏହାହିଁ ତିଳକଜୀ କହିଥିଲେ... ହଁ.... ।'

ସେଇ ପିରିୟଡ୍‌ରେ ଶିବାଜୀଙ୍କ ବିଷୟରେ ଆଲୋଚନା ହେଉଥିଲା । ତେଣୁ ଗୃହଯୁଦ୍ଧ ଅନିବାର୍ଯ୍ୟ ହୋଇପଡ଼ିଥିଲା । ସଂଧ୍ୟା ପର୍ଯ୍ୟନ୍ତ ସାରା ବିଶ୍ୱବିଦ୍ୟାଳୟରେ ଏ ସମାଗ୍ରର ପ୍ରସାରିତ ହୋଇଗଲା— ଡାକ୍ତର ଆଫତାବ ରାୟଙ୍କ କ୍ଲାସରେ ହିନ୍ଦୁ-ମୁସ୍ଲିମ୍ ଝଗଡ଼ା ହୋଇଗଲା ।

ତା'ପରଦିନ ସକାଳେ ପୂରା ଶୋଭାଯାତ୍ରା ନେଇ କିଶବରୀ ଡାକ୍ତର ଆଫତାବ୍ ରାୟଙ୍କ ଅଫିସରେ ପହୁଁଚିଗଲା ।

'ଡାକ୍ତର ସାହବ', ସେ ଭାରି ପ୍ରଭୁତାପୂର୍ଣ୍ଣ ସ୍ୱରରେ ଆରମ୍ଭ କଲା— 'କାଲି ଆପଣ ଯେଉଁପରି ଭାବରେ ହଜରତ ଔରଙ୍ଗଜେବ ରହମତୁଲ୍ଲାହ ଅଲୈହଙ୍କ ସଂବନ୍ଧରେ ଟିପ୍ପଣୀ ଦେଲେ, ଆପଣ ସେଥିପାଇଁ କ୍ଷମା ମାଗନ୍ତୁ । ନହେଲେ ଆମେ ଷ୍ଟ୍ରାଇକ୍ କରିବୁଁ । ଭାବିଲେ ଆମେ ଷ୍ଟ୍ରାଇକ୍ କରି ସାରିଛୁଁ । ଆପଣ ଆମକୁ ମାନସିକ ଦୁଃଖ ଦେଇଛନ୍ତି ।'

ଆଫତାବ ରାୟ ଆଶ୍ଚର୍ଯ୍ୟ ଚକିତ ଆଖିରେ କିଶବରୀକୁ ଅନେଇ ରହିଲେ— ''ଆରେ ତୁ ! ଡେପୁଟୀ ଜାଫର ଆବ୍‌ବାସର ଝିଅ ନା ? ପାଗଳୀ''... କହିଦେବେ ବୋଲି ତାଙ୍କ ମୁହଁରୁ ବାହାରି ଆସୁଥିଲା, ତେବେ କିଶବରୀର ଉଦ୍ଦଣ୍ଡ ଚେହେରା ଦେଖି ରହିଗଲେ ଆଉ ଗମ୍ଭୀର ସ୍ୱରରେ କହିଲେ, ''କଥା ହେଲା ମିସ ଆବ୍‌ବାସ୍''... ସେ କହିବା ଆରମ୍ଭ କଲେ... 'ରାଜନୀତି ଆଉ ଶିକ୍ଷା ପାଇବା ଭିତରେ... ।''

''ଆଉ ଡକ୍ଟର ସାହବ ଆଉ...' କେହି କଥା କାଟି ଆଗକୁ ବଢ଼ିଆସି କହିଲା... ''ଆମେ ସବୁ ବାହାନା ଜାଣିଛୁଁ । କ୍ଷମା ମାଗନ୍ତୁ ଆପଣ !''

''ଡକ୍ଟର ସାହବ, ମୁଁ କହୁଛି ଆପଣ କାହିଁକି ବନାରସ ଫେରିଯାଉ ନାହାନ୍ତି ।'' ଆଉ ଏକ ସ୍ୱର ଶୁଭିଲା ।

''ଦେଖ ପିଲାମାନେ'' ଆଫତାବ ରସାନଙ୍କୁ କହିଲେ, ''କ୍ଷମା ମାଗିବାର ପ୍ରଶ୍ନ ହିଁ ଉଠୁନାହିଁ । ଇତିହାସକୁ ନେଇ ମୋର କିଛି ମୌଳିକ ସିଦ୍ଧାନ୍ତ ଓ ବକ୍ତବ୍ୟ ଅଛି । ମୁଁ କାହିଁକି କାହା ମନରେ କଷ୍ଟ ଦେବି ? କ'ଣ କହୁଛ ତମେମାନେ ?''

'ଆମେ କିଛି ଜାଣିନୁ ।' ସେମାନେ ପାଟିତୁଣ୍ଡ କରିବା ଆରମ୍ଭ କରିଦେଲେ 'ଆପଣ କ୍ଷମା ମାଗନ୍ତୁ, ନହେଲେ ଆମେ କାଲି ଔରଙ୍ଗଜେବ ଡେ ପାଳନ କରିବୁଁ ।''

''ନିଶ୍ଚୟ ପାଳନ କର ।'' ଆଫତାବ ରାୟ ବିରକ୍ତ ହୋଇ କହିଲେ ।

''ଆଉ ଆମେ ପୂରା ଷ୍ଟ୍ରାଇକ କରିବୁଁ ।''

''ନିଶ୍ଚୟ କର । ଈଶ୍ୱର ତମକୁ ସଫଳ କରନ୍ତୁ ।'' ସେ ଧୀର ଗଳାରେ କହିଲେ, ଆଉ ଟିକ ଉଠେଇ ଭିତରକୁ ଗ୍ଲଲିଗଲେ ।

'ଇଏବି ଉଗ୍ର ମହାସଭାବାଲା !' ରୁଣ୍ଡ ହେଇଥିବା ପୁଅଝିଅଗୁଡ଼ିକ ନିଜେନିଜେ କଥା ହେଲେ ଆଉ ପୋର୍ଟିକୋରୁ ବାହାରି ଆସିଲେ ।

ସେଇ ରାତିଟି ଆଫତାବ ରାୟ ବେଶ ଅଶାନ୍ତ ମନରେ କାଟିଥିଲେ । ଅବସ୍ଥା

ଧୀରେ ଧୀରେ ଖରାପରୁ ଖରାପ ହେଉଥିଲା । ମୁସଲମାନ ଛାତ୍ରମାନଙ୍କୁ ଭଲ ନମ୍ବର ମିଳୁ ନଥିଲା ଆଉ ହିନ୍ଦୁପିଲାଏ ସେମିତି ପାଶ କରି ଯାଉଥିଲେ । ହଷ୍ଟେଲରେ ହିନ୍ଦୁ ମୁସଲମାନ ଏକାଠି ରହୁଥିଲେ, ତେବେ ଯେଉଁ ହଷ୍ଟେଲରେ ମୁସଲମାନ ପିଲାଙ୍କ ସଂଖ୍ୟା ଅଧିକ, ସେଇଠି ଶାଗୁଆ ପତାକା ଉଡ଼ିବା ଆରମ୍ଭ ହୋଇଥିଲା । ଆଉ ତା'ର ଜବାବରେ ଠିକ୍ ନମାଜ ବେଳକୁ ଅଧିକସଂଖ୍ୟକ ହିନ୍ଦୁ ଥିବା ହଷ୍ଟେଲ୍‌ରେ ଲାଉଡସ୍ପିକର ଲଗେଇ ଜୋର୍ ଜୋର ଗ୍ରାମୋଫୋନ୍ ବାଜୁଥିଲା ।

କିଛି ଦିନପରେ ଆଫତାବ ରାୟଙ୍କ ମୁଣ୍ଡରେ କ'ଣ ପଶିଲା କେଜାଣି, ସେ ଚାକିରିରୁ ଇସ୍ତଫା ଦେଇଦେଲେ ଓ ଅନ୍ତର୍ଦ୍ଧାନ ହୋଇଗଲେ । ସାରା ସହରରେ ଖୋଜା ପଡ଼ିଗଲା । ଆଉ ଆଫତାବ ରାୟ କୋଉଠି ହେଲେ ମିଳିଲେ ନାହିଁ । ଲୋକେ କହିଲେ— ତାଙ୍କର ଗୋଟାଏ ଚୂଡ଼ି ଢ଼ିଲା ଥିଲା, ସନ୍ନ୍ୟାସ ଗ୍ରହଣ କରିଥିବେ । ତା'ପରେ ବିଭାଜନ ହେଲା ଦେଶର । ସେତେବେଳେ କାହାର ବା ଚେତା ଥିଲା ଯେ ଆଫତାବ୍ ରାୟଙ୍କର ଚିନ୍ତା କରନ୍ତା । ସମସ୍ତଙ୍କୁ ଆପଣା ଆପଣା ଜୀବନର ଚିନ୍ତା ଘାରୁଥିଲା ।

ଦେଶ ସ୍ୱାଧୀନ ହେଲା । ଖେମବତୀର ବାହା ହୋଇଗଲା । କିଶବରୀର ଘରୁ ଅଧାଅଧି ପାକିସ୍ଥାନ ଚାଲିଗଲେ । ବାପା ତା'ର ବେଶ ବୁଢ଼ା ହୋଇ ଯାଇଥିଲେ । ଆଖିକୁ କମ ଦିଶୁଥିଲା ବି । ଗୋଟାଏ ଗୋଡ଼ ପେରାଲିସିସ୍ ହୋଇ ପୂରା ଅଚଳ ହୋଇ ଯାଇଥିଲା । ଦିନସାରା ସେ ତାଙ୍କର ଜୌନପୁର ବୈଠକ ଘରେ ପଲଙ୍କରେ ପଡ଼ିରହି 'ନୋଦ ଅଲୀ'ଙ୍କ ଜପ କରୁଥିଲେ ଆଉ ପୋଲିସ୍ ତାଙ୍କୁ ବାରଂବାର ହଇରାଣ କରୁଥିଲା— 'ଆପଣଙ୍କ ପୁଅଠାରୁ ପାକିସ୍ଥାନରୁ କେବେ ଚିଠି ଆସିଥିଲା ! ଆପଣ କରାଚୀରେ କେତେ ସଂପତ୍ତି କରିଛନ୍ତି ! ଆପଣ ନିଜେ କେବେ ଯିବେ ?' ଅସଗର ଅବ୍‌ବାସ ତାଙ୍କର ଗୋଟାଏ ବୋଲି ପୁଅ । ସେ ପାକିସ୍ଥାନୀ ସୈନ୍ୟବାହିନୀରେ ମେଜର । ନା ସେ ତାଙ୍କ ପାଖକୁ ଚିଠି ଲେଖିପାରୁଥିଲା ଆଉ ସେ ମରିଯିବ ଯଦି ତାକୁ ସେ ଦେଖି ମଧ୍ୟ ପାରିବେ ନାହିଁ । ସେ ସବୁବେଳେ, କିଶବରୀ ତା' ପାଖକୁ ରାବଲପିଣ୍ଡୀ ଚାଲିଆସୁ ବୋଲି ଜୋର ଦେଇ କହୁଥିଲା । ମାତ୍ର ଡେପୁଟୀ ସାହେବ ଆଦୌ ରାଜି ହେଉ ନଥିଲେ । ଶେଷବେଳକୁ କ'ଣ ଝିଅକୁ ବି ଆଖିରୁ ଉଚ୍ଛୁଆଳ କରିଦେବେ ? ସେହି କିଶବରୀ; ସେ ବିସ୍‌ମିଲ୍ଲାଜ କୀ ଗୁଂବଦ (ସୁରକ୍ଷିତ ସ୍ଥାନ)ରେ ପଢ଼ିଥିଲା । ଏଇନେ ସମୟ ଏମିତି କଡ଼ ଲେଉଟେଇଛି ଯେ ସେ ଜୌନପୁରର ଘରର ଘେରରୁ ଦୂର ଲକ୍ଷ୍ନୌର କୈଳାଶ ହଷ୍ଟେଲରେ କେତେ ବର୍ଷ ହେଲା ପଡ଼ିରହିଛି । କୌଣସିମତେ ଏମ୍.ଏ. ହୋଇଗଲେ ପାକିସ୍ଥାନ ଚାଲିଯିବ । ଆଉ ସେଇଠି ଚାକିରି କରିବ । ଆରେ ଭାଇ, ସ୍ୱାଧୀନ ଦେଶର ଝିଅଙ୍କ ଲାଗି ହଜାର ହଜାର ସମ୍ମାନନୀୟ ରାସ୍ତା ଅଛି । କଲେଜରେ ପଢ଼େଇ ପାରିବ । ନେଶନାଲ ଗାର୍ଡରେ ଭର୍ତ୍ତି ହେଇ ଯାଇପାର । ଖବରକାଗଜମାନଙ୍କରେ ଲେଖ । ରେଡ଼ିଓରେ କହ । କ'ଣ ଗୋଟାଏ କଥା ! କେତେ ରାସ୍ତା ଅଛି । ସେ ଦିନ ଗଣୁଥିଲା,

କେମିତି ଦୁଇ ବରଷ ପୂରିଗଲେ ସେ ପାକିସ୍ଥାନକୁ ଛୁ । ତେବେ ବାପାଙ୍କର ସ୍ନେହ ବାଧକ ହେଉଥିଲା । ସେ ବେଶ ଦୁଃଖୀ; ବେଶ ବୁଢ଼ା ହେଲେଣି । ଆଖିକୁ ଠିକ୍ ଦେଖା ଯାଉନି । କହନ୍ତି, 'ଝିଅ ଆଉ କେତେଦିନ ଯେ ମୋ ସାଙ୍ଗରେ ଥା' । ମୁଁ ମରିଗଲେ ତୁ ତୋର ମନ ଇଚ୍ଛା ଚ୍ଛଲିଯିବୁ । ପାକିସ୍ଥାନ ଯା, ଇଂଲଣ୍ଡ ଯା, ଆମେରିକା ଯା'— ଯେଣିକି ମନ ତେଣିକି ଯା । ମୁଁ କୋଉ କଥାରେ ତୋତେ କ'ଣ ଆକଟ କରୁଛି ? ତୁ ଯଦି ଚ୍ଛଲିଯିବୁ ମୁଁ କରିବି କ'ଣ ? ମୋହର୍ରମରେ ମୋ ପାଇଁ କିଏ 'ସୋଜ' ପଢ଼ିଦେବ ! ମୋ ପାଇଁ ଲାଉର ହାଲୁଆ କିଏ ତିଆରି କରିଦେବ ? ପୁଅ ତ ଆଗରୁ ଛାଡ଼ି ଚ୍ଛଲିଯାଇଛି ।'' କହିଲା ବେଳକୁ ଆଖି ତାଙ୍କର ଛଳଛଳ ହୋଇଯାଏ, ଆଉ ସେ ତାଙ୍କର ଧଳା ଦାଢ଼ିକୁ ଜଲଦି ଜଲଦି ଆଉଁସି 'ୟା ଅଲ୍ଲୀ' କହି କାଲ୍ଟପଟକୁ କଡ଼ ବଦଳେଇ ନିଅନ୍ତି ।

ବଡ଼ ଭାଉଜ ତାଙ୍କୁ କହନ୍ତି— 'ବାଉଳା ହେଲ ନା ତମେ ! କେତେଦିନ ଆଉ ଝିଅକୁ ପାଖରେ ବସେଇ ରଖିଥିବ ? ଆଜି ନ ଗଲା କାଲି ଯିବ । ସେ ତ ଦିନେ ନା ଦିନେ ଅବଶ୍ୟ ଯିବ । ତା'ର ଆଉ ଏଇଠି କୋଉ ସଂବନ୍ଧ ରହିଛି । ସବୁ ଭଲ ଭଲ ପିଲା ତ ପାକିସ୍ଥାନ ଚ୍ଛଲିଗଲେ ଆଉ ସେଇଠି ତାଙ୍କର ବାହାସାହା ବି ଧଡ଼ ଧଡ଼ ହେଇଯାଉଛି । ଇଏ ଅସଗର ପାଖକୁ ପହଞ୍ଚିଗଲେ ବି ସେ ଭଲ ପିଲାଟିଏ ଦେଖି ସବୁ ଠିକ୍ କରିଦେଇ ପାରନ୍ତା ।' ବଡ଼ ଭାଉଜର ଏ ଯଥାର୍ଥପ୍ରିୟତା ଫଳରେ କିଶବରୀର କ୍ଷୋଭ ହିଁ ଅଧିକ ହେଉଥିଲା । ଏଇ ବାସ୍ତବିକତାର ଆଧାରରେ ସେ କେବେହେଲେ ପାକିସ୍ଥାନ ଯିବା ବିଷୟରେ ଚିନ୍ତା କରିନାହିଁ । ତେବେ ସେ ଏଇଆ ଭାବୁଥିଲା ଯେ ବାପା ଏମିତି କୋଉ ଖୁଣ୍ଟ ପୋତି ଭାରତବର୍ଷରେ ରହିଛନ୍ତି । ଭଲ ଉଡ଼ାଜାହାଜରେ ପାକିସ୍ଥାନ ପହଞ୍ଚି ଯାଆନ୍ତେ; ନା ନାଇଁ ! ଆଉ ବାପାଙ୍କର ଏ ଯୋଉ ଦେଶଭକ୍ତି ! ସାରା ଜୌନପୁର ଜାଣିଛି ବାପା କେତେବଡ଼ ନେସନାଲିଷ୍ଟ । ତେବେ ବି ପୋଲିସ ପିଛା ଛାଡୁନି । ସବୁ ଅଧିକାରୀ ପୋଲିସବାଲା, ଯେଉଁମାନଙ୍କ ସାଙ୍ଗରେ ସାରା ଜୀବନର ଉଠାବସା ଥିଲା, ସେଇମାନେ ଏଇନେ ଶତ୍ରୁ । କାଲି ଅଜାୟବ ସିଂ ଚୌହାନ, ଯିଏ ପ୍ରତିଦିନ ଆସି ବାପାଙ୍କ ସାଙ୍ଗରେ କବିତା ଆଲୋଚନା କରୁଥିଲା, ଦି'ଥର ପିଆଦା ପଠେଇ ଘର ଖାନତଲାସୀ କରେଇଛି । ଯେମିତିକି ଆମ ଘରେ ଗୋଳାବାରୁଦ ହାତ ହତିଆରର ଭଣ୍ଡାର ଗୁପ୍ତରେ ରହିଛି । ସେ ତ ହେଲେ ବାପାଙ୍କ ଲାଗି ସହାନୁଭୂତି ଦେଖେଇ ଥାଆନ୍ତା ।

ଏଇନେ ଡେପୁଟୀ ସାହେବଙ୍କର ଆର୍ଥିକ ଅବସ୍ଥା ବି ଧୀରେ ଧୀରେ ଖରାପ ହେଇ ଯାଉଥିଲା । ଅସଗର ଅବ୍‌ବାସ ପାକିସ୍ଥାନରୁ ପଇସା ପଠେଇ ପାରିବ ନାଇଁ । ଯାହା କିଛି ବା କମ୍ ବେଶୀ ଜମିଜମା ଥିଲା, ତାକୁ ହିନ୍ଦୁ ଭାଗୁଆଳୀ ଜବରଦଖଲ କରିନେଇଥିଲେ । ଦେବାନୀ ଅଦାଲତରେ ଡେପୁଟୀ ସାହେବଙ୍କର ଶୁଣାଣିର ପ୍ରଶ୍ନ ବି ଉଠୁ ନଥିଲା । ସ୍ୱର୍ଗୀୟା ସାନମାଆଙ୍କ ମାଲିମୋକଦ୍ଦମା ବାଦ ଯୋଉ ଆୟଅଳଂକାର ବାକି ରହିଯାଇଥିଲା, ତାକୁ

ବଡ଼ ଭାଉଜ ସାଉଁଟି ନେଇ ତାଙ୍କ ବୋହୂକୁ ଦେଇ ସାରିଥିଲେ । ସେ ସେସବୁ ନେଇ ପାକିସ୍ଥାନ ଚାଲିଯାଇଛି । ବାକି ଡେପୁଟି ସାହବଙ୍କ ପେନ୍‌ସନର ପଇସା କିଶବରୀର ପଢା ଖର୍ଚ୍ଚକୁ ନିଅଣ୍ଟ । ତାଙ୍କ ଚିକିତ୍ସାକୁ କୋଉଠୁ ଆସିବ ? ଆଉ ପକ୍ଷାଘାତ ବି ଏମିତି ରୋଗଟିଏ, ଯାହା ଜୀବନ ସାଙ୍ଗରେ ଯିବ । ସ୍ଥିତି ଏମିତି ଆସି ହେଲା ଯେ ବଡ଼ ଭାଉଜ ଚୁପ୍‌ଚାପ୍ ଛମ୍ମୋ ବେଗମ ହାତରେ ଯାହା କିଛି ବି ଗହଣାଗାଣ୍ଠି ରହି ଯାଇଥିଲା, ଗୋଟି ଗୋଟି ବିକେଇ ଦେଇଥିଲେ । ତେବେ ତାହା ସେମିତି କିଛି ଲାଜସରମ କଥା ତ ନୁହଁ ! ସେ ଯୋଉ କଥା ଅଛି 'ମର୍ଗେଅଂବୋହ ଜଶନେ ଦାରଦ' (ସମସ୍ତଙ୍କ ଉପରେ ଏକାସାଙ୍ଗରେ ପଡ଼ିଥିବା ବିପତ୍ତି ଉତ୍ସବ ପାଲଟି ଯାଏ)— ଅନେକ ଅନେକ ମୁସଲମାନ ଘର ଥିଲେ, ଯୋଉମାନେ ତାଙ୍କର ଗହଣାଗାଣ୍ଠି ଆଉ ରୂପା ବାସନ ବିକି ଚଳୁଥିଲେ । କିନ୍ତୁ ବଡ଼ ଭାଉଜ ଭାରି 'ନାକବାଲୀ' । ତାଙ୍କର ଭଲ କାଳ ବିତିବା କେତେ ଦିନ ବା ହୋଇଥିଲା ? ଏସବୁ କଥା କିଶବରୀ ଜାଣିଲା ଯେତେବେଳେ, ସେତେବେଳେ ତା'ର ହଂସା ଉଡ଼ିଗଲା । ପାକିସ୍ଥାନ ଯିବାକଥା ସେ ପୂରା ଭୁଲିଗଲା ଆଉ ପ୍ରାଣପଣେ ଚାକିରି ଖୋଜାରେ ଜୁଟି ପଡ଼ିଲା ।

ତେବେ ଗୋଟାଏ ଜାଗାରେ ତ ତାକୁ ସଫା ସଫା ଶୁଣେଇ ଦିଆହେଲା— ଜାଗା ଖାଲି ଅଛି ଯେ ଆମେ ଶରଣାର୍ଥୀ ଝିଅଙ୍କୁ ଆଗ ସୁଯୋଗ ଦେବୁଁ । ଆଉ ଏ କଥା ସତ ଯେ ଆପଣ କୋଉ ଘରୋଇ ବାଧ୍ୟବାଧକତାରେ ଅଟକି ଯାଇଛନ୍ତି— ପହିଲା ମଉକାରେ ସବୁ ଛାଡ଼ିଛୁଡ଼ି ଦେଇ ପାକିସ୍ଥାନ ପଳେଇବେ ।

ସେ ବୁଲିବାଲି ଜୌନପୁର ଫେରିଆସିଲା । ବଡ଼ ଭାଉଜ କହିଲେ— 'ତୋର ଯୋଉ ସାଙ୍ଗ ଖେମ, ତା'ର ମାମୁଁ ଆଫତାବ୍ ବହାଦୁର, ତାଙ୍କୁ ଯାଇ ଧର, ସେ ତୋତେ ନିଶ୍ଚୟ ସାହାଯ୍ୟ କରିବେ ।' କିଶବରୀ ମନେପକେଇଲା, କେମିତି ଥରେ ଶୋଭାଯାତ୍ରା କରି ତାଙ୍କ ପାଖରେ ପହଞ୍ଚିଥିଲା ଆଉ ତାଙ୍କୁ ଦୁର୍ବ୍ୟବହାର କରିଥିଲା । ସେଇ ଘଟଣାର ଗୋଟାଏ ସପ୍ତାହ ଭିତରେ ତ ସେ ଚାକିରି ଛାଡ଼ି ଯାଇଥିଲେ !

ଆଫତାବ୍ ରାୟ କେଜାଣି ଏଇନେ କୋଉଠି ଥିବେ ? ଉଡ଼ାଖବର ଭଳି ଶୁଣିଥିଲା ଯେ ସେ ବମ୍ବେରେ ସରକାରଙ୍କ ବିରୋଧରେ ଭାଷଣ ଦେଇଥିବାରୁ ଅପରାଧରେ ଧରାହୋଇ ଅହମଦାବାଦ ଜେଲ୍‌ରେ ଥିଲେ । ଜେଲରୁ ଛାଡ଼ ପାଇବାପରେ ବି କ'ଣ ଝମେଲା ହେଲା । ଏଇନେ ହୁଏତ ସେ ଋଷରେ ଅଛନ୍ତି ଆଉ ସମରକନ୍ଦ ରେଡ଼ିଓରୁ ଉର୍ଦ୍ଦୁ ଖବର ଶୁଣାନ୍ତି । ଅନ୍ୟ ଗୁଜବ ହେଲା— ଆଫତାବ ରାୟ ଏଇନେ ପଣ୍ଡିତଜୀଙ୍କର ଛାଇ ଭଳି । ତାଙ୍କୁ କୋଉ ରିପବ୍ଲିକକୁ ଭାରତର ରାଷ୍ଟ୍ରଦୂତ ଭାବରେ ବଛା ଯାଇଛି । ସେ ଯାହାହେଉ ଡାକ୍ତର ସାହବ ତ ଅନେକ ଦିନ ହେଲା ଆତ୍ମଗୋପନ କଲାଭଳି କୋଉଠି ଅଛନ୍ତି । ବିଚରା ଆଫତାବ୍ ରାୟ !

ଆଜି ଚନ୍ଦ୍ରପକ୍ଷ ଜହ୍ନରାତି । ସାହିରେ ଢୋଲ ଥୁଆ ହୋଇ ସାରିଥିଲା । ମଜଲିସ୍ ଏଇନେ ବି ହେଉଥିଲା । ହେଲେ ସେ ଗହଳଚହଳ, ଜାକଜମକ, ନିଶ୍ଚିନ୍ତତା ଆଦି କଥା ଭାବି ବସିଲେ ସ୍ୱପ୍ନ ଭଳି ଲାଗୁଥିଲା । ସାମନାରେ ଆସି ସବାରୀ ସବୁ ପହଞ୍ଚିବା ଆରମ୍ଭ

ହୋଇଗଲା । ଭଦ୍ରମହିଳାମାନେ ଆସି ଇମାମବାଡ଼ା ଅଗଣାରେ ରୁଣ୍ଡ ହେବାକୁ ଲାଗିଲେ । କିଶବରୀ ମନ ନଥାଇ ଦୁଆର ବନ୍ଧଠେଇଁ ତା ବସିବା ଜାଗାଟିରେ ବସି ଯାଇଥାଏ । ଅଗଣାରେ ଯୋଉଠି ଯୋରିଷ ପକେଇବାକୁ ଥାନ ମିଳୁ ନଥିଲା, ସେଇଠି ଖାଲି ଖାଲି ଲାଗୁଛି । ସବୁ ପରିବାରରୁ ଦି' ତିନି ଜଣ ଲେଖାଏଁ ଚ୍ଲିଯାଇଥିଲେ । ବଡ଼ ଭାଉଜ ବେଶ କଷ୍ଟରେ କୌଣସି ମତେ ଚ୍ଲ୍ ଚଳେଇଥିଲେ । ଏଇନେ ଆଉ ସେ ଗହଗହ ମହମହ କୋଉଠି ଅଛି ? ସେ ସବୁ ଚ୍କରାଣୀ ବାକରାଣୀ କିଏ କୁଆଡ଼େ ଗୋଟି ଗୋଟି କରି ଚ୍ଲିଗଲେଣି । କେବଳ ସେଇ ମମୋଲା ରହିଛି, ଆଉ ତା' ସ୍ୱରକୁ ବି କୋଲ ମାରି ଯାଇଛି । ତେବେ ଛମ୍ମୋ ବେଗମ୍‌କୁ ଆସୁଥିବା ଦେଖି ସେ ଏବେବି ଚିହିଁକି ଉଠିଥିଲା— 'ଆସ ଆସ ମ ଛମ୍ମୋ ବେଗମ... ଆସ... ଜମି ଯ ।'

ଛମ୍ମୋ ବେଗମ ଚୁପ୍‌ଚ୍ପ ଆସି ଆସନ ପାଖରେ ଠିଆ ହୋଇଗଲା । ଦର୍ଶନୀ ପଢ଼ି ତାଜିଆକୁ ନଇଁ ସଲାମକରି କାନମୁଣ୍ଡା ଠେଇଁ ଆଙ୍ଗୁଠି ଫୁଟେଇ ଜନାବ ଅଲୀ ଅସଗରଙ୍କର ଖାଗୁଆ ଜରଜେଟର ଝାଲର ଦୋହଲେଇ ସେ ପତାକାଗୁଡ଼ିକ କହିବା ଭଳି ଧୀରଗଳାରେ କହିଲେ— 'ମାଲିକ, ଏଇ ମୋର ଶେଷ ମୋହର୍ରମ ! ମୁଁ ଏଣିକି ଆଉ ଏଇଠି ତୋ ମଜଲିସ କେମିତି କରିପାରିବି ?' କହିଦେଇ ସେ କଇଁ କଇଁ ହେଇ କାନ୍ଦିବାକୁ ଲାଗିଲେ ।

ମୁଦ୍ଦନ ପିଇସୀ ତାଙ୍କର ପୁରୁଣା ବଇରୀପଣ ଭୁଲି ଆସି ତାଙ୍କ ପାଖରେ ବସିଗଲା ଆଉ କହିଲା, ''ପିଇସୀ ହୁସେନ୍‌ଙ୍କ ଦୁଃଖକୁ ମନେ ପକା, ତମର ଦୁଃଖ ହାଲୁକା ଲାଗିବ । ମାଲିକ ତ ସବୁଠେଇଁ ଅଛି । ସେ କ'ଣ ପାକିସ୍ଥାନରେ ନାହିଁ !''

'ହଁ ହଁ...' ବାକି ଭଦ୍ରମହିଳାମାନେ ଲୁହ ପୋଛି ହଁ ଭରିଲେ ।

''ମାଲିକ କ'ଣ ପାକିସ୍ଥାନରେ ନାହିଁ । ତମେ ସେଇଠି ମଜଲିସ୍ କରିବ ।''

''ଦେଖ ପିଇସୀ, ଆମେ ବି ଚ୍ଲିଲୁଁ ପାକିସ୍ଥାନ ।'' ଯେତେବେଳେ ଗୋଷ୍ଠୀର କାନ୍ଦଣା କିଛି କମ ହେଲା ଆଉ ଛମ୍ମୋ ବେଗମ ଜହ୍ନରାତିର ବର୍ଣ୍ଣନା ସାରିଦେଲା, ସେତେବେଳେ ମୁଦ୍ଦନ ପିଇସୀ ବି ତା'ର ଆନାଉନ୍ସମେଣ୍ଟ କରିଦେଲା ।

''ସତ କହ ମୁଦ୍ଦନ ପିଇସୀ !' ବଡ଼ ଭାଉଜ ମସଲା ପାଟିରେ ପକେଇ ପଚ୍ରିଲା ।

''ହଁଲୋ ଝିଅ, ଆମେ ବି ଯିବୁଁ ।'' ମୁଦ୍ଦନ ପିଉସୀ ସ୍ୱୀକାର କଲେ ।

''କେମିତି ଚ୍ଲିଯିବ ?'' ବଡ଼ ଭାଉଜର ଈର୍ଷା ହେଲା ଯେମିତି । 'ଆଚ୍ଛା, ଖାସା ଲୋକେ ଚ୍ଲି ଯାଉଛନ୍ତି । ସବୁ ଝାମେଲା ଝାଟିଆରୁ ଅଲଗା, ସବୁ ଦାରିଦ୍ର୍ୟ ଦୂର ହେଇଯିବ ସେଇଠି ପହଞ୍ଚିଗଲେ । ସତରେ ଯେମିତି !'

''ବାସ୍ ପୁଅ ମାନୁନାଇଁ ବଡ଼ ଭାଉଜ ! ସବୁଥର ଚିଠିରେ ଲେଖୁଛି ଚ୍ଲି ଆ । ଚ୍ଲି ଆ । ସେଠି କୋଉ ଗୋଟେ ଗାଆଁ ଅଛି ସକ୍‌ଖର । ସେଠି ସେ ରାଶନ୍ ଡିପୋ ଖୋଲିଛି ।''

'ଓହୋ ! ମାଲିକ ଭରସା । ସୁଖୀ କରନ୍ତୁ ।' ବଡ଼ ଭାଉଜ କହିଲେ ।

''ଆଶୂର ଙ୍କୀ ଶବ ଲୈଲା...' ମୁଦ୍ଦନ ପିଇସୀ ଘରେ ଚଷମା ଭୁଲି ଆସିଥିଲା ।

ପୁଣିଥରେ ଭୁଲଭାଲ କରି ପଢ଼ିବା ଆରମ୍ଭ କରିଦେଲା । ତେବେ ସବୁରି ମନରେ ଏତେ ଦୁଃଖ, ଏତେ ବିରକ୍ତି ଥିଲା ଯେ କେହି ହେଲେ ତାକୁ ସୁଧାରିବା ଦରକାର ବୋଲି ଭାବିଲେ ନାହିଁ। ବୁଗ୍‌ଗନ ସ୍ୱରରେ ସ୍ୱର ମିଳେଇଲା । ଦୀପମାନଙ୍କର ଆଲୁଅ ବାରଣ୍ଡାରେ ଧୀର, ମନ୍ଦ ମନ୍ଦ ପ୍ରକାଶ ବୁଣିଥାଏ— ଅଗଣାର ଗେସହାଣ୍ଡି ହଳଦିଆ ପଡ଼ି ଆସୁଥାଏ ।

ସେଇ ଅନ୍ଧାରରେ କିଶବତୀ କଳା ଓଢ଼ଣୀରେ ମୁହଁ ଘୋଡ଼େଇ ଜାକିଜୁକି ହୋଇ ବସିରହି ରାତି-ଆକାଶକୁ ଅନେଇ ରହିଥାଏ ।

(୮)

କମଳ କୁମାରୀ ଜୈନ ଅତିଥିମାନଙ୍କର ଚ୍ଛଲିଯିବା ପରେ ଡ୍ରଇଁରୁମକୁ ଆସିଲେ ଆଉ ଝରକାମାନଙ୍କର ପରଦା ପକେଇ ଦେଲେ । ତା'ପରେ ଚ୍ଛ' ବାସନ ସବୁ ସାଉଁଟି ବସିଲେ। ଗୋଟାଏ ବୋଲି ମାନ୍ଦ୍ରାଜୀ ଆୟା ଥିଲା, ତାକୁ ସେ ସାଙ୍ଗରେ ଆଣିଥିଲେ । ବିଦେଶରେ ଚ୍ଛକରବାକର ଅଭାବ ଉପରେ ସେ ମିଲିଟାରୀ ଆଡଭାଇଜର ବ୍ରିଗେଡ଼ିୟର ଖନ୍ନାଙ୍କ ପତ୍ନୀଙ୍କ ସାଙ୍ଗରେ ଏକ ଅତ୍ୟନ୍ତ କରୁଣ ଆଲୋଚନା କରିଥିଲେ । ଘର ସଫା ଆଉ ପିଲାର ଦେଖାଶୁଣା କରିବା ପରେ ତାଙ୍କୁ ଯେତିକି ସମୟ ମିଳୁଥିଲା, ସେଥିରେ ସେ 'ରୟଲ ଏକାଡେମୀ ଅଫ ଡ୍ରାମାଟିକ୍ ଆର୍ଟ'କୁ ଯାଇ କୋରିୟୋଗ୍ରାଫି ଶିଖୁଥିଲେ । ସାର ଲରେନ୍ସ, ଲେଡୀ ଆଲୀବିୟର, ଏଲ୍ଲୋନୀ, ଏକ୍ସୱେଥ୍, କ୍ରିଷ୍ଟୋଫର ଫ୍ରାଇ— ଏଇମାନଙ୍କ ସାଙ୍ଗରେ ତାଙ୍କର ଘନିଷ୍ଠ ବନ୍ଧୁତା ଥିଲା । ସେମାନେ ଘଣ୍ଟା ଘଣ୍ଟା ଧରି ଅଭିନୟ କଳା, ନୂଆ ଆର୍ଟ ଆଉ ଭାରତୀୟ ବେଲେ ସଂବନ୍ଧରେ କଥା ହେଉଥିଲେ । ଜୈନ୍‌ଙ୍କ ପାଖରେ ଏସବୁ କଥାପାଇଁ ଆଦୌ ସମୟ ନଥିଲା । ସାତ ସାଢ଼େସାତ୍ ବଜେ ସେ ଅଫିସ କାମ ତୁଟେଇ ଇଣ୍ଡିଆ ହାଉସରୁ ଫେରେ ଆଉ ସିଧାସଳଖ କହିଦିଏ "ଭାଇ ମୁଁ ତମ ସାଙ୍ଗରେ ମିଶିଲା ଭଳି ଇଣ୍ଟଲେକ୍‌ଟୁଏଲ ଫିଣ୍ଟଲେକ୍‌ଟୁଏଲ ନୁହେଁ । ସିଧା-ସାଦା ମଣିଷ । ଯୋଉ ଢାଞ୍ଚାରେ ମୁଁ ପଇଁତିରିସ ମସିହାରୁ ଚ୍ଛଲି ଆସିଛି, ସେହିଭଳି ଅଛି । ସେଇ ମୋ ପାଇଁ ଠିକ୍ ।" ଇଂରେଜ ସମୟରେ ସେ ଦେଶର ଉଚ୍ଚବର୍ଗ କୁତବ-ମୀନାରର ଉଚ୍ଚତମ ସୋପାନରେ ପହଞ୍ଚି ସାରିଥିଲା । ଆଉ ଏଇନେ ତ ସେ ଏତେ ଉଚ୍ଚରେ ଥିଲା, ଯେମିତି ବାଦଲ ଉପରେ ବିରାଜିତ ହୋଇ ରହିଥିଲା । ଇଂରେଜ ସମୟରେ ଡ୍ରେସ ସୁଟ୍ ପିନ୍ଧୁଥିଲା । ଏଇନେ ଧଳା ଚୂଡ଼ିଦାର ପାଇଜାମା ଆଉ କଳା ଶେରବାନୀ ପିନ୍ଧି ଦୂତାବାସ-ଭୋଜିରେ ଅତିକମ ମପା-ତଉଲା ଭାଷାରେ କଥା ହେଉଥିଲା । ନିଜେ କମଳ କ'ଣ କମ ଧୁମଧାମବାଲୀ ମହିଳା ଥିଲା ! ଯେଉଠି କି ବି ଯାଉଥିଲା, ଗୋଷ୍ଠୀ ଜଗମଗ କରି ଉଠୁଥିଲା— ବାଃ ବାଃ। ଉଦାହରଣତଃ ଆଜିର ପାର୍ଟିରେ ସେ କୋରିଆରେ କ୍ରୀଷ୍ଣ ମେନନଙ୍କ ପ୍ରସ୍ତାବ ସଂବନ୍ଧରେ ନ୍ୟୁ ଷ୍ଟେଟସମେନ୍ ଓ ନେଶନ୍‌ର ଏଡ଼ିଟର କିଙ୍ଗସଲେ ମାର୍ଟିନ୍ ଆଉ ନୂଆ କବି ଲୁଇ ମେକନିସ୍‌ଙ୍କୁ ନିର୍ବାକ କରିଦେଲା । ମାନିଗଲେ ସମସ୍ତେ— ଚ୍ଛନ୍ଦବାଗର ଭଲ ପୁରୁଣା

ସୁନେଲୀ ଦିନଗୁଡ଼ିକରେ ତ ସେ ସେଲଭଳି ଇଣ୍ଟଲେକ୍‌ଚୁଏଲ ପାଲଟି ଯାଇଥିଲା, ଯାହା ଲଉନିଭର୍ସିଟି ଜୀବନର ଗୋଟଏ ଜରୁରୀ ଅଂଶ । ସେତିକିବେଳେ ତ ଏଇଆ ସେ ଭାବିନଥିଲା ଯେ ଦିନେ ସେ ସାଂପ୍ରତିକ ଅନ୍ତର୍ରାଷ୍ଟ୍ରୀୟ ଗ୍ଳାମରସ ଲୋକଙ୍କ ସାଙ୍ଗରେ ମିତ୍ରପଣରେ ଭେଟାଭେଟି କରିବ, ଯେମିତି ସେମାନେ ସବୁ ସାଧାରଣ ମଣିଷ । 'ସୂର୍ଯ୍ୟ ଅସ୍ତ ହୋଇଗଲା... ସୂର୍ଯ୍ୟ ଅସ୍ତ ହୋଇଗଲା...।' ଗୁଣୁଗୁଣୁ ଗାଇଗାଇ ଉର୍ମିଳା ଭିତରକୁ ପଶିଆସିଲା ।

'କମଳ ଦିଦୀ... ଯାଉଁ ଯାଉଁ ମନେକଲି, ଆପଣଙ୍କୁ ଆଉଥରେ ମନେ ପକେଇ ଦେଇ ଯିବି... ମଜଲିସକୁ ଯିବାକୁ ହେବ ଆପଣଙ୍କୁ ।'

'ହଁ ହଁ ଭାଇ ।' କମଳ ଉତ୍ତର ଦେଲା । 'ସେ ମୋର ବହିଟି ତ ଦେଇ ଯ ।'

'ଆରେ ହାଁ... ।' ଉର୍ମିଳା ଅଟକି ଯାଇ କହିଲା, ''ସେଇଟା ମୋଠୁ ଡାକ୍ତର ଆଫତାବ ରାୟ ନେଇଯାଇଛନ୍ତି । ଇଣ୍ଡିଆ ଅଫିସ ଲାଇବ୍ରେରୀରୁ ଆସିବାବେଳେ ଭେଟ ହୋଇଥିଲା । ଟାଣିନେଲା ଭଳି ନେଇଗଲେ— କହିଛନ୍ତି କାଲି ଫେରେଇ ଦେବେ ।''

''ଡାକ୍ତର ଆଫତାବ ରାୟ !'' କମଳ ଜୋରଦେଇ କହିଲା ।

''ହଁ ଦିଦୀ...'' ଉର୍ମିଳା ସେହିଭଳି ବେପରୁଆ ଭଙ୍ଗୀରେ କଥା ଜାରି ରଖିଥାଏ । 'ସେ ସେମିତି ସାରା ଦିନ ଲାଇବ୍ରେରୀମାନଙ୍କରେ ପଶି ଥାଆନ୍ତି । ଆଜିକାଲି ଗୋଟାଏ ନୂଆ ବହି ଲେଖୁଛନ୍ତି । ଆଜି ମାସକ ପରେ ସଂଯୋଗକ୍ରମେ ଦେଖାହେଲା । ତାଙ୍କର କିଛି ଭରସା ନାଇଁ । ତେବେ ସେ କାଲି ବ୍ରଡକାଷ୍ଟିଙ୍ଗ ହାଉସକୁ ଆସିବେ । ସେଇଠି ମୋତେ ବହି ଫେରେଇ ଦେବେ ।... ଆଚ୍ଛା... ଗୁଡ୍‌ନାଇଟ କମଳ ଦିଦୀ ।'

'ଗୁଡ୍ ନାଇଟ୍ ।'

'ଆରେ ହଁ !' ସେ ପୁଣି ଯାଉ ଯାଉ ରହିଯାଇ କହିଲା, ''କାଲି ଆପଣ ରୟେଲ କମାଣ୍ଡ ପରଫରମେନ୍ସକୁ ଯିବେ ତ ? ଆପଣଙ୍କୁ ତ ସାର୍ ରଲ୍ଫ ରିଚଡସନ୍ ନିଜେ ଡାକିଥିବେ ।''

''ଆରେ ଭାଇ ନା'... କମଳ ମଥା ଉପରୁ ବାଳ ସଜାଡ଼ି ନେଇ ଥକାସ୍ୱରରେ କହିଲା । ସିଏବି ତାର ଗୋଟାଏ ପୋଜ୍ । ସେ ପୋଉ ମନ ଜଳି ଯାଉଥାଏ, ମିସେସ ଆଗ୍ରୱର୍ଯ୍ୟ, ସେକେଣ୍ଡ ସେକ୍ରେଟେରୀର ସ୍ତ୍ରୀ, ଈର୍ଷାରେ ତା'ର ଗୋଟାଏ ବାନ୍ଧବୀକୁ କହି ଥିଲା— 'ଜାଣିଛୁ ଅସଂଯତ ବାଳ ଯାକୁ ବେଶ ମାନେ । ଡାହାଣୀ କାହାଁକା ! ... ନା' ଉର୍ମିଳା ମୋତେ ସବୁ ଦୂତାବାସର ବ୍ୟସ୍ତତା ଆଉ ପାର୍ଟି ଭାରି ବୋର କରି ପକାଏ ! ସେଥିରୁ କେତେବେଳେ ବି ମୁକ୍ତି ମିଳେନାଇଁ ।'

''ଆଚ୍ଛା, ଗୁଡନାଇଟ୍ !''

''ଭଲ କିନା ଶୋଇ ଯ'...'' କମଳ କହିଲା । ଉର୍ମିଳା ହାରୀନ୍ଦ୍ର ଚଟ୍ଟୋପାଧ୍ୟାୟଙ୍କର କୋରସ ଗୁଣୁଗୁଣୁ ଗାଇ ଗାଇ ତଳ ମହଲାର ତା' କୋଠରି ଆଡ଼କୁ ଗ୍ୱଲିଗଲା ।

''ଇଣ୍ଡିଆ ଅଫିସ୍ ଲାଇବ୍ରେରୀରୁ ବାହାରି ଆସିବାବେଳେ ଭେଟ ହେଲା— ଡକ୍ଟର ଆଫତାବ ରାୟଙ୍କ ସାଙ୍ଗରେ... ତାଙ୍କର କ'ଣ ଭରସା ! ଟାଣି ନେଇଗଲେ । କହିଲେ, ''କାଲି ଫେରେଇବେ ।'' ସେ ସୋଫା ଉପରେ ବସିପଡ଼ିଲା । 'ବାସନ୍ତୀ'... ସେ ପାଟିକରି ଡାକିଲା ।... ''ଖାଇବା ବ୍ୟବସ୍ଥା କର ।'' ସେ ଟେଲିଭିଜନ ଚଳେଇଲା । ବେକାର ! ବନ୍ଦ କରିଦେଲା । ତା'ପରେ ରେଡ଼ିଓ ଲଗେଇଲା । ସେ ବି ବାଜେ । ତାକୁ ବି ବନ୍ଦ କରିଦେଲା । କିଏ ଜାଣେ ଏଇନେ ଲକ୍ଷ୍ନୌ ରେଡ଼ିଓରୁ ଅର୍ଚ୍ଚନା ବାନାର୍ଜି ଗାଉଥିବ 'ପାହାଡ଼ୀ ଝୋରନା ମୁକୁର ମୁକୁର ବାଜାଏ ହୋ...' ଆଉ ଗ୍ଲନ୍ଦବାଗର ଶାନ୍ତ ରାସ୍ତାରେ ଝିଅମାନେ ଲଣ୍ଡନ୍ ସର୍ଭିସ ପରେ ଫେରୁଥିବେ...

'ମୁଁ କ'ଣ କରିଥିଲି ?' ସେ ପ୍ରଶ୍ନ କଲା । କିଛି ନାହିଁ । ମୁଁ ଦଶବର୍ଷ ହେଲା କମଳକୁମାରୀ ଜୈନ । ଏ କ'ଣ କିଛି ହେଲା ! କ'ଣ ସବୁ କେମିତି ହୁଏ ! କାହିଁକି ହୁଏନି ! ବର୍ଷ ବିତିବିତି ଯାଉଛି । ମୁଁ କମଳ କୁମାରୀ, ଯିଏ ଏସବୁ ଦେଖିଛି । ଦିନେ ଏଇମିତି ଶେଷ ବି ହୋଇଯିବ, ଆଉ ସେତେବେଳେ ଯାହାକିଛି ଭଲ ହେବ ।

ସେମିତି ହେବା ଉଚିତ ନୁହଁ, ତେବେ ବି ହେଲା ।

'କମଳ ଡାର୍ଲିଂ ।' ସରବତ୍ ଆଙ୍ଗୁଠି ହଲେଇ ସୂଫୀ ଶୈଳୀରେ ତାକୁ କହିଥିଲା, ''ଜିନ ଢୁଁଢ଼ା ତିନ ପାଇୟାଁ ଗହରେ ପାନୀ ପୈଠ, ମୈ ବିରହନ ଡୂବନୀ ଡରି ରହି କିନାରେ ବୈଠ !'' (ଯେ ଖୋଜିଲା ସେ ଗଭୀର ଜଳରେ ବୁଡ଼ ପାଇଗଲା । ମୁଁ ବିରହିଣୀ ଡରି ବୁଡ଼ିଲି ନାହିଁ, ଆଉ କୂଳରେ ରହିଗଲି) କମଳ ଭାବିଲା—ଏଇନେ କିନାରା ବି ତ ନାହିଁ !

ପାଇବାର ଅର୍ଥ କ'ଣ ? କ'ଣ ମିଳେ ?

ବାହାରେ ଅନ୍ଧକାର ଥିଲା । ଥଣ୍ଡା ଆଉ ନିଶୂନ ନୀରବତା । ମୁଁ ବଂଚିଛି ।

ଆରେ ଭାଇ ଆଫତାବ୍ ବାହାଦୁର ! ସେ ରାଗରେ ମୁଣ୍ଡ ହଲେଇ ନିଜ ମନକୁ ପଗ୍ରରିଲା । ତମେ କାହିଁକି ଗ୍ରଲି ଯାଇଥିଲ ? ମୁଁ ସତରେ କ'ଣ ତମର କିଛି ଅନିଷ୍ଟ କରିଥିଲି ! ତମେ ଆପେ ଆପଣା ଭିତରେ ବୁଡ଼ି ରହୁଥିଲ । ମୁଁ ସେଠାରେ ତମ ଜୀବନର ଗୋରଖଧନ୍ଦାର ଗୋଟାଏ କୋଉ କୋଣକୁ ଚୁପ୍‌ଗ୍ରପ ଆସି ବସି ଯାଇଥା'ନ୍ତି । ତମପାଇଁ ପୁରି ତିଆରି କରନ୍ତି । ସେମିତି ରହିଥା'ନ୍ତ ତମେ । ସେଇଠି ତମର ପରାଜୟ ନ ଥା'ନ୍ତା ! ତମର ପୂର୍ଣ୍ଣତା ଥିଲା ମିୟାଁ ଅଫତାବ୍ ବାହାଦୁର !

ତଳେ କେରଲ ଗାଇବା ଲୋକେ ହୀଥ ଆଡ଼କୁ ଗ୍ରଲିଯାଇଥିଲେ । ଆଫତାବ ବାହାଦୁର... ମୁଁ ଯାହା ଅଛି ଆଉ ତମେ ଯାହା ଅଛ— ସେ କ'ଣ ଠିକ୍ !

ଅନେକ୍‌ଦିନ ତଳେ ଆଫତାବ ରାୟକୁ ଜାଣିଥିବା ଗୋଟାଏ ଝିଅକୁ ଗ୍ଲନ୍ଦବାଗରେ ଦେଖି ଆଫତାବ ରାୟର ପତ୍ନୀ କେମିତି ହେବ ବୋଲି ସେ ଭାବିଥିଲା । ଥରେ ନିଜେ ତା' ଲାଗି ତା'ର ବାନ୍ଧବୀ ସରବତ ଗୋଟାଏ ପୂରା ବୋର ମଣିଷର ଫଟୋ ଦେଖେଇ କହିଥିଲା 'ଆସନ୍ତାକାଲିର ଧୂମାଳ ଛବିଟି ଦେଖ, ଆଉ ଆଶ୍ଚର୍ଯ୍ୟ କଥା, ବିଲକୁଲ ସେମିତିକିଆ ମଣିଷଟିଏ ହେଲା ଜୈନ୍ । ଆଫତାବ୍‌ର ପତ୍ନୀ— ଏ ତୁଳନା କେତେ ବିଚିତ୍ର ଲାଗୁଥିଲା ।

ହେବ କୋଉ ଗୋଟେ ଡାହାଣୀ ! ସେଇଆ ଶେଷକୁ ଆଖିର କୁଟା ହୁଏ'... ସରବତ କହିଥିଲା । ସୁନ୍ଦରୀ ଅବଶ୍ୟ ହେବ, ଟେନିସ୍ ଖେଳୁଥିବ, ଯୋଉ କଥାକୁ ଆଫତାବ ରାୟର ବେଶ ସଉକ । ତେବେ ପବନରେ ଉଡ଼ିବୁଲୁଥିବା ଆଉ ଚହଲି ଯାଉଥିବା ଝିଅ ତ ତା'ର ପସନ୍ଦ ନୁହଁ । ସେ ଯାହାକୁ ପସନ୍ଦ କରିବ, ସେ ଏ ସବୁଠାରୁ ଭିନେ ଆଉ ଖାସ, ଚନ୍ଦ୍ରସୂର୍ଯ୍ୟ ଭଳି । ହଁ, ତେବେ ମୋ'ଠାରେ କୋଉ କଥାର ଅଭାବ ଥିଲା ? ସେ ମନେ ମନେ ଚିନ୍ତା କଲା । ହୁଏତ ଆଫତାବ୍ ରାୟ୍ ଏଇଆ ଭାବୁଥିଲେ ଯେ କମଳକୁମାରୀକୁ 'ଆକାଶବାଣୀ' ହେବା ଉଚିତ, ଯୋଉଥିରେ କୁହାଯାଆନ୍ତା ଯେ ଏ ମହାପୁରୁଷଙ୍କୁ କେବଳ ତୋ'ପାଇଁ ପଠାଯାଇଛି । ସେଇଟା ତା'ର ଇଚ୍ଛା ଉପରେ ନିର୍ଭର କରୁଥିଲା ଯେ ସେ ପ୍ରତିଦିନ ଆସି କମଳ କୁମାରୀକୁ ଭେଟିବ ନା ଭେଟିବ ନାଇଁ ବା କେବେହେଲେ ଭେଟିବାକୁ ଆସିବ ନାହିଁ । ସେ ଆସି ଜୟଜୟନ୍ତୀ ଓ ତବଲା ଶୁଣିଯାଆନ୍ତା । ପୁରି ତିଆରି କରେଇ ଖାଆନ୍ତା । ଆଉ ଦିନେ ବେଶ୍ ଆତ୍ମବିଶ୍ୱାସରେ କୁଆଡ଼େ ଆଗକୁ ବଢ଼ିଯାଆନ୍ତା । ଆଉ ସେ ତା'ପଛରେ ଠେଙ୍ଗା ଧରି ଗୋଡ଼ାନ୍ତା... ମିଆଁ ଆଫ୍‌ତାବ ବାହାଦୁର ଗୋଟାଏ କଥା ଶୁଣିଯାଅ । ସେତେବେଳେ ସରବତ୍ ମଜାକଥାଟିଏ ଭିଏଇ ଥିଲା । ବୈପଲ ପରେ ଦିନେ ସେ ଝିଅମାନଙ୍କୁ ଶୁଣେଇଲା— 'ଭାଇ. ଏ.ପି. ସେନ୍. ରୋଡ୍‌ରେ ଆଜିକାଲି କଥା ଗ୍ୱଲିଛି, ଯଦି ଆଫତାବ୍ ରାୟ ଗ୍ୱ' ପିଉପିଉ କମଳାରାଣୀକୁ କହିବେ— କମଳ, ମୋର ତମକୁ କଥାଟିଏ କହିବାକୁ ଅଛି, ତା'ହେଲେ ଆମ କମଳାରାଣୀ ଧରିନେବେ ଯେ ଏଇନେ ସେ ପ୍ରପୋଜ୍ କରିବେ । ତେବେ କଥାଟି ବାସ୍ ଏତିକି— ଟିକିଏ ମହୀପାଳକୁ ଫୋନ୍‌ରେ କହିଦିଅ, ଯେମିତି ଆସିଲାବେଳେ ଆମ୍ବ କିଣି ଆସେ ବା ସେ ଭଳି କିଛି ଗୋଟାଏ ଏଣ୍ଟିକ୍ଲାଇମେକ୍ସ ।' ସରବତ ଏତେ ଦୁଷ୍ଟ ଥିଲା । ତା'ର ସେ ସବୁ ପରିହାସର କାହାଣୀକୁ ମନେପକେଇ ସେ ଥରେ ମନଖୋଲି ହସିବାକୁ ଇଚ୍ଛା କଲା । ତେବେ ଥଣ୍ଡା ପଡ଼ିଗଲା । ଅନନ୍ତ ଏକାକୀପଣ ଆଉ ଜୀବନର ଆଗପଛର ପଶ୍ଚାତ୍ତାପର ଶୂନ୍ୟତା । ଆଫତାବ ବହାଦୁର ତମକୁ ଜଣା ଅଛି କି ମୋର ଜୀବନ କେତେ ପ୍ରାଣମୟ ! ମାନସିକ ଶାନ୍ତି ଓ ଆନନ୍ଦର ଦୁନିଆ ଯାହା ହୋଇପାରିଥା'ନ୍ତା, ସେହି ରାଜ୍ୟରୁ ଯେ ବହିଷ୍କାରର ଆଦେଶ ମିଳିଲା ମୋତେ, ସେ ବି ଏତେ ସମୟ ହେଲାଣି ଯେ ମୁଁ ଆଉ ମୋ ନିଜ ସଂବନ୍ଧରେ ଭାବିପାରୁନି । ଏଇନେ ମୋର କାମ ମାନେ କେବଳ ରୟଲ କମାଣ୍ଡ ପରଫରମେନ୍ସ ଆଉ ଜୈନର ବ୍ରେକଫାଷ୍ଟର ଦେଖାରେଖା କରିବା, ଆଉ ଏ ଲୋକପ୍ରିୟତା, ଯାହା ମୋ ଉପରେ ଲଦି ଦିଆଯାଇଛି । ମାତ୍ର ତମେ ଭଲା କଣ ଭାବିବ (ଥରେ ସେ କହିଥିଲା— ତମେ ଝିଅମାନେ ତାକୁ ପସନ୍ଦ କର, ଯିଏ ତମ ବିଗ୍ରହରେ କୋଉ ଏକ ବିଶେଷ ସ୍ତରରେ ସଂପୂର୍ଣ୍ଣ ମନେହୁଏ ।) କେତେ ଓଲଟା ଯୁକ୍ତି । ଅର୍ଥାତ୍ ଚିତ୍ ବି ତୋର ପଟ୍ ବି ତୋର । ଶେଷକୁ ଏସବୁ କଥା, ଏଇ ମାନସିକ ଓ କାଳ୍ପନିକ ଗୋରଖଧନ୍ଦାରୁ ତମର କୋଉ ଲାଭ ହେଲା । ବାଃ ଭାଇ ବାଃ ...: ମୂର୍ଖ କୋଉଠିକାର !

ସରବତ ତାର ବାହାଘର ପରେ ଗରାରେ ସମୁଦ୍ରଭରି ଏମିତି ବ୍ୟାଖ୍ୟା କରିଥିଲା, ଯାହା ସଂକ୍ଷେପରେ ଏମିତି ହେବ— ପ୍ରିୟ କମଳର ଟ୍ରାଜେଡ଼ି ଏଇଆ ଯେ ସେ ସାରାଜୀବନ କାହାକୁ ହେଲେ ବୁଝିପାରିଲା ନାହିଁ । ସବୁରି ଭିତରେ କିଛି ନା କିଛି ଖୁଣିବାକୁ ପାଇଗଲା ସେ । ଯୋଉ ମହାଶୟଙ୍କୁ ହୃଦୟ ଦେଇ ଭଲ ପାଇଲା, ସେ ନିଜେ ସବୁଜ ପତାକା ଉଡ଼େଇ ଦେଲେ । ତେଣିକି ଆଉ କ'ଣ ? ପ୍ରିୟ ଭଉଣୀ ଆଖି ଖୋଲି ଦେଖିଲାବେଳକୁ ଗାଡ଼ି ଷ୍ଟେସନ ଛାଡ଼ି ଦେଇ ଗଲାଣି । ପଇଟି ଖାଲି ଚକଚକ ଚମକୁ ଥିଲା ।

'ଆରେ ସରବତ .. ବୁକ୍ କୋଉଠିକାର !'

ତେବେ ପ୍ରଶ୍ନ ହେଲା— ପ୍ରତ୍ୟେକ କଥା ପାଇଁ ଥଟ୍ଟା ପରିହାସକୁ କୋଉ ପର୍ଯ୍ୟନ୍ତ ଟାଣି ନିଆ ଯାଇ ପାରିବ । ଆଉ ତା'ଛଡ଼ା ତୁ ଆଉ କଣ ହେଲେ କରିପାରିବୁ ? ସରବତ କହିଥିଲା । ଜୀବନ ନହୋଇ ଯେମିତି ଷ୍ଟୀଫେନ୍ ଲୀଲକ୍‌ର କମେଡ଼ି ପାଲଟିଗଲା । ମୋତେ କୋଉ ଜଣା ତୋର ପରିହାସ କୋଉଠୁ ଆଉ ସଜୀବତାଟି କୋଉଠୁ ଆରମ୍ଭ ହୁଏ— ଭାଇସ ଭର୍‌ସା !

ଡାକ୍ତର ସାହବ ତ ସାରାଦିନ ଲାଇବ୍ରେରୀରେ ପଶିଥାଆନ୍ତି । ଆଜିକାଲି ଆଉ ଗୋଟାଏ ବହି ଲେଖୁଛନ୍ତି । ତାକୁ ଉର୍ମିଳା କହିଥିଲା । ଏବେ ସେ ଆଉ କରୁଛି କଣ ? ଡାକ୍ତର ଡି.ପି ମୁଖର୍ଜୀ ଭଳି ମହାଗୁରୁ ପାଲଟି ଯାଇଛି । ସଂଭବତଃ ସେ ବାହା ହୋଇ ସାରିଥିବ । ସେଇଠି ପହଞ୍ଚି ତା'ର ସେହି ଅଡୁଆ ଓ ଦୁଃଖଦ ଅନୁଭୂତିଟି ଆସିଥିବ— ସେ ଯାହାକୁ ବାହା ହୋଇଛି, ସେ କେମିତି ହୋଇଥିବ— କିଏ ହୋଇଥିବ— ତା ସାଙ୍ଗରେ ଗ୍ୱଲିଲେ କେମିତି ଦିଶୁଥିବ । ଆଫତାବ ତାକୁ ପହିଲେ କୋଉଠି ଭେଟିଥିବେ ବା ବର୍ତ୍ତମାନ ସେ କନ୍‌ଫର୍ଡ ବେଚ଼ଲର ପାଲଟି ସାରିଛନ୍ତି । ଅନେକ ଲୋକଙ୍କର ଏଇଆ ବି ଗୋଟିଏ ଗ୍ଲେମର... ! କଣ କହୁଛନ୍ତି ! ଏଇସବୁ ମୂର୍ଖତାଠାରୁ ଭିନ୍ନ ଆଉ ଏକ ମହାନ, ଆପଣାର ଅତ୍ୟନ୍ତ ବ୍ୟକ୍ତିଗତ ଦୁନିଆଁ, ନିଜର କାର୍ଯ୍ୟକ୍ରମ, ଗ୍ରନ୍ଥ, ସଂଗୀତ, ବିଥୋବନ କନ୍ସର୍ଟ, ଆଙ୍ଗୁଠି-ଗଣାରେ କେତେଜଣ ବଂଧୁ, ରବିବାର ଦିନସାରା କୋଉ ଗୋଟାଏ କଂଗ୍ରୀକ୍ଲବର ଲାଉଂଜରେ ବସି ଟାଇମ୍ସ ପଢ଼ିବା । ତୃତୀୟ ପ୍ରହରକୁ ରାଇଡିଂକୁ ଯାଇ ଟେନିସ ଖେଳ । ଏଣେ-ତେଣେ ମାଇକିନିଆ ସାଙ୍ଗରେ ଭେଟାଭେଟି ଆଉ ଝିଅଙ୍କ ଉପରେ ଦୟାଦୃଷ୍ଟି ଆଉ ସେମାନଙ୍କ ପ୍ରତି ଉଦାସୀନ ଭାବ ସହିତ ଅଭିଭାବକ ଭଳି ଭଙ୍ଗୀଟି ଅତୁଟ ରଖିଥିବା । ଏସବୁ କଥା ଥରେ ସରବତ କହିଥିଲା । ଆଚ୍ଛା ଭାଇ ଆଫତାବ୍ ବହାଦୁର, ତମେ ବସି ବହି ଲେଖୁଥାଅ । ମୁଁ ସେମାନଙ୍କର ଆର୍ଡ ପ୍ରୋଗ୍ରାମରେ ରିଭ୍ୟୁ କରିବି । ଆଉ ରାସ୍ତା ଏମିତି ଭାବରେ କଟୁଥିବ ।

'ସକାଳ ହେଲା, ସଂଧ୍ୟା ହେଲା ଜୀବନ ଗଲା ବିତି'— ତଳ ମହଲା ରୁମରୁ ଉର୍ମିଳା ହାରୀନ୍ଦ୍ର ନାଥ ଚଟ୍ଟୋପାଧ୍ୟାୟଙ୍କର ସେଇ କୋରସଟି ଧୀରେ ଧୀରେ ଗାଉଥିଲା ।

ସେ ଦରଜା ଖୋଲି ବାହାରକୁ ଆସିଲା । କୁହୁଡ଼ି କମି ସାରିଥାଏ । ଆକାଶର ରଙ୍ଗ ଲାଲ ଦିଶୁଥାଏ । ତା' ସାମନାରେ କେଥଲିକ ଗୀର୍ଜାର ବିଶାଳ ଗମ୍ବୁଜ କଳା ଦିଶୁଥିଲା ।

ପଶମ ପୋଷାକ ପିନ୍ଧି ପୂର୍ବ ୟୁରୋପରୁ ପଳେଇ ଆସିଥିବା ଲୋକେ କଦମ ପରେ କଦମ ପକେଇ, ମହମବତୀ ଧରି ମିଡନାଇଟ୍ ମାସ୍ ପାଇଁ ଗୀର୍ଜା ଆଡ଼କୁ ବଢ଼ି ଯାଉଥିଲେ।

ସକାଳ ହେଲା ସଂଧ୍ୟା ହେଲା
ଜୀବନ ହେଲା ଶେଷ ..
ଜୀବନ ହେଲା ଶେଷ ..
ଜୀବନ ହେଲା ଶେଷ ..

(୯)

''ମୋତେ ଯେତେବେଳେ କୌଣସି ଗ୍ରକିରି ବାକିରି ମିଳିଲା ନାହିଁ, ମୁଁ ସେତେବେଳେ ସାଗର ପାରି ଛାତ୍ରବୃତ୍ତି ପାଇଁ ଚେଷ୍ଟା କରିଥିଲି । ବ୍ରିଟିଶ୍ କାଉନସିଲ ମୋତେ ଏଠାକୁ ଆସିବାର ଭିସା ଦେଲେ । ମୁଁ ବାପାଙ୍କୁ ଏଠାକୁ ଆସିବି ବୋଲି କହିଲାରୁ ସେ ଗୁମ ମାରିନେଲେ । କିଛି ପଦୁଟିଏ ବି କହିଲେ ନାଇଁ । ମୁଁ ଆସିଲା ବାଟରେ ଥାଏ, ଖବର ପାଇଲି ଯେ ବାପାଙ୍କର କାଳ ହେଲା ।'' କିଶବରୀ ଧୀର ଗଳାରେ କଥାଟି ପୂରା କଲା ଆଉ ଚିମୁଟା ଧରି ଫାୟାରପ୍ଳେସର ନିଆଁ ଆଉ ଦରପୋଡ଼ା କାଠ ସଳଖି ବସିଲା ।

'ଆଜି ମିଡ୍ ନାଇଟ ମାସ ପାଳନ କରିବାକୁ ଯିବା ନା !' ରୋଜମେରୀ ତାର ବ୍ରଶ୍ ଓ କେନଭାସ୍ ସଜାଡ଼ିବା ଭିତରେ କହିଲା— 'ଗ୍ଲଲ ଆମେ ବ୍ରୋମ୍ପଟନ ଓରେଟ୍ରୀ ଯିବା । ସେଇଠି ଗୋଟାଏ ସଂଧ୍ୟାରେ ସୁନେଲୀ ବାଳ ଆଉ ଉଦାସ ଚେହେରାର ହଂଗେରିୟନ ଶରଣାର୍ଥୀ ଝିଅ ଗୋଟାଏକୁ ମୁଁ ଦେଖିଥିଲି । ମୁଣ୍ଡରେ କଳା ସ୍କାର୍ଫ ବାନ୍ଧି, ହାତରେ ଜପାମାଳି ଧରି ସେଇଠି ଘଣ୍ଟା ଘଣ୍ଟା ଧରି ନୀରବରେ ବସିଥିଲା । ତାର ସେଇ ସ୍ଥିର ହୋଇ ବସିବାର ଭଙ୍ଗୀ ବେଶ ଦୟନୀୟ ମନେହେଲା । ମୁଁ ବଳି କକ୍ଷର ଖମ୍ବ ପଛରେ ଲୁଚିରହି ତାର ଛବି ଆଂକିଥିଲି । ମୁଁ ସେଇ ଛବିଟିର ନାଆଁ ରଖିଥିଲି 'ମୁକ୍ତିରୁ ପଳାୟନ' । ମାତ୍ର ତାକୁ ଯେତେବେଳେ ପ୍ରଦର୍ଶନୀରେ ରଖାଗଲା, ସେତେବେଳେ ସମକାଳୀନ କଳାସଂସ୍ଥା ତା'ର ନୂତନ ନାମକରଣ କଲେ 'ସ୍ୱତନ୍ତ୍ରତା ପ୍ରତି କୃତଜ୍ଞତା' । ଆଜି ରାତିରେ ସେଠାରେ ସେହିଭଳି ଆଉ କେତୋଟି ଆଶା ନିରାଶାର ଛବି ଆଂକିବି ବୋଲି ଭାବୁଛି । ଅନେକ ଅନୁଭୂତି ସେଭଳି ମଧ୍ୟ ଅଛି, ଯାହା ରଙ୍ଗ କିମ୍ବା ଶବ୍ଦ ମାଧ୍ୟମରେ ପ୍ରକାଶିତ କରିଦେଇ ହୁଏନାହିଁ । ସେମାନଙ୍କର ଅଭିବ୍ୟକ୍ତି ହିଁ ସେମାନଙ୍କ ପ୍ରତି ଅପମାନ ଆଉ ଅନାଦରୀ କିଶବରୀ ଭାବିଲା— ଏଇ କଥାଟି କମଳ ନିଜେ ନିଜପାଇଁ ଅନୁଭବ କରିଥିଲା । ହେଲେ କିଛି ଜାଣି ନଥିଲା ।

ଏହା କିଭଳି ଏକ ଅସହାୟତା ସତରେ ଯେ ସମସ୍ତେ ଆପଣା ଆପଣା ବିଗ୍ରହରେ ବାନ୍ଧି ହୋଇ ରହିବାକୁ ବାଧ୍ୟ ହୋଇଯାଆନ୍ତି ।

'ତମେ ଜାଣିଛ, ଏମିତି ଭାବରେ ମୁଁ ତମମାନଙ୍କୁ ଏସବୁ କଥା କାହିଁକି କହୁଛି ?' କିଶବରୀ କହିଲା ।

'ଶୁଣିଛି ଅନେକ ବର୍ଷ ଧରି ଅଲଗା ହୋଇ ଦୁଇଜଣଙ୍କର ହଠାତ୍ ଦେଖାହେଲେ ସେହି ପୁରୁଣା ଆପଣାପଣର ସ୍ମୃତି ବେଙ୍ଗେଉଠେ । ପୁରୁଣା ବନ୍ଧୁଙ୍କ ସାଙ୍ଗରେ ଭେଟ ହେଲେ

ସମସ୍ତଙ୍କୁ ଆନନ୍ଦ ମିଳେ ।' ସେ କଥାଟି ଧୀରେ ଧୀରେ କହି ଚାଲିଥାଏ । 'ତେବେ ପୁରୁଣା ଶତ୍ରୁ ସାଙ୍ଗରେ ଭେଟ ହେଇ ମୋତେ ଆଜି ବେଶ ଆନନ୍ଦ ମିଳିଥିଲା । ଆଜି ହଠାତ୍ ଖେମବତୀ ସାଙ୍ଗରେ ପୁଣି ଭେଟ ହେଲା । ସେ ଗୋଟାଏ ଦୋକାନରୁ ବାହାରି ଆସୁଥାଏ ।... ଆରେ ଖେମ... ବୋଲି ଡାକି ଡାକି ମୁଁ ତା ପାଖକୁ ଦଉଡ଼ିଗଲି । ସେ ଏଇଠି ଅଛି ବୋଲି ମୋତେ ଜଣା ନଥିଲା । ସେ ମୋତେ ସତରେ ଚିହ୍ନି ପାରିଲା ନାହିଁ । ସଂଭବତଃ ତା ସାଙ୍ଗରେ ତା'ର ସ୍ୱାମୀ ଥିଲେ । ମୁଁ ତାକୁ କହିଲି 'ହଲ୍ଲୋ.. ଖେମ.. ମୋତେ ଚିହ୍ନିଲୁ ନାହିଁ ! ମୁଁ କିଶବରୀ ।' ତା' ଭିତରେ ଟିକିଏ ବି ଉତ୍ସାହ ଦେଖିଲି ନାହିଁ । ସ୍ୱାମୀ ତା'ର ହସି ହସି 'ନମସ୍ତେ' କହିଲେ । 'ଏ ମୋର ପତି ।' କିଛିଟା ଉପେକ୍ଷା ଥିଲା ଖେମର କଥାରେ । 'ନମସ୍କାର ଭାଇ' ମୁଁ ବେଶ୍ ସହୃଦୟତା ଭିତରେ କହିଲି ।

'ତୁ ପାକିସ୍ତାନୀ ନା । ତୋ'ର ନମସ୍କାର ନ କହିବା କଥା ।' ଖେମ କଥାଟି ବେଶ ତାଚ୍ଛଲ୍ୟ ଅଥଚ ଧୀରଗଳାରେ କହିଥିଲା । ମୋ ଉପରେ କିଏ ଯେମିତି ବରଫ ଲଦିଦେଲା । ମୁଁ ମଉଳି ଗଲି । ହୀନ ମନରେ ଔପଚାରିକ ହସ ଖେଳେଇ ଏଣେତେଣେ ଅନେଇ ରହିଲି । ତାର ସ୍ୱାମୀ ଜଣେ ସମଝଦାର ଲୋକ । ସେ କଥା କିଛିଟା ସଂଭାଳି ନେଲେ । କହିଲେ—'ଭଉଣୀ, ଆମେ ତ ଏଇନେ ବ୍ୟସ୍ତ ଅଛୁ । କେତେବେଳେ ଆସନ୍ତୁ ଆମ ଘରକୁ । ଆମେ ଏଇ ସାଉଥ କେନ୍‌ଜିଙ୍ଗଟନ୍‌ରେ ରହୁଛୁଁ ।' 'ନିଶ୍ଚୟ ଆସିବି' କହି ଖେମକୁ ବାଇ ବାଇ କରି ଚାଲି ଆସିଲି । ମୋର କଣ୍ଠସ୍ୱର ଯେମିତି ମରିଯାଇଥିଲା । ମୁଁ ତାକୁ ଏଇଆ ବି କହିବାକୁ ଚାହିଁଲି ନାହିଁ ଯେ ମୁଁ ପାକିସ୍ତାନୀ ନୁହେଁ । ସେଥିରେ କଣ ଫରକ ହେଇଥା'ନ୍ତା !

'ମୁଁ ଏଇନେ କୌଣସି ଦୁଃଖପୂର୍ଣ୍ଣ ଭାଷଣ ଦେବିନାହିଁ । ମୁଁ ଏଇଆ ବି କହିବି ନାହିଁ ଯେ ବନ୍ଧୁ, ମଣିଷପଣ ଆତ୍ମହତ୍ୟା କଲାଣି । ପୁରୁଣା ମୂଲ୍ୟବୋଧ ନଷ୍ଟ ହୋଇ ଯାଇଛି । ଆପଣା ମଣିଷ ପର ପାଲଟି ଗଲେଣି । ଏସବୁ ଗଲା ପାଞ୍ଚ ବରଷ ହେଲା କହି କହି ତମକୁ ବିରକ୍ତ ବି ଲାଗିନାହିଁ । ଏ ଯାହା କିଛି ହେଲେ, ତାହା ହେବାର ଥିଲା । ଆଉ ଆପଣ ଥିଲେ, ଯୋଉମାନେ ରୋମାଣ୍ଟିକ କଳ୍ପନା ନେଇ ରହିଥିଲେ । ଏହା ଜୀବନ ନହୋଇ ଯେମିତି ଶାନ୍ତାରାମଙ୍କର ଫିଲ୍ମ ପାଲଟି ଗଲା । ମୁଁ ଆଉ ଖେମ ଯାହା କଲୁଁ, ତାହା ଏସବୁ କଥାର ବିବେକପୂର୍ଣ୍ଣ ପରିଣାମ । ଆଉ ତମେ ଯାହା କହୁଛ, ସେ ସବୁ ନିରର୍ଥକ । ବୁଝିଲ !'

ଏଇ ଢଙ୍ଗରେ ମୁଁ ନିଜକୁ ବୁଝେଇବାକୁ ଚାହିଁଲି ।—'ଚାଲ୍ ରୋଜମେରୀ, ଆମେ ନୂଆ ଛବି ଆଁକିବା' ସେ ରୋଜମେରୀକୁ କହିଲା । 'ଆଉ ତମେ ଯଦି ଆମର ସ୍କେଚ୍ କରିବ, ତାହେଲେ ତାକୁ ତମ ଆର୍ଟ କାଉନ୍‌ସିଲ ଆଉ ସମକାଳୀନ କଳା ସଂସ୍ଥାନ କଣ ନାଆଁ ଦେବ ?'

'ଆମେ ଆମର ଅଭାଗା ଦେଶର ସେଇ ଯୁବାବର୍ଗ, ଯେ ୟୁରୋପୀୟ ମହାଯୁଦ୍ଧ ଆଉ ନିଜର ରାଜନୈତିକ ଉତ୍‌ଥାନ ପତନରେ ବଢ଼ିଲା— ଆନ୍ତରିକ ଯୁଦ୍ଧ ତାକୁ ମାନସିକ ଶିକ୍ଷା ଦେଲା । ଆଉ ଏଇନେ ଏଇ ଭୟାନକ ଶୀତଳ ଯୁଦ୍ଧରେ ତାକୁ ନିଜର ଆଉ ଦୁନିଆର ଭବିଷ୍ୟତ ନିର୍ଣ୍ଣୟ କରିବାକୁ ପଡ଼ିବ ।'

'ଆମେ ସବୁ ବିଶ୍ୱବିଦ୍ୟାଳୟରୁ ବେଶ ବଡ଼ ବଡ଼ ଡିଗ୍ରୀ ନେଉଛୁଁ । ସାଂସ୍କୃତିକ ମେଳା ଆଉ ପର୍ବ ପାଳନ କରୁଛୁଁ । ହେମାର୍କେଟର ବିଶେଷ ଥିଏଟରମାନଙ୍କରେ ନୃତ୍ୟନାଟିକା ପରିବେଷଣ କରୁଛୁଁ । ଯୁଥ୍ ଫେଷ୍ଟିଭାଲ ଆଉ କନ୍‌ଫରେନ୍‌ସରେ ଭାଗ ନେଉଛୁ । ତେବେ ଏଠାରୁ ଫେରିଯାଇ କରିବୁ କ'ଣ ?'

ତୁମେ କେବେହେଲେ ଭାବିଛ କି ମୁଁ କୋଉଠିକି ଯିବି ? ମୋର ଘର ଏଇନେ କୋଉଠି ? କଣ ମୁଁ ଆଉ ମୋ ଭଳି ଭାରତୀୟ ମୁସଲମାନ ଏମିତି ହାସ୍ୟାସ୍ପଦ ଆଉ ଦୀନ ହେବାର ଯୋଗ୍ୟ ?

ସେ ଶାନ୍ତ ହୋଇଗଲା । ସମସ୍ତେ ଚୁପଗ୍ୱପ୍ ବସିରହି ଜଳୁଥିବା ଶିଖାକୁ ଅନେଇ ରହିଥିଲେ । ରାସ୍ତାର ଆରପଟେ ଗୋଟାଏ କୋଠାରେ 'ବ୍ରାଇଟ୍ କ୍ରିସମସ୍' ଗାୟନ ଗ୍ୱଲିଥିଲା ।

'ବୋଧହୁଏ ମୁଁ ତୋତେ କହିଥିଲି' ଉର୍ମିଳା ଧୀର ଗଳାରେ କହିଲା 'ଆଜି ଦି'ପହର ବେଳେ ଫେରିବା ବାଟରେ ଡାକ୍ତର ଆଫତାବ୍ ରାୟଙ୍କ ସାଙ୍ଗରେ ଦେଖାହେଲା । ମୁଁ ତାଙ୍କୁ ପଗ୍ୱରିଲି— ଡାକ୍ତର ସାହେବ, ଶୁଣିଲି ଆପଣ ରିପବ୍ଲିକ ଅଫ୍ ଲିମ୍ପିଡୋରାରେ ରାଜଦୂତ ଅଛନ୍ତି ।' 'ତମେ ଭୁଲ ଶୁଣିଛ ।' ସେ ରସାନକୁ ମୁରୁକି ହସି ପଗ୍ୱରିଲେ— 'କଣ ତମେ ବି !' ..'ହଁ, — ମୁଁ ବି ... ।' ଏତିକି କହି ସେ 'ଖୁଦା ହାଫିଜ୍' କହି ଭିଡ଼ରେ ହଜିଗଲେ । ପରମୁହୂର୍ତ୍ତରେ ଷ୍ଟେସନର ଅଣ୍ଡର ଗ୍ରାଉଣ୍ଡରେ ଅନ୍ତର୍ଦ୍ଧାନ ହୋଇଗଲେ । ତାଙ୍କ ହାତରେ ଗୁଡ଼ିଏ ବହି ଥିଲା ଆଉ ସେ କାହା ସାଙ୍ଗରେ ହେଲେ କଥା ହେବାକୁ ଗ୍ୱହୁଁ ନଥିଲେ । କେଜାଣି ସେ କୋଉଠି ରହନ୍ତି । କଣ କରନ୍ତି । ଏତେ କାଳ ସେ କେମିତି ବିତେଇଲେ ! ପୁଣି ଦେଶକୁ ଫେରିବାର ଅନୁମତି ତାଙ୍କୁ କେବେ ମିଳିବ ? କଣ ହେବ ?

ଦୂରରେ ଗିର୍‌ଜା ଘରରେ ଘଣ୍ଟା ବାଜିବା ଆରମ୍ଭ ହୋଇ ଯାଇଥାଏ । ସେମାନେ ବାହାରକୁ ବାହାରି ଆସିଲେ ।

ଆମର ତ୍ରୁଟିମାନଙ୍କର ଛାଇ ଆମର ଆଗେ ଆଗେ ଗ୍ୱଲେ । ଆଉ ରାତି ଆମର ଗୋଡ଼େଇ ଗ୍ୱଲିଛି, ସେ ଭାବିଲେ । ଆଉ ଆମେସବୁ ରାତିର ଘାଟିରାସ୍ତାକୁ ବେଶ ଫୁର୍ତ୍ତିରେ ପାର କରି ଗ୍ୱଲିଛୁଁ ।

ଆମର ଗ୍ୱରିପଟେ ସେହି ଲକ୍ଷଲକ୍ଷ କୋଟି କୋଟି ଲୋକଙ୍କ ଭିଡ଼ ଅଛି, ଯେ ଆପଣାର ମନ୍ଦକପାଳକୁ ନିନ୍ଦୁଛି । ତେବେ ଦେଖ ଏ ରାସ୍ତା, ଏ ହ୍ରଦ, ଏ ବଗିଗ୍ୱ ଆମକୁ ଚାକି ରହିଛନ୍ତି । ନୀରବ ମୌନତାରେ କେବଳ ମୃତ୍ୟୁର ପଦଗ୍ୱପ ଶୁଣାଯାଉଛି । ଅପରଚିତ ଅଜ୍ଞାତ ମୃତ୍ୟୁ, ଯାହା ହଠାତ୍ ସାମନାକୁ ଆସିଯାଇଛି । ତେବେ ଆମେ ତାକୁ ହସି ହସି ପଛରେ ପକେଇ ଆଗେଇ ଯିବା । ଶୁଣ ଆମ ସାଙ୍ଗରେ ଆମର ବିଶ୍ୱାସ ଅଛି, ଭରସା ଅଛି । ଯାହା ସେହି ପାରସ୍ପରିକ ସ୍ନେହ ତିଆରି କରିଛି । ଆଉ ସେ ଗଦ୍ଦାରୀ, ଆମେ ତାକୁ ବିଶ୍ୱାସଘାତକତା ନାଆଁରେ ମନେପକଉଛୁ । ସେଇ ବିଶ୍ୱାସଘାତକତା କେବଳ ଯସମୀନ ଫୁଲର ଆଶା ଭଳି । ସେମାନେ ଗିରଜା ଆଡ଼କୁ ବଢ଼ି ଗ୍ୱଲିଥା'ନ୍ତି ।

ସାମନାରେ ରାସ୍ତାର ଧୂସର ଅନ୍ଧକାରରେ ଗୋଟାଏ ଏଲିଜାବେଥିଏନ କୋଠାରେ ମନ୍ଦ ଆଲୋକ ଝଲମଲ କରୁଥାଏ । ସେଇଟା ଭାରତୀୟ ହାଇକମିଶନ୍‌ଙ୍କର ଫାଷ୍ଟ୍ ସେକ୍ରେଟାରୀଙ୍କର ଆବାସ । ତା' ଆଗକୁ ପୁଣି ଅନ୍ଧାର । ସେ କୋଉ ପାଗଳ ଆତ୍ମା ନିଜର ଏକାନ୍ତତାକୁ ଭୟ କରି ବାହାରି ଆସିଛି । ସେ ପ୍ରଶ୍ନ କଲେ । ଏହାକୁ ପଗ୍ରର ସେ ଏଇଠି ଠିଆ ହୋଇ ରହିଛି ! ଏଇ ଲେମ୍ପ ତଳେ ଘାସ ରାସ୍ତାରେ ! ମାଟିର ଏ ଫୁଲରୁ ତାକୁ କିଛି ମିଳିବ ନାହିଁ । ନିର୍ଜନ ସିଢ଼ି ଉପରେ କିଏ ସବୁ ଦେଖାଯାଉଛନ୍ତି ସେମାନେ ! ସେମାନଙ୍କୁ କହ ଫେରିଯାଆନ୍ତୁ, ସେମାନେ ଆଉ ସକାଳକୁ ପ୍ରତୀକ୍ଷା କରନ୍ତୁ ।

ଆମର ଆଉ ସେମାନଙ୍କର ଭାବନାର ଭୂତମାନେ ... ।

କିନ୍ତୁ ଘଣ୍ଟାଧ୍ୱନି ପୁଣି ଡାକଦେଲା 'ଆସ... ଆସ, ଆଜି ରାତିରେ ତମର ଅସ୍ତିତ୍ୱର ପ୍ରାୟଶ୍ଚିତ୍ତ ହେବ । ମୁଁ ତମର ଖୁଦାର ସ୍ୱର ଆଉ ତମର ପ୍ରତ୍ୟେକ ବିନାଶର ଭାଗୀଦାର, ତମର ପ୍ରତ୍ୟେକ ମୃତ୍ୟୁର ରକ୍ଷକ ।' ସେତେବେଳେ ପାଦ୍ରୀ ଆଉ ସାହେବମାନଙ୍କର ଶୋଭାଯାତ୍ରା ଆଗକୁ ବଢ଼ିଗଲା, ଯେଉଁମାନେ ଆପଣା ଆପଣା ଦେଶରୁ ନିର୍ବାସିତ ହୋଇ ଏଇନେ ସର୍ବଶକ୍ତିମାନ୍ ଈଶ୍ୱରଙ୍କର ପବିତ୍ରତାର ବଖାଣ କରୁଥିଲେ । ଗିରଜାର ଧଳା ଶାଢ଼ି ଉପରେ କଳା ସ୍କର୍ଫରେ ମୁଣ୍ଡ ଢାଙ୍କିଥିବା ମହିଳାମାନେ, ବୃଦ୍ଧ ଓ ଯୁବକ ବେଶ ମୌନ ଏକାଗ୍ରତାରେ ମାଳା ଜପୁଥିଲେ ଆଉ ହୋଲୀ କମ୍ୟୁନିୟନ୍‌ର ଅପେକ୍ଷା କରିଥିଲେ ।

ଗୋଟାଏ ରାସ୍ତା ଏଇଠି ଆସି ଶେଷ ହୋଇଯାଏ ... ତାପରେ ପ୍ରାଚୀର । ତେବେ ରେଶମୀ ପରଦାରେ ଛାଣି ହୋଇ ଆଲୁଅ ଏପଟକୁ ବି ଆସୁଛି, ଯଦିଓ ଅନେକ କଳା କନା ପିନ୍ଧିଥିବା ରୋଗୀ, ପାଗଳ, ଦାର୍ଶନିକ ଓ ରୁଗ୍ଣ ରାଜନୀତିଜ୍ଞ ରାସ୍ତା ଅବରୋଧ କରି ଠିଆ ହୋଇଛନ୍ତି ।

ଆମକୁ ତମର ମୃତ୍ୟୁ ପ୍ରିୟ, କାରଣ ତମର ମୃତ୍ୟୁରେ ମୋକ୍ଷ ଅଛି । ତାର ଘଣ୍ଟାମାନେ କହିଲେ । ଆମର ମା, ଚଟାଣର ଭଗ୍ନୀ, ସାଗରର ଚମକୁଥିବା ତାରାମାନେ ଆମକୁ ମୌନ ରହିବା ଶିଖେଇ ଦିଅ... ସେଇ ଆମର ପ୍ରତିଜ୍ଞା-ପତ୍ର ।

ସେ ଆମର ପୁରୁଣା ଶପଥ-ପତ୍ର । ତା'ର ବିଗ୍ରହ ନଷ୍ଟ ହୋଇଯାଇଛି । ଏଇନେ ତା' ପାଖରେ ଆଉ କଣ ଅଛି ? ଅରଗନ୍‌ର ଧୀର କଂପିତ ସ୍ୱରରେ ତାଳ ମିଳେଇ ଧୀରେ ଧୀରେ ଆପଣା ରାସ୍ତାକୁ ଫେରି ଆସିଲେ ।

'କମଳ ରାଣୀ' କେହି ଅନ୍ଧାରରେ ଚିହ୍ନିପାରି ଧୀରେ ଧୀରେ ଡାକିଲା । "ଏଠିକି ଆସ ଆଉ ଆମ ସାଙ୍ଗରେ ଠିଆ ହୋଇ ଏଇ ସୁନ୍ଦର ଆଲୁଅକୁ ଦେଖ, ଯାହା ଆକାଶରେ ବ୍ୟାପ୍ତ ହୋଇଯାଉଛି । ଏଇନେ ଆଉ ଅନୁଶୋଚନା ବା ଶୋକର ସମୟ ନାହିଁ !"

'ପୁରୁଣା ରାଜିନାମା ହୋଇଯାଇଛି ।' କିଶବରୀ ଧୀରେ ପୁନରାବୃତ୍ତି କଲା— 'ଏଭଳି ଆମେ ଜୀଇଁ ରହିପାରିବୁ ନାହିଁ । ଆମେ ଏମିତି ଆମକୁ ମରିବାକୁ ଦେବୁନାହିଁ । ଆମର ଏ ନିର୍ବାସନ ଅବଶ୍ୟ ସରିବ । ଆମ ସାମନାରେ ଆଜିର ସକାଳ ଅଛି, ଭବିଷ୍ୟତ ଅଛି । ସାରା ଜଗତରେ ସୃଷ୍ଟି ନୂତନ... କିନ୍ତୁ କମଳକୁମାରୀ, ତମେ ଏଇନେ ବି କାନ୍ଦୁଛ ?

# ସ୍ମୃତିର ଇନ୍ଦ୍ରଧନୁ

ଯେତେବେଳେ ବି ନିଆଁଲିଭା ଗାଡ଼ିକୁ ରାସ୍ତାରେ ଯାଉଥିବା ଦେଖେଁ, ସେତେବେଳେ ନାସିର୍ କାକା ମନେ ପଡ଼ିଯାଆନ୍ତି । ଫାୟର ବ୍ରିଗେଡ଼ ଆଉ ନାସିର କାକା ପିଲାଟି ଦିନରୁ ମୋର ସ୍ମୃତିରେ ପରସ୍ପର ସହିତ ଛନ୍ଦି ହୋଇ ରହିଛନ୍ତି ।

ନାସିର କାକା କଲିକତା ମାଟିଆବୁର୍ଜର ପୁରୁଣା, ସ୍ୱଚ୍ଛଳ, ପରମ୍ପରାବାଦୀ ପରିବାରର । ସେ ବାପାଙ୍କର ଜଣେ ପୁରୁଣା ବନ୍ଧୁ । ବେଶ ହସହସ, ଜୀବନ୍ତ, ଶିକ୍ଷିତ ମଣିଷଟିଏ । ଉର୍ଦ୍ଦୁ-ଫାରସୀ ଆଉ ଇଂରେଜୀ ସାହିତ୍ୟର ଅଭିରୁଚିବନ୍ତ ମର୍ମଜ୍ଞ । ସେ ଫାୟର ବ୍ରିଗେଡ଼ ବିଭାଗରେ ଅଫିସର ଥିଲେ ।

ବମ୍ବେଇ ସମୁଦ୍ରତଟରେ ତାଙ୍କର ଏକ ବଡ଼ ଫ୍ଲାଟ୍ ଥିଲା । ସେଭଳି ଫ୍ଲାଟ୍‌ଟିଏ, ଯେମିତି ପୁରୁଣା ଢଙ୍ଗର ଫ୍ଲାଟ ଭାଙ୍ଗି ସିମେଣ୍ଟରେ ଝକମକ ଦଶତାଲା ସ୍ୱତନ୍ତ୍ର ମୁକ୍ତ ବ୍ଲକ ସବୁ ତିଆରି ହେଉଛି ।

ସେଇ ଫ୍ଲାଟରେ କଳା ଆଉ ଧଳା ଚିନା ପ୍ଲେଟ ପଲସ୍ତରା ହୋଇ ଚଟାଣ କରାହୋଇଥିଲା । ଉଚ୍ଚା ଉଚ୍ଚା ଛାତବାଲା ଏକାନ୍ତ କୋଠରି ଆଉ ଲମ୍ବ ଚଉଡ଼ା ବାରଣ୍ଡା । ତା'ର ଝରକା ସବୁ କାଠ ତିଆରି ଆଉ ଶାଗୁଆ ରଙ୍ଗର । ସାମନାରେ ସମୁଦ୍ର: ପାଣିରୁ ମୁଣ୍ଡଟେକି ରହିଥିବା ଗୋଟାଏ ଦୁଇଟି ଧୂସର ଚଟାଣ ଆଉ ପାହାଡ଼ ଦେଖାଯାଉଥିଲେ । ସେଇଥିରୁ ଗୋଟାଏରେ ଏକଦା ପର୍ତ୍ତୁଗିଜୀ ଜଳଡସ୍କରଙ୍କର ଆଡ୍ଡା ଥିଲା ।

ନାସିର ଗୃହସ୍ଥଙ୍କର ପତ୍ନୀଙ୍କର ଦେହାନ୍ତ ହୋଇ ସାରିଥିଲା । ତାଙ୍କର ଏକମାତ୍ର ପୁଅ ଅଲି ଅସଗରର ପାଳନପୋଷଣର ଭାର ଜଣେ ଗୋଆବାଲୀ ଆୟା ଉପରେ ନ୍ୟସ୍ତ ଥିଲା । ସଈଦା ଗୃହୀ ପିଲାଟିକୁ ତିନିବର୍ଷ ବେଳକୁ ଛାଡ଼ି ଯାଇଥିଲେ । ମରିବାବେଳେ ସେ ପିଲାଟିକୁ ଗ୍ରେସୀ ହାତରେ ସମର୍ପି ଦେଇ ଯାଇଥିଲେ । ତାକୁ କହି ଯାଇଥିଲେ, ତାକୁ ଯଦି ଛାଡ଼ି ଦେଇ ଯାଉ ଆଉ କୋଉଠି ଯାଇ ଗୃହକିରି କରିନେଉ, ତାହେଲେ ସେଇଠି ଈଶ୍ୱରଙ୍କ ସାମନାରେ ତୋତେ ପଗ୍ଚରିବି ।

ଗ୍ରେସୀ ଗାଢ଼ ଶ୍ୟାମଳ ରଙ୍ଗର, ମଜବୁତ ଗଢ଼ଣର ପରିଶ୍ରମୀ, ବିଶ୍ୱସ୍ତ ଅଠତିରିଶ ବର୍ଷର ମାଇପିଟିଏ । ସେ କୋଡ଼ିଏ ବର୍ଷ ବୟସରେ ବିଧବା ହୋଇଥିଲା ଆଉ ଦଶବର୍ଷ ଯାଏଁ ଏଣେତେଣେ ଅନିଶ୍ଚିତ ବୁଲିବା ପରେ ନାସିର କାକାଙ୍କ ପାଖରେ ଗୃହକିରି ପାଇ ରହିଛି । ଆଠବର୍ଷ ତଳେ ସଈଦା ଖୁଡ଼ୀ କଲିକତାରୁ ବମ୍ବେଇ ଆସିଲେ, ସେଇଦିନରୁ ତାଙ୍କରି ପାଖରେ ରହିଛି । ତାଙ୍କର ଅସୁସ୍ଥତାର ଅନ୍ତିମ ଦିନଗୁଡ଼ିକରେ ଗ୍ରେସୀ ରାତିଦିନ ଲାଗି ତାଙ୍କର ସେବାଯତ୍ନ କରିଛି । ତାଙ୍କର ମଲା ପରେ ସେ ଅଲୀ ଅସଗରର ଲାଳନ-ପାଳନ କରୁଛି, ଆଉ ତାକୁ ସେ ଜୀବନ ଦେଇ ଭଲପାଏ ।

ମୋର ସ୍କୁଲର ଖରାଛୁଟିରେ ବାପା ମୋତେ ଥରେ କିଛି ସପ୍ତାହ ପାଇଁ କଲିକତାରୁ ବମ୍ବେଇ ନେଇ ଆସିଥିଲେ । ଆମେ ଯେତେବେଳେ ଷ୍ଟେସନରୁ ନାସିର କାକାଙ୍କ ଘରେ ପହଞ୍ଚିଲୁ, ସେତେବେଳେ ବେଶ ଉତ୍ସାହ ସହକାରେ ଗ୍ରେସୀ ଆମର ସ୍ୱାଗତ କରିଥିଲା । ସୁଟକେଶ ଆଉ ହୋଲଡର ନିଜେ ଉଠେଇ ଭିତରକୁ ନେଇ ଯାଇଥିଲା । ତାର ମୋଟାମୋଟା ଓଠରେ ଖୁସିର ହସ ଚହଲି ଯାଉଥାଏ । ତାର ଦାନ୍ତ ଭାରି ଉଜ୍ଜ୍ୱଳ । ଜ୍ୟୋତିବନ୍ତ ଆଖି । ସେ ସବୁଜ ଧଡ଼ିର ନାରଙ୍ଗ ରଙ୍ଗର ସୂତା ଶାଢ଼ୀ ପିନ୍ଧିଥାଏ । ବେଶ ପୁଷ୍ଟ ଖୋସାରେ ବମ୍ବେଇ କାଇଦାରେ ଗଜରା ଲଗେଇଥାଏ । ଆମ ପଟେ ଥିବା ଧଳା ଘାଘରା ପିନ୍ଧି ମଲାପରି ଦିଶୁଥିବା ମନ୍ଦ ସ୍ୱଭାବର ଆୟାଙ୍କ ତୁଳନାରେ ସେ ବେଶ ହସହସ ଓ ଶାଳୀନ ମନେହେଉଥାଏ ।

ବାପା ଆଉ ନାସିର କାକା ବାରଣ୍ଡାରେ ଆରାମ ଚଉକୀଟି ମାନଙ୍କରେ ବସି କଥା ଜମେଇ ସାରିଥିଲେ । ମୁଁ ଝରକା ପାଖରେ ସମୁଦ୍ରକୁ ଅନେଇ ରହିଥିବାବେଳେ ସେ ହାତ ପୋଛି ପୋଛି ଦରଜା ପାଖକୁ ଆସିଲା— 'ସାହବ, ଖାଇବା ଲାଗି କ'ଣ ସବୁ କରିବି ?' ତତ୍ପରତାରେ ପଚ୍ଚାରିଲା ।

'ଭାଇ, କହ କଣ ରୋଷେଇ କରିବ । ଆରେ, ଗ୍ରେସୀ ଏମିତି ବଢ଼ିଆ ରାନ୍ଧେ ଯେ ବାମୁଣ ଝିଅ କଲମାପଢ଼ି ଧର୍ମ ବଦଳେଇ ନବ ।' ନାସିର କାକା ବାପାଙ୍କୁ କହିଲେ ।

'ଅର୍ଡର' ନେଇ ସେ ରୋଷେଇ ପଟକୁ ଚାଲିଗଲା ।

କାକାଙ୍କର ଆଠବର୍ଷର ପୁଅ ଖେଳିବାକୁ ବାହାରକୁ ଚାଲିଯାଇଥାଏ । ମୁଁ ଘରସାରା ଘୂରିବୁଲି ରୋଷେଇକୁ ଅନେଇଲି । ଗ୍ରେସୀ ଅଣ୍ଟାରେ ପଣତ ବାନ୍ଧି ରୋଷେଇ କାମରେ ଲାଗି ପଡ଼ିଥାଏ ଆଉ ଅନ୍ୟ ଚାକର-ବାକରଙ୍କ ଉପରେ ମଝିରେ ମଝିରେ ହୁକୁମ ଚଳଉ ଥାଏ ।

ଦିନ ତିନି ଘଡ଼ିବେଳକୁ ତାର ସବୁ କାମ ତୁଟେଇ ଗ୍ରେସୀ ପଛ ବାରଣ୍ଡାରେ ମଶିଣା ପାରି ମୋ ସାଙ୍ଗରେ ଗପି ବସିଲା ।

ସେ ବିଚିତ୍ର ଭଙ୍ଗା ଭଙ୍ଗା ଖେଚେଡ଼ୀ ଭାଷାରେ କହେ । ଭାଷାର ସେମିତି ଢଙ୍ଗ ସାଙ୍ଗରେ ସେ ଯାଏଁ ମୋର କାନ ଅପରିଚିତ ଥିଲା । ଆଉ ସେତେବେଳେ ସେ ମୋତେ ଆମ ତରଫର ମୁରୁଗା କନାର ଚଉଡ଼ା ଘେରବାଲା ଘାଘରା ଆଉ ଧଳା ମଲ ମଲର ଓଢ଼ଣୀ ପକେଇଥିବା ଠିକଠିକ କଥା କହୁଥିବା ସଭ୍ୟ ଆୟାଙ୍କଠାରୁ ଭିନେ ଭିନେ ଲାଗିଲା । ସେ ପ୍ରକୃତରେ ବମ୍ବେଇବାଲୀ ବହୁ ଭାଷାଭାଷିଣୀ ମହିଳାଟିଏ । ସେ କୋଂକଣୀକୁ ଛାଡ଼ି ଦେଲେ ମରାଠୀ, ଗୁଜରାଟୀ ବି କହୁଥିଲା ଆଉ ଉର୍ଦ୍ଦୁ ଇଂରେଜୀର ଖୋଲାଖୋଲି ହତ୍ୟା ବି କରୁଥିଲା । ତା'ର ସ୍ୱାମୀ ଯା' ସାଙ୍ଗରେ ସେ ପାଂଜିମରେ 'ଲଭ ମେରେଜ ବନେଇଥିଲା' ବମ୍ବେଇର ଗୋଟାଏ ହୋଟେଲ ଅରକେଷ୍ଟ୍ରାରେ ସେ ଡ୍ରମ ବଜଉଥିଲା । ବାହା ହେବାର ତିନିବର୍ଷ ବେଳକୁ ଏକ ଦୁର୍ଘଟଣାରେ ମରିଗଲା । ତା'ର ବାପ ମା' ବି ଅନେକ ଆଗରୁ

ମରି ସାରିଥିଲେ । ତାର ଏକମାତ୍ର ଭାଇ 'ପି ଏଣ୍ଡ ଓ'ର ଷ୍ଟେଥିମୋର ଜାହଜରେ କେବିନ୍ ଷ୍ଟୁଅର୍ଡ ଭାବରେ ଥିଲା । ସେ ବି ମରି ସାରିଥାଏ । ବମ୍ବେଇରେ ତାର ଜଣେ ମାତ୍ର 'ଆପଣା ମଣିଷ' ଥିଲା । ସେ ତାର ମାଉସୀ ଝିଅ ଭଉଣୀ । କେବେ କେମିତି ତାକୁ ଭେଟିବାକୁ ଆସେ ବି ।

ପତିର ମୃତ୍ୟୁପରେ ଗ୍ରେସୀ ଅନେକ ଜାଗାରେ ଆୟାଗିରୀ କରିଛି । ଗୋଟାଏ ସ୍କୁଲ ବସ୍‌ରେ ପିଲାଙ୍କୁ ନବାଆଣିବା କରିଥିଲା । ତାଜମହଲ ହୋଟେଲର ଲେଡିଜ କ୍ଳୋକରୁମର ଆଟେଣ୍ଡେଣ୍ଟ ଥିଲା ବି । 'ମୁଁ ଯେତେବେଳେ ହାମ ମେମ୍ ସାହବ ପାଖରେ ଆସି ଚାକିରି କଲି, ସେତେବେଳେ ଲାଗିଲା ଜନ୍ନତ୍‌କୁ ଆସିଯାଇଛି । ହାମ ମେମସାହବ ବିଲକୁଲ ଏନ୍‌ଜଲ୍ ଥିଲା । ସେଇଥିଲାଗି ସେ ଜଲଦି ହେଭନ୍‌କୁ ଚାଲିଗଲା ।' ସେ ପଣତକାନିରେ ଲୁହ ପୋଛିଲା ଆଉ ଆଣ୍ଠୁ ଭାଙ୍ଗି ମଶିଣାଟି ଉପରେ ବସି କହି ଚାଲିଥାଏ । 'ମୁଁ ମେମ ସାହବ ପାଖରେ ଚାକିରି କଲାପରେ ଯାଇଁ ଯୋସେଫ୍‌ର ମଲାପରେ ମୋତେ ପହିଲା କରି 'ଇଜ୍ଜତ' ମିଳିଲା । ମୋତେ ଲାଗିଲା ମୋ ମୁଣ୍ଡ ଉପରେ ବି ଛାତଟିଏ ଅଛି । ସାହେବ ଏବେବି ମୋ କଥା ବେଶ୍ ବୁଝନ୍ତି । ତମ ଡେଡ୍ଡୀ କଥା ପକାନ୍ତି ବାରମ୍ବାର । ଯୋଉଦିନ ତମେମାନେ ଆସୁଛ ବୋଲି ତାର ଆସିଲା, ସେଦିନ ସାରାରାତି ଖୁସିରେ ସାହେବ ଏଣେତେଣେ ଘୂରି ବୁଲୁଥିଲେ; ନିଜେ ଥାଇ ସାରା ଫ୍ଲାଟ ସଫାସୁତରା କରେଇଲେ । ତମର ଯୋଉ କଥାକୁ ମନ ମୋତେ କହିବ । ତମର ଆଣ୍ଟି ସିନା ନାହାନ୍ତି; ମୁଁ ତାଙ୍କର ସରଭେଣ୍ଟ ତ ଏଇନେ ବି ବଂଚିଛି !

ଆମେମାନେ ନାସିର କାକାଙ୍କ ଘରେ ଅନେକ ଦିନ ରହିଲୁଁ । ସକାଳେ ଅବ୍‌ବା ଆଉ ନାସିର କାକା ସମୁଦ୍ରପଟ ବାରଣ୍ଡାରେ ବସି କେତେ କଣ ଗପ କରନ୍ତି । ସେଥିରୁ ଅନେକ କଥା ମୁଁ ବୁଝିପାରେ ନାହିଁ । ତେବେବି ମୁଁ ମନଦେଇ ସେମାନଙ୍କର କଥା ଶୁଣେ । ପାଟନା ସ୍କୁଲର କବିତା ପାଠ, ଗାଲିବଙ୍କର ଫାର୍ସି କାବ୍ୟ, ଅଧ୍ୟାତ୍ମ ଆଲୋଚନା ଆଉ ଉଦାହରଣ, ଦେଶର ରାଜନୀତି, ନାଜୀ ଜର୍ମାନୀ ସମସ୍ୟା, ୱର୍ଧା ଆଶ୍ରମ ଆଉ କେଜାଣି କେତେ କଥା ।

ନାସିର କାକାଙ୍କର ଘରେ ସବୁକିଛି ବ୍ୟବସ୍ଥା ବେଶ୍ ଶୃଂଖଳିତ । ସେସବୁ ଗ୍ରେସୀର ନିପୁଣ ପ୍ରବନ୍ଧକ ଭଳି ମଉନ ଚାହାଣୀ ଆଉ ତତ୍ତ୍ୱାବଧାନର କରାମତି । ସକାଳୁ ସକାଳୁ କୋଠରିଗୁଡ଼ିକର ଫୁଲଦାନୀରେ ନୂଆ ନୂଆ ଫୁଲ ପର୍ଯ୍ୟନ୍ତ ଲାଗିଯିବ । କାକାଙ୍କର ଯେତେ ସବୁ ପାଇପ ଥିଲା, ସବୁ ସଫା କରାହେଇ ଠିକ ଠିକ ଜାଗାରେ ଆସ୍‌ଟ୍ରେମାନଙ୍କ ପାଖରେ ସରଞ୍ଜାମ ସାଙ୍ଗରେ ରଖାହେବ । ପାଲିସ୍ କରାହେଇ ସବୁ ବୁଟ୍ ଯୋତା ଚପଲ ଧାଡ଼ି ବାନ୍ଧି ପଛ ବାରଣ୍ଡାରେ ଥୁଆ ହେବ । ବ୍ରେକଫାଷ୍ଟ ଟେବୁଲରେ ନୂଆ ଖବର କାଗଜ ରହିବ । ଦରଜା ଆଉ ଝରକା କାଚ଼ ଆଉ ହୁକ୍ ସବୁ ସଫା ହେବ ବ୍ରାସୋ ଲାଗି । ଚଟାଣ ସବୁ ସାବୁନ ପାଣିରେ ଧୁଆ ହେବ । ପୂରା ଘର ଦର୍ପଣ ଭଳି ଚକ୍‌ଚକ୍ ଦିଶିବ । ଡାଇନିଂ

ସ୍ପେସ୍‌ର ସାଇଡ଼ବୋର୍ଡରେ ଝଟକୁଥିବା ରଙ୍ଗବେରଙ୍ଗ କାଚ଼ଦାନୀରେ କେତେ ରକମର ଆଗ୍ରର, ମୋରବ୍ବା ଚଟଣୀ ରହବି । ଘରର ଏ ସବୁ ପାଇଁ ଯାବତୀୟ ଖର୍ଚ୍ଚ ଗ୍ରେସୀ ହାତରେ ହେଉଥିଲା । ସେ ବେଶ ମିତବ୍ୟୟୀ । ପଛ ସିଡ଼ିରେ ଠିଆ ହୋଇ ପରିବା ସଉଦାବାଲା ସାଙ୍ଗରେ ମୂଲ ତଉଲକୁ ଲଢ଼ି ପଡ଼ିଥିବ । ଗାଢ଼ ରଙ୍ଗର ଶାଢ଼ୀ ଆଉ ଲମ୍ବାହାତବାଲା ବ୍ଲାଉଜ ପିନ୍ଧି, ଖୋସା କି ବେଣୀରେ ଫୁଲ ସଜେଇ ଖାଲି ପାଦରେ, ଭଙ୍ଗା ଭଙ୍ଗା ଇଂରେଜି କିମ୍ବା ବମ୍ବେଇ ଶୈଳୀର ଉର୍ଦ୍ଦୁ କହି ବେଶ ପରିଶ୍ରମ ଆଉ ମନ ଲଗେଇ ଘର କଥା ବୁଝୁଥିବ ।

ସେ କାକାଙ୍କ ଆଖିରେ ସବୁକଥା ଦେଖୁଥିଲା । କାକା ଯଦି କୋଉ କଥାକୁ ବା କାହାକୁ ନାପସନ୍ଦ କରୁଥିଲେ, ତାକୁ ସେ ବି ଅନାଦର କରି ଦେଖୁଥିଲା । ଲୋକଙ୍କୁ ସେଇଭଳି ମର୍ଯ୍ୟାଦା ଦେଉଥିଲା । ଆଉ କାକା ଯାହାକୁ ଭଲପାଉଥିଲେ, ପସନ୍ଦ କରୁଥିଲେ, ସେ ଯେମିତି ତା'ପାଇଁ ଜୀବନ ପର୍ଯ୍ୟନ୍ତ ଦେଇଦବ ।

ରବିବାର ଦିନ ମୋ ପାଇଁ ଯେମିତି ଇଦ୍ । କାରଣ ସେଦିନ ଘରକୁ ଚିତ୍ରବିଚିତ୍ର ପତ୍ରିକା ସବୁ ଆସୁଥିଲା । ବାରଣ୍ଡାରେ ଗୋଟାଏ ଲମ୍ବା ବେଞ୍ଚ ଉପରେ ସବୁ ପତ୍ର-ପତ୍ରିକା ସଜଡ଼ା ହୋଇ ରହୁଥିଲା । ବମ୍ବେଲ କ୍ରନିକଲ୍, ଷ୍ଟେଟସମେନ୍, ଟାଇମ୍‌ସ ଅଫ୍ ଇଣ୍ଡିଆ, ଇଲଷ୍ଟ୍ରେଟେଡ଼ ଉଇକ୍ଲି, ସାଙ୍ଗୀର ବାର୍ଷିକ ଅଂକ ଓ କାହାଣୀ ବିଶେଷାଂକ ! ସେତେବେଳେ ଟାଇମ୍ସ ଅଫ୍ ଇଣ୍ଡିଆର ଶତାବ୍ଦୀ ବିଶେଷାଂକ ଆସିଥିଲା । ସେଥିରେ ଶହେବର୍ଷ ତଳର ଚର୍ଚ୍ଚଗେଟ୍‌ର ବଡ଼ ରଙ୍ଗିନ ଫଟୋଟିଏ ଛାପା ହେଇଥିଲା । ଇଂରେଜ ଲୋକେ ଘୋଡ଼ାଗାଡ଼ି ଆଉ ପାଲଙ୍କିରୁ ଓହ୍ଲଉଥିଲେ । ଆଉ ନେଟିଭ୍ ଲୋକେ ହାତରେ ହାତ ଛନ୍ଦି ଗ୍ରିପଟେ ଠିଆ ହେଇ ଅନେଇ ରହିଥିଲେ । ମୁଁ ସେଇ ପତ୍ରିକାଗୁଡ଼ିକର ପୃଷ୍ଠା ଓଲଟେଇ ଯାଉଥିଲି ବା ସମୁଦ୍ରର ଲହଡ଼ି ଗଣୁଥିଲି । ନାସିର କାକାଙ୍କ ପୁଅ ମୋ'ଠାରୁ ଦୁଇ ତିନି ବରଷ ସାନ । ମୋର ତା ସାଙ୍ଗରେ ଆଦୌ ପଡ଼ି ପାରିଲା ନାଇଁ । ମୋର ମୋଠଉଁ ବଡ଼ଙ୍କ ସାଙ୍ଗରେ ବେଶ୍ ପଡୁଥିଲା । ଅସଗର ଭାରି ଅସଭ୍ୟ ଆଉ ଦୁଷ୍ଟ । ସେ ସାରାଦିନ ଗ୍ରେସୀକୁ ହଇରାଣ କରୁଥିଲା । ପଢ଼ାପଢ଼ିକୁ ତା'ର ମନ ନ ଥିଲା । ଗ୍ରେସୀ ତାକୁ ବରାବର ଧମକାଏ— 'ଅସଗର, ଯାଅ ତମର ଲେସନ୍ ଦେଖ ।' ଆଉ ତାର ଉତ୍ତରରେ ସେ ପୁଣି ତାକୁ ହଇରାଣ ହରକତ କରୁଥିଲା । ହୁଏତ ଅବଚେତନ ମନରେ ସେ ଗ୍ରେସୀକୁ ପସନ୍ଦ କରୁନଥିଲା । ଆଉ ତାର କାରଣ ହୁଏତ ଏଇଆ ଯେ ଗ୍ରେସୀର ତା ଉପରେ ପୂର୍ଣ୍ଣ ଅଧିକାରର ଭାବ ଥିଲା । ଛୋଟ ବୁଦ୍ଧିର ଅସଗର ସବୁବେଳେ ତା ବିରୋଧରେ ବିଦ୍ରୋହ କରୁଥିଲା ଯେମିତି ।

'ଅସଗରର ବଢ଼ାଣ ବେଶ ଭୁଲ୍ ବାଟରେ ହେଉଛି ।' ନାସିର କାକା ବେଳେବେଳେ ଦୀର୍ଘନିଶ୍ୱାସ ପକେଇ କହୁଥିଲେ— 'ଗ୍ରେସୀର ଅକାରଣ ଲାଡ଼ ଗେଲ ତାକୁ ପୂରା ନଷ୍ଟ

କରିଦେଲାଣି । ଆଉ ମୁଁ ଗ୍ରେସୀକୁ କିଛି କହି ପାରୁନି । ବେଗମ୍ ତାକୁ ଛୋଟ ଭଉଣୀଠୁ ବଳି ଦେଖୁଥିଲେ । ଆଉ ମୁଁ ଏଇନେ କେମିତି ତା' ଲାଗି କଠୋର ହେଇପାରିବି !'

ଯେତେବେଳେ ଅସଗର ହାମେ ଯିବା, ହାମେ ଖାଇବା, ହାମେ ତମକୁ କହିଲା ଭଳି ଭାଷାରେ କଥା ହେଉଥିଲା, ସେତେବେଳେ ବାପା ଭାରି ଦୁଃଖରେ କହୁଥିଲେ, 'ଇଏ ମାଟିଆବୁର୍ଜ ଆଉ ଅଜୀମାବାଦର ସେଇ ପରିବାରର ପିଲା, ଯୋଉ ପରିବାର ଏକଦା ଶିକ୍ଷାର ଇତିହାସରେ ନିଜର ଏକ ଖାସ ଠିକଣା ରଖିଥିଲା ।'

ଫ୍ଲାଟର ପଛପଟ କୋଠାରେ ଫାୟରମେନ୍‌ମାନଙ୍କର କ୍ୱାଟର ଥିଲା । ଫାୟରମେନମାନେ ପ୍ରାୟ ମରାଠା । ସେଇ ପରିବାରଗୁଡ଼ିକର ଗୋଟାଏ ଅତି ସୁନ୍ଦର ସ୍ତ୍ରୀଲୋକ ନଗଜି ଶାଢ଼ୀ ପିନ୍ଧି ବାଳରେ ବେଣୀ ଗଜରା ବାନ୍ଧି ଆସି ନଳ ପାଖରେ ବାସନ ମାଜେ ।

ମୁଁ ଦି'ପହର ବେଳକୁ ଚୁପ୍‌ଚାପ୍ ଓହ୍ଲେଇ ଆସେ । ସେଇ ତଳମହଲାରେ ନାସିର କାକାଙ୍କ ଏସିଷ୍ଟେଣ୍ଟ ମିଷ୍ଟର ଜେକବ ଇବ୍ରାହିମଙ୍କ ଫ୍ଲାଟ୍ ଥିଲା । ମିଷ୍ଟର ଇବ୍ରାହିମ୍ ବନୀ ଇସ୍ରାଇଲ ମରାଠୀଭାଷୀ ଇହୁଦୀ ଥିଲେ । ଶୁକ୍ରବାର ଦିନ ମିସେସ୍ ରେବେକା ଇବ୍ରାହିମ୍ ପିତଳ ଜଂଜିରରୁ ଝୁଲୁଥିବା ସୁନ୍ଦର ଲେମ୍ପ ଜଳେଇ ତିନୋଟି ଅର୍ଦ୍ଧବୃତ୍ତାକାରର ଶେଷଭାଗରେ ଛଅଟି ମହମବତୀର ବିଶେଷ ଇବ୍ରାନୀ ଜଳେଇ ଦିଅନ୍ତି ଆଉ ତୌରତ୍ ଜବୁର (ଧର୍ମଗ୍ରନ୍ଥ)ର ପାଠକରି ବସନ୍ତି । ତାଙ୍କ ଡ୍ରଇଙ୍ଗ ରୁମ୍‌ରେ ସନ୍ଥ ମୁସାଙ୍କର ଗୋଟାଏ ବିରାଟ ରଙ୍ଗିନ ଛବି ଲାଗିଥିଲା, ଯୋଉଥିରେ ସେ ତାଙ୍କର ସଂପ୍ରଦାୟର ଲୋକଙ୍କୁ ନୀଳନଦୀର ସେପାରିକୁ ନେଇଯାଉଥିବା ଚିତ୍ରିତ ହୋଇଥିଲା । ମୁଁ ଉପରକୁ ଆସି ବାପାଙ୍କୁ ବା ନାସିର କାକାଙ୍କୁ ଇହୁଦୀମାନଙ୍କ ବିଷୟରେ ପଚାରୁଥିଲି । ଦିନେ ମୁଁ ଗୋଟାଏ ଇଂରେଜୀ ବହିରେ ପଢ଼ିଲି 'ତମେ ମୋତେ ମୁସାଙ୍କ ଭଳି ବନ୍ଦୀମୁକ୍ତ କଲ ଆଉ ମୁଁ ଫିରୋନ୍ ଭଳି ତମକୁ ଧନ୍ୟବାଦ ଦେବାକୁ ଅସ୍ୱୀକାର କରିଚାଲିଥିଲି । ତେଣୁ ମରୁଭୂମିରେ ସଂପୂର୍ଣ୍ଣ ବିନାଶ ଘଟିଲା ।' ''କ'ଣ ଯାର ଅର୍ଥ ?'' ମୁଁ ବାପାଙ୍କୁ ପଚାରିଲି ।

ସେତେବେଳେ ସେ ଉତ୍ତର ଦେଇଥିଲେ— ''ଯାର ଅର୍ଥ ତମେ ଏଇନେ ବୁଝିପାରିବ ନାଇଁ । ବଡ଼ ହେଲେ ବୁଝିପାରିବ ।''

ସଂଧ୍ୟାବେଳେ ମୁଁ ବାପା ଆଉ ନାସିର କାକାଙ୍କ ସାଙ୍ଗରେ ସମୁଦ୍ର କୂଳେ କୂଳେ ତାଜମହଲ ହୋଟେଲ ଆଉ ଗେଟ୍‌ୱେ ଅଫ୍ ଇଣ୍ଡିଆ ପର୍ଯ୍ୟନ୍ତ ବୁଲି ଯାଉଥିଲି । ଆଉ ବାଡ଼ ଧରି ଠିଆ ହୋଇ ସାମନା ଦେଇ ଯାଉଥିବା ଭବ୍ୟ ଜାହାଜମାନଙ୍କୁ ଦେଖୁଥିଲି ।

ରାସ୍ତାରେ ଯାଉଥିବା ପାରସୀମାନଙ୍କର ଅଗ୍ନିକୁଣ୍ଡର ଅଧା ମଣିଷ ଅଧା ସିଂହ ଥିବା ଭବ୍ୟ ସ୍ତମ୍ଭସବୁ ଦେଖାଯାଏ ଆଉ ଝିପ୍‌ଝିପ୍ ବର୍ଷାରେ ମୋଟର ବା ବସ୍‌ର କାଚରୁ ମୋତେ ବେଶ୍ ରହସ୍ୟମୟ ମନେହୁଏ । ଜୁହୂତଟର ଗୋଟାଏ କୋଣକୁ ଥିବା ଛୋଟ ହୋଟେଲ-ଟିଏରେ ଶାଗୁଣା ଭଳି ଦିଶୁଥିବା ପାରସୀ ବୁଢ଼ୀଟିଏ ଆଇସକ୍ରିମ୍ ବିକୁଥିଲା । ସେ ବି ବେଶ୍

ରହସ୍ୟମୟ ମନେହେଉଥିଲା । ଜଗତ ସଂପୂର୍ଣ୍ଣଭାବରେ ଅତ୍ୟନ୍ତ ରହସ୍ୟମୟ ଥିଲା । ସକାଳୁ ଖବରକାଗଜ ପଢୁପଢୁ ହଠାତ୍ ମଥାଟେକି ନାସିର କାକା ମୋତେ କହନ୍ତି... "ଆଚ୍ଛା, ଏଇଆ ବି ହେଲା ?"

କେତେ ଜଣ ବଡ଼ ମଣିଷଙ୍କର ଏକ ବିଚିତ୍ର ଅଭ୍ୟାସ । ଅର୍ଥହୀନ ବାକ୍ୟଟିଏ କହି ଦିଅନ୍ତି । ତାହା ଅନ୍ୟମାନଙ୍କ ପାଇଁ ନିରର୍ଥକ ହୋଇଥିଲେ, ବଡ଼ମଣିଷ ଆଉ ପିଲାଙ୍କ ଭିତରେ ଗୋଟାଏ ଗୁପ୍ତ କୋଡର କାମ କରେ । ଯେଉଁମାନଙ୍କର ପିଲାଙ୍କ ପ୍ରତି ଭାରି ସ୍ନେହ, ସେମାନଙ୍କର ଆଉ ପିଲାଙ୍କ ଭିତରେ ଏକ ଅକୁହା ସଂବନ୍ଧ ନିରନ୍ତର ରହିଥାଏ । 'ଆଚ୍ଛା, ଏଇଆ ବି ହେଇଗଲା... ବାଃ ବି ହେଇଗଲା ।' ସିଏ ମୋର ଆଉ ନାସିର କାକା ଭିତରେ ଗୋଟାଏ ଗୁପ୍ତ କୋଡ଼ ।

ଯେତେବେଳେ କାକା ମୋ ପାଇଁ କୋଉ ପ୍ରୋଗ୍ରାମ କରୁଥିଲେ, ସେତେବେଳେ ମୋତେ ଚୁପ୍‌ଚୁପ୍ କହିଦଉଥିଲେ, "ଆଜି ତମକୁ ଜୁହୁ ନେଇଯିବା । ସେଠି ବେଶ୍ ସମୁଦ୍ର ସ୍ନାନ ହେବ । କେମିତି ?"

ବା-- ଆଜି ସିନେମା ?

କିମ୍ବା -- ଆଜି ଆମେ ଦୁହେଁ ତାଜକୁ ଯିବା । ସେଠି ମଜାରେ ଆଇସକ୍ରିମ୍ ଖିଆ ହେବ... ବୁଝିଲ !"

ନାସିର କାକାଙ୍କ ସାଙ୍ଗରେ ମୋର ଦୁଇବର୍ଷ ପୁରୁଣା ବନ୍ଧୁତା । ଦୁଇବର୍ଷ ତଳେ ଶୀତ ଦିନେ ନାସିର କାକା ଆମ ଘରକୁ ଆସିଥିଲେ । ଡେରାଡୁନ୍ । ବାପାଙ୍କର ଅନ୍ୟ ଅଗଣିତ ସାଙ୍ଗମାନଙ୍କ ଭିତରେ ଆଲିଗଡ଼ର ଜଫର ଉମର, ଗ୍ୱଗ୍ୱ ଅବଦୁଲ ଗଫ୍‌ଫାର[୧] ଗ୍ୱଗ୍ୱ ମୁସ୍ତାକ୍ ଜାହିଦୀ, ଗ୍ୱଗ୍ୱ ରଜା ଅଲୀ[୨] ଆଉ ଗ୍ୱଗ୍ୱ ଇନାୟତୁଲ୍ଲାହ[୩]ଙ୍କ ସାଙ୍ଗରେ ମୋର ଭାରି ପଡୁଥିଲା । ଏଇନେ ଏଇ ପ୍ରିୟ ଗ୍ୱଗ୍ୱମାନଙ୍କ ସାଙ୍ଗରେ ନାସିର ଗ୍ୱଗ୍ୱ ଯୋଡ଼ି ହେଇ ଯାଇଥିଲେ । ଏତେ ଦୂର ବମ୍ବେଇରେ ରହୁଥିବା କାରଣରୁ ମୁଁ ତାଙ୍କୁ ଯା ପୂର୍ବରୁ ଦେଖି ନଥିଲି ।

ସଂଧ୍ୟାରେ ମୁଁ ନାସିର ଗ୍ୱଗ୍ୱଙ୍କୁ ଡାଲନବାଲାର ଶାନ୍ତ ଆଉ ସୁଗନ୍ଧିତ ରାସ୍ତାରେ ବୁଲେଇ ନଉଥିଲି । ଆଉ ଗୋଟାଏ ତଫର ଗାଇଡ୍ ଭଳି ନିକଟର ସବୁ ମହତ୍ତ୍ୱପୂର୍ଣ୍ଣ ଲେଣ୍ଡମାର୍କ ଦେଖେଇ ଯାଉଥିଲି । ନିଜର ପରିଚିତ କୁକୁର, ବିଲେଇ ଆଉ ପକ୍ଷୀମାନଙ୍କ ସାଙ୍ଗରେ ତାଙ୍କର ଚିହ୍ନା ପରିଚୟ କରେଇ ଦଉଥିଲି । ଆଖପାଖର ଘରମାନଙ୍କ ବିଷୟରେ ମହତ୍ତ୍ୱପୂର୍ଣ୍ଣ କଥା କହୁଥିଲି... "ଦେଖନ୍ତୁ ସେଇ ୟୁକାଲିପଟସ୍ ଗଛ ନାଇଁ, ତା' ପଛପଟେ

---

୧ - ସ୍ୱର୍ଗୀୟ ଅବଦୁଲ ଗଫ୍‌ଫାର ।

୨ - ଅମାଲନାମାର ଲେଖକ ସ୍ୱର୍ଗୀୟ ରଜାଅଲୀ

୩ - ସ୍ୱର୍ଗୀୟ ମୌଲବୀ ଇନାୟତୁଲ୍ଲାହ ଦେହଲବୀ

ମୋର ସାଙ୍ଗ ବିମଳା ରହେ ଆଉ ସେଇ ସାମନାରେ ଅତିୟାର ଘର... ଆଉ ଆଉ ଗ୍ୟ୍, ସେ ପୋଲଟି ଉପରେ ଯୋଉ ଇଂରେଜ ଠିଆହୋଇ ନାଇଁ, ସିଏ ଭାରି ଆଡ଼ବାୟା । ସେଇ ସାମନାରେ ମିସେସ୍ ମୁଖର୍ଜୀ ରହନ୍ତି । ଗ୍ୟ୍ ତମେ ଜାଣିଛ, ମିସେସ୍ ମୁଖର୍ଜୀ ନା: ତାଙ୍କର ସ୍ୱାମୀ ପାଦରୀ ମୁଖର୍ଜୀ, ସେଇ କହନ୍ତି— ସିଏ କୁଆଡ଼େ ପାଗଳୀ । ସେ ରାତିସାରା ବଗିଚ୍ୟରେ ବୁଲୁଥା'ନ୍ତି । କହନ୍ତି, ତାଙ୍କୁ କୁଆଡ଼େ ଆଦୌ ନିଦ ମାଡ଼େ ନାଇଁ । ସେ ଡାଲନବାଲା ସାରା ବୁଲିବୁଲି ବ୍ଲକ୍‌ବଣ୍ଡର ଖାଲି ଡବା ଜମା କରନ୍ତି ।

ଫ୍ରେଞ୍ଚକଟ୍ ଦାଢ଼ିବାଲା ପାଦରୀ ମୁଖର୍ଜୀ ତାଙ୍କର ଆଲସିସିଏନ୍ କୁକୁର ସାଙ୍ଗରେ ମୁଣ୍ଡ ନୁଆଇଁ ସାମନାପଟୁ ବୁଲିବାଲି ଆସନ୍ତି । ମିନ୍‌ଟିଏ ଆମ ପାଖରେ ରହି କଥା ହେଇ ଗ୍ୟଲିଯାଆନ୍ତି । ନାସିର କାକା ତା'ପରେ ବୁଲି ବାହାରନ୍ତି ଆଉ ମୁଁ ନାଚି ଡେଇଁ ତାଙ୍କ ଆଗେ ଆଗେ ଗ୍ୟଲିଥାଏଁ ।

କାକାଙ୍କୁ ମୁଁ ବେଶ୍ ଉତ୍ସାହରେ ମୋର ଗୋଟାଏ ଗୁପ୍ତ ଆଉ ସୁରକ୍ଷିତ ସ୍ଥାନ ଦେଖେଇ ଦେଇଥିଲି । ଆମ ଘରର ପଛପଟେ ଗୋଟାଏ ଲାଲ ରଙ୍ଗର ଦୁଇମହଲା କୋଠା ଥିଲା, ଯୋଉଥିରେ ଅନେକ ଝରକା, ବଡ଼ ଆଉ ଖୋଲା ମଣ୍ଡପ ଭଳି ଛାତ ଆଉ ମୀନାର ତିଆରି ହୋଇଥିଲା । ସେଇଟା ପୂର୍ବପଂଜାବର କେହି ଜଣେ ଛୋଟ ରାଜାଙ୍କର କୋଠି, ଯା'ର ନାଁ ଥିଲା 'ପରୀ ମହଲ' । ସେଇ କୋଠି ପୂରାପୂରି ଖାଲି, କେହି ରହୁନଥିଲେ । ତେବେ ବି ସେ କୋଠିର ସବୁ କୋଠରି ଦରଜା ଖୋଲା ରହିଥିଲା । ଏମିତି ମନେହେଉଥିଲା, ଯେମିତି 'ଭମର ଐୟାର'ର କୋଉ ଜାଦୁଗର ଛୁ' ମନ୍ତର କରି ସେମିତି ଗୋଟାଏ ଭରିଲା ପୂରିଲା କୋଠିକୁ ଉଜାଡ଼ି ଦେଇଯାଇଛି ଆଉ ତା'ର ଦରଜାଗୁଡ଼ିକ ସେଇମିତି ଖୋଲା ରହିଯାଇଛି । ମୁଁ ବେଳେବେଳେ ତା'ର ସିଡ଼ି ଦେଇ ଚଢ଼ିଯାଏଁ । ମୋତେ ଆଦୌ ଡରମାଡ଼େ ନାଇଁ । ନିର୍ଜନ ଘର ହେଲେ ବି ଆଦୌ ଭୟଙ୍କର ନୁହେଁ । ନାସିରକାକା ଯୋଉଦିନ ଡେରାଡୁନ୍ ଆସିଲେ, ମୁଁ କହିଲି— ''ଗ୍ୟଲ ତମକୁ ପରୀ ମହଲ ଦେଖେଇବି ।'' ଆଉ ତାଙ୍କ ହାତ ଧରି ତାଙ୍କୁ ସେଠିକି ଟାଣିଲା ଭଳି ନେଇଗଲି । ସତେଜ ସବୁଜ ଘାସ ଉପରେ କ୍ରିସ୍‌ମାସ୍ କେକ୍‌ଭଳି ସେ କୋଠି । ତେବେ ତାହା ମୌନତାରେ ବୁଡି ରହିଥିଲା । ସଦା ଯେମିତି ଥାଏ, ସେମିତି ନୀରବ । 'ଏଇଠି ଆସି ଆମେ ଖେଳୁଁ ।' ମୁଁ ତାଙ୍କୁ କହିଲି । ନାସିର କାକା ତାଙ୍କ ହାତବାଡ଼ି ଉପରେ ଭରା ଦେଲା ଭଳି ଠିଆହେଇ କୋଠିକୁ ନିରେଖି ଦେଖିଲେ ଆଉ କହିଲେ, ''ବେଶ୍ ଭାରି ବଢ଼ିଆ ।''

ଯେତେବେଳେ ସେ ଇନାୟତୁଲ୍ଲାହ କାକାଙ୍କୁ ଭେଟିବାକୁ ଗଲେ, ସେତେବେଳେ ସେ ତାଙ୍କର ଚିଡ଼ିଆଖାନା ନିଶ୍ଚୟ ମନଦେଇ ଦେଖିବେ ବୋଲି ମୁଁ ଅଡ଼ି ବସିଥିଲି । ସେଇ ଚିଡ଼ିଆଖାନାର ସବୁ ପଶୁ-ପକ୍ଷୀ ମୋର ପୁରୁଣା ପରିଚିତ । ଇନାୟତୁଲ୍ଲାହ ଗ୍ୟ୍ ନିୟମାନୁସାରେ ଲନ୍‌ରେ ଚଉକି ପକେଇ ଖରା ପୁଉଉଁଥିଲେ । ସାମନାରେ ମେଜ ଉପରେ କେତେ କ'ଣ ଖବରକାଗଜ ଥୁଆ ହେଇଥିଲା । ସେ ନାସିରକାକାଙ୍କୁ ପଗ୍ୟରିଲେ,,,

"ତମେ ଏଇନେ ରହୁଛ କୋଉଠି ?"

"ବମ୍ବେରେ ।"

"ସେଠି କରୁଛ କ'ଣ ?"

"ନିଆଁ ସାଙ୍ଗରେ ଖେଳୁଛି ।" ନାସିର କାକା ଉତ୍ତର ଦେଲେ ।

ଆଉ ମୁଁ ବମ୍ବେଇ ଆସି ଦେଖିଲି ମତକୁ ସତ ନାସିରକାକାଙ୍କ କାମ ଭାରି ଭୟଙ୍କର। ପ୍ରାୟ ରାତିରେ ଫୋନ୍ ବାଜିବ, ଆଉ କୋଉଠି ଗୋଟାଏ ନିଆଁ ଲାଗିଥିବା ଖବର ଆସିବ ଯେ ଦୁର୍ଘଟଣା ନିରୀକ୍ଷଣ ଲାଗି ଯିବାକୁ ହେବ । ତାଙ୍କ ଘରେ ଗୋଟାଏ ବେଲ୍ ଲାଗିଥିଲା, ତା'ର ଯୋଗାଯୋଗ ସିଧାସଳଖ ଫାୟାର ବ୍ରିଗେଡ ବିଭାଗ ସାଙ୍ଗରେ ଥିଲା ଆଉ ସେଇ ଗୋଟିକ ସମୟ ଅସମୟରେ ବାଜୁଥିଲା । ରାତିବେଳେ କାକା ତାଙ୍କର ୟୁନିଫର୍ମ, ଫୁଲବୁଟ୍ ଆଦିକୁ ବିଛଣା ପାଖରେ ରଖୁଥିଲେ, ଯେମିତି ଘଣ୍ଟି ବାଜିଲା ମାତ୍ରକେ ସାଙ୍ଗେ ସାଙ୍ଗେ ବାହାରି ଘଟଣାସ୍ଥଳରେ ପହଞ୍ଚି ଯାଇ ହେବ ।

ଦିନେ ସକାଳେ ନାସିରକାକା ଜଳଖିଆ ଟେବୁଲକୁ ଆସିଲାବେଳେ ବେଶ ଉଦାସ ଜଣାପଡୁଥିଲେ । 'ରାତିରେ ଗୋଟାଏ ତିନିତାଲା ଘରେ ନିଆଁ ଲାଗିଗଲା ଆଉ ମୌଲବୀ ସାହବ ପୂରା ପରିବାର ସହିତ ଜଳି ଭସ୍ମ ହୋଇଗଲେ ।' ସେ ବେଶ୍ ଦୁଃଖିତ କଣ୍ଠରେ କହିଲେ।

"ମୁଁ ମୃତକଙ୍କୁ ଜାଣିଛି । ବେଶ ଦୟାଳୁ ଓ ଭଲଲୋକ । ଭାରି ଗରିବ । ସାରାଜୀବନ ଫକୀର । ଭୋକ ଆଉ ପେଟର ନିଆଁ ଲିଭେଇବା ଚିନ୍ତାରେ ଚିନ୍ତାରେ କଟିଗଲା । ଆଉ ଶେଷକୁ ସେଇ ନିଷ୍ଠୁର ନିଆଁ ସବୁକିଛି ଶେଷ କରିଦେଲା । ଏ ଅଲ୍ଲାହଙ୍କର କୋଉ ଭଳି ନ୍ୟାୟ ହେଲା ସଚ୍ଚାଦ୍ ?' ସେ ବାପାଙ୍କୁ ପଚାରିଲେ ।

'ସେଇ କୋଠାରେ ଜଣେ ସେଠ ରହୁଥିଲେ, ନାମୀ ବଦମାସ । ଶହ ଶହ ଗରିବଙ୍କର ରକ୍ତ ଶୋଷି ସେ ବେଶ କିଛି ଜମେଇ ରଖିଛନ୍ତି । ସେ ତା'ର ପରିବାର ସାଙ୍ଗରେ ପୂରାପୂରି ବଂଚିଗଲା । ଟିକିଏ ବି ଦାଗ ଲାଗିଲା ନାଇଁ ତାକୁ । ମୌଲବୀ ହମିଦୁଦ୍ଦୀନ ଆଉ ତାଙ୍କର ଗରିବ ସ୍ତ୍ରୀ ପିଲା ପୋଡ଼ି ପାଉଁଶ ହୋଇଗଲେ ।

ଗ୍ରେସୀ ସେତେବେଳେ ଟେବୁଲର ଗୋଟାଏ କୋଣକୁ ଧରି ଠିଆ ହୋଇଥିଲା । ସେ ତୁରନ୍ତ ଭଡ଼ଭଡ଼ ହେଇ କ'ଣ ପଢ଼ିବା ଆରମ୍ଭ କରିଦେଲା ଆଉ ପାଖ କୋଠରିରେ ପଶିଗଲା ।

ଗ୍ରେସୀର ଅଭ୍ୟାସ ଥିଲା, ଯେତେବେଳେ ନାସିରକାକା ନିଆଁ ଲିଭେଇବାକୁ ବାହାରୁଥିଲେ, ସେତେବେଳେ ସେ ତା' କୋଠରିରେ ରଖିଥିବା ଆଦରଣୀୟ ମରିୟମଙ୍କ ଛୋଟ ମୂର୍ତ୍ତିଟି ପାଖରେ ତାଙ୍କର କୁଶଳ କାମନା କରି ମହମବତୀଟିଏ ଜାଳି ଦେଉଥିଲା । ଆଉ ସେ ଯେତେବେଳେ ଭଲରେ ଭଲରେ ଫେରିଆସୁଥିଲେ, ସେତେବେଳେ ଗୁଣୁଗୁଣୁ ହେଇ କ'ଣ ପଢ଼ି ପୁଣି ଆଉ ଗୋଟାଏ ଜାଳି ଦେଉଥିଲା । ସେ ସାଧାରଣ ରୋମାନ

କେଥଲିକ ମାଇକିନାଙ୍କ ଭଳି ଅତି ଧାର୍ମିକ ଆଉ ପକ୍କା ଥିଲା । ରବିବାର ଦିନ ଗିର୍ଜାକୁ ଅବଶ୍ୟ ଯିବ ଆଉ ତା' ବାହାରେ ସାରାଦିନ ଯୋଉସବୁ ଛୋଟ ଛୋଟ ଘଟଣା ଘଟୁଥିବ, ସବୁ ଜଣେଇ ଦେବାକୁ ଆଉ ତୁରନ୍ତ ସାହାଯ୍ୟ ପାଇବାକୁ ମରିୟମଙ୍କ ପାଖକୁ ଦଉଡ଼ି ଯାଉଥିବ, ମହମବତୀ ଜଳାଇ ସ୍ପଷ୍ଟଭାବରେ କୋଙ୍କଣୀ ଭାଷାରେ କିଛି ଗୋଟାଏ ପ୍ରାର୍ଥନା ବୋଲିବ । ତା'ପରେ ତା'ର ଆପଣା ଶୈଳୀର ଉର୍ଦ୍ଦୁ ବା ଇଂରେଜୀରେ ଚିନାମାଟି ତିଆରି ସେଇ ମୂର୍ତ୍ତି ସାଙ୍ଗରେ ଚଂଚଳ କଥାହେଇ ଆପଣା କାମରେ ଲାଗିଯିବ ।

ଦିନେ ସକାଳୁ ସକାଳୁ ସେ ଘରସାରା ଷ୍ଟୋରରୁମର କଂଚି ଖୋଜିବୁଲୁଥିଲା । ମୁଁ ବି ତା' ସାଙ୍ଗରେ ଖୋଜି ବସିଲି । ଯେତେବେଳେ ଗ୍ୱବି ମିଳିଲା ନାହିଁ, ସେ ତୁରନ୍ତ ମରିୟମ ପାଖରେ ପହଞ୍ଚିଗଲା । ମହମବତୀ ଜଳାଇ ବେଶ୍ ରାଗି କହିବା ଆରମ୍ଭ କଲା— "ଦେଖ ମଦର, ଯଦି ତମେ ଦଶମିନିଟ୍‌ରେ ମୋ କଂଚି ଖୋଜି ଦବ ନାହିଁ, ତା'ହେଲେ ଏଇଠୁ ତମର ଆମର ଭାବ ତୁଟିଲା ବୋଲି ଜାଣ । ମୁଁ ତମକୁ କହି ରଖୁଛି— ସାହେବଙ୍କ ଲଞ୍ଚକୁ ଡେରି ହେଲେ ମୋ ଜୀବନ ନେଇଯିବେ । ତମର କ'ଣ ଯାଏ ଆସେ, ତମେ ତ କେବେହେଲେ ଆୟାଗିରି କରିନ !"

ଆଉ ଯଦି କୋଉଦିନ ଖାଇବାବେଳେ ନାସିରକାକା ଗ୍ରେସୀ କରିଥିବା ରୋଷେଇର ପ୍ରଶଂସା କରିଦେବେ ତ ଦଉଡ଼ି ଯାଇ ମୂର୍ତ୍ତିଟି ଆଗରେ କୃତଜ୍ଞତାରେ ମହମବତୀ ଜଳେଇ ଦେବ । ନାସିରକାକା କେବେହେଲେ ଗ୍ୱକରବାକରଙ୍କ ସାଙ୍ଗରେ ଅଦରକାରୀ କଥା ହୁଅନ୍ତି ନାହିଁ । ଘର କାମଦାମ କଥା ବି ଅତି କମ ହେଉଥିଲେ ଆଉ ଗ୍ରେସୀକୁ ସବୁ ଭଲମନ୍ଦର ମାଲିକାଣୀ ବନେଇ ସାରିଥିଲେ । ସେମିତି ବି ତାଙ୍କର ବୈବାହିକ ଜୀବନର ଅବସାନ ପରେ ଏତେ କାଳ ବିତି ଯାଇଥିଲା ଯେ ଏକାନ୍ତତା ତାଙ୍କର ଅଭ୍ୟାସରେ ପରିଣତ ହୋଇ ସାରିଥିଲା । ସମ୍ଭବତଃ ସେ ଆପଣାର ବିଗ୍ୱର ଆଉ ସ୍ମୃତିର ଦୋସରଭାବରେ ଆପେ ନୀରବରେ ବଂଚିବା ଶିଖି ଯାଇଥିଲେ ।

ନାସିରକାକା ଗୋରା, ଉଚ୍ଚାପୂରା, ବଳିଷ୍ଠ ଶରୀର ବ୍ୟକ୍ତିତ୍ୱସମ୍ପନ୍ନ ପ୍ରଭାବଶାଳୀ ମଣିଷଟିଏ ଥିଲେ । ଆର୍ଥିକ ଦୃଷ୍ଟିରୁ ସଂପନ୍ନ । ସରକାରୀ ବେତନ ବାହାରେ କଲିକତାରେ ତାଙ୍କର ଅନେକ ଭୂସଂପତ୍ତି ଥିଲା । ଗ୍ରେସୀ ବରାବର ସେଇ ଚିନ୍ତା କରୁଥିଲା ଯେ ସାହେବ ବଦଖର୍ଚ୍ଚୀ ।

ବମ୍ବେଇର ସମ୍ମାନନୀୟ ଆଉ ବିଶିଷ୍ଟ ମୁସଲମାନଙ୍କ ଭିତରେ ସିଏ ବି ଗଣାଯାଉଥିଲେ । ଅନେକ ଇସଲାମୀ ସଂସ୍ଥାର ସଦସ୍ୟ ଓ ସଂରକ୍ଷକ ଥିଲେ । ତାଙ୍କର କୋମଳ ହୃଦୟ ଆଉ ଶିଷ୍ଟ ସହଯୋଗ ନିମନ୍ତେ ପ୍ରସିଦ୍ଧ ଥିଲେ ।

ଦିନେ ତିନିଜଣ ସ୍ତ୍ରୀଲୋକ ଧଇଁସଇଁ ହେଇ ପାହାଚ ଚଢ଼ି ବାରଣ୍ଡା ଉପରେ ପହଞ୍ଚି ଆସି ବେଶ ଠାଣିରେ ଡ୍ରଇଂରୁମ୍‌ରେ ବସିଗଲେ । ଯେତେବେଳେ ନାସିରକାକା କୋଠରିକୁ ଆସିଲେ, ସେତେବେଳେ ସେମାନେ ପୁଣି ସେଇ ଠାଣିରେ ଉଠି ତାଙ୍କ ପାଖକୁ ଆସିଲେ ।

ସେମାନଙ୍କ ଭିତରେ ଲିଡ଼ର ମନେହେଉଥିବା ମହିଳାଙ୍କ ହାତରେ ଦୁଇଟି ଡବା ଥିଲା । ଅତଲସୀ-ରେଶମ ଜନାର ଘାଘରା ପିନ୍ଧି ଧାଡ଼ିବାନ୍ଧି ଗ୍ଲଲିଗଲାବେଳେ 'ପୂର୍ବର ତିନି ମଜୂଷୀ (ଅଗ୍ନିପୂଜକ) ବାଦଶାଙ୍କ କଥା ମନେପଡ଼ିଲା । ଯୋଉମାନେ ଈଷାମସୀହଙ୍କର ଜନ୍ମ ସଂପର୍କିତ ଚିତ୍ରରେ ଜରି ଫୁଲପକା ବେଶ-ଭୂଷଣ ପିନ୍ଧି ଉପହାର ଧରି ଗ୍ଲଲିଥିବା ଚିତ୍ରିତ ହୋଇଥିଲା । ଲିଡ଼ର ମହିଳାଜଣକ ଗୋଟାଏ ଡବା ଖୋଲି ଛବିଟିଏ ବାହାରକରି କାକାଙ୍କୁ ବଢ଼େଇ ଦେଲା । ସେ ଛବିଟି ଉପରେ ଉପରେ ଦେଖିଦେଇ ଟେବୁଲ ଉପରେ ରଖିଦେଲେ । ସେ ତିନି ଜଣଯାକ କୋରସ ଗାଇଲା ଭଳି କହିପକେଇଲେ, "ସବୁ କଥା ଠିକ୍ ହୋଇଯାଇଛି ଆଉ କାଲି ସେମାନେ ନିର୍ବନ୍ଧପାଇଁ ଝିଅ ଘରକୁ ଯିବେ ।" ତା'ପରେ ସେମାନେ ଡବା ଖୋଲି ମୁଦିଟିଏ ବାହାର କରି କହିଲେ, "ଆମେ ଏଇଆକୁ ନରୋତ୍ତମ ଭାଇ ଦୋକାନରୁ କିଣିଛୁ ।" ତା'ପରେ ସେମାନେ ଗ୍ରେସୀକୁ ଡାକିଲେ । ସେ ଆସିଲାରୁ ତାକୁ ଏଗାର ସେର ମିଠା, ଏଗାର ସେର ଫଳ ଆଉ ଏଗାର ସେର ଡ୍ରାଇ ଫ୍ରୁଟ୍ କିଣିଆଣିବାକୁ କହିଲେ । ପରଦିନ ସଂଧ୍ୟାଯାଏଁ ପ୍ରସ୍ତୁତ ହୋଇ ରହିବାକୁ ତାଗିଦ କରିଗଲେ । ସେଇଭଳି ଆଦେଶ ଦେଇ ସେମାନେ ଯେମିତି ଆସିଥିଲେ, ସେମିତି ଗ୍ଲଲିଗଲେ ।

ସେ ତିନିଜଣ ମହିଳା ନାସିରକାକାଙ୍କର ଜଣେ ଲକ୍ଷ୍ନୌବାଲା ବନ୍ଧୁଙ୍କର ପତ୍ନୀ, ଭାଉଜ ଓ ଭଉଣୀ । ଅର୍ଜୁମନ୍ଦ ଭାଉଜ, ସରଫରାଜ ବୋହୂ ଆଉ ଜମିଲା ଭଉଣୀ ନାଆଁରେ ପରିଚିତ । ଅନେକ ବର୍ଷ ହେଲା ନାସିର କାକା ପୁଣି ଘର କରିନବା ଉଚିତ ବୋଲି ସେମାନେ ଅଡ଼ି ବସିଥିଲେ । ସେ ତିନି ଜଣ ନାସିରକାକାଙ୍କର ଭଉଣୀ ଓ ଭାଉଜ ପାଲଟି ଯାଇଥିଲେ ଆଉ ନିଜର କୁଳ ମର୍ଯ୍ୟାଦା ଓ ପ୍ରତିଷ୍ଠା ଅନୁପାତରେ ଝିଅ ବାଛିଥିଲେ । ନାସିର କାକାଙ୍କୁ କେବଳ ତାର ସୂଚନା ଦେବେ ବୋଲି ଆସିଥିଲେ । ସେମାନଙ୍କର କହିବା କଥା ହେଲା— ଯଦି ଏଭଳି ଜବରଦସ୍ତି ନାସିର କାକାଙ୍କ ସାଙ୍ଗରେ କରାହେବ ନାହିଁ, ତାହେଲେ ସେ ସାରା ଜୀବନ ଏମିତି ବିତେଇ ଦେବେ । ଆଉ ଘର ଧୂଳିସାତ୍ ହୋଇଯିବ । ଅସଗରର ନିଃଶ୍ୱାସ ପଡ଼ିବ, ସେ ଅଲଗା କଥା ।

ନାସିର କାକା ଅନେକ ଦିନ ଧରି ବେଶ୍ ଦୃଢ଼ ଭାବରେ ଅସ୍ୱୀକାର କରି ଗ୍ଲଲିଥିଲେ । ସମ୍ଭବତଃ ଅସଗରର ଦେଖାଶୁଣା କଥା ଭାବି ଏଥର ହଁ ଭରିଥିଲେ । ଝିଅଟି ଖାସ ଲକ୍ଷ୍ନୌର ମୂଳ ଇରାନୀ ପରିବାରର । ତା ଫଳରେ ଅସଗରର ଭାଷା ଓ ଉଚ୍ଚାରଣ ତ ସୁଧୁରିଯିବ ?

ସଂଧ୍ୟାବେଳେ ସେ ବାପାଙ୍କୁ କହିଲେ 'ଜମୀଲା ଭଉଣୀ ତ କଥା ପକ୍କା କରି ଆସିଛି । ତେବେ ଝିଅଘର ଗ୍ଯହାନ୍ତି ସବୁ କିଛି ରୀତି ପାଳନ କରିବେ । ପୂରାପୂରି ଫାଜିଲାମି । ହେ ଭଗବାନ !' ଆଉ ସେ ବୁଲିପଡ଼ି ମୋତେ ଦେଖିଲେ । ମୁଁ ଅଭ୍ୟାସତଃ ଝରକାରୁ ଝୁଲି ରହିଥାଏଁ— 'କ'ଣ, ଇଏ ବି ଗ୍ଲଲୁ ହେଇଗଲା ?'

ତା'ପରଦିନ ଗ୍ରେସୀ ଯାଇ ସବୁ ଜିନିଷ ନେଇଆସିଲା । ଷ୍ଟୋର ରୁମକୁ ଯାଇ ସେ ସେଇ ବଡ଼ ବାକ୍ସଟି ଖୋଲିଲା, ଯୋଉଥିରେ ସଇଦା ଖୁଡ଼ୀଙ୍କର ସବୁ ଜିନିଷ ଥିଲା । ମୁଁ

ଛାଇ ଭଳି ଗ୍ରେସୀ ପଛେ ପଛେ ଲାଗିଥାଏ । ଆଉ ବେଶ ଆଗ୍ରହରେ ସବୁ ପ୍ରସ୍ତୁତି ଦେଖୁଥାଏ। ଗ୍ରେସୀ ବାକ୍ସ ଖୋଲି ଜରିଟିକିଲି ଲଗା 'ଖ୍ୱାନ୍‌ପୋଶ' (ଥାଳି ଘୋଡ଼େଇବା କନା) ବାହାର କଲା; କହିଲା— 'ମେମ ସାହେବ ଏଇଆକୁ ନିଜେ ତିଆରି କରିଥିଲେ।' ଆଉ ସେଇ ନାଲି ଧଡ଼ିବାଲା ଥାଳୀ ଘୋଡ଼ଣୀଟି ଉପରେ ଆଖିରୁ ତାର ଲୁହ ବୁନ୍ଦାଏ ଝରି ପଡ଼ିଲା । ତାପରେ ସେ ତା'ର ନିଜ କୋଠରିକୁ ଯାଇ ପ୍ରସ୍ତୁତ ହେଲା । ଫୁଲପକା ଜରଜେଟ୍ ଶାଢ଼ୀ ପିନ୍ଧିଲା । ବାଳରେ ବେଣୀ ପାରିଲା ଆଉ ସାବନା ମୁହଁରେ ପାଉଡ଼ର ମାରି ବାହାରି ଆସିଲା ।

'ଭାରୀ ସୁନ୍ଦର ଶାଢ଼ୀଟିଏ ଗ୍ରେସୀ !' ମୁଁ କହିଲି ।

'ମୋତେ ମେମ୍ ସାହେବ ଦେଇଥିଲେ ।' ସେ ଭାରି ଧୀର ଗଳାରେ କହିଲା— 'ମେମ୍ ସାହେବ ସବୁବେଳେ ଘାଘରା ପିନ୍ଧୁଥିଲା ଆଉ ଶାଢ଼ୀ ମୋତେ ଦେଇ ପକଉଥିଲା। ମୁଁ ମୋ ବାକ୍ସରେ ରଖିଛି ।' ମୁଁ ବି ସେତେବେଳକୁ ଅରଗାଣ୍ଡିର ପାର୍ଟି ଫ୍ରକ୍ ପିନ୍ଧି ବାଳରେ ଲାଲ ରିବନ୍ ସଜେଇ, ଯୋତା ମୋଜା ପିନ୍ଧି ବାହାରି ସାରିଥାଏଁ ଆଉ ବୋହୂ ଦେଖିବାକୁ ମରି ଯାଉଥାଏଁ ।

ଅର୍ଜୁମନ୍ଦ ଭାଉଜଙ୍କ ବ୍ୟୁକ୍ ଗାଡ଼ିରେ ଆମ ଦଳଟି ଓମର ପାର୍କ ଆଡ଼କୁ ମୁହେଁଇଲା।

ଝିଅ ଘରେ ପହଞ୍ଚି ଆମେମାନେ ରୀତିମତ ଶୋଭାଯାତ୍ରାରେ ବଢ଼ିଗଲୁଁ । ଶୋଭାଯାତ୍ରାର ନେତା ଥିଲେ ଅର୍ଜୁମନ୍ଦ ଭାଉଜ। ପଛପଟେ ଗ୍ରେସୀ ମିଠେଇ ଥାଳୀଟି ଉଠେଇ ଧରି ଚାଲିଥାଏ । ଆଉ ଜମୀଲା ଭାଉଜଙ୍କର ଅନ୍ୟ ଚାକରାଣୀମାନେ ଆଉ ସବୁ ଥାଳୀ ଧରି ଚାଲି ଥାଆନ୍ତି । ମୁଦିଟିର ସୁନ୍ଦର ଲାଲ ଡବା ସରଫରାଜ ବୋହୂର ପର୍ସରେ ଥାଏ । ଦୁଆର ମୁହଁରେ ଲକ୍ଷ୍ନୌବୀ ଘାଘରା ପିନ୍ଧି ଅନେକଗୁଡ଼ିଏ ମୋଟୀ ପାତଳୀ ମାଇକିନା ଆମକୁ ସ୍ୱାଗତ କରି ଉପର ମହଲାକୁ ପାଛୋଟି ନେଲେ ।

ସେମାନଙ୍କର ସାମାନ୍ୟ ଟିକିଏ ଅନ୍ଧାରୁଆ ଡ୍ରଇଁରୁମରେ ନାନାରକମର ଫର୍ଣ୍ଣିଚର ସଜା ହୋଇ ରହିଥିଲା । କାଚ଼ଲଗା ଗୋଟାଏ ବଡ଼ ଆଲମିରାରେ ରୂପା ତିଆରି ବାସନ କୁସନ, ସେଲ୍ୟୁଲୋଏଡ଼ ଆଉ ଭିନେ ଭିନେ ଖେଳନା, ସୀପ, ଗେଣ୍ଡା, ଶଂଖ, ଗୋଟାଏ ଛୋଟ ତାଜମହଲ, ପରିବାରର ସୁପୁତ୍ରମାନଙ୍କର ଜିଣିଥିବା ଟ୍ରଫୀ କପ୍ ଆଉ ଏଣୁତେଣୁ ଜିନିଷ ଭରି ରହିଥିଲା । ଖୋଳମାନଙ୍କରେ କୁଶଳୀ ଝିଅମାନଙ୍କ ହାତ ତିଆରି ହଂସ ଆଉ ଶୁଆଙ୍କର ଛବି କଳା ମଖମଲ କନା ଆଉ ଫ୍ରେମରେ ଟଙ୍ଗା ହୋଇଥିଲା । ଚଉକୀ ଆଉ ସୋଫାମାନଙ୍କରେ ସାଟିନ କନାରେ ତିଆରି କୁଶନ୍ ଉପରେ ସେହିଭଳି ହଂସ, ଶୁଆ, ବଡ଼ ପେଟିକୋଟ ପିନ୍ଧି ଛତା ଧରିଥିବା ଆଉ ହୋଲୀ ହକ୍ ଗଛ ପାଖରେ ଠିଆ ହୋଇଥିବା ସାହେବାଣୀ ଛବି ସୂତାରେ ସିଲେଇ ହେଇଥିଲା ।

ଆମକୁ ସୋଫାରେ ବସେଇ ଦିଆହେଲା । ଗ୍ରେସୀ ଅନ୍ୟ ଆୟାମାନଙ୍କ ସାଙ୍ଗରେ ଗେଲେରୀରେ ଠିଆ ହୋଇଥାଏ । ଦରଜା ପାଖରେ ଠିଆ ହୋଇ ସେ କୋଠର ଭିତରକୁ ଗୋଟାଏ ଆଲୋଚକର ଆଖିରେ ଦେଖିଲା । କାରଣ ନାସିର କାକାଙ୍କର ଚକଚକ କରୁଥିବା

ଡ୍ରଇଁରୁମ ତା ମତରେ ଇଂରେଜ ଲୋକଙ୍କ ରାଉଣ୍ଡ ରୁମ ଭଳି ଦିଶୁଥିଲା । ସଇଦା ଖୁଡ଼ୀ ଅତି ସୁରୁଚିଶୀଳା ମହିଳା ଥିଲେ । ତାଙ୍କ ହାତରେ ସଜା ହୋଇ ରହିଥିବା ସବୁ ଜିନିଷକୁ ଗ୍ରେସୀ ଠିକ୍ ସେଇ ସେଇ ଜାଗାରେ ରଖିଥିଲା । କେତେବେଳେ କୋଉ ଗ୍ରକର ତାକୁ ସଫା କଲାବେଳେ ଆଙ୍ଗୁଳେ ଏଣେତେଣେ କରିଦେଇଥିଲେ ବି ସେ ତାକୁ ଖାଇ ଗୋଡ଼ଉ ଥିଲା ।

ଶାଣିତ ଅଥଚ ଲୁଚ୍ଚେଇ ଲୁଚ୍ଚେଇ ସାରାଘରର ନିରୀକ୍ଷଣ କରିନେଇ ଗ୍ରେସୀ କବାଟ ଉପରେ ଭରାଦେଇ ଠିଆ ହୋଇ ରହିଲା ।

ଡ୍ରଇଂରୁମରେ ଧୀରେ ଧୀରେ ସମ୍ମୁଖ ଘର ଲୋକେ ଭରିବାକୁ ଲାଗିଲେ । ଭିଡ଼ ଲାଗି ମୋତେ ରୁନ୍ଧି ହେଲା ଭଳି ଲାଗୁଥାଏ । ଠିଆରେ ଠିଆରେ ଗ୍ରେସୀକୁ ଥକା ଲାଗୁଥାଇ ପାରେ । ମୁଁ ମନେକଲି ଆଉ ମୋତେ କେଜାଣି କେମିତି ଚିଡ଼ଚିଡ଼ା ଲାଗିଲା । ସେଇ ଅପରିଚିତମାନଙ୍କ ଭିତରେ ସେଇ ଅଗ୍ନି ପୂଜାରିଣୀ ଅର୍ଜୁମନ୍ଦ ଭାଉଜ, ସରଫରାଜ ବୋହୂ, ଜମିଲା ଭଉଣୀ ବି ଥିଲେ ଆଉ ମୋତେ ସବୁରି ଭିତରେ ଗ୍ରେସୀ ହଠାତ୍ ଅତି ଆପଣାର ମନେହେଲା । ମୋତେ ଲାଗିଲା ଯେମିତି ତାକୁ ସାଙ୍ଗ ଦେବାକୁ ତାରି ପାଖରେ ଗେଲେରୀରେ ଠିଆ ହୋଇଯିବି । ଶେଷକୁ ମୁଁ ତାକୁ କହିଲି— 'ଗ୍ରେସୀ, ଆ, ବସ୍ ଏଠି ।' ଆଉ ସେ ସେଇ ଦରଜା ପାଖରେ ଚଉକିଟିଏରେ ଏମିତି ବସିଗଲା, ଯେମିତି ଚୁଲିର ଗୋଟାଏ କୋଣକୁ ବସିଛି ଆଉ ଭିତରେ ଭିତରେ ଫୁଟି ଯାଉଛି ।

ଗ୍ରେସୀ କାହିଁକି ଏମିତି ରାଗୁଛି, ମୁଁ ଆଦୌ ବୁଝିପାରୁନଥାଏଁ । ସେତେବେଳକୁ ଇଲେକ୍ଟ୍ରି ଫେଲ୍ ହେଲା । ପଂଖା ବନ୍ଦ ହେଇଗଲା, ସେଇଥିଲାଗି ସମସ୍ତେ ଅତିଷ୍ଠ ହେବାକୁ ଲାଗିଲେ । ମାଇକିନାଗୁଡ଼ିକ ଅସଗର ଅଲୀମୁହମ୍ମଦ ଅଲୀ, ଲକ୍ଷ୍ନୌ ଅତରବାଲାର ଅତରରେ ମହକି ଯାଉଥିଲେ । ସେଇମାନଙ୍କ କୋଳରେ କାଖରେ ଖୁନ୍ଦି ହେଇଥିବା ଛୁଆପଂଝାକ ଗଳା ଚିରି କାନ୍ଦିବା ଆରମ୍ଭ କରିଦେଲେ । ହୋହଲ୍ଲା ଆଉ ଗରମ ଲାଗି ବିକଳ ଲାଗୁଥିଲା । ତେବେ ଏଇନେ ଛମ୍ ଛମ୍ କରି ବୋହୂ ଆସିବ, ତା ପଛକୁ ଆଇସକ୍ରୀମ୍ । ମୁଁ ଏଇ ଦୁଇ କଥାକୁ ଅପେକ୍ଷା କରି ସନ୍ତୋଷରେ ବସି ରହିଲି । ସେତେବେଳକୁ ଅଗ୍ରନକ ମୁହୂର୍ତ୍ତକ ଲାଗି ମୌନତା ଖେଳିଗଲା । ଆଉ 'ଝିଅ' ନାଆଁରେ ବେଶ ଲମ୍ବ ଚଉଡ଼ା, ମୋଟୀ, ଗୋରାତକତକ ପଇଁତିରିଶ ବର୍ଷର ଅଭିଆଡ଼ୀ ମାଇକିନାଟିଏ ମଥା ନୁଏଇଁ ବେଶ ଆତ୍ମବିଶ୍ୱାସରେ ଆସି ସୋଫା ଉପରେ ଧଡାମ୍‌କିନା ଏମିତି ବସିଗଲା ଯେ ସ୍ପ୍ରିଙ୍ଗଗୁଡ଼ିକ କଟକଟ ଚରଚର ହେଲେ ।

'ଆରେ ଗ୍ରେସୀ ଆ' ଜମୀଲା ଭଉଣୀ ଡାକିଲେ— 'ସେ ମିସରୀ ଥାଳିଆଟି ଦେଲୁ ।'

ଗ୍ରେସୀ ନୀରବରେ ଗଙ୍ଗାଯମୁନା ଥାଳିଟିଏ ବଢ଼େଇ ଦେଲା । ସେଥିରୁ ମିସରୀ ଖଣ୍ଡିଏ ଉଠେଇନେଇ ଜମୀଲା ପ୍ରଭୁଙ୍କ ନାଆଁ ନେଇ ପାନ ସାଙ୍ଗରେ ମିସରୀକୁ ଝିଅକୁ ଖୁଏଇ ଦେଲା । ଝିଅଟି ଇମାମ (ନମାଜ ପଢ଼ିବା ପୁରୋହିତ) ମନ୍ତ୍ର ପଢ଼ି ମୁହଁ ପିନ୍ଧେଇ

ଦେଲା । ଝିଅଟିକୁ ସବୁ କଥାକୁ ବଲବଲ ଅନେଇଥାଏ ଆଉ କିଛି ବେଳ ପରେ ଉଠି ସେହିଭଳି ଧପଡ଼ ଧପଡ଼ ଗ୍ୱଲିରେ କୋଠରିରୁ ବାହାରିଗଲା ।

ମୁଁ ବେଶ ନିରାଶ ହେଲି । ଆଗରୁ ଯେତେ ବି ନିର୍ବନ୍ଧ ଓ ବାହାଘର ଦେଖିଥିଲି, ସେଥିରେ ବୋହୂଗୁଡ଼ିକ ଲାଜ ସରମରେ ସଢ଼ି ଯାଉଥାଆନ୍ତି ।

ଘରର ସ୍ତ୍ରୀଲୋକେ ଗ୍ୱ'ର ବ୍ୟବସ୍ଥା କରିବାରେ ଲାଗିପଡ଼ିଲେ । ଆଉ ସେ ତିନିଜଣ ସେମାନଙ୍କ ଯିବା ପରେ ପରେ ନିଜ ଭିତରେ ଫିସଫାସ କଥା ଆରମ୍ଭ କରିଦେଲେ– 'ରଙ୍ଗ ଗୋରା, ହେଲେ କଣ ହେଲା ଯେମିତି ଫିକା ଶାଳଗମ !' ଅର୍ଜୁମନ୍ଦ ଭାଉଜ କହିଲେ ।

'ଆରେ ଯାର ବାହାଘର ବୟସ ଗଲାଣି । ମୁଁ କହୁଛି ଗ୍ୱଳିଶ ସେପଟକୁ ହେବ ।' ସରଫରାଜ ବୋହୂ କହିଲା ।

'ବୋହୂକୁ ଅତି ବେଶୀରେ ଗ୍ୱେବିଶ... ଭାରି ଦୁଃଖୀ ।'

'ବାଳ ତେଣେ ପାଉଁଶିଆ ଧଇଲାଣି ... ଚବିଶ ଆଉ ବାକି ଅଛି ନା !' ସରଫରାଜ ବୋହୂ ପୁଣି କହିଲା ।

'ଆରେ ନୁହଁ, ପୋଡ଼ାମୁହଁ ଭାରି ଉଡଲ । ଭାରି ଭଲଲୋକ ଏମାନେ । ସେଇଥିପାଇଁ ଶିୟା ସୈୟଦ ଖୋଜି ବୁଲୁଛନ୍ତି ।' ଅର୍ଜୁମନ୍ଦ ଭାଉଜ କହିଲେ ।

'ଆରେ ଇଏତ ସେମିତି ହେଲା, ଯେ ପାରିଗଲା ସିଏ ଭେଣ୍ଡିଆ । ରଜା ଘରକୁ ଆଇଲା କି ରାଣୀ !' ସରଫରାଜ ବୋହୂ କହିଲା ।

'ଆରେ ଦେଖିନବୁ ନାସିର ଭାଇ ମୁଣ୍ଡରେ ବସେଇ ରଖିବେ ।' ଅର୍ଜୁମନ୍ଦ ଭାଉଜ କହିଲେ ।

'ଭାଇ ଇଏ ସେମିତି କଥା, ଯାକୁ ମରଦ ଗ୍ୱହିଁଲା ସେଇ ସୁହାଗୀ ।' ସରଫରାଜ ବୋହୂ କହିଲା ।

ଗ୍ୱ ପହଞ୍ଚିଲା ତେଣିକି ସର୍ତ୍ତଗୁଡ଼ିକର କଥା ପଡ଼ିଲା ।

'ଆମେ ନବାବବାବୁଙ୍କୁ ଖବର କରି ଦେଇଛୁଁ । 'ମେହର' (ବାହାବେଳେ ବରପକ୍ଷରୁ ଦିଆ ହେଉଥିବା ଧନ) ଲକ୍ଷେରୁ ଜମା କମ ହେବ ନାଇଁ ।' ଝିଅର ମା ମୁହଁରୁ ବାହାରିଲା ।

'ଲକ୍ଷେ ! ଆରେ ଭଉଣୀ କି ବିଚିତ୍ର କଥା କହୁଛ, ଲକ୍ଷେ ?' ଅର୍ଜୁମନ୍ଦ ଭାଉଜ କହିଲେ ।

'ଆମ କଥା ନିଆରା । ଶରଇ (ଇସ୍ଲାମ ଅନୁସାରେ) ଆମ ମେହର ଅଲଗା ସ୍ଥିର ହୁଏ । ସରଫରାଜ ବୋହୂ କହିଲା ।

'ତା' ବାହାରେ ପାନଦାନୀ ପାଇଁ ଖର୍ଚ୍ଚ ମାସକୁ ପଗ୍ୱଶ ଟଙ୍କା ।' ମଝିରେ ଝିଅର ମାଉସୀ କହି ପକେଇଲା ।

'ଆମର କିନ୍ତୁ ଭଉଣୀ, ବାହାଘରେ କିଛି ବୋଲି କିଛି ସର୍ତ୍ତ ରଖାଯାଏନି ।' ଅର୍ଜୁମନ୍ଦ ଭାଉଜ କହିଲେ ।

ତେଣିକି ସବୁ ମାଇପି ଏକା ସାଙ୍ଗରେ କଥା ହେବା ଆରମ୍ଭ କରିଦେଲେ । ବେଶ୍ କୋଳାହଳ ହେଲା । ବେଶୀ ବେଶୀ ରୁନ୍ଧି ହେଲା ଭଳି ଲାଗିଲା । ଗରମ ଆଉ ଅଣନିଶ୍ୱାସୀ ହେଇ ମୋତେ କେମିତି ମୁଣ୍ଡ ବୁଲେଇ ହେଲା । ମୁଁ ଘାବରେଇ ଏଣେତେଣେ ଅନେଇବାକୁ ଲାଗିଲି । ମୋର ସେଭଳି ଦଶା ଦେଖି ଗ୍ରେସୀ ମୋ ପାଖକୁ ଦଉଡ଼ି ଆସିଲା ଆଉ ବଡ଼ ପାଟିରେ କହିଲା— 'ମେମ୍ ସାହେବ, ଝିଅ ଘରକୁ ଯିବ !'

ଆମ ଠାଣୀ ମାଣୀବାଲୀ ତିନି ଜଣ ପାନଦାନ ବାବତ ଖର୍ଚ୍ଚ ଆଉ ମେହର ଝଗଡ଼ାରେ ଏମିତି ବାନ୍ଧି ହୋଇ ଯାଇଥିଲେ ଯେ ସେମାନେ ବି ଯେମିତି ହେଉ ଖସିଯିବା ଉଚିତ ବୋଲି ଭାବୁଥିଲେ ।

ଅର୍ଜୁମନ୍ଦ ଭାଉଜ ଓଢ଼ଣୀ ସଜାଡ଼ି ଉଠିଲେ । 'ତାହେଲେ ମୁଁ ତାଙ୍କୁ, ମାନେ ଜମୀଲାର ଭାଇଙ୍କୁ, ମାନେ ତାଙ୍କୁ, ଆମ ମିଷ୍ଟରଙ୍କୁ ପଠେଇବି । ସେ ଆପଣଙ୍କ ସାହବଙ୍କ ସାଙ୍ଗରେ କଥା ହେବେ । ତମ ନବାବ୍‌ଜାଦା— ଆମ ନାସିର ଭାଇ ସବୁକଥା ଆମ ଉପରେ ଛାଡ଼ି ଦେଇଛନ୍ତି ।' ଅର୍ଜୁମନ୍ଦ ଭାଉଜ ସମୁଧୁଣୀକୁ କହିଲେ ।

ଶୋଭାଯାତ୍ରା ପାହାଚ୍ ଓହ୍ଲେଇ ତଳେ ପହଞ୍ଚିଲା ।

'ଆଛା ଭଉଣୀ, ନମସ୍କାର !'

'ଈଶ୍ୱର ଭରସା !'

'ମେହର କଥା ଯାହା ଫଇସଲା କରିବେ, ଆମକୁ ଖବର ଦେବେ । ଆଉବି ଝିଅ ଲାଗି ଅନେକ ପ୍ରସ୍ତାବ ଆସୁଛି । ତେବେ ଆମେ ଖାଲି ପରିବାର ଦେଖୁଛୁଁ ।'

'ନମସ୍କାର ! ... ନମସ୍କାର !'

ପୂରା ଶୋଭାଯାତ୍ରା ନାସିର କାକାଙ୍କ ଘରକୁ ଫେରିଲା । ବାପା କୋଉ ଗୋଟାଏ କାମରେ ମାଡ୍ରାସ ଯାଇ ସାରିଥିଲେ । କାକା ବାରଣ୍ଡାରେ ଟହଲ ମାରୁଥିଲେ । ଅସଗର ଗୋଟାଏ କୋଣରେ ବସି ଖେଳୁଥିଲା

'ନାସିର ଭାଇ ବଧେଇ' ... ଅର୍ଜୁମନ୍ଦ ଭାଉଜ ପାହଚ ଉପରୁ ହିଁ ଅଭିବାଦନ ଜଣାଇଲେ... 'ଈଶ୍ୱର କୃପା— ଚ୍ଚନ୍ଦ ଭଳି ବୋହୂଟିଏ ।' ବାରଣ୍ଡା ଉପରକୁ ଉଠିଆସି ତିନିଜଣଯାକ ସମସ୍ୱରରେ କହିବା ଆରମ୍ଭ କରିଦେଲେ ।

'ଏତେ ଗଢ଼ଣର, ଦଶୋଟି ଆଙ୍ଗୁଠି— ଯେମିତି ଆଙ୍ଗୁଠି ନୁହଁ ଦୀପ ଦଶଟି । ତମେ ତା'ର ସିଲେଇ କାମ ଦେଖିଲ ନା ବୋହୂ । ଏ ଉଜୁଡ଼ା ଘରକୁ ଇନ୍ଦ୍ରଭୁବନ କରିଦେବ । କଣ କହୁଛ ବୋହୂ !' ଅର୍ଜୁମନ୍ଦ ଭାଉଜ କହିଲେ ।

'ହଁ ସେଇଆ ତ !' ସରଫରାଜ ବୋହୂ ଉତ୍ତର ଦେଲା ।

'ଆଉ ଝିଅର ବାପା ଯୌତୁକରେ ଗାଡ଼ିମଟର ଦେବେ ବୋଲି କହୁଛନ୍ତି ।' ଜମୀଲା କହିଲା ।

'ଆରେ ସେ ଆଲ୍ଲାଙ୍କ ମରଜି ... ବୋହୂ ଆସୁ ତ ! ଆମେ କିଛି ଗ୍ହୁଁନା ଭାଇର ଖୁସି ଛଡ଼ା ।' ଅର୍ଜୁମନ୍ଦ ଭାଉଜ କହିଲେ ।

'ସେଇଆ ତ !' ସରଫରାଜ ବୋହୂ କହିଲା ।

ନାସିର କାକା ସିଗାରର ପାଉଁଶ ଝାଡ଼ି ମୁରୁକି ହସିଲେ । ଆଉ ତିନିଜଣଙ୍କର ଏ କଥାବାର୍ତ୍ତାରୁ ବେଶ୍ ପ୍ରସନ୍ନ ମନେହେଲେ । ନାସିର କାକାଙ୍କର ସେନ୍ସ ଅଫ ହ୍ୟୁମର ବେଶ୍ ତୀବ୍ର । ସେତେବେଳକୁ ଗ୍ରେସୀ ଥାଳୀ ଓ ତାର ଘୋଡ଼ଣୀ କପଡ଼ା ଷ୍ଟୋର ରୁମରେ ରଖିଦେବ ବୋଲି ଯାଇ ସାରିଥିଲା ।

ସେଦିନ ରାତିରେ କାକା କୋଉଠିକି ବନ୍ଧୁ ମିଳନ ଲାଗି ଗ୍ଲିଗଲେ । ଅସଗର ତା କୋଠରିରେ ଶୋଇ ଯାଇଥିଲା । ମୁଁ ସାରା ଘରେ ଘୂରି ବୁଲିଲି । କାକାଙ୍କ ଆଲବମର ଛବିଗୁଡ଼ିକ ପୁଣିଥରେ ଦେଖିନେଲି । ସେ ଭିତରୁ ଗୋଟାଏରେ ଅତି ସୁନ୍ଦର ସଇଦା ଖୁଡ଼ୀ, ବେଶ୍ ଆକର୍ଷଣୀୟ ଘାଘରାଟିଏ ପିନ୍ଧି, ଅସଗରକୁ କାଖେଇ ଠିଆ ହୋଇଥିଲେ । କୋଉଥିରେ ଗ୍ରେସୀ ଅସଗରକୁ ପ୍ରାମ ଗାଡ଼ିରେ ବସେଇ ଦେଉଥିଲା ଆଉ ପାଖରେ ଠିଆ ହୋଇ ସଇଦା ଖୁଡ଼ୀ ହସୁଥିଲେ । ଦାର୍ଜିଲିଂ, କଲିକତା, ପୁନା, ମହାବଲେଶ୍ୱର ଆଦି କେତେ କେତେ ଜାଗାରେ ନାସିର କାକା ଆଉ ସଇଦା ଖୁଡ଼ୀ କେତେ ସୁନ୍ଦର ଲାଗୁଥିଲେ । ସେମାନଙ୍କ ଚେହେରାରେ ଖୁସି ଝଲସି ଉଠୁଥିଲା । ସେତିକିବେଳେ ଗ୍ରେସୀର କୋଠରିରୁ ଏମିତି ଏକ ଶବ୍ଦ ଶୁଭିଲା, ଯେମିତି ହିଂସ୍ରଜନ୍ତୁଟିଏ ରଡ଼ି କରୁଛି । ବିଚିତ୍ର ଅମାନବୀୟ ଶବ୍ଦ । ମୁଁ ଫୂର୍ତ୍ତିରେ ପଛ ବାରଣ୍ଡାରେ ବାହାରି ସେ ପଟକୁ ଗଲି ଆଉ ଗ୍ରେସୀର କୋଠରିକୁ ଉଂକିମାରି ଦେଖିଲି । ଭର୍ଜିନ ମେରୀଙ୍କର ମୂର୍ତ୍ତିଟିଏ ଗ୍ରେସୀର ମୁଣ୍ଡ ପାଖରେ ଥିବା ଛୋଟିଆ ମେଜ ଉପରେ ଥୁଆ ହୋଇଥିଲା । ସେତେବେଳେ ଗ୍ରେସୀ ସେଇ ମୂର୍ତ୍ତିଟି ସାମନାରେ ଚକା ପକେଇ ବସିଥିଲା । ଆଉ ହଲିହଲି ନିଆଁ ବରଷେଇଲା ସ୍ୱରରେ ବକି ଯାଉଥିଲା ।

'ଆମେ ତୋର ଦେଉଳରେ ଏକାବାରେ ନ ହପ୍ତା ନୋବିନା କଲା । ତୋର ଦେଉଳରେ ଚକ୍କର ମାରିମାରି ଗୋଡ଼ ଥକିଗଲା । ତୋର ପାହାଡ଼ର ପାଉଚ ଚଢ଼ିଚଢ଼ି ଜୀବନ ବାହାରି ଗଲା । ରୋଜଗୀ କରି କରି ଅକଲ ଗୁଡୁମ ହେଲା । ମୋ ମୁଣ୍ଡ ପାଣି ହେଇଗଲା । ମୋର ମଗଜ ବିଗଡ଼ି ଗଲା ଆଉ ତୁ ମୋ ସାଙ୍ଗରେ ଫୋରଟୁଏଣ୍ଟୀ କଲୁ !'

ତା' ଚେହେରା ପୂରା ବଦଳି ଯାଇଥିଲା । ଯେମିତି କିଛି ଏକ ଆନ୍ତରିକ କଷ୍ଟ ଭୋଗୁଛି । ଯେମିତି ଆଉ ଗୋଟାଏ ଅଲଗା ଗ୍ରେସୀ । ସିଏ ସେ ଗ୍ରେସୀ ନୁହଁ, ଯିଏ କେତେ ସ୍ନେହରେ ମୋର ଫ୍ରକ ଇସ୍ତ୍ରୀ କରିଦିଏ । ମୋତେ ସାଙ୍ଗରେ ବଜାରକୁ ନେଇଯାଏ, ଆଉ ମୋ ଲାଗି ଚକଲେଟ୍ କିଣିଦିଏ । ରାତିରେ ମୋତେ ଗୋଆର ଲୋକକଥା ଶୁଣାଏ । କୋଂକଣୀ ଗୀତ ଆଉ ପର୍ତ୍ତୁଗୀଜ ସ୍ୱରରେ ଗୋଆର ଲୋକଗୀତ ଶୁଣାଏ । ମନେ ହେଉଥିଲା, ସେ ଯେମିତି ଗୋଟାଏ ପାଗଳୀ, ଗୋଟାଏ ମନ୍ଦ ଆତ୍ମା, ଯାହାକୁ ଭୟଙ୍କର ଦଣ୍ଡ ଦିଆଯାଉଛି । ଯାହାକୁ କୋରଡ଼ା ବାଡ଼ିଆ ହେଉଛି; କୋରଡ଼ା ଦେଖାଯାଉନି ।

କୋରଡ଼ା ମୋତେ ଦେଖାଗଲା ନାହିଁ ସିନା, ତେବେ ମୁଁ ନିଶ୍ଚିତ ଅନୁଭବ କରୁଥାଏଁ ଯେ ସେ କେତେ ନା କେତେ କଷ୍ଟ ଭୋଗୁଛି । ତା' ଦାନ୍ତ ବଥଉଛି, ନ ହେଲେ ଆପେଣ୍ଡିସାଇଟିସ୍ ପୀଡ଼ା କରୁଛି । କାହିଁକି ନା ଏମିତି ମଲା ଭଳି କଷ୍ଟ ଭୋଗୁଥିବା ଚେହେରା ମୁଁ ମୋର ଗୋଟାଏ କଜିନ୍‌ର ଦେଖିଛି । ଲକ୍ଷ୍ନୌରେ । ତାର ଆପେଣ୍ଡିସାଇଟିସ୍ ଥିଲା ।

ଭର୍ଜିନ ମରିୟମ ସାଙ୍ଗରେ ତାର ଯେମିତି ସଂବନ୍ଧ ଥିଲା, ସେଥିରେ ତାର ରାଗ କରିବା ଉଚିତ । ତେବେ ସେ କିଛି ଅଧିକ ରାଗୁଥିଲା ଭଳି ଲାଗିଲା । ମୋତେ ଭାରି ଡର ମାଡ଼ିଲା । ଏଇନେ ଯେମିତି ଗ୍ରେସୀ ଉପରେ ଛାତ ଭୁଷୁଡ଼ି ପଡ଼ିବ । ସେ ପବିତ୍ର ମରିୟମ କରୁଣାମୟୀ ବିରୋଧରେ ଯାହିତାହି କଥା କହୁଛି ।

ତାପରେ ମୁଁ ଭାବିଲି ଏ ଓଲୀ ଡାକ୍ତରକୁ ଫୋନ କରନ୍ତା ସିନା ! ମରିୟମ ତ ଆଉ ଡାକ୍ତର କୁହଁ ଯେ ମେଜ ଉପରେ ବସି ବସି ଯ୍ୟା ଲାଗି ଔଷଧ ଲେଖିଦେବେ !

ମୁଁ ଝରକା ପାଖରେ ବ୍ୟସ୍ତ ହେଇ ଠିଆ ହୋଇ ରହିଲି । ହଠାତ୍ ମୋର ମିସେସ୍ ରବେକା ଇବ୍ରାହିମ୍‌ଙ୍କ କଥା ମନେପଡ଼ିଲା । ସେ ମୋତେ ଗଲା କାଲି କହିଥିଲେ— 'ଖ୍ରୀଷ୍ଟିଆନ୍‌ମାନଙ୍କର ଏ ଯିଶୁ, ମେରୀ ଧନ୍ଦା ଭଲ ନୁହଁ । ସେମାନେ ସତ ସତ ଧର୍ମକୁ ତ୍ୟାଗ କରି ଭଗବାନ୍‌ଙ୍କୁ ତିନି ଭାଗରେ ବାଣ୍ଟି ଦେଇଛନ୍ତି । ଏକଥା ଭାରି ଅଧାର୍ମିକ । ଆଉ ଭଗବାନ୍‌ଙ୍କ ସାଙ୍ଗରେ ଆଉ କାହାକୁ ମିଶେଇବା ବଡ଼ ପାପ ! ସେଇ କାରଣରୁ ଏସବୁ କରୁଥିବା ଲୋକେ ସିଧାସଳଖ ନର୍କକୁ ଯିବେ ।'

'ଗ୍ରେସୀ ବି ନର୍କକୁ ଯିବ ।' ମୁଁ ବେଶ ଚିନ୍ତିତ ହୋଇ ପଗ୍ଚରିଥିଲି ।

'ହଁ, ସେ ଯଦି ଉଚିତ ବାଟକୁ ଆସିବ ନାହିଁ ? ଯୀଶୁଙ୍କୁ ଈଶ୍ୱରଙ୍କ ପୁତ୍ର ଆଉ ଈଶ୍ୱର ମାନୁଥିବ ଯଦି, ନର୍କ ଛଡ଼ା ଆଉ କୋଉଠି ତାକୁ ଜାଗା ମିଳିବ ନାହିଁ ।'

ମୁଁ ଗ୍ରେସୀର ଏଇ ଭୟାନକ ଭବିଷ୍ୟତ ସଂବନ୍ଧରେ ବାପା କିମ୍ବା ନାସିର କାକାଙ୍କୁ ପଗ୍ଚରିବି ବୋଲି ଭାବୁଛି ବାପା ମାନ୍ଦ୍ରାଜ ଗ୍ଚଲିଗଲେ ଆଉ ଘରେ ନିର୍ବନ୍ଧର ହଇଚଇ ଆରମ୍ଭ ହେଇଗଲା ।

ମୁଁ ଡରିମରି ଝରକା ବାହାରେ ଠିଆ ହୋଇଥାଏ । କ'ଣ କରିବି, କିଛିବୋଲି କିଛି ମୋ ବୁଦ୍ଧିକୁ କୁଳଉ ନ ଥାଏ । କେମିତି ଗ୍ରେସୀକୁ ସାହାଯ୍ୟ କରିପାରିବି ? ସେତେବେଳେ ତା ଆଖିରୁ ଧାରଧାର ଲୁହ ବହି ଆସୁଥିଲା । ସେ ଶାନ୍ତ ସ୍ୱରରେ ଇଂରେଜୀରେ କହି ଗ୍ଚଲିଥାଏ, ''ମା, ତୁ ଭାରି ମଜାରେ ମୁରୁକି ହସୁଛୁ । ତୁ ତ ଆଉ କୋଡ଼ିଏ ବର୍ଷ ବେଳକୁ ବିଧବା ହେଇନୁ । ତୁ ତ ମୋଟେ ଜାଣିନୁ ମଣିଷର ପ୍ରେମ କ'ଣ ? ତୁ ତ ଆଉ ଦଶ ବର୍ଷ ଧରି ବାରଦ୍ୱାର ଶୁଣ୍ଢିପିଣ୍ଡା ହେଇନୁ । ଫୁଟ୍‌ପାଥରେ କେବେହେଲେ ଶୋଇନୁ । ତୋତେ କ'ଣ ଜଣା ସିକ୍ୟୋରିଟୀ, ଘର ଆଉ ପୋଜିସନ୍‌ର ଅର୍ଥ କ'ଣ ?''

'ତୋର ଗୋଟାଏ ବୋଲି ପୁଅ ଲାଗି ତ ଆଉ ସାବତ ମାଆ ଆସିନାହିଁ ! ତୋତେ ହେଲେ କୋଉ ଜଣା ସାବତ ମା କେମିତିଆ ଜିନିଷ ? ମେରୀ ମଦର-ଦି-ବଚେ ମାଁଏ ଦି

ବଚେ ମାଁ ଏ (ଈଶ୍ୱରଙ୍କର ମାତା)', ଆଉ ସେ ମେଜ ଉପରେ ହାତ ମେଲେଇ ମୂର୍ତ୍ତିକୁ ଉଠେଇ ଆଣି ଛାତିରେ ଭିଡ଼ି ଧରିଲା । ତା'ପରେ ତା'ର ଛୋଟ ଛୋଟ ଧଳା ସୁନ୍ଦର ପାଦରେ ମୁଣ୍ଡ ରଖି ନୀରବ ହୋଇଗଲା ।

ମୁଁ ଝରକା ପାଖରୁ ନିଜ କୋଠରିକୁ ଚାଲିଆସିଲି । ଏ ସବୁ କ'ଣ ହେଉଥିଲା ମୁଁ ଆଦୌ ବୁଝି ପାରୁ ନଥାଏଁ । ଦୁନିଆ ବାସ୍ତବିକ ଅଧିକ ରହସ୍ୟମୟ । ତା'ପରେ ମୁଁ ରବିୟା ଆପା ଆଉ ରିଜବାନ୍ ଭାଇ ବାବତରେ ଭାବି ବସିଲି । ସେମାନେ ବେଶ୍ ସ୍ନେହୀ ଆଉ ମଉଜିଆ ଜଜିନ୍ । ମୁଁ ସେମାନଙ୍କ ଘରକୁ ସକାଳେ ଯିବା ଥିଲା । ଖୁସି ହେଉଥିଲି ମାଟୁଙ୍ଗାରେ କେତେ ମଜା ହେବ । ଆଉ ଅଳ୍ପ ସମୟପରେ ମୁଁ ଶୋଇପଡ଼ିଲି ।

ତା' ପରଦିନ ସକାଳୁ ରବିୟା ଆପା ଆଉ ରିଜବାନ୍ ଭାଇ ଆସି ମୋତେ ମାଟୁଙ୍ଗା ନେଇଗଲେ । ସେମାନେ ଯୁବା ଯୋଡ଼ି । ନୂଆ ନୂଆ ବାହାଘର ହେଇଥିଲା ସେମାନଙ୍କର । ସେମାନଙ୍କ ଘରେ ସମବୟସ୍କ ବନ୍ଧୁମାନଙ୍କର ଗହଳଚହଳ ଲାଗି ରହୁଥିଲା । ବେଶ ଜାକଜମକ । ସେମାନଙ୍କର ଛୋଟ ଫ୍ଲାଟ୍ ନାସିର କାକାଙ୍କର ବଡ଼ ଶାନ୍ତ ଘର ତୁଳନାରେ ବେଶୀ ସୁନ୍ଦର । ତାଙ୍କ ପଡ଼ିଶାରେ ଗୋଟାଏ ନାଆଁକରା ସିନେମା ଅଭିନେତାର ଘର ଥିଲା । ତା'ର ଦୁଇଟି ମୋଟାସୋଟା ପିଲା ସାମନାର ଶାନ୍ତ ରାସ୍ତାରେ ଅନବରତ ରୋଲର ସ୍କେଟିଙ୍ଗ କରନ୍ତି ଆଉ ତାଙ୍କର ପେଶାବରୀ ଚାକର 'ଗୁଲ' ସିଡ଼ିଘର ଛାତରେ ଖଟ ପକେଇ ଗଡୁଥାଏ, ହୁକ୍କା ଟାଣୁଥାଏ ଆଉ ପିଲାଙ୍କୁ ଧମକେଇ ଆକଟ କରୁଥାଏ । ଦି'ପହର ବେଳା ରାସ୍ତାର ଦି' କଡ଼େ ଥିବା ସବୁ ଭଡ଼ାଟିଆ କୋଠାରୁ ରେଡ଼ିଓରେ ସିନେମା ଗୀତ ବାଜୁଥାଏ ।

ଆଉ କାନନ ଦେବୀଙ୍କ ମଧୁର ସ୍ୱର ଭାସି ଆସେ— 'ମନ ମୋରେ ଆନ୍ଧୀ ବନ ଯା' ଆଉ 'ତୁମ ମନମୋହନ— ତୁମ ସଖିୟନ ସଙ୍ଗ ହଁସ ହଁସ ଖେଲୋ ଫାଗ । ମେରୀ ଦୁନିଆଁ ସୂନୀ କରକେ ବସ୍ତୀ ନୟୀ ବସାଇ ତୂନେ । ଅବ ମୈଁ ଜାକର କିସେ ସୁନାଉଁ ଅପନେ ମନ କା ରାଗ' ଆଉ ଏକଦମ ପାଖ ଫ୍ଲାଟରେ ଥିବା ଗୋଟାଏ ଶିଖ ଝିଅ ସେଇ ରେକର୍ଡ ସାଙ୍ଗରେ ସ୍ୱରରେ ସ୍ୱର ମିଳେଇ ଗାଉଥାଏ ।

କିଛି ଦିନ ପରେ ବାପା ଫେରି ମାଟୁଙ୍ଗା ଆସିଲେ । ତା'ର ଗୋଟାଏ ସପ୍ତାହ ପରେ ଆମେ ନାସିର କାକାଙ୍କ ଘରକୁ ଆସି ଜାଣିଲୁଁ ଯେ ୟା ଭିତରେ ଗୋଟାଏ ଜବରଦସ୍ତ କ୍ରାଇସିସ ଆସି ଚାଲିଯାଇଛି ବି ।

ସେଦିନ ସଂଧ୍ୟା ପାଞ୍ଚଟା ହେଇଥିଲା । ବାରଣ୍ଡାରେ ଅର୍ଜୁମନ୍ଦ ଭାଉଜ, ସରଫରାଜ ବୋହୂ, ଜମୀଲା ଭଉଣୀ ବେତ ଚଉକିଟିମାନଙ୍କରେ ଜମି ଯାଇଥିଲେ । ଗ୍ରେସୀ ପଣତକାନି ଅଣ୍ଟାରେ ଖୋସି ଦରଜାକୁ ଲାଗି ଠିଆ ହୋଇଥାଏ । ନାସିର କାକା ଅଭ୍ୟାସତଃ ବାହୁରେ ବାହୁ ଛନ୍ଦି ଟହଲ ମାରୁଥାଆନ୍ତି ।

ଅର୍ଜୁମନ୍ଦ ଭାଉଜ କହୁଥିଲେ— ''ଆରେ ଭାଇ ମୁଁ କହୁଛି ଈଶ୍ୱରଙ୍କର ଦୟା ଯେ ପାଆଁଶ ହଜାରେରେ କଥା ଛିଡ଼ିଗଲା । ଭଗବାନ୍ ନ କରନ୍ତୁ ଦି'ଧାଡ଼ି ପଢ଼େଇ ପକେଇଥିଲେ

ନା (ବାହା ହୋଇଯାଇଥିଲେ) ଆଉ ତା'ପରେ କଥା ଜଣାପଡ଼ିଥିଲେ ନାସିର ଭାଇ କଚେରୀ ଚଢ଼ି ନୟାନ୍ତ ହେଇଥା'ନ୍ତେ । ତୁଚ୍ଛା କଣ୍ଟା ଲାଗିଥା'ନ୍ତା ପାଟିରେ । ଭଦ୍ରଲୋକ ଝଗଡ଼ା ଝଂଝଟରେ ଫାନ୍ଦି ହେଇଥା'ନ୍ତା । ଟଙ୍କା ପଇଠକର, ଖୋଲା ଛାଡ଼ପତ୍ର କିଏ ସେ କାଦୁଅରେ ବୁଡ଼ିବ !

"ଆରେ ଆଉ କ'ଣ ? ସବୁ ଠିକ ତ !" ବାପା ସନ୍ଦେହ କରି ପଚ୍ଚରିଦେଲେ ।

"ତାକୁ ହିଷ୍ଟିରିଆ ଘେରିଛି ।" ନାସିରକାକା ଛୋଟିଆ ଉତ୍ତରଟିଏ ଦେଲେ ।

"ଓ ହୋ, ଭାରି ଦୁଃଖର କଥା !" ବାପା କହିଲେ ।

'ଝିଅକୁ ହିଷ୍ଟ୍ରିଆର ମାରକୀ ଧରେ ଭାଇ !' ଅର୍ଜୁମନ୍ଦ ଭାଉଜ ମଥା ଉପରକୁ ଓଢଣୀ ସଳଖେଇ ବାପାଙ୍କୁ ସଫା ସଫା କହିଲେ— "ସେମାନେ ସେ କଥା ଲୁଚଉ ଥିଲେ । ମୁଁ କେତେଆଡୁ ଖୋଳତାଡ଼ କଲାରୁ ଜଣାପଡ଼ିଲା । ଭଗବାନ୍‌ଙ୍କ ଦୟା, ବିପତ୍ତି ଟଳିଗଲା । ମୁଁ ତ ନାସିର ଭାଇଙ୍କୁ କହୁଛି, ସେଇ ଖୁସିରେ 'ମଜଲିସ' କରାଯାଉ ।

'ମୋର କୋଉ ବାହାଘରକୁ ମନ ଥିଲା । ଏମାନେ ସବୁ ଲାଗିପଡ଼ିଥିଲେ । ଏଇନେ କହୁଛନ୍ତି— ଝିଅ ରାଗ ମରିଚଟିଏ, ହିଷ୍ଟ୍ରିୟା ରୋଗୀ । ଅସମ୍ଭବ କ'ଣ, ଏ ଖବର ବି ଭୁଲ୍ ହୋଇପାରେ । ତେବେ ଏ ବୟସରେ ମୁଁ ଜାଣିଶୁଣି ଏ ରିସ୍କ କାହିଁକି ନେବି । ତାହା ମୋ ପ୍ରତି ଯେମିତି ଅନ୍ୟାୟ ହେବ, ସେମିତି ଝିଅ ଲାଗି ବି ।'

ବାପା ମୁହଁ ହାତ ଧୋଇବେ ବୋଲି ଭିତରକୁ ଚ୍ଚଲିଗଲେ । ଅର୍ଜୁମନ୍ଦ ଭାଉଜ କଥା ଜାରି ରଖିଥା'ନ୍ତି, "ମୁଁ କୋରାନ ଶରୀଫ ଉଠେଇ ଶପଥ କରି କହିବି ନାସିରଭାଇ, ଏ ଖବର ମୋତେ ନିହାତି ଆପଣା ମଣିଷଠାରୁ ମିଳିଛି ।"

"ସେଥିଲାଗି ତ ମୁଁ କହୁଛି, ସେ ଦିନ ତା'ର ଚେହେରାରେ, ଭାବଭଙ୍ଗୀରେ କେମିତି ଡାହାଣୀ ଭାବ ବରଷୁଥିଲା... ଗୋଟାଏ ଅଲକ୍ଷଣୀ ଭାବ ।..." ସରଫରାଜ ବୋହୂ କହିଲା ।

"ଆଉ ଚେହେରା ବି କେମିତି... ଖାଲି ରଙ୍ଗ.....ଥାଳୀ ଭଳି ମୁହଁ... ଛେତରା !" ଜମୀଲା ଭଉଣୀ କହିଲା ।

"ଆଉ କେତେ ବେଢ଼ଙ୍ଗ— କୋଦାଳ ଭଳି ପାଦ । ରଫା ଭଳି ହାତ । କେତେ ବେହିଆ ଦେଖୁନ, ଓଢଣୀ ପର୍ଯ୍ୟନ୍ତ ଟାଣିଲା ନାହିଁ ! ବମ୍ବେଇରେ ରହି ଯେମିତି ପୂରା ମେମ୍ ପାଲଟି ଯାଇଛି । ନିଆଁ ଦେଙ୍ଗି ଦିଅନ୍ତି ସେମିତି ମାଇକିନାକୁ !" ସରଫରାଜ ବୋହୂ କହିଲା ।

ମୋତେ ବଡ଼ ଆଶ୍ଚର୍ଯ୍ୟ ଲାଗିଲା । ସେଦିନ ଏଇମାନେ ତାକୁ ଚ୍ଚନ୍ଦ କି ତାରା ବୋଲି କହୁଥିଲେ । ସତେ ଯେମିତି ଦଶ ଆଙ୍ଗୁଳି ଦଶଟି ଦୀପ ଆଉ ଆଜି କେମିତି ପୋକ ପଡ଼ିଗଲା ସେଇ ଆଙ୍ଗୁଠିରେ ! ମୁଁ ସେ ସବୁ କଥା ଆଦୌ ବୁଝି ପାରିଲି ନାହିଁ ।

'ତେବେ ଭାଉଜ' ଜମୀଲା ଭଉଣୀ କହିଲା— 'ସେ ସେଦିନ ତ, ନିର୍ବନ୍ଧ ବେଳକୁ ଭାରି ଭଲ ଭାବେ ବସିଥିଲା ।' 'ଓଃ ହୋ, ସବୁରି ଆଗରେ କନ୍ଦାକଟା କରିଥା'ନ୍ତା ନା ! ହିଷ୍ଟରିଆ ରୋଗୀଙ୍କ ମୁଣ୍ଡରେ ସିଂଘ ତ ଥାଏନି ଯେ ନଜର ପଡ଼ିଲେ ବାରି ଦେବ ! ସେମିତି ଛୋଟ କଥାଟିଏରୁ ବି ଜଣାପଡ଼ିଯିବ । ଆଉ ଏଇନେ ଯେତେବେଳେ ସେ ଜାଣିଯିବ, ନିର୍ବନ୍ଧ ଭାଙ୍ଗିଗଲା, ତେଣିକି ଦେଖିବ କେମିତି ଆକାଶ ପାତାଳ ଗୋଟାଏ କରିଦେବ । ହେ ଭଗବାନ୍ ! ବିପତ୍ତିରୁ ଉଦ୍ଧାର କଲ । ଭଉଣୀ ମୋ ଆଖିରେ ବି ଝିଅ ଅଛନ୍ତି ।'' ଅର୍ଜୁମନ୍ଦ ଭାଉଜ କହିଲେ ।

'ସେଇଆ ନା !'... ତା' ମାଆ ତାହାଣୀ ବି କେମିତି କଥା ଲୁଚେଇ ରଖିଥିଲା ସେଦିନ । ତା'ର ମେଳାପୀ ଆଉ ହସହସ ଭାବର କେତେ ପ୍ରଶଂସା କରୁଥିଲା । ସତକଥା, ପସରାବାଲୀଙ୍କର ଗୁଣ, ସିଏ କ'ଣ ତା' ବରକୋଳି ଖଟା ବୋଲି କହିବ !' ସରଫରାଜ ବୋହୂ କହିଲା

'ନିଆଁ ଝୁଲ ନିଗଡ଼ି ଦିଅନ୍ତି ।' ଜମୀଲା ଭଉଣୀ କହିଲା ।

'ସେଇଆ ତ ! ମୁଁ ପଗ୍ୱରୁଛି କିଆଁ ଏତେ ଦିନ ତା'ର ବାହାଘର ହେଇନି ।' ସରଫରାଜର ବୋହୂ ପଗ୍ୱରିଲା ।

'ସେଇଆ ମୋତେ ବି ଖଟକା ଲାଗିଥିଲା ସେତେବେଳେ । ବୟସ ଚଉତିରିଶ, ପଇଁତିରିଶ ବର୍ଷ ହେଲାଣି, ହେଲେ ଏଯାଏଁ ଅଭିଆଡ଼ୀ ହୋଇ କେମିତି ବସିଛି ! କିଛି ହେଲେ ତ କମୀ ଥିବ ଝିଅର ! ଦେଖ, ଏଇନେ ଗୁମର ଖୋଲିଲା । ଏତେ ପଇସାବାଲା ବୋପା, ଡଉଲଡାଉଲ ଚେହେରା'... ଜମୀଲା କହିଲା...

''ମାଲୋ, କେଡ଼େ ବିପତ୍ତିଟାଏ ହେଇଥା'ନ୍ତା । ମଣିଷ ଘର କରେ ସୁଖସୁବିଧା ଲାଗି ସିନା ! କିଏ କ'ଣ ଆପଦ ମୁଣ୍ଡେଇବ ? ପାଗଳ ମାଇକିନା କାନ୍ଧରେ ବସିଗଲା, ସାରା ଜୀବନର ରୋଗ !' ଅର୍ଜୁମନ୍ଦ ଭାଉଜ କହିଲେ ।

'ଅଳ୍ପକେ ବଂଚିବା ହେଲା ନାସିର ଭାଇ !' ସରଫରାଜ ବୋହୂ କହିଲା ।

'ବେଶ ଭାଉଜ କଥାଟି ଏଇଠି ସାରିଦବା କଥା । ଏକଥା ପକେଇ ଅଧିକା ଘାଣ୍ଟି ହେବା ଦରକାର ନାହିଁ ।' ନାସିର କାକା ଗଂଭୀର ଭାବରେ କହିଲେ— ଆଉ ତାଙ୍କ କୋଠରିକୁ ଗ୍ୱଲିଗଲେ ।

'ଏଁ ଗ୍ରେସୀ !' ଅର୍ଜୁମନ୍ଦ ଭାଉଜ କହିଲେ ଆଉ ରହସ୍ୟମୟ ଢଙ୍ଗରେ ଗଳା ଖଂକାରି ପୁଣି କହିଲେ, ''ପିଇବାକୁ ପାଣି ଟିକିଏ ଆଣ ।'' ଗ୍ରେସୀ ପାଣି ଜଗ୍ ଆଉ ଗିଲାସ, ଆଣିଦେଲା । ସେ ମାଇକିନା ଦଳକ ସେଇଭଳି ହୋହଲ୍ଲା କରି ନାସିରକକାଙ୍କ ନିର୍ବନ୍ଧ ଭାଙ୍ଗିବା ଉପରେ ଟିପ୍ପଣୀ ଦେଇ ଗ୍ୱଲିଥିଲେ । ସେ ତିନିହେଁ ଯେମିତି ତିନୋଟି ମୋଟୀ ଲେଗହର୍ଣ୍ଣ: ବେଶ ଆତ୍ମବିଶ୍ୱାସରେ କୁକଡୁକୁଁ ଶବ୍ଦ କରି ଗ୍ୱଲିଥିଲେ ।

ସନ୍ଧ୍ୟାରେ ମୁଁ ବାପାଙ୍କ ସାଙ୍ଗରେ ବୁଲି ବାହାରିଗଲି । ଗୋଟାଏ ବୁକ୍‌ଷ୍ଟଲ୍‌ରୁ ମିକୀ ମାଉସ୍ ପତ୍ରିକାଟିଏ କିଣି ଖୁସି ମନରେ ଘରକୁ ଫେରିଆସିଲି ।

ରାତିରେ ବାପା ଓ ନାସିରକାକା କୋଉ ଏକ ନିମନ୍ତ୍ରଣରେ ଚାଲିଗଲେ ଆଉ ଗ୍ରେସୀକୁ ଡାକି ମୋତେ ପାଖରେ ବସେଇ ନବାକୁ କହି ଗଲେ । ଅନେକ ଦିନ ହେଲା ଝଡ଼ିବର୍ଷା ଲାଗି ରହିଥିଲା । ଅଲୀ ଅସଗର କାକାଙ୍କ କୋଠରିରେ ଶୁଏ ଆଉ ତାକୁ ଶୁଏଇ ଦେଇ ଗ୍ରେସୀ ଆପଣା କୋଠରିକୁ ଯାଇ ସାରିଥିଲା । ମୁଁ ମିକୀ ମାଉସ ପତ୍ରିକା ପଢ଼ାରେ ବୁଡ଼ି ଯାଇଥାଏଁ । ବାହାରେ ବରଷୁଥିବା ପାଣି ଅପେକ୍ଷା ମୁଁ ବେଶ୍ ଉଚ୍ଚା କାଛ ଆଉ ବଡ଼ 'ଉନାବୀ' (ଲକ୍ଷ୍ନୌ ପାଖର ଏକ ସହର) ପରଦାବାଲା ସେଇ ବିରାଟ ଓ ଆରାମଦାୟକ କୋଠରିର ନରମ ଆରାମଚଉକୀରେ ବସି ମିକୀ ମାଉସ୍ ପଢ଼ିଲା ଭିତରେ ବି ନିଜକୁ ଅତି ଅସୁରକ୍ଷିତ ମନେ କରୁଥିଲି ।

ଆଉ କିଛିବେଳ ପରେ ଝଡ଼ ଆହୁରି ପ୍ରବଳ ହେଲା । ମୁଁ ଝରକା କବାଟ ସବୁ ବନ୍ଦ କରିଦେବାକୁ ଗ୍ରେସୀକୁ ଡାକିଲି । ଯେତେବେଳେ କୌଣସି ଉତ୍ତର ପାଇଲି ନାହିଁ, ପଛ ବାରଣ୍ଡା ଦେଇ ତା'ର କୋଠରି ଭିତରକୁ ପହଞ୍ଚିଗଲି । ସମୁଦ୍ର ଉପରେ ବାରଂବାର ବିଜୁଳି ଚମକି ଯାଉଥାଏ ।

ଗ୍ରେସୀର ଛୋଟ କୋଠରି ଭିତରେ ପହଞ୍ଚି ଲାଗିଲା ଯେମିତି ମୁଁ ବାତ୍ୟାଘେରା ଜାହଜର ଡେକ୍ ଉପରୁ ଶାନ୍ତ ଆଉ ବନ୍ଦ କେବିନ୍ ଭିତରକୁ ଆସିଯାଇଛି । 'ହେଲ୍ ମେରୀ ଫୁଲ ଆଫ୍ ଗ୍ରେସ୍' କୋଠରୀ ଭିତରେ ଗ୍ରେସୀ କହୁଥାଏ । ସେ ପୁଣି କୋଂକଣୀ ଭାଷାରେ 'ହେଲ ମେରୀ' କହିବା ଆରମ୍ଭ କଲା—

ସେ ମହମବତୀ ପରେ ମହମବତୀ ଜଳାଇ ଚାଲିଥାଏ ଆଉ ହଲିହଲି କହୁଥାଏ... "ମା ତୁ ଏକଦମ୍ ଫାଷ୍ଟକ୍ଲାସ । ତୁ ମୋର ନୋବିନା ସ୍ୱୀକାର କରିଛୁ ।"

"ସନ୍ତା ମୋର ବେ ଦେ ବାବେ ମାୟେ ଆମୀ ପା ପିୟା ଖାତର ବିନନ୍ତୀ କର ଆମୀନ ଅନ୍ ଆନମ୍ ବାଅନୀ ପତରା ସ୍ତ୍ରୀଡ଼ା ସନ୍ତା ଚେ । ଆମୀନ୍ !"

ମୋର ପାଦଶବ୍ଦ ଶୁଣି ସେ ପଛକୁ ଲେଉଟି ଚାହିଁଲା । ଆଉ ମୋତେ ଦେଖି କିଛିଟା ଅପ୍ରତିଭ ହେଲା । ରାଗିଲା ଭଳି କହିଲା— "ଏତେବେଳେ ଏଠି କ'ଣ କରିବାକୁ ଆସିଛ ! ଯା' ଶୋଇପଡ଼ ।"

'ସମୁଦ୍ରରେ ତୋଫାନ୍ ଉଠିଛି ଗ୍ରେସୀ । ମୁଁ ତମକୁ ମୋ କୋଠରିକୁ ଆସ ବୋଲି ଡାକି ଆସିଛି ।' ମୁଁ ଖୋସାମତ କଲାଭଳି କହିଲି ।

ଅତ୍ୟନ୍ତ ସ୍ନେହ ଓ ବାତ୍ସଲ୍ୟ ଭାବ ତା' ଚେହେରାରେ ଖେଳିଗଲା । 'କମ୍ ହିୟର ଡାର୍ଲିଂ ।' ସେ ବିଶୁଦ୍ଧ ମେମ୍‌ଙ୍କ ଭଳି କହିଲା । ଆଉ ମୋତେ ଗେଲ କରି ମୋର ମଥା ଉପରେ ସାଉଁଳେଇ ଦେଲା ।

'ଟଫି ଦରକାର !' ପଚାରିଲା ।

'ୟେସ୍ ପ୍ଲିଜ୍ ଗ୍ରେସୀ !'

ସେ ଉଠିଆସି ଆଲମିରାରୁ 'ବ୍ଲେକ ମେଜିକ' ଡବାଟିଏ ବାହାର କଲା ।

ଟଫି ପାଟିରେ ପକେଇ ମୁଁ ପଗ୍ଋରିଲି ''ଗ୍ରେସୀ, ନୋବିନା ବୋଇଲେ କ'ଣ ?''

''ଓ ୟୁ ଡେମ୍ ନୟେଜୀ ପାରକର !'' ସେ କୃତ୍ରିମ ବିରକ୍ତିରେ କହିଲା ଆଉ ତା'ପରେ କିଭଳି ବିବ୍ରତ ହେବାଭଳି ମନେହେଲା ।

''ନା' ମୋତେ ନିଶ୍ଚୟ କହ ଗ୍ରେସୀ, ମୁଁ ବି ନୋବିନା କରିବି ।''

''ଠିକ୍ ଅଛି ମୁଁ ତମକୁ କହିବି ନିଶ୍ଚୟ । ବଟ୍ ତମେ ପ୍ରମିଶ୍ କର ଯେ ଆଉ କାହାକୁ କହିବ ନାଇଁ ।''

''ପ୍ରମିଶ୍ ଗ୍ରେସୀ !''

''ଆଚ୍ଛା, ସେଠି ବାହାରେ ମାଉଣ୍ଟ ମେରୀ ନାଇଁ; ସେଠି ଆମମାନଙ୍କର ବହୁତ ବଡ଼ ଦେଉଳଟାଏ ଅଛି । ସେଠି ଯାଇ ପ୍ରେୟାର କଲେ ଭର୍ଜିନ ପ୍ରାର୍ଥନା ଶୁଣେ । ଆଉ ମହିମରେ ଆଉ ଗୋଟାଏ ଦେଉଳ ଅଛି—ଚର୍ଚ୍ଚ ଅଫ୍ ସେଣ୍ଟ ମାଇକେଲ । ସେଇଠି ଭର୍ଜିନର ଗୋଟାଏ ଫଟୋ ଅଛି । ଆଉ ସେଇ ଫଟୋ ମିରାକଲ କରେ !

''ମିରାକଲ ଗ୍ରେସୀ !''

''ୟେସ୍ ! ସେଠି ପୂରା ନଅଟି ବୁଧବାର ଯାଇ ପ୍ରାର୍ଥନା କଲେ ତମର ଓ୍ବିସ୍ ପୂରା ହେଇଯିବ । ସେଇଆ ନୋବିନା । ମୁଁ ନୋବିନା ଗ୍ଋଲୁ କଲି ଆଉ ନାଇନ୍ ଓ୍ବେଡନେସ ଡେଜ୍ ପୂରା କଲି । ଗଲାଥର ମୁଁ ଭର୍ଜିନ ଉପରେ ରାଗିଲି, ହେଲେ ଭର୍ଜିନ ମୋ ଲାଗି ମିରାକଲ କରିଦେଲା ।''

''ମିରାକଲ ଗ୍ରେସୀ ?''

''ଗ୍ଋଲ ଗ୍ଋଲ ।'' ସେ ତରବର ହେଇ କହିଲା । 'ପଲଙ୍କକୁ ଗ୍ଋଲ, ଅନେକ ବିଳମ୍ବ ହେଲାଣି ।' ତା'ପରେ ସେ ତା'ର ପ୍ରଚଣ୍ଡ ଇଂରେଜୀ ଆରମ୍ଭ କରିଦେଲା । ଯେତେବେଳେ ସେ ରାଗିଯାଏ ବା ଅଧିକ ଖୁସି ହେଇଯାଏ, ସେତେବେଳେ ବେଢ଼ଙ୍ଗିଆ ଇଂରେଜୀ କହିବା ଆରମ୍ଭ କରିଦିଏ । ସେତେବେଳେ ସେ ନିହାତି ଖୁସିମନରେ ଓ ସନ୍ତୁଷ୍ଟ ଥିଲା ଭଳି ଲାଗୁଥିଲା ।

'ହେଲା ତେବେ ତମେ କାଲିକି କହିବ ନିଶ୍ଚୟ ମିରାକଲ କେମିତି ହୁଏ ।' ମୁଁ କହିଲି । ସେ ମୋର କଥା ମଝିରେ ମୋ ସାଙ୍ଗରେ ବେଡରୁମ୍ ପଟକୁ ଆସିଲା । କୋଠରି ଭିତରକୁ ଆସି ଝରକା ବନ୍ଦ କଲା । ମୋର ସକାଳପାଇଁ ଡ୍ରେସ ବାହାର କରିଦେଇ ଚଉକି ଉପରେ ଚଉଡି ରଖିଲା । ଆଉ ପଲଙ୍କ ପାଖରେ ତଳେ ବସିଗଲା ।

ମୁଁ ମନେକଲି, ଏଇନେ ତାକୁ ଡ୍ୟୁଟି ପୂରା କରିବାପାଇଁ ମୋ ପାଖରେ ବସିବାକୁ ପଡୁଛି । ଆଉ ମୁଁ ମନେ ମନେ ଭାବିଲି ଯେ ଆମ ମୁସଲମାନମାନଙ୍କର ନମାଜରେ କେହିହେଲେ ବାଧା ଦେଇ ପାରିବ ନାଇଁ; ମାତ୍ର ମୁଁ ତା' ନମାଜରେ ବାଧା ଦେଲି; ଆଉ

ସେଇଟା ତା'ର ବିଶେଷ ନମାଜ । ମୁଁ ଜାଣିଥିଲି ଯେ ସେଦିନ ରାତିରେ ରାଗିଲାପରେ ସେ ମେରିୟମ୍‌ଙ୍କ ପାଖରେ କ୍ଷମାପ୍ରାର୍ଥନା କରୁଥିଲା ।

ଯୋତା ମୋଜା ଖୋଲିବା ଭିତରେ ମୁଁ କହିଲି— ''ଗ୍ରେସୀ, ଏଇନେ ମୋତେ ଆଉ ଆଦୌ ଡର ମାଡୁନି । ତମେ ତମର ପ୍ରେୟାର କରିବ ଯା' ।

'ନୋ..ନୋ'

'ଗୁଡ୍‌ନାଇଟ୍ ଗ୍ରେସୀ' ... ମୁଁ ମଶାରୀ ଭିତରେ ଶୋଇଯାଇ ଆଖିବନ୍ଦ କରି କହିଲି ।

''ଆର୍ ୟୁ ସ୍ୟୋର୍, କେନ୍ ଆଇ ଗୋ ?''

''ଗୁଡନାଇଟ୍ ଗ୍ରେସୀ''

ସେଦିନ ରାତିରେ ପ୍ରଚଣ୍ଡ ବର୍ଷା ହେଲା ଆଉ ସମୁଦ୍ର ଗୋଟାଏ ଭୟଙ୍କର ହିଂସ୍ର ଜାନୁଆର୍ ଭଳି ଅନବରତ ଗର୍ଜନ କରୁଥାଏ । ସମୁଦ୍ରର ଗର୍ଜନ ଭାରି ଭୟଜାତ କରୁଥାଏ । ମୁଁ ବେଶ୍ ଭଲ କରି ଗୁଦର ଘୋଡ଼େଇ ହେଇ ପଡ଼ିଲି ଆଉ ବାପାଙ୍କର ଫେରିବା ବେଳକୁ ପୂରା ଶୋଇଯାଇଥିଲି ।

ସକାଳକୁ ସବୁ କିଛି ସଜଗାଧୁଆ ଭଳି ତୋଫା ମନେହେଉଥିଲା । ସମୁଦ୍ର ଶାନ୍ତ ଆଉ ବେଶ୍ ନୀଳ ଦେଖାଯାଉଥିଲା । ଦୂରରେ ପୀ ଏଣ୍ଡ ଓ ର ଏକ ବେଶ ଲମ୍ବା ଓ ଧଳା ଜାହାଜ ଗର୍ଜନ ପାଣିରେ ଲହଡ଼ି ଉପରେ ପହଁରି ଗ୍ଲାଲିଥିଲା । ତଳେ ରାସ୍ତାରେ ଧୀବରାଣୀ ମାନେ ପାଟିକରି ଡାକିବା ଆରମ୍ଭ କରିଦେଇଥିଲେ । କ୍ୱାର୍ଟରଗୁଡ଼ିକର ନଳ ପାଖରେ ଫାୟର ମେନ୍‌ର ସୁନ୍ଦରୀ ପତ୍ନୀଟି ଠିଆହେଇ ଆକାଶରେ ନୂଆ ନୂଆ ଖେଳି ଯାଉଥିବା ବାଦଲଙ୍କୁ ଦେଖି ମନେମନେ ମୁରକି ହସୁଥିଲା । ସାମନା ବାରଣ୍ଡାକୁ ସେଦିନର ଖବରକାଗଜ ଆସି ଯାଇଥିଲା । ବାପା ଆଉ ନାସିରକାକା ଆରାମ ଚଉକିଟିମାନଙ୍କରେ ବସି ଗ୍ୱ' ଖାଉଥିଲେ ଆଉ ଗ୍ରେସୀ ନିୟମାନୁସାରେ ସନ୍ତୋଷ ଓ ବ୍ୟସ୍ତତାରେ ଡାଇନିଂ ରୁମ୍‌ରେ ଏଣୁତେଣୁ କାମରେ ଲାଗିଥାଏ ଆଉ ତା'ରି ଭିତରେ ସାଙ୍ଗରେ ଟ୍ରେନ୍‌ରେ ନେଇଯିବା ଲାଗି କ'ଣ ଖାଇବା ଜିନିଷ ତିଆରି ହେବ ପଗ୍ଲରୁଥାଏ । ତା'ପର ସପ୍ତାହରେ ମୋର ସ୍କୁଲ ଖୋଲିବା କଥା, ତେଣୁ ସେଦିନ ଟ୍ରେନ୍‌ରେ ମୁଁ ଆଉ ବାପା ଲକ୍ଷ୍ନୌ ଫେରିଆସିବା କଥା ଥିଲା ।

ମୁଁ ରେଡ଼ି ହେଇ ବାହାରକୁ ଆସିଲି, ଯେତେବେଳେ ନାସିରକକା ଖବରକାଗଜରୁ ଆଖି ଉଠେଇ ମୋତେ ଅନେଇଲେ ଆଉ ଚଷମା ଖୋଲି ବେଶ ଖୁସି ମନରେ ପଗ୍ଲରିଲେ, ''ଆଛା ତା'ହେଲେ... ଶେଷକୁ ଏଇଆ ହେଲା ନା ?''

ପାକିସ୍ଥାନ ହେବା ଦେଢ଼ବରଷ ହୋଇ ସାରିଥିଲା । ୧୯୪୮ ଶେଷଆଡ଼କୁ ମୁଁ ଯେତେବେଳେ ଲାହୋର ଗଲି, ଜାଣିଲି ଯେ ନାସିରକାକା ରିଟାୟର କଲାପରେ ବମ୍ବେରୁ ଲାହୋର ଆସି ଯାଇଛନ୍ତି । ମୁଁ ଯେଉଠି ଥିଲି, ସେଠିକି ଦିନେ ତାଙ୍କର ଫୋନ୍ ଆସିଲା । କହିଲେ— କାର୍ ନେଇ ଅଲୀ ଅସଗର ଆସିବ ଆଉ ମୋତେ ମୋଡ଼େଲ ଟାଉନ୍‌କୁ ନେଇଯିବ ।

ତା'ପରଦିନ ସକାଳୁ ସକାଳୁ ଖଣ୍ଡିଏ ବଡ଼ କାର୍ ନେଇ ଅଲି ଅସଗର ଆସି ପହଞ୍ଚିଲା । ଜୁନିୟର କେମ୍ବ୍ରିଜ ପରେ ସେ ପଢ଼ା ଛାଡ଼ି ସାରିଥିଲା, ଏଇନେ ଖାଲି ଏଣେତେଣେ ବୁଲୁଥିଲା ।

"ଏଇନେ କ'ଣ କରିବୁ ବୋଲି ଭାବୁଛୁ ଅଲୀ ଅସଗର !" ମୁଁ କାରରେ ବସୁ ବସୁ ତାକୁ ପଗ୍ଚରିଲି ।

'ଏଣିକି ମୁଁ ବିଜିନେସ୍ କରିବି । ଏ କାର୍ ଯୋଉ ଫ୍ରେଣ୍ଡର, ତା ସାଙ୍ଗରେ ପାର୍ଟନରସିପ୍‌ରେ ଚଂଚଳ କାମ ଆରମ୍ଭ ହୋଇଯିବ ।" ସେ ଉତ୍ତର ଦେଲା । ତା'ପରେ ରାସ୍ତା ସାରା ଚୁପ୍ । ବୋଧହୁଏ ସେ ଠିକ୍ ଭାବରେ ଜାଣି ନଥିଲା କିମ୍ବା ତା ସାଙ୍ଗରେ ମୋର ସଂବନ୍ଧ କ'ଣ ଜାଣିବାକୁ ବି ଗ୍ଚହିଁଲା ନାହିଁ ।

"କାକା କେମିତି ଅଛନ୍ତି ?" ମୁଁ କିଛି ବେଳ ପରେ ପଗ୍ଚରିଲି ।

'.....?' ସେ ମୋତେ ପଗ୍ଚରିଲା ଭଳି ଆଖିରେ ଅନେଇଲା ।

"ତୋ'ର ବାପା !" ମୁଁ କଥାଟିକୁ ସ୍ପଷ୍ଟ କରିଦେଲି ।

"ଓହୋ... ଡେଡୀ... ହି ଇଜ୍ ଅଲ୍ ରାଇଟ୍ ଆଇ ସପୋଜ୍ !' ସେ ବେଶ୍ ଷ୍ଟାଇଲରେ ଉତ୍ତର ଦେଲା ଆଉ ଗତି ବଢ଼େଇ ଡ୍ରାଇଭ୍ କରୁଥିବା ଭିତରେ ଧୀରେ ଧୀରେ ସିଟି ବଜେଇ ଚିଲିଥାଏ... ।

"ତୋର ମନେଅଛି ଅଲୀ ଅସଗର, ଆମେ ଥରେ ତମ ଘରକୁ ବମ୍ବେ ଆସିଥିଲୁଁ— ମନେପଡୁଛି !' ପୁଣିଥରେ ମୁଁ କଥା ହେବାର ଚେଷ୍ଟା କଲି ।

'ଓହୋ... ୟା... ୟା... ୱେଲ୍ ଆଇ ରିମେମ୍ବର... କିଛି କିଛି ମନେପଡୁଛି... ଟେଲମୀ !" ଆଉ ସେ ପୁଣି ଇଂରେଜ ଧୂନର ସିଟି ବଜେଇବା ଆରମ୍ଭ କରିଦେଲା । ମଡ୍ରେଲ୍ ଟାଉନର ଗୋଟାଏ କଚ୍ଚା ରାସ୍ତାରେ ମୋଡଠେଇଁ ଅଗ୍ଚନକ ଗାଡ଼ି ବୁଲେଇ ଏମିତି ବ୍ରେକ ଦେଲା ଯେ ଗାଡ଼ି ଦୋହଲି ଯାଇ ଗୋଟାଏ ଫାଟକ ଆଗରେ ରହିଗଲା । ଆଉ ମୋତେ ଓହ୍ଲେଇ ଦେଇ ଆଗକୁ ଗ୍ଚଲିଗଲା ।

ଗୋଟାଏ ଛୋଟ କୋଠିର ସାମନା ଲନ୍‌ରେ ଆମ୍ବ ଆଉ ଅମୃତଭଣ୍ଡା ଗଛ କେତୋଟି ଥିଲା । ବାରଣ୍ଡା ପାଖର ଲନରେ ଚଉକି ପକେଇ ନାସିର କାକା ଡିସେମ୍ବରର କଅଁଳ ଖରାରେ ବସିଥିଲେ । ମୋତେ ଦେଖିଲାକ୍ଷଣି ଆଣ୍ଟୁରେ ଭରାଦେଇ ବେଶ କଷ୍ଟରେ ଚଉକି ଉପରୁ ଉଠି ଆସିଲେ ଓ ମୋ ମୁଣ୍ଡରେ ହାତ ରଖିଲେ । ମୁଁ ପାଖରେ ଆଉ ଗୋଟିଏ ଚଉକିରେ ଚୁପ୍‌ଗ୍ଚପ୍ ବସିଗଲି । ବମ୍ବେରେ ଯାହା ତାଙ୍କୁ ଦେଖିଥିଲି, ଏତେଦିନ ପରେ ପୁଣି ଦେଖୁଛି । ଏଇ ଦୀର୍ଘ ସମୟ ଭିତରେ ଦୁନିଆ ବେଶ୍ କିଛି ବଦଳି ଯାଇଥିଲା ।

ନାସିରକାକା ଅନେକ ବେଳ ଯାଏଁ ଚୁପ୍‌ଗ୍ଚପ୍ ବସିଥିଲେ । ତା'ପରେ ଆସ୍ତେକରି କହିଲେ 'ସଜ୍ଜାଦ ମୋର ବନ୍ଧୁ, ହେଲେ ସେ ମୋତେ ଠକି ଦେଇ ଗ୍ଚଲିଗଲା । ମୁଁ ତା'ଠାରୁ ଏମିତି ଆଶାକରି ନଥିଲି ।' ସେ ପୁଣି ଚୁପ୍ ହେଲେ, କିଛି ସମୟ ପରେ କହିଲେ

''ତେବେ ସେ ଭଲ କଲା । ଅନ୍ତତଃ ଏ ବିଦ୍ରୋହ ଆଉ ମନ ଫାଟିବାର ମୁହାଁମୁହିଁ ହେବାରୁ ତ୍ରାହି ପାଇଗଲା । ଏଇନେ ସ୍ୱର୍ଗରେ ଆନନ୍ଦରେ ଥିବ ।''

''ସ୍ୱର୍ଗ !'' ମୋ ତଣ୍ଟିରେ କିଛି ଅଟକିଗଲା ଯେମିତି ।... ''ମୃତ୍ୟୁ ପରେ ଅମ୍ମା... ସେ ଯେମିତି ବି ଥାଉ— ତା'ର ବିନାଶ ହୁଏନାଇଁ ନା କାକା !'' ମୁଁ ଧୀର ଗଳାରେ ପଗ୍ଭରିଲି ।

ନାସିରକାକା ଚଷମାଟି କପାଳ ଉପରକୁ ଉଠେଇ ନେଇ ଭ୍ରୂକୁଞ୍ଚନ କରି ମୋତେ ଅନେଇଲେ । 'ପ୍ରଶ୍ନ କରିବାର ଅଭ୍ୟାସ ତୋର ଏଯାଏଁ ଯାଇନି ଦେଖୁଛି । ପ୍ରଶ୍ନ କରିବା ଛାଡ଼... ବୁଝିଲୁ... ନହେଲେ ଜୀବନରେ ଅନେକ କିଛି ଦୁଃଖ ପାଇବୁ । ଈଶ୍ୱର ନ କରନ୍ତୁ, ତୋତେ ଦୁଃଖ ମିଳୁ ।'' ତା'ପରେ ସେ ଆଙ୍ଗୁଠି ଉଠେଇ ପବନରେ କ'ଣ ଲେଖି ପକେଇଲା ଭଳି କଲେ ଆଉ ହଠାତ୍ କହିଲେ,,, ''ଆରେ, ମୁଁ ଶୁଣିଥିଲି ତୁ କ'ଣ ଏ ଭିତରେ ଗାଳ୍ପିକା ହେଇଯାଇଛୁ— ମୋର ସେକଥା ପଗ୍ଭରିବାକୁ ଆଦୌ ମନେ ନଥିଲା ।'' ଆଉ କ'ଣ ଭାବିଲା ଭଳି ହେଲେ— କପାଳ ରେଖାଙ୍କିତ ହୋଇଉଠିଲା— ପଗ୍ଭରିଲେ, ''ସେଇ ଦୁଃଖୀ ବେଙ୍ଗ କଥା ତ ଲେଖୁନୁ ଆଉ ତୋର ସାହିତ୍ୟରେ !''

''ଦୁଃଖୀ ବେଙ୍ଗ !'' ମୁଁ ଆଶ୍ଚର୍ଯ୍ୟରେ ଏ ଦୁଇଟି ଶବ୍ଦ ଉଚ୍ଚାରଣ କଲି ।

''ଦେଖ ଦେଖ, ଏ ସବୁ ପ୍ରଳାପ କେମିତି ସାହିତ୍ୟ ନାଆଁରେ କୁହାଯାଇଛି ।'' ସେ ଟେବୁଲ ଉପରୁ ପତ୍ରିକାଟିଏ ଉଠେଇ ନେଲେ । ବୋଧହୁଏ 'ଅଦବେ ଲତୀଫ' କିମ୍ବା 'ଅଦବୀ ଦୁନିଆଁ' । ତା ଭିତରୁ ଗୋଟାଏ ଆଧୁନିକ କବିତା ବାହାର କରି ମୋ ସାମନାରେ ରଖିଦେଲେ । ପଗ୍ଭରିଲେ— ''ମୁଁ ଜାଣିବାକୁ ଗ୍ଭହୁଁଛି, ଏ ସବୁ ପ୍ରଳାପ ନୁହଁ ତ ଆଉ କ'ଣ !...ଏଁ.... ତୁ ବି ଏମିତି କ'ଣ ସବୁ ଲେଖୁଛୁ ନା ! ସଜ୍ଜାଦର ଝିଅ ଯଦି ଏମିତି ସବୁ ଠିକ୍ ଠିକଣା ନଥିଲା କଥା ଲେଖୁଥିବ... ତା'ହେଲେ.... ।'' ବିରକ୍ତି ଆଉ ଦୁଃଖରେ ସେ ପତ୍ରିକାଟିକୁ ମେଜ ଉପରେ କଗ୍ଭଡ଼ିଲା ଭଳି ରଖିଦେଲେ । ମୁଁ ଚମକିଲା ଭଳି ତାଙ୍କୁ ଅନେଇଲି । ନାସିରକାକା ବୁଢ଼ା ହେଇ ଯାଇଥିଲେ, ତେବେ ସ୍ୱଭାବତଃ ସେହିଭଳି ସ୍ନେହଶୀଳ ମନେ ହେଉଥିଲେ । ନୂଆ ଦୁନିଆଁ ଆଉ ଅପରିଚିତ ସହରର ମଡେଲ ଟାଉନ୍‌ର ଗୋଟାଏ କଟେଜର ଜନଶୂନ୍ୟ ହତାରେ ବେଶ୍ ଅସହାୟ ଅବସ୍ଥାରେ ଥାଇ ପ୍ରଗତିଶୀଳ ସାହିତ୍ୟ ଲାଗି ବିକ୍ଷୋଦ୍‌ଗାର କରି ବିରକ୍ତ ହେଲାବେଳେ ବି ସେ ବେଶ୍ ସ୍ନେହୀ ମନେହେଉଥିଲେ ।

'ହେଲେ କାକା,' ମୁଁ ଅତି ଧୀର ଗଳାରେ ପଗ୍ଭରିଲି 'ଏଇଆ ନିହାତି ସତ ଯେ ମୁଁ ଦୁଃଖୀ ବେଙ୍ଗ କଥା ଲେଖୁନି ଆଉ ଅବ୍‌ବାଜାନ ଉର୍ଦ୍ଦୂର ପ୍ରଗତିଶୀଳତାକୁ ପସନ୍ଦ କରୁଥିବା ଲୋକଙ୍କ ଭିତରେ ଜଣେ ଥିଲେ । ଆପଣ ସାଂପ୍ରତିକ ସାହିତ୍ୟ ପ୍ରତି ଏତେ ବିରକ୍ତ କେମିତି ?'

'ତେବେ ସଜ୍ଜାଦ୍ ସେଇ ଦୁଃଖୀ ବେଙ୍ଗ କଥା ଲେଖୁ ନଥିଲା !' ସେ ରାଗିଲା ଭଳି କହିଲେ । କିଛିଟା ସେଇ ଗଳାରେ ଡାକଦେଲେ— ''ଗ୍ରେସୀ ! ଆରେ ଦେଖ୍ କିଏ ଆସିଛି ।'' ପରକ୍ଷଣରେ ଦରପାଚିଲା ବାଳ, ଶାଢ଼ୀ କାନି ଅଣ୍ଟାରେ ବାନ୍ଧିଥିବା ବୁଢ଼ୀଟିଏ ଆସି ପହଞ୍ଚିଗଲା ।

ସେ ଟାଓ୍ୱେଲରେ ସେ ଯାଏଁ ହାତ ପୋଛୁଥାଏ । ମୋତେ ଦେଖି ଅଟକିଗଲା, ପାଖକୁ ଆସି ନଇଁପଡ଼ି ନିରେଖି ଦେଖିଲା ।

"ଆଲୋ ବୋକୀ, ଚିହ୍ନିପାରିଲୁ ନାଇଁ ଇଏ କିଏ !" କାକା ପଗ୍ରିଲା ଭଳି କହିଲେ।

"ଓ.. ଓ... ମାଇ ଡାର୍ଲିଂ ଲିଟଲ୍ ସ୍ୱିଟ୍ ! ଲିଟଲ ଗର୍ଲ !" ଗ୍ରେସୀ ଏତେ ପାଟିରେ କହିଲା ଆଉ ମୋତେ କୁଣ୍ଢେଇ ପକେଇଲା ।

"ଏଇନେ ଇଏ କାନ୍ଦି ପକେଇବ... !" ନାସୀରକାକା ଚିଡ଼ିଲା ଭଳି କହିଲେ— "ହେ ଭଗବାନ୍...! ଆରେ ଗ୍ରେସୀ ଯା, ଝିଅ ଲାଗି କିଛି ଖିଆପିଆର ବ୍ୟବସ୍ଥା କର୍ ! ବେଶ୍ ବଢ଼ିଆ ବଢ଼ିଆ ଜିନିଷ କର !" ସେ ତାଙ୍କର ସେହି ସ୍ୱଭାବସୁଲଭ ପୁରୁଣା ଭଙ୍ଗୀରେ କହିଲେ ।

'କମ୍ ଇନ୍, କମ୍ ଇନ୍, ହାଓ ଆର୍ ୟୁ ମାଇଁ ଗ୍ୱଇଲ୍ସ ! କମ୍ ଏଲଙ୍ଗ୍ ।' ଗ୍ରେସୀ ତା'ର ସ୍ୱଭାବ ଅନୁସାରେ ଖୁସିରେ ଅଗମୂଳ ନିଥିବା ବିଚିତ୍ର ଇଂରେଜୀ କହିବା ଆରମ୍ଭ କରିଦେଲା । ଆଉ ମୋତେ କଟେଜ ଭିତରକୁ ନେଇଗଲା ।

ତାହା ଏକ ଅତି ବଡ଼ ହତା ଭିତରେ ତିଆରି ହୋଇଥିବା କଟେଜ୍, ଯାହା ହୁଏତ ବିଭାଜନ ପୂର୍ବ କୌଣସି ହିନ୍ଦୁ ମାଲିକଙ୍କର ଅତିଥିଶାଳା ଥିଲା । ନାସିରକାକା ଧାଁଦଉଡ଼ କରି ତାକୁ ନିଜ ନାଆଁରେ ଏଲଟ୍ କରେଇ ନେଇଥିଲେ । ତାଙ୍କର ସେଠି ରହିବା ପ୍ରାୟ ବର୍ଷେ ହେବ, ତେବେ ଘରର ସବୁକିଛି ଦେଖିଲେ ମନେହେଉଥିଲା ଯେମିତି ସେ ଯାତ୍ରୀ ଭଳି ସେଇଠି ଅଛନ୍ତି । ମୁଁ ବମ୍ବେ ଫ୍ଲାଟ୍‌ର ପରିଚିତ ଜିନିଷଗୁଡ଼ିକ କାଳେ ଦିଶିବ ବୋଲି ଆଖି ବୁଲେଇ ନେଲି; କିନ୍ତୁ ସଇଦା ଖୁଡ଼ୀଙ୍କର ସେଇ ତୈଳଚିତ୍ରଟି ଛଡ଼ା ଆଉ କିଛି ହେଲେ ନିଜ ଥାନରେ ନଥିଲେ । କାକା ହୁଏତ ପୁରୁଣା ଜୀବନର ସବୁ କିଛି ସଂବନ୍ଧ ତୁଟେଇ ଦେଇଥିଲେ । ମୋର ମନକୁ ହଠାତ୍ କେମିତି ଏକ ଭୟାନକ କଥା ଆସିଲା । ସଂଭବତଃ କାକା ଆଉ ବେଶୀ ଦିନ ଜୀବିତ ରହିବେ ନାଇଁ । ପରକ୍ଷଣରେ ଏଭଳି ଏକ ବିଗ୍ୱର ପାଇଁ ମୁଁ ନିଜେ ନିଜ ଉପରେ ରାଗିଲି । ମୁଁ ଏମିତି ଏକ ଅଶୁଭ କଥା କେମିତି ଭାବିପାରିଲି ସତରେ !

ଗ୍ରେସୀ ଚଟାପଟ୍ କହି କହି ମୋତେ ରୋଷଘରକୁ ନେଇଗଲା । ବମ୍ବେ ଭଳି ବେଶ୍ ସଫାସୁତୁରା ରୋଷଘର । ଝରକା ପାଖରେ ସଜ ଫୁଲର ଫୁଲଦାନୀ । ପହଞ୍ଚିଲାକ୍ଷଣି ସେ ରନ୍ଧାବଢ଼ା କାମ ଆରମ୍ଭ କରିଦେଲା । ମୁଁ ଗୋଟାଏ ବେତ ତିଆରି ମୋଡ଼ା ଉପରେ ବସି ତା'ର ସବୁ କଥାକୁ ଅନେଇଥାଏ ।

"ଗ୍ରେସୀ, ତମେ ବେଶ୍ ବୁଢ଼ୀ ହେଇଗଲଣି ।" ମୁଁ ଦୁଃଖ କଲା ଭଳି କହିଲି ।

ସେ ଚୂଲିରେ ନିଆଁ ଧରଉ ଧରଉ ମୋତେ ବୁଲିପଡ଼ି ଅନେଇଲା ଆଉ ଧୀର ଗଳାରେ କହିଲା "ମୋର ନାଆଁ ଧରି ଡାକିବ ନାଇଁ, ଗ୍ରେସୀ ଖୁଡ଼ୀ କହିବ ମୋତେ ।"

"ଓହୋ ! ଠିକ୍ !" ମୁଁ ଉତ୍ତର ଦେଲି । ଚୂଲୀ ଧୂଆଁ ମୋ ଆଖିରେ ପଶିଲାରୁ ଆଖି

ମଳିହେଲି । ମୋର ହଠାତ୍ ବମ୍ବେର ସେଇ ବର୍ଷା ତୋଫାନ ରାତି ମନେପଡ଼ିଲା, ଯୋଉଦିନ ଗ୍ରେସୀ ମରିୟମ୍‌ଙ୍କ ସାଙ୍ଗରେ ଝଗଡ଼ା କରି ସନ୍ଧି କରିନେଲା । ଆଉ ମୋତେ ମିରାକଲ୍ ସଂବନ୍ଧରେ କହିବାକୁ ଇଚ୍ଛା କଲାନାହିଁ । ମୁଁ କହିଲି— 'ଖୁସିର କଥା ଗ୍ରେସୀ ଖୁଡ଼ୀ, ତମେ ସେ ସମ୍ମାନର ବାସ୍ତବିକ ହକଦାର !'' ମୁଁ ଆଖି ଖୋଲି ନରମ ଗଳାରେ କହିଲି ।

ଗ୍ରେସୀ ଖୁଡ଼ୀ ଶୀଘ୍ର ଶୀଘ୍ର ଅଟା ଗୋଲି କରିବା ଆରମ୍ଭ କରିଦେଲା ।

'ଖୁଡ଼ୀ, ତମେ ଚାକରବାକର ରଖିନ କିଛି ? ସବୁ କାମ ନିଜେ କରୁଛ !' ମୁଁ ପଚାରିଲି ।

'ତମ ଅଂକଲର ପେନସନ୍ ଭାରି ବିଳମ୍ବରେ ମିଳୁଛି । ଆମର ସବୁ ପଇସା ତେଣେ ଇଣ୍ଡିଆରେ ଅଛି । ଆମର ଭାରି କଷ୍ଟରେ ଗୁଜରାଣ ହେଉଛି । ଆଉ ନୌକର ଚାକର ବି କ'ଣ ହବ ? ତମ ଅଂକଲର ସେବା କରିବାକୁ ମୁଁ କ'ଣ ନାହିଁ !'' ଖସି ଆସିଥିବା କେରାଏ ଦରପାଚିଲା ବାଳ ମୁହଁ ଉପରୁ ଆଡ଼େଇ ନେଇ ସେ କହିଲେ ।

''ତେଣେ ପୁଅ ଜିଦ୍ ଧରି ବସିଲା ପାକିସ୍ଥାନ ଆସିବ । ବିଜିନେସ୍ କରିବ । ବମ୍ବେରେ ସେ କିଛି ଷ୍ଟଡ଼ି କଲାନାହିଁ । ସ୍କୁଲ ଛାଡ଼ିଦେଲା । ସେଥିରେ ତାକୁ ଏଇଠି ସର୍ଭିସ ହେଲେ ମିଳିବ ? ପେନସନ୍ ପାଇଲା ପରେ ସାହେବ କଲିକତାରେ ରହିବାକୁ ଚାହିଁଲା, ତେବେ ଆମେ ପୁଅପାଇଁ ଚାଲି ଆସିଲୁଁ । ଭାବିଲେ ଏଇଠି ବି ସବୁ ଠିକ୍ ଅଛି । ଗଡ୍ ଇଜ୍ ଗୁଡ୍ !''

''କାକାଙ୍କ ଦେହପା କେମିତି ଅଛି ଗ୍ରେସୀ ଖୁଡ଼ୀ ? ପାଦରେ କିଛି ପୀଡ଼ା ଅଛି ଭଳି ଲାଗୁଛି ।'' ମୁଁ ପଚାରିଲି ।

''ତମର ଅଙ୍କଲର ଦେହ ବରାବର ଖରାପ ରହୁଛି । ବମ୍ବେରେ ହିନ୍ଦୁ ମୁସଲମାନ ଦଙ୍ଗା ବେଳେ ଗୁଣ୍ଡାମାନେ ଜାଗା ଜାଗାରେ ନିଆଁ ଲଗେଇ ଦଉଥିଲେ । ତମର ଅଙ୍କଲ ନିଆଁ ଲିଭେଇବାକୁ ସାରା ସହରରେ ଦଉଡ଼ି ଯାଉଥିଲା । ଗୋଟାଏ ହିନ୍ଦୁ ଫେମିଲିକୁ ବଂଚେଇବାକୁ ଯାଇ ଗୋଡ଼ ଭାଙ୍ଗିଗଲା । ଛ' ମାସ ବିଛଣାରେ ପଡ଼ିରହିଲା । ତା'ପରଠାରୁ ତାର ହେଲଥ ଭାଙ୍ଗିପଡ଼ିଲା । ଗାଉଟ୍‌ର ପୀଡ଼ା ଅଧିକ ହେବାକୁ ଲାଗିଲା । ହାଇ ବ୍ଲଡ ପ୍ରେସର ବି । ଏବକୁ କଥା କଥାକେ ରାଗ । ଆମର ସୁନ୍ଦର ମଜବୁତ ସାହବ ପୂରା ବୁଢ଼ା ପାଲଟି ଗଲା । ଏକଦମ୍ ଓଲ୍ଡ ମେନ୍ ।'' ତା'ପରେ ପୂରାପୂରି ଗୃହିଣୀଟିଏ ଭଳି ଅଭିଯୋଗ କଲା— ''ମୁଁ କହୁଛି ପଥ୍ୟ କର ଆଉ ସେ ସବୁବେଳେ ଏଣୁତେଣୁ ଖାଇବାକୁ ମନ କରୁଛି ଆଉ କହିଲେ ମୋ ସାଙ୍ଗରେ ଝଗଡ଼ା କରୁଛି ।''

''ମୁଁ ଛଅ ସାତ ବର୍ଷ ତଳେ ଯେତେବେଳେ ତୋର ଅଙ୍କଲକୁ ବାହାହେଲି, ସେତେବେଳେ ମୁଁ ସଫା ସଫା କହିଦେଇଥିଲି— ମୋ ସାଙ୍ଗରେ କିଛି ନନ୍‌ସେନ୍ସ କଲେ ମୁଁ ଛାଡ଼ିଛୁଡ଼ି ପଳେଇବି ।'' ସେ ରାଗିବାର ଛଳନା କରି କହିଲା ।

''ଏଇନେ ଦେହ ଖରାପ ବୋଲି ବେଶ୍ ଚିଡ଼ଚିଡ଼ା ହେଇଯାଉଛି । ମୁଁ ଖାଲି ତା'

କଥା ବୁଝିପାରୁଛି । ଖାଲି ମୁଁ ତା'ର ପାଖେ ପାଖେ ରହି ଦେଖାଗୁହାଁ କରିପାରୁଛି । ଦୁନିଆଁରେ ଏଇନେ ତା'ର ଜଣେ ବି ସାଙ୍ଗ ନାହାଁ । ମୁଁ ଖୋଦାଙ୍କୁ ଖାଲି ଏତିକି ମାଗୁଛି, ଯେମିତି ମୋର ଶେଷ ନିଶ୍ୱାସ ଥିବାଯାଏ ମୁଁ ତା'ର ସେବା କରିପାରିବି ।'' ହୁଏତ ଧୂଆଁ ଲାଗି ଗ୍ରେସୀ ଖୁଡ଼ୀ ଆଖିରେ ଲୁହ ଭରିଗଲା । ସେ କାନିପଣତରେ ଲୁହ ପୋଛିଲା । ଆଉ ତାଓ୍ୱା ନେଇ ଚୁଲି ଉପରେ ବସେଇଦେଲା ।

''କାକା ନିୟମିତ ଡାକ୍ତରଙ୍କୁ ଦେଖଉଛନ୍ତି ତ ? କି କିଛି ଗୋଳମାଳ କରୁଛନ୍ତି ?'' ମୁଁ ପଗ୍ଚରିଲି ।

'ସବୁ କଥାରେ ଜିଦ୍ ।' ଗ୍ରେସୀଖୁଡ଼ୀ ବେଲନା ଚଳେଇ କହୁଥାଏ—''ଏଇ ମୋହର୍ରମ୍ ବେଳେ ମୁଁ ସେପଟେ ନବାବ କଜଲ ବାସ ଇମାମଓ୍ୱାଡ଼ାରେ ରୂପାର ବଡ଼ ତାଜିଆରେ ସୂତା ବାନ୍ଧି ମାନସିକ କରି ଆସିଛି । ସାହେବ ଭଲ ହେଇଗଲେ ଆର ବର୍ଷକୁ ରୂପାର କେଣ୍ଡଲ ଚଢ଼େଇବି । ଆଲ୍ଲାହ ଗ୍ଚହିଁଲେ ।''

ମୁଁ ଖିଲ ଖିଲ ହସି ପକେଇଲି—''ଗୁଡ୍ ଓଲ୍ଡ ଗ୍ରେସୀ ଖୁଡ଼ୀ, ଏବେ ତମେ ଏ ସବୁ ବି କରୁଛ !''

''ହ୍ୱାଇ ନଟ୍ !'' ସେ ତାବାରେ ଚପାତି ପକେଇ କହିଲେ । ''ଯେତେବେଳେ ବମ୍ବେରେ ଆମର ବାହା ହେଲା, ସେତେବେଳେ ମୌଲବୀ ସାହେବ ମୋ ନୂଆ ନାଆଁ ରଖିଲେ କନୀଜ ଜୌହରା ଆଉ ମୋତେ କଲମା ପଢ଼େଇଲେ । ଶୁଣେଇବି ?''

''ନିଶ୍ଚୟ !''

''ଅଶହଦୋ ଅଲ୍ଲାହ ଇଲାହା ଇଲଲ୍ୟାହ ଅଶହଦୋ ଅଲ୍ଲା ମୁହମ୍ମଦନ ରସୁଲଲ୍ଲାହ ଅଶହଦୋ ଅଲ୍ଲା ଅମୀରୁଲମୋମିନୀନା ଇମାମୁଲ ମୁତ୍ତକୀନା, ଅଲୀ ବଲୀଲୁଲ୍ଲାହ ବସୀ ରସୁଲଲ୍ଲାହ ଖଲୀ ଫତୁଲ ବିଲା ଫସଲ !''

(ମୁଁ ଶପଥ କରି କହୁଛି ଯେ ଅଲ୍ଲାହଙ୍କ ଛଡ଼ା ଆଉ କେହି ପୂଜନୀୟ ନୁହନ୍ତି । ମୁହମ୍ମଦ ଅଲ୍ଲାହଙ୍କର ବାର୍ତ୍ତା ପହୁଁଚେଇବା ବାଲା ନବୀ (ଦୂତ) ମୁଁ ଶପଥ କରି କହୁଛି ଯେ ଅଲୀ, ଯିଏ ଅଲ୍ଲାହଙ୍କର ବଲୀ ଅର୍ଥାତ୍ ସେଇ ଦେବଦୂତଙ୍କର ଉତ୍ତରାଧିକାରୀ, ଆଉ ଯାହାଙ୍କ ସପକ୍ଷରେ ସେ ତତ୍କ୍ଷଣାତ୍ ତାଙ୍କର ସ୍ଥାନ ଅଧିକାର କରିବେ ବୋଲି ଉଇଲନାମା କରାଯାଇଛି, ସେ ମୁସଲମାନମାନଙ୍କର ଖଲିଫା (ପ୍ରତିନିଧି) ଆଉ ପବିତ୍ର ଜୀବନଯାପନ କରୁଥିବା ମଣିଷର ସଂରକ୍ଷକ)

''ହିୟର ହିୟର, ଓ୍ୱଣ୍ଡରଫୁଲ ଗ୍ରେସୀ ଖୁଡ଼ୀ । ତମେ ତ କମାଲ କରିଦେଲ । ଏତେ ଲମ୍ବା କଲମା ତମର ମନେଅଛି ?''

ଆଉ ସେଇ ଏକାନିଶ୍ୱାସରେ ସେ ଫୁଙ୍କନାଳୀ ଉଠେଇ ଅନ୍ୟ ଚୁଲିର ନିଆଁ ତେଜେଇବା ଆରମ୍ଭ କରିଦେଲା । ଆଉ ବଡ଼ ବଡ଼ ହେଲା— 'ଦିସ୍ ବ୍ଲଡି ଡେମ୍ କୋଇଲା ।'

ଗ୍ରେସୀ ଖୁଡ଼ୀ ତା'ପରେ ପୁଅ ବିଷୟରେ ଆଉ କଥା ପକେଇଲା ନାହିଁ । ପୁଅ ହୁଏତ ବାପ-ମା' ଦୁହିଁଙ୍କୁ ବେଶ ନିରାଶ କରିଥିଲା ।

ମୁଁ କରାଚୀରୁ ଫେରିଆସିଲି । ତିନି ବର୍ଷ ପରେ ଖବର ପାଇଲି ଯେ ନାସୀର କାକାଙ୍କର ଦେହାନ୍ତ ହୋଇଯାଇଛି । ଅଲୀ ଅସଗର ବିଜିନେସ ଲାଗି ଢାକା ଚାଲିଯାଇଛି । ପୂର୍ବ ପାକିସ୍ଥାନକୁ ଗଲାବେଳେ ସେ ଗ୍ରେସୀ ଖୁଡ଼ୀକୁ କହିଗଲା ଯେ ବ୍ୟବସାୟ ସଂକ୍ରାନ୍ତରେ ତାକୁ ଏଣେତେଣେ ଘୂରିବାକୁ ପଡ଼ିବ । ସେଥିଲାଗି ତାଙ୍କୁ ବିଦେଶରେ ହଇରାଣ ହେବାକୁ ହେବ । ସେ ତାଙ୍କ ଦେଶକୁ ଫେରିଯିବା ଉଚିତ । ସମ୍ଭବତଃ ସେ ତା'ର ବନ୍ଧୁମାନଙ୍କୁ ଗ୍ରେସୀ ଖୁଡ଼ୀ ତା'ର ମାଆ ବୋଲି-କହିବାକୁ କୁଣ୍ଠାବୋଧ କରୁଥିଲା ।

ଯଦି ଅଲୀ ଅସଗର ଗ୍ରେସୀ ଖୁଡ଼ୀର ନିଜ ପୁଅ ହୋଇଥା'ନ୍ତା, ତା'ହେଲେ ତା'ଭିତରେ ହାର୍ଦ୍ଦିକ ଓ ସ୍ୱାଭାବିକ ସ୍ନେହ ଥାଆନ୍ତା । ତା'ହେଲେ ହୁଏତ ସେ ତା'ର ବାହାପରେ ବି ସେଇ ବ୍ୟବହାର କରିଥା'ନ୍ତା । ମା' ମାନଙ୍କ ସାଙ୍ଗରେ ପ୍ରାୟ ସେଇଆ ହୁଏ ଆଉ ଗ୍ରେସୀ ଖୁଡ଼ୀ ବି ମା'ଟିଏ ।

ଗ୍ରେସୀ ଖୁଡ଼ୀ କେଜାଣି କୁଆଡ଼େ ଗଲା । ବମ୍ବେ ଫେରି ଆସିଲା, ଗୋଆ ଚାଲିଗଲା ବା କେଜାଣି କୋଉଠି ଲୁପ୍ତ ହୋଇଗଲା । ଦୁନିଆଁ ଅନେକ ବଡ଼ ଆଉ ଗ୍ରେସୀ ଖୁଡ଼ୀ ନିହାତି ଅପ୍ରସିଦ୍ଧ ଅନାମ ଆଉ ସାଧାରଣ ବୁଢ଼ୀଟିଏ ।

ବୁଧବାର ଦିନ ସଂଧ୍ୟାରେ ମହିମର ଚର୍ଚ୍ଚ ଅଫ୍ ସେଣ୍ଟ ମାଇକଲରେ ଅପବିତ୍ରତାର ବିନାଶ ଘଟେ । ଗିରଜାର ହଲ, ତ୍ରିଭୁଜ ପରି ଅଗଣା ଆଉ ସାମନାର ଫୁଟପାଥ ବି ଉପାସକମାନଙ୍କର ଗହଳିରେ ଭରିଯାଇଥାଏ । ଦୋକାନ ପରେ ଦୋକାନ ଲମ୍ବି ଯାଇଥାଏ । ସେଠି ମହମ ତିଆରି କଣ୍ଢେଇ ପୁଅ ଆଉ ହାତ, ଗୋଡ଼, ନାକ, କାନ ବିକାଯାଏ । ସନ୍ତାନକାମୀ ସ୍ତ୍ରୀମାନେ, ଅଭାବୀ ଲୋକେ, ରୋଗୀ, ପଙ୍ଗୁ ନିଜ ନିଜର ମନୋକାମନା ଅନୁସାରେ ଏସବୁ ମହମ କଣ୍ଢେଇ ଆଉ ଅଙ୍ଗ କିଣି ମରିୟମଙ୍କର ବିରାଟ ପ୍ରତିମା ଆଗରେ ସମର୍ପଣ କରନ୍ତି ଆଉ ମାନସିକ କରନ୍ତି ଯେ ମନୋକାମନା ପୂର୍ଣ୍ଣ ହେଲେ ଆସି ଏସବୁ ରୂପାରେ ତିଆରି ଜିନିଷ ଚଢ଼େଇବେ । ମହିମ ଷ୍ଟପରେ ବସ ଯାତ୍ରୀଙ୍କ ପଛରେ ଏସବୁ ଜିନିଷ ଆଉ ଫୁଲ ବିକାଳୀ ପିଲାମାନେ ଲାଗିଯାଆନ୍ତି । ଗୀରଜା ଭିତରେ ସୁନେଲୀ ମୁକୁଟ ଆଉ ନୀଳବସ୍ତ୍ର ପରିହିତା ମରିୟମଙ୍କର ଭବ୍ୟ ମୂର୍ତ୍ତି । ତା ତଳକୁ ଏକ ଛୋଟ ଚିତ୍ର, ପବିତ୍ର ମାତା ଓ ପୁତ୍ରଙ୍କର । ଏହି ସବୁ ମାନସିକ, ଯାଚନା, ପ୍ରାର୍ଥନା ଓ ଜପର କେନ୍ଦ୍ର ସେଇ ଛୋଟ ଚିତ୍ର; କୁହାଯାଏ, ସେ ହିଁ ସବୁ ଚମତ୍କାର କରେ । ସବୁ ଧର୍ମର ଲୋକେ ଆସି ସେଇ ଚିତ୍ର ଆଗରେ ଗୁହାରି କରନ୍ତି ।

ମହିମର ସେଇ ଛକଟିରେ ସବୁବେଳେ ଗହଳଚହଳ ଥାଏ । ତା'ର ଗୋଟାଏ ପଟେ ବି.ଇ.ଏସ୍.ଟି ବସ ଆଡ୍ଡା । ତା' ସାମନାରେ ଶେଖ ଇସ୍ମାଇଲ ଓମର ଆଉ ରହତୁଲ୍ଲା

ହାଜି ଇସ୍ମାଇଲ ପଟେଲର ବାଉଁଶ ଗୋଦାମ । ତା ପାଖକୁ ଲାଗି ମହିମ କ୍ରୀକ୍, ଯୋଉଠି ପାଣିରେ ଖାଲି ନାଆଗୁଡ଼ିକ ଭାସୁଥାଆନ୍ତି ଆଉ ଦି'ପଟେ ନୋଳିଆମାନଙ୍କର ମଇଳା ନାଆସବୁ ଥିର । କ୍ରୀକ୍ ଦେଇ ଯାଉଥିବା ରାସ୍ତା ବମ୍ବେର ଦ୍ୱୀପକୁ ସେଲସିଟ୍ ଦ୍ୱୀପ ସାଙ୍ଗରେ ଯୋଡ଼ିଦିଏ । ଏଇ ରାସ୍ତାର ଦି' କଡ଼େ ନୋଳିଆଙ୍କର ଲାଲଲାଲ ଖପରଲି ଘର ଆଉ ଟିଣ ଝୋପଡ଼ି ସବୁ ସାମୁଦ୍ରିକ ଲତାଗୁଳ୍ମରେ ବୁଡ଼ି ରହିଥିଲା ଭଳି ମନେହୁଏ । ଏଇ ରାସ୍ତାର କଡ଼େ କଡ଼େ ମୋହରମ ବେଳେ ତୋରଣ ଲଗାଯାଏ, ଯା' ଉପରେ ଚନ୍ଦ୍ରତାରା ଥିଲା ଇସ୍ଲାମୀ ପତାକା ସବୁ ସାମୁଦ୍ରିକ ପବନରେ ଫରଫର ଉଡ଼େ ।

ଏଇ କିଛି ଦୂର ପାଣିକୁ ଲାଗି ମକଦୁମ୍ ଶାହ ବାବାଙ୍କର ସମାଧି ଅଛି, ଯୋଉଠି ପ୍ରତିବର୍ଷ ଶ୍ରାଦ୍ଧୋତ୍ସବ ସମାରୋହରେ ପାଳିତ ହୁଏ ଆଉ ସବୁ ଗୁରୁବାର ଦିନ ବୁର୍ଖାପିନ୍ଧା ମାଈକିନାମାନେ ଦଳଦଳ ହୋଇ ଆସି ରୁଣ୍ଡ ହୁଅନ୍ତି ।

ବାନ୍ଦ୍ରା, ଜୁହୁ ଆଉ ଅନ୍ଧେରୀ ପଟକୁ ଯାଉଥିବା ବସ ଆଉ ଅନ୍ୟାନ୍ୟ ଗାଡ଼ିର ଅସରା ଧାଡ଼ି ଏଇ ରାସ୍ତାରେ ଯାଏ । ଏଇଠି ମହିମ ଛକ । ସେଇଠି ପୁଲିସ ସିପାହୀମାନେ ଆଖପାଖରୁ ଆସୁଥିବା ଟାକ୍ସି ଆଉ କାରମାନଙ୍କୁ ଅଟକାଇ ଭିତରକୁ ଅନେଇ ଦେଖନ୍ତି । ଦେଶୀ, ବିଦେଶୀ ବେଆଇନ ମଦ ସହର ଭିତରକୁ ଚାଲାନ ହେଇ ଯାଉନାହିଁ ତ ?

ଏଇ ରାସ୍ତାର ଅନ୍ୟପଟକୁ ବାନ୍ଦ୍ରାର ସୁନ୍ଦର କାରୁକାର୍ଯ୍ୟ ଓ ଲତାପତ୍ରମଣ୍ଡିତ ଧଳା ମର୍ମର ପଥର ତିଆରି ମସ୍‌ଜିଦ୍ ଅଛି, ଯାହା ରମଜାନ ମାସରେ ରଙ୍ଗବେରଙ୍ଗ ବିଜୁଳି ଆଲୁଅରେ ସଜେଇ ହୋଇ ରହିଥାଏ । ଆଉ ଦିନସାରା ତା'ର ସଫାସୁତୁରା ଚଟାଣରେ ବସିଥିବା ନମାଜୀମାନଙ୍କୁ ତା'ର ସୂକ୍ଷ୍ମ ଜାଲିବାଟରେ ଦେଖିହୁଏ । ସେଇ ମସଜିଦ୍ ଆଗକୁ ପୋଖରୀ ଅଛି । ତା' ପାଖକୁ 'ଇସ୍ଲାମୀ ହୋଟେଲ' ଆଉ 'ଶାନେ ମୋହମ୍ମଦୀ' ରେସ୍ତରାଁ ଆଉ ଟିକିଏ ଆଗକୁ 'ସୁବାହନଲ୍ଲା' କେଫେ ।

କ୍ରୀକ୍‌ର ରାସ୍ତା ଉପରୁ ଅନେକ ଦୂର ଦିଗବଳୟକୁ ଲାଗି ଧୂସର ପାହାଡ଼ ସବୁ ଦେଖାଯାଆନ୍ତି, ଯା'ର ଛାୟାଦେଶରେ ହ୍ରଦ, ମଇଳା ପୋଖରୀ ଆଉ ଗାଆଁମାନେ ଅଛନ୍ତି । ସେଇଠି ମନସୁନ୍ ବେଳେ ନନ୍ଦନାଳ ପୂରି ରହିଥାଏ । ଏଇ ରାସ୍ତାର ବାଆଁପଟକୁ ପାଣିର ସୀମା ବାହାରେ ନଡ଼ିଆ ଆଉ ଆଉସବୁ ଗହଳ ଗଛରେ ଘୋଡ଼େଇ ହୋଇ ରହିଛି ବାନ୍ଦ୍ରା ଦ୍ୱୀପ । ସେଇ ଗଛଗୁଡ଼ିକର ଉପରକୁ ଉଠି ଆସିଥିବା 'ମାଉଣ୍ଟ ମେରୀ'ର ଦୁଇଟି ମୀନାର ବି ଦୂରରୁ ଦେଖାଯାଏ । ସେଇ ଦ୍ୱୀପରେ ପାଲୀ ହିଲ୍, ଯୋଉଠି ଆଶ୍ଚର୍ଯ୍ୟଜନକ ଜୀବନ ଜୀଉଁଥିବା ଚଳଚ୍ଚିତ୍ର ତାରକାମାନେ ରହନ୍ତି, ଯୋଉମାନଙ୍କର ଚକିତ କରୁଥିବା ବ୍ୟକ୍ତିତ୍ୱ ହେତୁ ଦେଶର ଅଧିକାଂଶ ଯୁବକ ଯୁବତୀଙ୍କର ମୁଣ୍ଡରେ ବମ୍ବେକୁ ହିଁ ଜନ୍ନତୁଲ ଫରଦୌସ ଶିଖରତମ ସ୍ୱର୍ଗଭାବରେ ରୂପ ଦେଇଛନ୍ତି ବୋଲି ଧାରଣା ରହିଛି । ଏଇ ଚଳଚ୍ଚିତ୍ର ତାରକା-ମାନଙ୍କର ପିକ୍ଚର ଗେଲେରୀ ପର୍ଯ୍ୟନ୍ତ ପହଞ୍ଚିବା ଲାଗି ଜୀବନପଣ କରିଥିବା ଏଇ

ନବଯୁବକମାନେ, କେହି କହିଦେବ ଯଦି ହୁଏତ ଡାହାଣ ହାତ ବି କାଟି ଦେଇ ଦେଇପାରିବେ।

ଆଉ ଆଗକୁ ଗଲେ ଜୁହୂ ଚୌପାଟୀ, ଯୋଉଠି ଆକର୍ଷକ ନଡ଼ିଆ ଗଛର ବଣ ଅଛି । ସେଠି ଚଉଡ଼ା-ଚଉଡ଼ା ପତ୍ର ଆଉ ଲାଲ୍ ଲାଲ୍ ଫୁଲ ଭର୍ତ୍ତି ଟ୍ରପିକଲ ଗଛଗୁଡ଼ିକର ଛାଇରେ ବେଶ ରୋମାଣ୍ଟିକ ଆଉ କାଳ୍ପନିକ ନାଆଁର ହୋଟେଲ, ବୁଲାବୁଲି କରିବା ଲାଗି ଜାଗା ଆଉ କଟେଜ ସବୁ ଲୁଚି ରହିଛନ୍ତି ।

ବାନ୍ଦ୍ରା ଦ୍ୱୀପରେ ମାଉଣ୍ଟ ମେରୀ ଅଛି— ନୌଜା ଭାନୋରା ଦୋ ମୋନ୍‌ତେ— ପାହାଡ଼ର ପ୍ରଥମ ମରିୟମ୍ । ସାଢ଼େ ତିନି ଶହ ବର୍ଷ ତଳେ ପର୍ତ୍ତୁଗୀଜମାନେ ମରିୟମଙ୍କର ଉପାସନା ଗୃହଟିଏ ତିଆରି କରିଥିଲେ ଆଉ ଗତ ଶତାବ୍ଦୀମାନଙ୍କରେ ବାନ୍ଦ୍ରାର ପର୍ତ୍ତୁଗୀଜ ଦୁର୍ଗାଧିକାରୀ ଆଉ ମହିମର ଇଂରେଜ ସୈନ୍ୟଙ୍କର ଭିତରେ ମରାମରି, ଗୁଳି ବିନିମୟ ବି ହେଉଥିଲା ।

ଏଇ ସୁନ୍ଦର ପାର୍ବତ୍ୟ ଅଞ୍ଚଳର ତିନିପଟେ ସମୁଦ୍ର । କଦଳୀ, ତାଳ, ଖଜୁରୀ ଆଉ ରଙ୍ଗିଆ ବୃକ୍ଷ ଉହାଡ଼ରେ ଲୁଚି ରହିଥିବା ତରଙ୍ଗାୟିତ ରାସ୍ତା ପାଲୀ ହିଲ ପଟକୁ ବଢ଼ି ଯାଇଛି । ଏଇ ବୃକ୍ଷଗୁଡ଼ିକର ଗହନ ଛାୟାରେ କାଠ ଝରକା ଓ ଛପରବାଲା 'ଓଲ୍ଡ ଓ୍ୱର୍ଲ୍ଡ'ର ଦି'ମହଲା ବଙ୍ଗଳା ସବୁ ଅଛି । ପ୍ରାଚୀନ ପର୍ତ୍ତୁଗୀଜ ଗୀର୍ଜା ଜାଗାରେ ଗୋଟାଏ ନୂଆ ଭବ୍ୟ ଚର୍ଚ୍ଚ ତିଆରି ହୋଇଛି । ଆଉ ତା'ର ହତା ଭିତରେ ଥିବା ଷ୍ଟଲ୍‌ଗୁଡ଼ିକରେ ବି ମହମ ତିଆରି କଣ୍ଢେଇ ପୁଅ ଆଉ ଅନ୍ୟ ଜିନିଷ ବିକାଯାଏ । ପ୍ରତିବର୍ଷ ୮ ସେପ୍ଟେମ୍ବର ଦିନ ଏଇଠି ମେଳା ମଉଚ୍ଛବ ହୁଏ । ଗିରଜା ସାମନାରେ ଭର୍ଜିନ ମେରୀଙ୍କର ଗୋଟାଏ ଅତ୍ୟୁଚ୍ଚ ମୂର୍ତ୍ତି ଅଛି । ସମୁଦ୍ରପଟକୁ ପିଠି କରି ବସିଛନ୍ତି । ଦି'ପଟୁ ମୂର୍ତ୍ତିଯାଏଁ ପାହାଚ ଅଛି । ସେଇ ପାହାଚଗୁଡ଼ିକର ଅଲଗା ଅଲଗା ନାଆଁ— ପ୍ରାର୍ଥନା, ଦୁଃଖ, ଶାସ୍ତି, ଆତ୍ମ-ନିୟନ୍ତ୍ରଣ, ଏକାଗ୍ରତା, ଜପ, ଆତ୍ମଶୁଦ୍ଧି, ବଳିଦାନ ଆଉ ସବା ଉପରେ ଶାନ୍ତି । ମରିୟମଙ୍କ ବସିଥିବା ସ୍ଥାନଟି ହାର୍ଦ୍ଦିକ ସନ୍ତୋଷ । ଯାତ୍ରୀ ନିଜ ନିଜର କଷ୍ଟ ଆଉ ପାପ ମନରେ ରଖି ଆଣ୍ଠେଇ ଆଣ୍ଠେଇ ପାହାଚ ଚଢ଼ି ଯାଆନ୍ତି ଆଉ ମରିୟମଙ୍କର ଅଞ୍ଚଳ ଛୁଇଁ ଦୟା ଓ ସାହାଯ୍ୟ ଭିକ୍ଷା କରନ୍ତି; ସେତେବେଳେ ମରିୟମଙ୍କର ସ୍ମିତହସ ଖେଳି ଯାଉଥାଏ । ତା'ପଛକୁ କ୍ଷିତିଜରୁ କ୍ଷିତିଜ ଯାଏଁ ଲମ୍ବି ଯାଇଥିବା ସୁର୍ମାରଙ୍ଗୀ ସାଗରରେ ଢେଉ ଖେଳୁଥାଏ । ଏଇ ସାଗର କୂଳେ କୂଳେ ଅନେକ ମାଇଲ ଗଲେ ଆଉ ଏକ ପ୍ରାର୍ଥନା କେନ୍ଦ୍ର ପଡ଼ିବ । ତାହା ପାଣି ଭିତରେ ଛୋଟିଆ ଦ୍ୱୀପଟିଏ ଭଳି ରହିଛି । ତାହା ହାଜୀ ଅଲୀଙ୍କର ଦରଗାହ ଆଉ ମସଜିଦ ଆଉ ବର୍ଲିଯାଏଁ ଯାଉଥିବା ଚଲାରାସ୍ତାରେ ଜୁଆର ସାଙ୍ଗରେ ବୁଡ଼ୁଥାଏ ଦିଶୁଥାଏ । ଗୁରୁବାର ଦିନ ଏଇଠି କବ୍‌ବାଲୀ ହୁଏ । ହାଜୀ ଅଲୀ ଷ୍ଟପ୍‌ରେ ପିଲାମାନେ ଧୂପକାଠି ଆଉ ଫୁଲ ବିକନ୍ତି ଆଉ ବୁର୍କାପିନ୍ଧା ମାଇପିଙ୍କର ଅସରା ଧାରା ଲମ୍ବିଥାଏ । ରାତିର ଅନ୍ଧକାରରେ ଦରଗାହ ଛୋଟ ସୁନ୍ଦର ଲାଇଟ୍ ହାଉସଟିଏ ଭଳି ଦିଶେ । ହାଜୀ ଅଲୀଠାରୁ ମାତ୍ର କେଇ

ଫର୍ଲଙ୍ଗ ଦୂରକୁ ମହାଲକ୍ଷ୍ମୀ ମନ୍ଦିର । ସେଠି ମଙ୍ଗଳବାର ସଂଧ୍ୟାରେ ନାନାରଙ୍ଗର ଶାଢ଼ୀ ପିନ୍ଧି ପଣତ ସାମନାରେ ପକେଇ, ବେଣୀରେ ରଜନୀଗନ୍ଧା ଫୁଲ ସଜେଇ, ବିଶାଳାକ୍ଷୀ ଶାଳୀନ ଚେହେରାର ଦଳଦଳ ଗୁଜରାଟୀ ସ୍ତ୍ରୀଲୋକ ଆଳତି ପାଇଁ ଆସନ୍ତି ଆଉ ଯେତେବେଳେ ସମୁଦ୍ର ପାଣିରେ ଅଳତା ଖେଳେଇ ସୂର୍ଯ୍ୟ ପାଣିରେ ବୁଡ଼ିଯାଏ ଆଉ ସମୁଦ୍ରର ନୀଳିମା ଓ ଆକାଶର ପାଟଳିମା ଏକାକାର ହୋଇଯାଏ, ସେତେବେଳେ ସେଇ ବାଇଗଣୀ ରଙ୍ଗବୋଳା ଏକାନ୍ତତା ଭିତରେ ମନ୍ଦିରରୁ ଘଣ୍ଟା ଧ୍ୱନି ଲହଡ଼ା ସାଙ୍ଗରେ ଯେମିତି ଭାସି ଭାସି ଯାଏ ଦୂରରୁ ଦୂରକୁ ।

ବୁଧବାର ସଂଧ୍ୟାରେ ମହିମ ଗିର୍ଜାରେ ପାପମୋଚନ ଉପାସନା ହୁଏ, କାରଣ ତାହା ନୋବିନା ଜପର ନିଶ୍ଚିତ ଦିନ ।

ଦିନେ ମୁଁ ସେଇ ବାଟ ଦେଇ ଯାଉ ଯାଉ ଗିର୍‌ଜା ଭିତରକୁ ଚ୍ଲିଗଲି । ସେତେ-ବେଳେ ନୋବିନା ଜପପାଇଁ ଆସୁଥିବା ଭକ୍ତମାନଙ୍କର ଭିଡ଼ ଜମି ନଥିଲା । ହଲ୍ ଭିତରେ ଏଣେ ତେଣେ ଜଣେ ଦୁଇଜଣ ସ୍ତ୍ରୀଲୋକ ବେଞ୍ଚ ଉପରେ ବସିଥିଲେ ବା ଆଣ୍ଠୁମାଡ଼ି ପ୍ରାର୍ଥନା ମୁଦ୍ରାରେ ଥିଲେ । ଚଢ଼େଇବା ଜାଗାରେ ଧଳା ଧଳା ଲିଲି ଫୁଲ ଗଦାଏ ଥିଲା ଆଉ ସୁନେଲୀ ଷ୍ଟାଣ୍ଡମାନଙ୍କର ମହମବତୀ କେତୋଟି ଜଳୁଥିଲା । କେତେ ଅଗଣିତ ହତଭାଗୀଙ୍କର ଅଭିଳାଷା, ନିରାଶା, ଅସହାୟତା, ପଶ୍ଚାତ୍ତାପ ଭାବରେ ଏଇ ମହମବତୀଗୁଡ଼ିକର ଧୂଆଁ ଭାବରେ ସେଇ ମୂର୍ତ୍ତିଟିର ଚରଣସ୍ପର୍ଶ କରୁଥାଏ । ମୁଁ ଭାବିଲି— କଥା କ'ଣ ଯେ ସବୁଠି ମନ୍ଦିର, ତୀର୍ଥସ୍ଥାନ, ଦିରଗାହ, ମଜାର, ଗିର୍ଜା, ଇମାମବାଡ଼ା, ଗୁରୁଦ୍ୱାରା ଓ ଅଗ୍ନିପୂଜନ କ୍ଷେତ୍ରମାନଙ୍କରେ କେବଳ ସ୍ତ୍ରୀଲୋକମାନେ କାନ୍ଦି କାନ୍ଦି ପ୍ରାର୍ଥନା କରିଥା'ନ୍ତି । ସାରା ପୃଥିବୀର ଉପାସନା ଗୃହଗୁଡ଼ିକରେ ଥଣ୍ଡା ଜୀବନହୀନ ପଥର ସବୁ ସତରେ କ'ଣ ଏଇ ସ୍ତ୍ରୀ ଲୋକଙ୍କର ଲୁହରେ ଧୋଇହୋଇ ଯାଆନ୍ତି । ସ୍ତ୍ରୀମାନେ ସବୁବେଳେ ଆପଣା ଆପଣାର ଦେବାଦେବୀଙ୍କର ଚରଣରେ ମୁଣ୍ଡ ନୁଆଁଇ କେବେହେଲେ ଜାଣିବାକୁ ଚ୍ହିଁନାହାନ୍ତି ଯେ ସେ ପାଦ ମାଟି ପଥରର ପାଦ ।

ସ୍ତ୍ରୀମାନେ ଏତେ ଉପାସିକା ପୂଜାରିଣୀ ହେଲେ କେମିତି ? ଏଇ କାରଣରୁ ଯେ ସେମାନେ ଦୁର୍ବଳ ଆଉ ସେମାନଙ୍କ ଲାଗି ଅନ୍ୟର ଆଶ୍ରୟ ଆବଶ୍ୟକ । ଏଇ କାରଣରୁ ଯେ ସେମାନେ ଛୋଟିଆ ଜୀବନରେ ଅନେକ ମଣିଷକୁ ସ୍ନେହ କରନ୍ତି । ବାପ, ଭାଇ, ପତି ପୁତ୍ର, ନାତି ଏମିତି ଅନେକ, ଯୋଉମାନଙ୍କର ସୁରକ୍ଷା ଓ ସୁଖ ସନ୍ତୋଷ ପାଇଁ ସେମାନେ ବଂଚି ରହିଥା'ନ୍ତି । ପତି ବା ପ୍ରେମିକର ପ୍ରେମ-ପ୍ରୀତିର ଜମାନତ କୋଉ ଅଦେଖା ଅଜଣା ଶକ୍ତିକୁ ମାଗନ୍ତି । ଆପଣାର ସନ୍ତାନ-ସନ୍ତତିଙ୍କର ଭବିଷ୍ୟତପାଇଁ ଅନବରତ ଚିନ୍ତା କରୁଥା'ନ୍ତି । ସତରେ ସ୍ତ୍ରୀଲୋକଙ୍କ ପାଇଁ କ'ଣ ଈଶ୍ୱରଙ୍କର ପ୍ରୟୋଜନ ଏତେ ଅଧିକ ! ସ୍ତ୍ରୀମାନେ ଏତେ ଦୁର୍ବଳ ? ତେବେ ସେମାନଙ୍କ ଭିତରେ ଭେଲେଣ୍ଟିନା ବି ତ ଜଣେ, ଯେ ଠିକ୍ ଏତେବେଳେ ଅନ୍ତରୀକ୍ଷ ଯାତ୍ରା କରୁଛି । .... ଆଉ ସ୍ତ୍ରୀ ଦୁର୍ବଳ ବି ?

'ନମନ ମୋର କୃପନ ଭର ଲୀଲେ ସ୍ୱାମୀ ଦେବ ତଜେ ଧଗାମୀ ଆସା'— ସାମନା ବେଂଚରେ ବସି ସେ ମଙ୍ଗଲୋରିୟନ ଝିଅଟି ଆପଣା ପୁଅଟିକୁ କୋଳରୁ ଉତାରି ଦେଇ ପାଖରେ ବସେଇ ନଇଁ ପଡ଼ି ପ୍ରାର୍ଥନା କଲା ।

ସ୍ତ୍ରୀଲୋକର ସାହସ ବି ଦେଖ, ସେମାନେ ସଂସାରର ଜନ୍ମ ଆଉ ଲାଳନପାଳନର ଦାୟିତ୍ୱ ମୁଣ୍ଡେଇବେ । ଯେତେବେଳେ ସେମାନେ ବଧୂ ପାଲଟନ୍ତି, ସେତେବେଳେ ସେମାନଙ୍କୁ ହଜାରେ ବର୍ଷର ଭିତ୍ତିବୋଲି କୁହାଯାଏ । ସେମାନେ ମରଣ ମୁହଁକୁ ଯାଇ ନୂଆ ପ୍ରାଣୀଟିଏ ନେଇଆସନ୍ତି ସଂସାରକୁ । ସେମାନେ କଷ୍ଟ ସହନ୍ତି, ଦରିଦ୍ରତାର ମୁକାବିଲା କରନ୍ତି, ପତିର ବିଶ୍ୱାସଘାତକତାର ସମ୍ମୁଖୀନ ହୁଅନ୍ତି, ସଉତୁଣୀର ଟାହିଟାପରା ସହନ୍ତି; ତଥାପି ବି ଭଲ କଥାକୁ ଆଶା କରିବା ଛାଡ଼ିପାରନ୍ତି ନାଇଁ ।

ସୋସାଇଟିରେ ଚମକୁଥିବା ମେମ ସାହେବମାନେ, ଲକ୍ଷଲକ୍ଷ ଟଙ୍କା ରୋଜଗାର କରୁଥିବା ଚଳଚ୍ଚିତ୍ର ଅଭିନେତ୍ରୀମାନେ, ଅନ୍ତର୍ରାଷ୍ଟ୍ରୀୟ ପ୍ରସିଦ୍ଧିପ୍ରାପ୍ତ ନୃତ୍ୟାଙ୍ଗନା, ଗ୍ଲେମରସ ମଡ଼େଲ, ବିଶ୍ୱବିଦ୍ୟାଳୟର ରିସର୍ଚ୍ଚସ୍କଲର୍, ସରକାରୀ ଉଚ୍ଚପଦାଧିକାରିଣୀ, ଏଆର କଣ୍ଡିସନ୍ ଘରେ ରହୁଥିବା ସମାଜ ସେବିକାମାନେ, ଝୋପଡ଼ ବସ୍ତିରେ ଥାଇ ମଦ୍ୟପ ପତିର ମାଡ଼ ଖାଉଥିବା ମଜୁରିଆ ମାଇକିନାଗୁଡ଼ିକ, ଅଫିସରେ ଛୋଟ ଚାକିରି କରି ବଡ଼ ବଡ଼ ପରିବାର ଚଳଉଥିବା ଝିଅମାନେ, ଚାକଚକ୍ୟଭରା ଫ୍ଲାଟରେ ରହୁଥିବା ଧନିକ ବର୍ଗର ସୁନ୍ଦରୀ ରକ୍ଷିତାମାନେ, କୋଲାବା ରାସ୍ତାରେ ଘୂରିବୁଲୁଥିବା ସୁନ୍ଦରୀ ଆଉ ଫେସନେବୁଲ ବେଶ୍ୟାଗୁଡ଼ିକ, ଧନ୍ଦା କରୁଥିବା ମାଇକିନା, ଦାସୀ ଚାକରାଣୀ ଓ ରାଣୀମାନେ, ନିରୀହ ସରଳ ଓ ସ୍ୱୀଚରିତ୍ରର ଶିକ୍ଷିତା-ଅଶିକ୍ଷିତା ଓ ଭେମ୍ପାୟର, ନାସ୍ତିକ ଓ ଆସ୍ତିକ ଆଦି ଆଦିର ଆପଣା ଆପଣା ସ୍ଥିତିରେ ସମୟ କେମିତି ବିତେ ?

''ଅନ ଅନାମ୍ନ ବାପ ଅନିପୁତ୍ରା ଅସପରିତା କା ସନ୍ତାଚେ ଆମୀନ ।'' ଝିଅଟି ପୁଅଟିକୁ କୋଳେଇ ନେଇ ଛାତିରେ ଜଡ଼େଇ ଧଇଲା ଆଉ କାନ୍ଦୁଥାଏ । ବୋଧହୁଏ ତା'ର ସ୍ୱାମୀ କୋଉ ଗୋଟାଏ ମାଇକିନା ପଛରେ ପଡ଼ି ତାକୁ ଛାଡ଼ି ଦେଇଥାଏ । ହୁଏତ ସେ ବିଧବା ହୋଇଯାଇଥାଏ । ହୋଇପାରେ ତାକୁ ଘରୁ ବାହାର କରି ଦିଆଯାଇଛି । କେଜାଣି ସେ କାହିଁକି ସେମିତି କାନ୍ଦୁଥିଲା !

''ସନ୍ତାମୋରିଯେ ଦେବାଚେ ମାୟେ ଆମୀ ପାପିୟା ବିନତୀ କର ଆମୀନ ।''

ସେ ଉଠି କ୍ରସଚିହ୍ନ ଆଙ୍କିଲା । ସମର୍ପଣ ସ୍ଥଳକୁ ଯାଇ ଆଣ୍ଠୁମାଡ଼ି ନଇଁଲା ଆଉ ପୁଣି ପୁଅକୁ କାଖେଇ ଧୀରେ ଧୀରେ ବାହାରକୁ ଚାଲିଗଲା ।

ମୁଁ ଗ୍ରେସୀ ଖୁଡ଼ୀକୁ ମନେପକେଇଲି । ସେ ବି ହୁଏତ ଏମିତି ବେଂଚରେ ବସି ଏଇଭଳି ପ୍ରାର୍ଥନା କରିଥିବେ ।

ଆଉ ଭର୍ଜିନ୍ ଶୁଣିଲେ ସତରେ ତାଙ୍କର ପ୍ରାର୍ଥନା !

ବା ତାହା କେବଳମାତ୍ର ଏକ ସଂଯୋଗ ଥିଲା ! ଦାର୍ଶନିକ ଗ୍ରେସୀ ଖୁଡ଼ି ପ୍ରସଙ୍ଗରେ

କ'ଣ କହିବା ? ଶଠ ପୂଜକ ଆଉ ନାସ୍ତିକ ପାଖରେ ତ ଭିନେ ଭିନେ ଉତ୍ତର ଅଛି ! ମୁଁ କାହା ପାଖକୁ ସେକଥା ପଗ୍ଚରିବାକୁ ଯିବି ? ଅବ୍ବାଜାନ କୋଉକାଳରୁ ଗଲେଣି, ଯାହାଙ୍କୁ ମୁଁ ନାନାପ୍ରକାର ବିଚିତ୍ର ଓ ଅର୍ଥହୀନ ପ୍ରଶ୍ନ କରୁଥିଲି । ନାସିରକାକା, ଅର୍ଥାତ୍ ନବାବ୍ ସୈୟଦ୍ ଅଲୀ ନାସିର ଖାନ୍ ଏମ୍.ଏ. ଏଲ୍.ଏଲ୍.ବି (ଅଲିଗଡ଼) ବି ଅନେକ ଦିନ ହେଲା ବନ୍ଧୁ ସାଙ୍ଗରେ ମିଶିବାକୁ ଗଲେଣି । ଏଇନେ ବା ମୁଁ ଯାଇ କାହାକୁ ପଗ୍ଚରିବି ଯେ ଜୀବନ କ'ଣ ! ବାସ୍ତବିକ କିଛି ଚମତ୍କାର ଘଟେ ? ଦୁଃଖ, ନିର୍ଧନତା, ଅନ୍ୟାୟ ଆଉ ଅତ୍ୟାଗ୍ଚର ଭରା ଏଇ ଦୁନିଆରେ ବି ଚମତ୍କାର ଘଟିତ ହୋଇଥାଏ !

ଉପାସକମାନେ ଧୀରେ ଧୀରେ ଆସି ବେଂଚମାନଙ୍କରେ ବସିବା ଆରମ୍ଭ କରିଥିଲେ । ମୁଁ ଭାବୁଥିଲି ଏଇନେ ଗ୍ରେସୀ ଖୁଡ଼ୀ କୋଉଠି ଥିବେ; ବୁଡ଼ୀ କାଳକୁ ! କ'ଣ ଏଇ ବୟେସରେ କୋଉଠି ଆୟାଗିରି କରୁଥିବେ ? (କାରଣ ତାଙ୍କ ପାଖରେ ଜୀବନ ବିତେଇବାକୁ ଗୋଟାଏ ସ୍ନେହଭରା ହୃଦୟ ଛଡ଼ା ଆଉ କିଛି ନଥିଲା) କ'ଣ ସେ ଏବେବି ଆସି ଏଇ ବେଞ୍ଚରେ ବସୁଥିବେ ଆଉ ଭର୍ଜିନ୍‌ଙ୍କୁ ସଂବୋଧିତ କରି କହୁଥିବେ !

'ଦେଖ୍ ମା, ମୁଁ ତତେ କଥାଏ କହୁଛି । କାନ ପାତି ଶୁଣ୍ । ତୁ ମୋର ଓ୍ୱିସ୍ ପୂରା କଲୁ । ଆମର ପୁଅପାଇଁ ଘରର ସିକ୍ୟୁରିଟି ଦେଲୁ । ମୋର ସାହେବ ଓ୍ୱାର୍ଲ୍ଡର ଗ୍ରେଟେଷ୍ଟ ଫାଇନେଷ୍ଟ ମେନ୍ ଥିଲା । ହେଲେ ସେ ମୋତେ ଏ ଦୁନିଆରେ ଏକାକୀ ଛାଡ଼ି ଗ୍ଚଲିଗଲା । ମୁଁ ପୁଣି ତୋ ପାଖକୁ ଆସିଛି । କହ ମୁଁ ଏଇନେ କ'ଣ କରିବି ? ଏକଦମ୍ ଜଲଦି କହ, ନହେଲେ ତମର ଆମର ଦୋସ୍ତି ତୁଟିଲା ବୋଲି ଜାଣ ।'...

ଆଉ ମୁଁ ଘଡ଼ିକ ଲାଗି ମନେକଲି, ଯେମିତି ସତକୁ ସତ ଗ୍ରେସୀ ଖୁଡ଼ୀ ମୋ ପାଖରେ କୋଉଠି ବସି ଉପାସନା କରୁଛି । ମୁଁ ବୁଲି ଦେଖିଲି; ମାତ୍ର ସେ ମୋର ଭ୍ରମ ଥିଲା କେବଳ ।

ଗ୍ରେସୀ ଖୁଡ଼ୀ ବଦଳରେ ତା'ଭଳି ମୋଟା ମୋଟା ଓଠବାଲୀ ଗୋଆବାସିନୀ ମାଇପିଟିଏ ବାଇଗଣୀ ରଙ୍ଗ ଆଉ ସବୁଜ ଧଡ଼ିବାଲା ଶାଢ଼ୀ ପିନ୍ଧି, ଜୁଡ଼ାରେ ଫୁଲଗଜରା ନାଇ, କହୁଣୀ ଯାଏଁ ଲମ୍ବା ହାତବାଲା ବ୍ଲାଉଜ ପିନ୍ଧି, କଳାରେଶମର ଜାଲୀବାଲା ଓଢଣୀରେ ମୁଣ୍ଡ ଘୋଡ଼େଇ ମାଳା ଗଡ଼ଉଥିଲା ।

ମୁଁ ଗ୍ଚରିପଟକୁ ଅନେଇଲି । ଗୀର୍ଜା ସେତେବେଳକୁ ଶ୍ରଦ୍ଧାଳୁ ଭକ୍ତଙ୍କର ସମାବେଶ ହେତୁ ଭରି ଯାଇଥିଲା । ମୁଁ ଚୁପଗ୍ଚପ୍ ଉଠି ବାହାରକୁ ଗ୍ଚଲିଆସିଲି ।

ରାସ୍ତାରେ ଟ୍ରାଫିକ୍ ଭିଡ଼ ଥିଲା । ତେବେ ବିଚିତ୍ର ନୀରବତା ଖେଳି ରହିଥିଲା । ସାମନା କ୍ରୀକରେ ନୀଳାଭ ଅନ୍ଧକାର ଘନେଇ ଆସୁଥିଲା । ଆଉ ସାମୁଦ୍ରିକ ପବନରେ ସତରେ ଯେମିତି ଦୂର ଅତୀତର ହଜିଲା ସ୍ୱର ଗୁଂଜରିତ ହୋଇ ଉଠୁଥିଲା । ମୁଁ ଦୂରସ୍ଥ ଦ୍ୱୀପ ଉପରକୁ ନଇଁ ଆସିଥିବା ନୀରବତାକୁ ଅନେଇ ରହିଥିବାବେଳେ ମରାଠୀ କବିତାଟିଏ ମନେପଡ଼ିଲା....

ନୀଳ ଆକାଶ ଶ୍ୟାମଳ
ଏକାନ୍ତ ତାରା ରାଧା
ସେ ସମଗ୍ର କାଳରେ
ହଜିଗଲା ଅଭିଳାଷ
ହୃଦୟର ।
ବିସ୍ତୃତ ଧରିତ୍ରୀ ଗୋବିନ୍ଦ
ଧାନକ୍ଷେତ ରାଧା
ଆଦିରୁ ଅନ୍ତଯାଏ ସ୍ୱାମୀ ଅନୁରକ୍ତା...
ସେ ସବୁକାଳରେ
ମଧୁର ସ୍ୱରବନ୍ତ ।
ବହିଯାଉଥିବା ତଟିନୀ କୃଷ୍ଣ
ତଟରେ ନମ୍ର ଅରଣ୍ୟ ରାଧା
ଯେ, କୌଣସି ପ୍ରଶ୍ନ କରେନାଇଁ
ସମର୍ପଣ ଓ ତ୍ୟାଗର ପ୍ରତିମୂର୍ତ୍ତି
ସେ ଯେ କୌଣସି କାଳର
ସ୍ଥାୟୀ ସୁଖ ।

କୃଷ୍ଣାୟିତ ସାଗର ଉପରେ ଆଲୋକମାଳା ଝଲମଲ ହେଲା । ମୁଁ ଫାଟକ ପାଖରେ ଠିଆ ହୋଇ ଭିଡ଼ ପାରି କରି ଫୁଟପାଥ୍‌କୁ ଆସିଲି । ସଡ଼କ ପାର କରିଯିବା ପାଇଁ ଭୟଙ୍କର ନାଲିରଙ୍ଗର ଫାୟାର ଇଂଜିନ୍‌ଟି ଚାଲିଯାଉ ବୋଲି ଅପେକ୍ଷା କଲି । ସେ ଟନ୍ ଟନ୍ ଅନବରତ ଘଣ୍ଟି ବଜେଇ କ୍ଷିପ୍ର ଗତିରେ ବାନ୍ଦ୍ରା ପଟକୁ ଚାଲିଯାଉଥିଲା ।

# କଲନ୍ଦର

ଗାଜୀପୁର ସରକାରୀ ହାଇସ୍କୁଲର ଫୁଟବଲ ଟିମ୍ କଉ ଗୋଟାଏ ଅନ୍ୟ ସ୍କୁଲ ଟିମ୍ ସାଙ୍ଗରେ ଫୁଟବଲ୍ ଖେଳିବାକୁ ଯାଇଥିଲା । ସେଠି ଖେଳ ଆରମ୍ଭ ହେବା ଆଗରୁ ଛୋଟିଆ କଥାଟିଏ ପାଇଁ ପିଲାଙ୍କ ଭିତରେ ବଚସା ହୋଇ ହାତିହାତି ଯାଏଁ ଗଲା । ଯେହେତୁ ଖେଳର କୋଉ ଗୋଟାଏ ପଏଣ୍ଟ ଉପରେ ଝଗଡ଼ା ଆରମ୍ଭ ହେଲା, ତାମଶା ଦେଖାଳୀ ଆଉ ଷ୍ଟାଫ୍ ବି ମାତିଗଲେ । ଯୋଉ ପିଲାମାନେ କଥା ତୁଟେଇ ଦବାକୁ ମଧ୍ୟସ୍ଥି ସାଜିଲେ, ସେମାନେ ବି ଆହତ ହେଲେ । ସେଥିରେ ମୋର ନବମ ଶ୍ରେଣୀରେ ପଢୁଥିବା ଭାଇ ବି ଥିଲା । ତା ମୁଣ୍ଡ ଫାଟିଲା ଆଉ ନାକରୁ ବି ରକ୍ତ ବାହାରିଲା । ତା'ପରେ ଗଣ୍ଡଗୋଳ ସାରା ପଡ଼ିଆରେ ଖେଳେଇ ହୋଇଗଲା: ଧାଁ ଧଉଡ଼ ଆରମ୍ଭ ହୋଇଗଲା । ଆଉ ଯୋଉ ପିଲାମାନେ ଆହତ ହୋଇଥିଲେ, ସେଇ ଧାଁଦଉଡ଼ ଭିତରେ କେହି ହେଲେ ସେମାନଙ୍କ କଥା ବୁଝିଲେ ନାହିଁ ।

ସେଇ ପଛୁଆ ଜିଲ୍ଲାରେ ଟେଲିଫୋନ୍ ଦୁର୍ଲଭ । ସାରା ସହରରେ କେବଳ ମାତ୍ର ଛଅଟି ଗାଡ଼ି ଥିଲା । ଆମ୍ବୁଲେନ୍ସର ତ ପ୍ରଶ୍ନ ବି ଉଠୁନାହିଁ । ସେଦିନ ରବିବାର । ଜନହୀନ ଦିନ । ପବନରେ ହଳଦିଆ ହଳଦିଆ ପାଚିଲା ପତର ଉଡୁଥିଲା । ଆଉ ମୁଁ ଚୁପ୍‌ଚାପ୍ ପଛପଟ ଶୂନ୍ୟ ବାରଣ୍ଡାରେ ବସି କଣ୍ଢେଇ ଖେଳରେ ବୁଡ଼ି ରହିଥିଲି । ସେତିକିବେଳକୁ ଖଟ୍ ଖଟ୍ କରି ଇକ୍କାଗାଡ଼ିଟିଏ ଆସି ସାମନା ଚଉତରା ପାଖରେ ରହିଲା ଆଉ ସତର ଅଠର ବର୍ଷର ଅପରିଚିତ ପିଲାଟିଏ ଭାଇକୁ ହାତ ଭରା ଦେଇ ଗାଡ଼ିରୁ ଓହ୍ଲେଇ ଆଣିଲା । ଭାଇ ମୁଣ୍ଡରୁ ରକ୍ତ ବାହାରୁଥିବା ଦେଖି ମୁଁ ଡରିମରି ଗୋଟାଏ ଖମ୍ବ ପଛରେ ଲୁଚିଗଲି । ସାରା ଘରେ ହଇଚଇ ଖେଳିଗଲା । ମା ବିକଳ ହେଇ ପଦାକୁ ବାହାରି ଆସିଲେ । ଅପରିଚିତ ପିଲାଟି ବେଶ୍ ସହଜ ଭାବରେ ମାଆଙ୍କୁ କହିଲା... ''ବ୍ୟସ୍ତ ହୁଅନ୍ତୁ ନାଇଁ...' ଆଉ ମୋତେ ଦେଖି କହିଲା— ''ମୁନ୍ନୀ, ଯା' ପାଣି ଗିଲାସେ ନେଇ ଆସିବୁ ଭାଇ ଲାଗି... ।'' ସେତିକିରେ ଅନେକ ଚାକର ପାଣି ଜଗ ଆଉ ଗିଲାସ ନେଇ ଭାଇର ଚାରିପଟେ ଘେରିଗଲେ । ସେଇ ପିଲାଟି ସେମାନଙ୍କୁ ପଚାରିଲା...''ସାହବ ଅଛନ୍ତି ?'' ''ସାହବ ବାହାରକୁ ଯାଇଛନ୍ତି ।'' ଜଣେ ଉତ୍ତର ଦେଲା । ଆଉ ଜଣେ କହିଲା— ''ନା' ନା'... ସେଠି ଅଫିସ ଘରେ ବସିଛନ୍ତି ।'' ପିଲାଟି ଆଉ ନ ଅଟକି ସିଧାସଳଖ ବାରଣ୍ଡା ପାର କରି ଏଣେତେଣେ ଦେଖି ବାପାଙ୍କର ଅଫିସ ପର୍ଯ୍ୟନ୍ତ ପହଞ୍ଚିଗଲା । ବାପା ଭିତରୁ ଦରଜା ବନ୍ଦ କରି କୌଣସି ଏକ ମହତ୍ତ୍ୱପୂର୍ଣ୍ଣ ମୋକଦ୍ଦମାର ଫଇସଲା ଲେଖାରେ ମଗ୍ନ ଥିଲେ । ସେ ଦୁଆରେ ଖଟଖଟ କରି ଭିତରକୁ ଚାଲିଗଲା । କହିଲା—''ସାର୍, ଆପଣଙ୍କ ପୁଅ ଆମ ସ୍କୁଲକୁ ମେଚ୍ ଖେଳିବାକୁ ଯାଇଥିଲେ, ସେଠି ସାମାନ୍ୟ ଆଘାତ ଲାଗିଛି । ଖେଳ ଖେଳରେ ଗୋଳମାଳ ଆରମ୍ଭ ହୋଇଗଲା । ମୋ ନାଆଁ ଇକବାଲ୍ ବଖ୍ତ । ମୁଁ ମୁନସୀ ଖୁଶବଖ୍ତ ରାୟ ସକ୍ସେନାଙ୍କର

ପୁଅ, ଯେ ସିଟି କୋର୍ଟର ମୁକ୍ତାର । ଆପଣଙ୍କୁ ମୋର ଅନୁରୋଧ, ଆମ ସ୍କୁଲ ବନ୍ଦ କରିବାର ଆଦେଶ ଦେବେନାଇଁ ବା ପିଲାଙ୍କଠାରୁ ଜୋରିମାନା ଆଦାୟ କରିବେ ନାଇଁ । କାରଣ ଆମର ପରୀକ୍ଷା ପାଖେଇ ଆସିଲାଣି । ତା'ପରେ ଆମ ସ୍କୁଲର ପିଲାମାନେ ଭାରି ଗରିବ ।''

ବାପା ଆଖି ଟେକି ତାକୁ ଅନେଇଲେ ଆଉ ତା'ର ଆତ୍ମବିଶ୍ୱାସ ଓ ଯୁକ୍ତିଯୁକ୍ତ ଭାଷଣ ଶୁଣି ଖୁସି ହେଲେ । ପ୍ରଭାବିତ ହେଲେ । ସେ ତାକୁ ସ୍ନେହରେ ପାଖରେ ବସେଇଲେ ।

ଏମିତି ଭାବରେ ଇକବଲ ମିଆଁଙ୍କର ଆମ ଘରକୁ ଯିବାଆସିବା ଆରମ୍ଭ ହୋଇଗଲା । ଭାଇ ସାଙ୍ଗରେ ବେଶ୍ ବନ୍ଧୁତା ବି ଜମିଲା, ତେବେ ସେ ବେଶୀ ଭାଗ ଘରର ବେଗମଙ୍କ ସାଙ୍ଗରେ ବସୁଥିଲେ: ଘରକରଣା ନେଇ ପରାମର୍ଶ ଦେଉଥିଲେ । ବଜାର ଦର ଆଉ ଦୁନିଆ ଖବର ସାଙ୍ଗକୁ ମଜାଳିଆ କଥା ଶୁଣଉଥିଲେ । ଯେତେବେଳେ ସେ ଦ୍ୱିତୀୟ ଥର ଆମ ଘରକୁ ଆସିଲେ, ମୁଁ ବାହାରୁ ଡାକ ପକେଇଲି— 'ଭାଇ, ଇକବଲ ମିଆଁ ଆସିଛନ୍ତି ।' ସେଥିରେ ସେ ରାଗିଯାଇ ମୋ ସାମନାକୁ ଝପଟି ଆସିଲେ, ଆଉ ମୋତେ ଧମକେଇଲା ଭଳି କହିଲେ, 'ଦେଖ ମୁନ୍ନା, ମୁଁ ତୋଠୁଁ ବଡ଼ । ମୋତେ ଇକବଲ ଭାଇ ବୋଲି ଡାକିବୁ ।..... କ'ଣ କହିବୁ ?'

'ଇକବଲ ଭାଇ ।' ମୁଁ ଡରି ଡରି କହିଲି ।

ଇକବଲ ଭାଇ ମୋତେ ମୁନ୍ନା ବୋଲି ଡାକିବାକୁ ଲାଗିଲେ । ତାଙ୍କର ଏ ଦିଆନିଆ ଲାଗି ମୋତେ ଭାରି ଚିଡ଼ି ମାଡୁଥିଲା; ତେବେ ସେ ମୋତେ ମୋର ଠିକ୍ ନାଆଁରେ ଡାକନ୍ତୁ ବୋଲି କହିବାକୁ ସାହସ କରିପାରୁନଥିଲି । ସେତେବେଳକୁ ସେ ଆମ ଘର ଲାଗି 'ଇକବଲ ମିଆଁ' 'ଇକବଲ ଭାଇ' 'ଇକବଲ ଭୈୟା' ପାଲଟି ସାରିଥିଲେ । ପଛ ଲନ୍‌ରେ ବଡ଼ କୃଷ୍ଣଚୂଡ଼ା ଗଛଟି ଆମ ଲାଗି ବେଶ ମହତ୍ତ୍ୱପୂର୍ଣ୍ଣ ଥିଲା । ତା' ଛାଇରେ ଖଟ ପକେଇ ଆମର ଫୁରସତ୍ ବେଳେ ଆସର ଜମୁଥିଲା । ଡ୍ରାଇଭର ସାହେବ ତା'ର ଅଧ୍ୟକ୍ଷତା କରୁଥିଲେ ଆଉ ନିଜେ ଇକବଲ ଭାଇ ଉପାଧ୍ୟକ୍ଷ ବନି ଯାଇଥିଲେ । ତା'ର ଅନ୍ୟ ସଦସ୍ୟ ଥିଲେ— ଉସ୍ତାଦ ୟୁସୁଫ୍ ଖାନ୍, ଜମୁନା ପାଣ୍ଡେ, ମହାରାଜ ଚପରାଶି, ଅବ୍‌ଦୁଲ ବୈରୀ ଭାଇ । ମୁଁ ଅଲୋଡ଼ା ଥିଲେ ବି ଆଖ-ପାଖରେ ଘୂରି ବୁଲୁଥିଲି । ଉସ୍ତାଦ ୟୁସୁଫ ଖାନ୍‌ଙ୍କର କୋଠରିଟିରେ ସମ୍ବନ୍ଧ ଭିତର ଘର ସାଙ୍ଗରେ ନଥିଲା । ତା'ର କବାଟ ସେଇ ଲନ୍ ପଟକୁ ଖୋଲୁଥାଏ । ଉସ୍ତାଦ ପୁରୁଣା ସ୍କୁଲର ବେଶ ପ୍ରବୀଣ ଗାୟକ ଥିଲେ । ଅତୀତରେ ତାଙ୍କର ରାମପୁର ଦରବାର ସାଙ୍ଗରେ ଘନିଷ୍ଠ ସମ୍ବନ୍ଧ ରହିଥିଲା ଆଉ ସେ ଏବେ ନବଲ କିଶୋର ପ୍ରେସର ପୁରୁଣା ଉପନ୍ୟାସଗୁଡ଼ିକ ପଢୁଥିଲେ । ବୁଢ଼ା ମଣିଷ, ଗୋଜିଆ ନିଶ ରଖିଥିଲେ, ଆଖିରେ ସୁରମା ଲଗଉଥିଲେ । ଦି'ଓଳିର ଖାଇବା, ଜଳଖିଆ, ସ୍ତ୍ର' ବେଶ ସଜାଡ଼ି ତାଙ୍କ କୋଠରିକୁ ପହଞ୍ଚେଇ ଦିଆହେଉଥିଲା । ଆଉ ସେ ଅପରାହ୍ଣ ବେଳକୁ ଆସି ବେଶ ଔପଚ୍ଚାରିକ ଢଙ୍ଗରେ ମାଆଙ୍କୁ ଭୈରବୀ, ଭୀମପଲାସୀ ଶିଖେଇ ବସୁଥିଲେ । ମା ତାଙ୍କ ଆଗରେ ସିତାର ଧରି

ବସି ଟୁଂଟାଂ କରୁଥିଲେ । ଇକବଲ ଭାଇ ଉସ୍ତାଦଙ୍କର ପକ୍କା ବନ୍ଧୁ ପାଲଟି ଯାଉଥିଲେ । 'ଅରାଇଶୋ ମହଫିଲ', 'ତିଲସ୍ମେ ହୋଶରୁବା', 'ଅସରାରେ ଲଣ୍ଡନ୍' ସେଇଭଳି ଉପନ୍ୟାସଗୁଡ଼ିକର ଲେଣଦେଣ ସେମାନଙ୍କର ଚାଲିଥାଏ । ସେ ବର୍ଷ ଇକବଲ ଭାଇଙ୍କର ଦଶମ ଶ୍ରେଣୀ ପରୀକ୍ଷା ଦେବା କଥା ।

ଦିନେ ମୋତେ ଗଛ ଡାଳରେ ଚଢ଼ି ବସିଥିବା ଦେଖି ସେ ମାଆଙ୍କୁ କହିଲେ— 'ମୁନ୍ନୀ ପଢ଼ାପଢ଼ି ଆଦୌ କରୁନି, ଯେତେବେଳେ ଦେଖ ଡେଇଁ ବୁଲୁଚି ।'

'ଏଠି ସେମିତି କୋଉ ସ୍କୁଲ ବି ତ ନାହିଁ ! କୋଉଠି ହେଲେ ପଢ଼ିବ ?' ମାଆ ଉତ୍ତର ଦେଲେ । କିଛି ଦିନ ତଳେ ମୋର ଜଣେ ପିଉସୀ ପୁଅ ଭାଇ ମୋତେ ଗଣିତ ବତେଇବେ ବୋଲି ସବୁମନ୍ତେ ଚେଷ୍ଟା କରି ଫେଲ୍ ମାରିଥିଲେ । ସେତେବେଳେ ଇକବଲ ଭାଇ ଚଟାପଟ୍ ଭଲେଣ୍ଟିୟର ବନିଗଲେ ।

'ପରୀକ୍ଷା ପରେ ମୁଁ ୟାକୁ ପଢ଼େଇ ଦେବି ।'

ତା'ପରେ ରବିବାର ଦିନ ଇକବଲ ଭାଇ ମୋର ଇଣ୍ଟରଭ୍ୟୁ ନେଲେ । 'ଇଂରାଜୀ ତ ୟାକୁ ଯେମିତି ସେମିତି ଆସୁଛି । ଉର୍ଦ୍ଦୂ ପୂରା ଗୋଲ ।' ସେ ମାଆଙ୍କୁ ସେଇ ରିପୋର୍ଟ ଦେଲେ ଓ ତେଣିକି ରୋଜ ଆସିବା ଆରମ୍ଭ କରିଦେଲେ । ତାଙ୍କର ବେତନ ଦଶଟଙ୍କା ବୋଲି ଧାର୍ଯ୍ୟ ହୋଇଗଲା । ପ୍ରତିଦିନ ସନ୍ଧ୍ୟା ଚାରିଟାରେ ସେ ଫାଟକ ପାଖରେ ପହଞ୍ଚିଗଲେ ମୋ ଛାତି ଧଡ଼ ଧଡ଼ ହେଲା । ଇକବଲ ଭାଇଙ୍କ ହୁକୁମ ହେଲା— ସେ ସେଇ ବଗିଚାରେ ବସି ମୋତେ ପଢ଼େଇବେ । ମୋ ମୁଣ୍ଡ, ଯୋଉଠି ଖାଲି ଚସୁ ଭରିଛି, ବାହାର ପବନ ବାଜି ଥଣ୍ଡା ହେବ । ତେଣୁ ଭିତର ବଗିଚାରେ ମୋର ଛୋଟ ବେତ ଚଉକି ଆଉ ପଲାଶ ତଳକୁ କରି ଇକବଲ ଭାଇଙ୍କର ଚଉକି ମେଜ ପଡ଼ିଲା । ସେଇ ଗଛ ତଳେ । ଯୋଉଦିନ ମୋର ସଦ୍‌ବୁଦ୍ଧି ଜାଗରିତ ହେଉଥିଲା, ସେଦିନ ମାଳିଠାରୁ ବଡ଼ ଝାଡୁ ମାଗିଆଣି ବେଶ ଭଲ କରି ଗଛ ମୂଳ ଓଳେଇ ପକଉଥିଲି । ସେମିତି ପଢ଼ାଠାରୁ ମୋତେ ସେ ଝାଡୁଦବା କାମଟି ବେଶ ଭଲ ଲାଗୁଥିଲା ।

ଇକବଲ ଭାଇ ହିସାବକିତାବ କରି ମୁଣ୍ଡ ଖପେଇ ଆଦେଶ ଦିଅନ୍ତି ସିଲଟ ଆଣିବାକୁ । ସିଲଟ ଉପରେ ସୁନ୍ଦର ସୁନ୍ଦର ଅକ୍ଷରରେ ଲେଖି ଦିଅନ୍ତି—

"କଲମ ଗୋୟଦ କେ ମନ ଶାହେ-ଜହାନମ
କଲମ କଶ ରା ବଦୌଲତ ମୀ ରସାନମ୍ ।"

(କଲମ କହୁଛି ଯେ ମୁଁ ଦୁନିଆର ସମ୍ରାଟ । ଯେଉଁ ବ୍ୟକ୍ତି କଲମ ସାଙ୍ଗରେ ତା'ର ସମ୍ବନ୍ଧ ଯୋଡ଼ିନିଏ, ତାକୁ ମୁଁ ନେଇ ସୌଭାଗ୍ୟର ଶିଖର ଦେଶରେ ପହଞ୍ଚାଇ ଦିଏ ।)

ମୁଁ ବଙ୍କାତେଢ଼ା ଅକ୍ଷରରେ ଏଇ ଦି'ଧାଡ଼ି ଅନେକଥର ଲେଖେ । ଏପରିକି ମୋର ଆଙ୍ଗୁଠି ଦରଜ କରିବସେ ଆଉ ମୁଁ ପ୍ରାର୍ଥନା କରେ— 'ଈଶ୍ୱର କରନ୍ତୁ କୁଆଡ଼େ ପଳେଇ ଯାଆନ୍ତୁ ଇକବଲ ଭାଇ.... ଈଶ୍ୱର କରନ୍ତୁ..... ।'

ଥରେ ମୁଁ ପାଠ କହିବା ଛାଡ଼ି ଏକଗୋଡ଼ିଆ ଚଉକି ଉପରେ ଠିଆ ହେଇ ନାଚୁଥାଏ। ଇକବଲ ଭାଇଙ୍କ ନଜର ପଡ଼ିଲାରୁ ହଠାତ୍ ସେ ରାଗିଗଲେ । ମୋର କାନ ଏମିତି ମୋଡ଼ିଦେଲେ ଯେ ମୋ ମୁହଁ ନାଲ ପଡ଼ିଗଲା । ମୁଁ ଏଡ଼େ ପାଟିରେ କାନ୍ଦିବା ଆରମ୍ଭ କରିଦେଲି । ତେବେ ସେଇଦିନରୁ ମୁଁ ଦୁଷ୍ଟାମି କରିବା ପୂରା ଛାଡ଼ିଦେଲି ।

ଇକବଲ ଭାଇ ଅତି ବେଶୀରେ ପାଞ୍ଚ ଛଅ ମାସ ପଢ଼େଇଥିବେ; ବାପାଙ୍କ ବଦଳି ଗାଜିପୁରରୁ ଇଟାବାକୁ ହେଲା ।

ତାଙ୍କର ଚିଠି, ତା'ପରେ ଦୁଇ ତିନି ବର୍ଷ ଯାଏ ମାଆଙ୍କ ନାଆଁରେ କେବେ କେମିତି ଆସେ— 'ଏଇନେ ମୁଁ ଏଫ୍.ଏ. କରିବା କଥା ଭାବୁନାଇଁ । ହାଇସ୍କୁଲରେ ଥାର୍ଡ଼ ଡିଭିଜନ ମିଳିଲା ବୋଲି ମନ ଆଦୌ ଭଲନାଇଁ । ଏଇନେ ମୁଁ ବି ମୁନୀମ, ପେଶକାର, କାନୁନ୍‌ଗୋ କି ଜପ୍ତକାରୀ ଅମିନ ଭାବରେ ଜୀବନ ଗଢ଼ିବି । ବେଶୀ ହେଲେ ବାପାଙ୍କ ଭଳି ମୁକ୍ତାର ମୁନସୀ ବନିଯିବି । ତେଣୁ ବେଳେ ବେଳେ ଆଇନ ପରୀକ୍ଷା ଦେଇଦେବି ବୋଲି ଭାବୁଛି । ଆଉ ଏଇଠି ରହି କ'ଣ ବା କରିବି ?'' ଧୀରେ ଧୀରେ ତାଙ୍କର ଚିଠି ଆସିବା ବି ବନ୍ଦ ହୋଇଗଲା ।

ମୁଁ ଆଇ.ଟି. କଲେଜ ଲକ୍ଷ୍ନୌରେ ଏଫ.ଏ. ଫାଷ୍ଟ ଇୟରରେ ପଢୁଥାଏ । ସେଦିନ ଘରେ ଆସି କେତେଜଣ ଅତିଥି ପହଞ୍ଚିଥାଆନ୍ତି । ସମସ୍ତେ ଡ୍ରଇଂରୁମ୍‌ରେ ଥାଆନ୍ତି, ସେତେବେଳେ ବାହାର ବାରଣ୍ଡାରୁ ଶୁଣାଗଲା—

'ଅଛନ୍ତି କିଏ ?'

'କିଏ ?' ମା କୋଠରିରୁ ପଚ୍ଚରିଲେ ।

'ମୁଁ ଇକବଲ ବଖ୍ତ !'

ମା ବେଶ୍ ଖୁସି ହେଲେ । ଭିତରକୁ ଡାକିଲେ । ଭିତରେ ବେଶ ଅଭିଜାତ ଅତିଥି ଥିଲେ । ଇକବଲ ଭାଇ ଭିତରକୁ ଆସି ଏଣେତେଣେ ଅନେଇ ଦେଖି ହୁଏତ ସଙ୍କୋଚବୋଧ କଲେ, ମାତ୍ର ପରକ୍ଷଣରେ ବେଶ ଗମ୍ଭୀର ଭାବରେ ଆସି ମାଆଙ୍କ ପାଖରେ ବସିଗଲେ । ଯେତେବେଳେ ତାଙ୍କର ମୋ ଉପରେ ଆଖି ପଡ଼ିଲା, ସେତେବେଳେ ଖୁସିରେ ଉଚ୍ଛୁଳି ପଡ଼ି କହି ପକେଇଲେ—. 'ଆରେ ମୁନ୍ନା, ତୁ କେତ୍ତୁଟିଏ ହୋଇଗଲୁଣି !'

ମୁଁ ନୂଆ ନୂଆ କଲେଜ ଯାଉଥାଏ, ମୋ ଭିତରେ ମୁଁ 'କଲେଜ ଷ୍ଟୁଡ଼େଣ୍ଟ' ବୋଲିବା ଭାବଟି ଜାଗରିତ ହୋଇସାରିଥାଏ । ଇକବଲ ଭାଇ ସବୁ ଲୋକଙ୍କ ସାମନାରେ ଯେତେବେଳେ ମୋତେ 'ଆରେ ମୁନ୍ନା', କହି ଡାକିଦେଲେ ମୋତେ କେମିତି ଯେ ଆଦୌ ଭଲ ଲାଗିଲା ନାଇଁ ।

ଇକବଲ ଭାଇ ମଇଳା ପାଇଜାମା ଆଉ ଦଦରା ଶେରୱାନୀଟିଏ ପିନ୍ଧିଥିଲେ, ଯୋଉଥିରୁ ତାଙ୍କର ଆର୍ଥିକ ଅବସ୍ଥା ଆଦୌ ସ୍ୱଚ୍ଛଳ ନୁହଁ ବୋଲି ସ୍ପଷ୍ଟ ବୁଝି ହେଉଥିଲା ।

ସଂକ୍ଷେପରେ କହିଲେ ଯେ ସେ କାନପୁରରେ ଚାକିରି ପାଇଯାଇଛନ୍ତି । ଘରୋଇ ଛାତ୍ର ଭାବରେ ଏଫ୍.ଏ.ସିଟି କରିସାରିଛନ୍ତି । ତା'ପରେ ସେ ବାପାଙ୍କ କୋଠରିକୁ ଯାଇ ଅନେକ ବେଳଯାଏ ବସିଲେ ।

ପୁଣି କୁଆଡ଼େ ଅନ୍ତର୍ଦ୍ଧାନ ହୋଇଗଲେ ।

ଦଶବର୍ଷ ପରେ, ମୋର ଲଣ୍ଡନରେ ପହଞ୍ଚି ଛଅ/ସାତ ଦିନ ମାତ୍ର ହୋଇଥିବ; ମୁଁ ବି.ବି.ସିର ଉର୍ଦ୍ଦୁ ସେକ୍ସନରେ ବସିଥାଏ, ସେତେବେଳେ ଶୁଭିଲା— 'ଆରେ ଭାଇ ସକ୍ସେନା ସାହେବ ଆସିଲେଣି ନା ନାହିଁ !'

'ଆସିଲେଣି' କହି କହି ସେ ସକ୍ସେନାର ପରଦା ଉଠେଇ ଭିତରକୁ ଗଲେ । ଦଦରା ପୁରୁଣା ରେନ୍‌କୋର୍ଟ ପିନ୍ଧି ହାତରେ ତାଡ଼ାଏ ଖବର କାଗଜ ଆଉ ମୋଟା ପୋର୍ଟଫୋଲିଓଟିଏ ଧରି ମୋ ସାମନା ଦେଇ ଗୋଟାଏ ଟେବୁଲ ପାଖକୁ ଯାଇ ପଛକୁ ଲେଉଟି ମୋତେ ଅନେଇ ଚାହିଁଲେ ଅନେକବେଳ । ତା'ପରେ ହଠାତ୍ ଡାକିଲେ 'ଆରେ.... ମୁନ୍ନୀ'.... ଆଉ ତାଙ୍କର କଣ୍ଠସ୍ୱର ଆର୍ଦ୍ର ହୋଇଉଠିଲା ।

ସେ ଆସି ମୋ ପାଖରେ ବସିଲେ । ବାପାଙ୍କର ଭଲମନ୍ଦ ପଚାରିଲେ । 'ବାପାଙ୍କର ଯିବା ଅନେକ ବର୍ଷ ହେଲାଣି ଇକବାଲ ଭାଇ !' ମୁଁ କହିବାରୁ ସେ କଇଁ କଇଁ ହୋଇ କାନ୍ଦିବାକୁ ଲାଗିଲେ ।

ଉର୍ଦ୍ଦୁ ସେକସନ୍‌ର ଲୋକେ ତାଙ୍କୁ କାନ୍ଦୁଥିବା ଦେଖି ଥରେ ଥରେ ଅନେଇ ଦେଇ ତାଙ୍କ କାମରେ ମନଦେଲେ ।

ସେଇ ବର୍ଷ କାନପୁରର ଚାକିରି ଗଲା । ତେଣିକି ଏଣେତେଣେ ଘୂରି ବୁଲିଲେ । ତା'ରି ଭିତରେ ତାଙ୍କର ବାପା ମାଆଙ୍କର ଦେହାନ୍ତ ହେଲା । ସେ ଗୋଟିଏ ବୋଲି ପୁଅ । ଆଗରୁ କୋଉ ଗାଆଁରେ ଛୋଟ ଭଉଣୀର ବାହାଘର ହୋଇସାରିଥିଲା । ସ୍ୱାଧୀନତା ପରେ ଭାଗ୍ୟ ପରଖିବା ଲାଗି ଇଂଲଣ୍ଡ, କାନାଡ଼ା, ଆମେରିକା ଯିବା ହାଉଆରେ ସିଏ ବି ଦିନେ ଗାଜିପୁର ଗଲେ । ନିଜ ପୈତୃକ ଘରଟିକୁ ବିକିଦେଇ ସେଇ ପଇସାରେ ଜାହାଜରେ ଟିକଟ କରି ଲଣ୍ଡନ ଚାଲି ଆସିଲେ । ଗଲା ଚାରିବର୍ଷ ହେଲା ସେ ଏଇ ଲଣ୍ଡନରେ ଅଛନ୍ତି ଆଉ ଚପ୍ପୁ କୁଟୁଛନ୍ତି ।

କାହାରିକୁ ହେଲେ ତାଙ୍କ ସମ୍ବନ୍ଧରେ କିମ୍ବା ସେ କ'ଣ କରନ୍ତି ଜଣା ନଥିଲା । ମୋତେ ବି ସେ ଥରେ ମୋଟାମୋଟି ଭାବରେ 'ରୀଜେଣ୍ଟ ଷ୍ଟ୍ରୀଟ୍ ପୋଲିଟେକନିକ୍‌ରେ ଇକନମିକ୍ସ ପଢୁଛି' ବୋଲି କହିଥିଲେ । ଯୋଉ ସଂସ୍ଥାଟିର ସେ ନାଆଁ ନେଲେ, ତାର ବାସ୍ତବିକତା ସହିତ ମୋର ପରିଚୟ ଥିଲା । ଯେତେବେଳେ ଲୋକେ ସଂକୋଚରେ କହନ୍ତି 'ମୁଁ ରୀଜେଣ୍ଟ ଷ୍ଟ୍ରୀଟ୍ ପୋଲିଟେକନିକ୍ସ'ରେ ଜର୍ଣ୍ଣାଲିଜମ୍, ଇକନମିକ୍ସ ବା ମୂର୍ତ୍ତି କଳା କି ଫଟୋଗ୍ରାଫି ଅଥବା ଆଉ ସେମିତି କିଛି ପଢୁଛି, ସେତେବେଳେ ପ୍ରଶ୍ନ ଓ ସନ୍ଦେହ ଦୁଇ କଥା ପାଇଁ କୌଣସି ଅବକାଶ ରହୁ ନଥିଲା ।

ତେବେ ମୁଁ ଅତି ଅଳ୍ପ ଦିନରେ ଜାଣିଗଲି, ଇକବଲ ଭାଇଙ୍କର ସ୍ଥାନ ଭାରତୀୟ ଓ ପାକିସ୍ତାନୀ ଛାତ୍ର ସମାଜରେ ବେଶ ମହତ୍ତ୍ୱପୂର୍ଣ୍ଣ । କୌଣସି ହଙ୍ଗାମା, ଉତ୍ସବ, ଶୋଭାଯାତ୍ରା, ଝଗଡ଼ା, ଦଙ୍ଗା, ନିର୍ବାଚନ ପର୍ବ ପାଳନ ତାଙ୍କ ବିନା ପୂରା ହୋଇପାରିବ ନାହିଁ । ଚିତ୍ର ପ୍ରଦର୍ଶନୀ ବେଳେ ସେ ହଲ ସଜଡ଼ାସଜଡ଼ି କରୁଥିବେ; ନାଚଗୀତର କାର୍ଯ୍ୟକ୍ରମ ବେଳେ ମାଇକ ଲଗଉଥିବେ; ନାଟକ ବେଳକୁ ରିହର୍ସଲ ପାଇଁ ଲୋକଙ୍କ ପଛରେ ଲାଗିଥିବେ ଆଉ ଭୋଜିଭାତ ବେଳେ ଡାଇନିଂ ହଲ୍‌ରେ ତତ୍ପର ଥିବେ । ବେଳେବେଳେ ସେ ଦୃଶ୍ୟରୁ ଓହରି ଯାଉଥିଲେ ବି । ସେତେବେଳେ ସୂଚନା ମିଳୁଥିବ— ସେ ପେଟିକୋଟ ଲେନ୍‌ର ପେଣ୍ଠ ଠେଇଁ ଲୋକଙ୍କୁ ତାଙ୍କର ଭବିଷ୍ୟବାଣୀ ଶୁଣଉଥିଲେ ତ କେତେବେଳେ ଗ୍ଲାସ୍‌ଗୋ ବଜାରରେ ଭାରତୀୟ ଚେରମୂଳି ଔଷଧ ବିକୁଥିଲେ । ଥରେ ସେ ସହରର କୋଉ ଗୋଟାଏ ଫେସନେବୁଲ ଇଲାକାର ସମ୍ଭ୍ରାନ୍ତ କୋଠାରେ ରହୁଛନ୍ତି ବୋଲି ଖବର ମିଳିଥିଲା । ତାଙ୍କର କେତେବେଳେ ବଢ଼ିଆରୁ ବଢ଼ିଆ ରେସ୍ତୋରାଁରେ ଦେଖା ମିଳିବ ତ କେତେବେଳେ ମୂଲିଆଙ୍କ କେଣ୍ଟିନ୍‌ରେ । ଇକବଲ ଭାଇ କବିତା ବି ଲେଖୁଥିଲେ । ଆଷ୍ଟ୍ରେଲିଆ ଆଉ ଏମ୍.ସି.ସି.ର ନିର୍ଦ୍ଧାରିତ ମେଚ୍ଚ ବେଳେ ଲେଖିଥିଲେ—

ସବୁ ସଜ ବିକେଟ୍‌ରେ କହୁଛି 'ହମଟନ'
ବୋଲର ଭାରି ଶକ୍ତ କହୁଛି 'ହଟନ'
କୋଉ ସିଂହ ଆସିଲା ଯେ କହୁଛି 'ରନ୍' ।

ଇକବଲ ଭାଇଙ୍କର ସଂଗୀତ, ଜ୍ୟୋତିଷ, ପାମିଷ୍ଟ୍ରୀ, ହୋମିଓପାଥି, ପାର୍ସି ଚିକିତ୍ସା, ଆୟୁର୍ବେଦ, ଆଦିରୁ ଆରମ୍ଭ କରି ପୋଲ୍‌ଟ୍ରି ଫାର୍ମିଙ୍ଗ, ଗୃଷ, ବଗିଗ୍ଧକାମ ଯାଏଁ ସବୁକଥା ମାଲୁମ ଥିଲା । ଆଉ ସେ ଆଲୋଡ଼ା ଭାବରେ ବି ବନ୍ଧୁଗୋଷ୍ଠୀରେ ସମ୍ମିଳିତ ହୋଇ ଯାଉଥିଲେ । ଆମେ ଦୁଇତିନି ଜଣ ମିଶି ଫିଲ୍ମ ସୋସାଇଟିଟିଏ ଗଢ଼ିଥିଲୁ । ତା ଜରିଆରେ ବମ୍ବେରୁ ଫିଲ୍ମ ମଗେଇ ନେଇ ଭାରତୀୟ ଆଉ ପାକିସ୍ତାନୀ ଦର୍ଶକମାନଙ୍କୁ ଦେଖାଉଥିଲୁଁ । ସେଦିନ ଇକବଲ ଭାଇ ବରଯାତ୍ରୀର ବରଭଳି ପୁର୍ରିଫାର୍ରି । ଟିକଟ ବିକୁଥିବେ— ଅତିଥିମାନଙ୍କୁ ଆଣି ବସଉଥିବେ । ଫିଲ୍ମ ଆରମ୍ଭ ହେବା ପୂର୍ବରୁ ଷ୍ଟେଜ ଉପରକୁ ଯାଇ ମିସ୍ ମେହତାବ୍ ବା ମିସ୍ ନସିମ୍ ବା ମିସ୍ ନିମ୍ମୀକୁ ଫୁଲତୋଡ଼ା ଦଉଥିବେ । ସେତେବେଳେ ସେ ସ୍ଥିର କରିନେଇଥିଲେ ଯେ ବମ୍ବେ ଯାଇ ସେକାଳର ଗୋଟାଏ ଶ୍ରେଷ୍ଠତମ ଫିଲ୍ମ ନିର୍ମାଣ କରିବେ, ଯା'ର କାହାଣୀ ସଂଳାପ ଓ ଗୀତ ସେ ଲେଖିବେ । ନିଜେ ଡାଇରେକ୍ଟ କରିବା ସାଙ୍ଗକୁ ହିରୋର ବଡ଼ଭାଇ ବା ହିରୋଇନର ବାପା, ସେମିତି କିଛି ଭୂମିକାଟିଏ ବି କରିବେ ଆଉ ସାମୂହିକ ରୂପରେ ସାରା ଫିଲ୍ମ ଇଣ୍ଡଷ୍ଟ୍ରି ଉପରେ ରୋଲର ଚଳେଇ ଦେବେ ।

ଇକବାଲ ଭାଇ ମଦ ଛୁଉଁ ନଥିଲେ ଆଉ ମଙ୍ଗଳବାର ଦିନ ମାଂସ ବି ଖାଉ ନଥିଲେ । ଦିନେ ତାଙ୍କ ସାଙ୍ଗରେ ମୋର ରାସ୍ତାରେ ଭେଟ ହେଲା । ହାତରେ ଗୋଟାଏ

ବଡ଼ ଫୁଲତୋଡ଼ା ଧରିଥିଲେ ଆଉ ବେଶ ତରବରରେ ଚ୍ଲିଥିଲେ । ମୋତେ ଦେଖି କହିଲେ, "ଆରେ ଆ ମୋ ସାଙ୍ଗରେ, ଗୋଟାଏ ବନ୍ଧୁକୁ ଦେଖିବା ଲାଗି ଡାକ୍ତରଖାନା ଯାଉଛି ।" ମୁଁ ତାଙ୍କ ସାଙ୍ଗରେ ଗଲି ।

ଡାକ୍ତରଖାନାରେ ଜଣେ ଇସ୍ଲାମୀ ଦେଶର ରାଜଦୂତଙ୍କର ପତ୍ନୀ ପୀଡ଼ିତ ଥିଲେ । ଇକବଲ ଭାଇ ଭିତରେ ପହଞ୍ଚି ଫୁଲତୋଡ଼ାଟି ବଢ଼େଇ ଦେଲେ । ତାଙ୍କୁ ବେଶ ଆଦରରେ ଭଲମନ୍ଦ ପଚ୍ଚରିଲେ । ସେତେବେଳେ ରାଜଦୂତଙ୍କର ଝିଅ ବି ଭିତରକୁ ଆସିଲା । ତାଙ୍କ ସାଙ୍ଗରେ ଅତ୍ୟନ୍ତ ଉତ୍ସାହରେ କଥା ହେଲା । ମୁଁ ଆଶ୍ଚର୍ଯ୍ୟ ହେଇ ଅନେଇ ଥାଏଁ ।

ବାହାରକୁ ଆସି କହିଲେ— "ଏମାନେ ସବୁ ଆମର ବନ୍ଧୁ । ବେଶ ଭଲଲୋକ ବିଚ୍ଚରାମାନେ ।"

"ରାଜକନ୍ୟାଙ୍କ ସାଙ୍ଗରେ ଆପଣଙ୍କର ଭେଟ କେମିତି ହେଲା ?"

"ଭାରି ଲମ୍ବ କାହାଣୀ, ପୁଣି କେବେ ଶୁଣେଇବି ।"

ଏ ଝିଅ ଭାରି ବଦମିଜାଜର ଥିଲା । ୟୁନିଭରସିଟିରେ ପଢୁଥିଲା । ସୀମା ବାହାର ଏଣ୍ଟି ଇଣ୍ଡିୟନ ଭାବରେ ତାର ଖ୍ୟାତି ଥିଲା । ସେତେବେଳେ ବି ସେ ସେଇ ଡାକ୍ତରଖାନା କୋଠରି ଭିତରେ କୋଉ ଗୋଟାଏ ଅପ୍ରାସଙ୍ଗିକ ରାଜନୈତିକ କଥା ପକେଇ ସାରିଥାଏ ।

"ଭାଇ, ଯଦି ଭାରତବର୍ଷକୁ ଗାଳିଦେଇ ତା'ର ମନ ଥଣ୍ଡା ହଉଛି..." ଇକବଲ ଭାଇ ପାହୁଚ ଓହ୍ଲେଇ ଆସୁଁ ଆସୁଁ କହିଲେ... "ସେଥିରେ ମୋର କୋଉ ହାନି ହଉଛି । ତାକୁ ସେଥିରୁ ଶାନ୍ତି ମିଳୁଛି ତ ?"

ତା'ର କିଛି ଦିନ ପରେ ତାଙ୍କ ସାଙ୍ଗରେ ଅଣ୍ଡର ଗ୍ରାଉଣ୍ଡରେ ଦେଖାହେଲା । ସାଙ୍ଗରେ ସେଇ ଝିଅ ଆଉ ତା'ର କଜିନ୍ ବି ଥିଲେ । ଝିଅଟି ମୋତେ କହିଲା— "ଆମେ ଗୋଟାଏ ମଜଲିସକୁ ଯାଉଛୁ । ଆପଣ ବି ଆମ ସାଙ୍ଗରେ ଚ୍ଲନ୍ତୁ ନା !"

'ମୁଁ ତ ଯାଇପାରିବି ନାଇଁ । ଥିଏଟରର ଟିକଟ କିଣି ନେଇଛି ।" ମୁଁ କ୍ଷମା ମାଗିନେଲି ।

ଇକବଲ ଭାଇ ମୋତେ ବେଶ ଦୁଃଖରେ ଅନେଇଲେ । 'ମୋହର୍ରମର ସାତ ତାରିଖ ଦିନ ଥିଏଟର ଯାଉଛୁ ?'

ମୁଁ ନିଜକୁ ନିଜେ ଲଜ୍ଜିତ ମନେକଲି । କହିଲି, "ମୁଁ ମନେ କରି ପାରିଲି ନାଇଁ ।'

'ଆପଣ ଶିୟା ନା ସୁନ୍ନୀ ?' ଅନ୍ୟ ଝିଅଟି ପ୍ରଶ୍ନ କଲା ।

'ମୁଁ କାଦୟାନୀ !' ମୁଁ ଉତ୍ତର ଦେଲି ।

'କାଦୟାନୀ' ? ସେ ମୌନ ହୋଇଗଲା । କିଛି ସମୟ ପରେ ରାଜଦୂତଙ୍କ ଝିଅ କହିଲା— 'ଇକବଲ ସାହବ ତ ସାଧୁ ମଣିଷ । ଆଜିକାଲି ଶିୟାଙ୍କ ଭିତରେ ଧର୍ମ ପାଇଁ ଏତେ ଦରଦ କୋଉଠି ଅଛି !'

ତା'ରି ଭିତରେ ଟ୍ରେନ୍ ଆସିଗଲା ଆଉ ସେ ତିନିହେଁ ଓହ୍ଲେଇ ଗଲେ ।

ତା'ପରଦିନ ଇକବଲ ଭାଇ ସାଙ୍ଗରେ ଦେଖାହେଲା ବି.ବି.ସି ରେ । ମୁଁ ପଚ୍ଚରିଲି, 'ଇକବଲ୍ ଭାଇ, ଆପଣ ଏମିତି ଫ୍ରଡ୍ ବି ଆରମ୍ଭ କରିଦେଲେଣି ? ଏ ଝିଅଙ୍କ ପାଖରେ ନିଜକୁ ମୁସଲମାନ ବନେଇ ନେଇଛନ୍ତି ? ଖାଲି ମୁସଲମାନ ନୁହଁ, ଶିୟା ବି ।''

ଉତ୍ତର ମିଳିଲା, ''ଦେଖ ମୁନ୍ନୀ, ଏ ଦୁନିଆଁରେ ଏଇନେ ଭେଦଭାବ ଏତେ ଅଧିକ ଯେ ସମସ୍ତେ ସମସ୍ତଙ୍କର ଜୀବନ ନବାକୁ ବସିଛନ୍ତି । ମୋର ସେ ଝିଅଟି ସାଙ୍ଗରେ ଯେତେବେଳେ ଦେଖାହେଲା, ସେତେବେଳେ ସେ ମୋର ଏଇ ନାଆଁଲାଗି ମୋତେ ମୁସଲମାନ ବୋଲି ଭାବିନେଲା । ମୋ ଆଗରେ ହିନ୍ଦୁ ଆଉ ଭାରତ ବିରୋଧରେ ଅନେକ କିଛି ବକିଗଲା । ତା'ପରେ ଯଦି ତାକୁ ମୁଁ କହିଦେଇ ଥାଆନ୍ତି ଯେ ମୁଁ ହିନ୍ଦୁ, ତା'ହେଲେ ସେ କେତେ ଲଜ୍ଜିତ ହୋଇ ନଥାଆନ୍ତା ! ସେଥିରେ ମୋର ବା କ୍ଷତି କ'ଣ ? ଆମ ପରିବାରରେ କୋଉ ଅନାଦି କାଳରୁ ଫାରସୀ ନାଆଁ ରଖାଯାଏ । ସେଥିରେ ତ କାଇଁ ହିନ୍ଦୁଧର୍ମ ଉପରକୁ କିଛି ଆଞ୍ଚ ଆସୁନି ? ମୁଁ ନିଜକୁ ମୁସଲମାନ କହିଦେଲେ ପୃଥିବୀ ପ୍ରଳୟ ତ ହବ ନାଇଁ ! କହ ! ଆରେ ବାଃ ମୁନ୍ନୀ... ଏତେ ବୁଦ୍ଧିମତୀ ପାଲଟିଛୁ... ହେଲେ ମୁଣ୍ଡରେ ଯୋଉ ଗୋବରକୁ ସେଇ ଗୋବର... !''

କିଛି ଦିନ ତଳେ ଗୋଟେ ହେଣ୍ଡବେଗ୍ କିଣି ଜାହିଦା ଘରେ ଛାଡ଼ି ଦେଇ ଆସିଥିଲି । ଯାଉ ଯାଉ ମନେପଡ଼ିଲାରୁ ନେଇଆସିବାକୁ ମନେକଲି । ବେଗ୍‌ଟି ଜାହିଦାର ଡ୍ରେସିଂ ଟେବୁଲ ଉପରେ ଥୁଆ ହୋଇଥିଲା । ସେ ଅନ୍ୟ କୋଠରିରେ କ'ଣ ଜିନିଷ ସଜାଡୁଥିଲା । ମୁଁ ତଳୁ ଡାକଦେଇ ବେଗ୍‌ଟି ନେଇଯାଉଛି ବୋଲି ଜଣେଇ ଦେଲି । 'ହଉ'.... ଭିତରୁ ସେ ଜବାବ ଦେଲା ଆଉ ମୁଁ ଚ୍ଚଲିଆସିଲି ।

ଅଷ୍ଟ୍ରେଲିୟନ୍ ଛାତ୍ରଙ୍କ ସେଇଠି ଇକବଲ ଭାଇ ହଲ ମଝିରେ ଠିଆ ହେଇ ଅଷ୍ଟ୍ରେଲିୟା ଆଉ ଭାରତର ମୈତ୍ରୀ ସଂବନ୍ଧ ପ୍ରସଙ୍ଗରେ ପ୍ରଗଲ୍ଭ ଭାଷଣ ଦେଉଥିଲେ ।

ସେଇଠି ମୁଁ ଅନେକ ପୁଅଝିଅଙ୍କ ଭିଡ଼ ଜମିଥିବା ପାଖ କୋଠରିକୁ ଗଲି । ଚ୍ଚରି ପାଞ୍ଚ ଜଣ ଓ୍ବେଟର ସେଇଠି ଚ୍ଚ' କରି ସମସ୍ତଙ୍କୁ ବାଣ୍ଟିବାରେ ବ୍ୟସ୍ତ ଥିଲେ । ମୁଁ ନୂଆ ହେଣ୍ଡବେଗ୍‌ଟିକୁ ସେଇଠି ଗୋଟାଏ ଝରକା ପାଖରେ ରଖିଦେଲି । ଚ୍ଚ' ଖାଇ ହଲକୁ ଚ୍ଚଲି ଆସିଲି । ଗଲାବେଳେ ମୋର ହେଣ୍ଡବେଗ୍ କଥା ଖିଆଲ ହେଲା । ପୁଣି ଉଠେଇ ଆଣି ଇକବଲ ଭାଇଙ୍କୁ ଧରେଇ ଦେଲି । ବୋଧହୁଏ ତା'ର ଚେନ୍ ଖୋଲି ଯାଇଥିଲା । ସେ ବନ୍ଦ କରୁଁ କରୁଁ କହିଲେ... ''ଏତେ ନୋଟ୍ !'' ଅନ୍ୟମନସ୍କ ଭାବରେ ମୁଁ ତାହା ଶୁଣି ପାରିଲି ନାହିଁ । ଆଉ ଏଣୁତେଣୁ କଥାରେ ହଜିଗଲି । ଷ୍ଟେସନରେ ଇକବଲ ଭାଇ ବେଗ୍‌ଟି ମୋତେ ପୁଣି ଧରେଇ ଦେଲା । ଘରେ ପହଞ୍ଚି ଦେଖିଲି ବାହାରେ ଜାହିଦାର କାର୍ ଠିଆ ହୋଇଛି ଆଉ ଦୁଇଜଣ ସ୍ୱାମୀସ୍ତ୍ରୀ ବେଶ୍ ଘାବରେଇଲା ଭଳି ଲେଣ୍ଡଲେଡି ମିସେସ୍

ବିଙ୍ଗଫିଲ୍‌ଡ୍‌ଙ୍କୁ କ'ଣ ପଗ୍ଭରୁଛନ୍ତି । ଜାହିଦା ମୋତେ ଦେଖି ଥମଥମ ହୋଇଗଲା । ପାଟି ତା'ର ଖନି ମାରୁଥାଏ... 'ସେ ସେ ବେଗ୍... ବେଗ୍... ।'

"ହଁ, ହଁ ମୋ ପାଖରେ ଅଛି । କ'ଣ ହେଲା ?"

'ମୁଁ ତା'ଭିତରେ ପୂରା ପାଞ୍ଚଶ ପାଉଣ୍ଡ ନୋଟ୍ ପୂରେଇ ଦେଇଥିଲି । ତୁ ଗଲା ପରେ ମନେପଡ଼ିଲା ଆଉ ତୋ'ର ଭୁଲା ସ୍ୱଭାବ ମନେକରି ବାଟରେ କୋଉଠି ବେଗ୍‌ଟି ଛାଡ଼ିଛୁଡ଼ି ଦେଉ ତ କଥା ସଇଲା ବୋଲି ଘାବରେଇ ଗଲି । ଈଶ୍ୱର ବଡ଼ଲୋକ !"

ତା'ପରଦିନ ମୁଁ ବି.ବି.ସିରେ ଇକବଲ ଭାଇକୁ ଭେଟିଲାରୁ ଏଇ ଗ୍ରହଚଲ୍ୟକର ଘଟଣାଟି ଶୁଣେଇଲି । ସେ ବେଶ୍ ଶାନ୍ତ ଭାବରେ କହିଲେ, "ମୁଁ ତ ପହିଲାରୁ ବେଗରେ ନୋଟ୍ ଥିବା ଦେଖିଛି ।"

"ସେତେବେଳେ ଆପଣ ମୋତେ କହିଲେ ନାହିଁ !"

"କହିଛି, ଆଉ ତୁ ଶୁଣିନୁ !"

"ଆପଣ ଏଇଆ ଭାବିଲେ ନାହିଁ ଯେ ଏତେ ଟଙ୍କା ମୋ ପାଖକୁ କୁଆଡୁ ଆସିବ ? ଯା'କୁ ନେଇ ଦରମେଲା ବେଗରେ ମୁଁ ଖାମଖିଆଲୀ ଢଙ୍ଗରେ ଘୂରୁଥିବି !"

"ମୁଁ ଭାବିଲି କୋଉଠୁ ଆସିଥିବ । ପଗ୍ଭରିବା କ'ଣ ଦରକାର !"

"ଦି'ଘଣ୍ଟା ପାଇଁ ଝରକା ପାଖରେ ବେଗଟି ସେମିତି ଖୋଲାରେ ଥିଲା, ଗ୍ଭେରି ହୋଇଯାଇଥିଲେ କ'ଣ ମୁହଁ ଦେଖେଇ ଥା'ନ୍ତି... ହେ ଭଗବାନ୍ !"

"ଦେଖ ମୁନ୍ନା, ଘଟଣାକୁ କେହିହେଲେ ଅଘଟଣ କରିଦେଇ ପାରିବ ନାହିଁ । ତୋ ସଖୀ ଭାଗ୍ୟରେ ଥିଲା ସେ ଟଂକା, ତେଣୁ ତାକୁ ଠିକଠାକ୍ ମିଳିଗଲା । ଏଇନେ ତୁ ଆଉ ଚିନ୍ତା କରୁଛୁ କ'ଣ ? କହ, ଅଚ୍ଛମ୍ମା ବାବତରେ କ'ଣ କଥା ହେଲା ?"

ଅଚ୍ଛମ୍ମା କୋସୋକୁଟୀ ଭାରି ଦୁଃଖୀ ଝିଅଟିଏ । ଅନେକ ଦିନରୁ ଗ୍ଭକିରି ଆଉ ସାଧାରଣ ଶସ୍ତା କୋଠରିଟିଏ ଖୋଜୁଥିଲା । ସେଇ ନିକଟରେ ବାରଣ୍ଡାକୁ ଲାଗି ମିସେସ୍ ବିଙ୍ଗଫିଲ୍ଡଙ୍କର କୋଠରିଟିଏ ଖାଲି ହୋଇଥାଏ, ଯା'ର ପ୍ରତି ସପ୍ତାହକୁ ଭଡ଼ା କେବଳ ଅଢ଼େଇ ପାଉଣ୍ଡ । ମିସେସ୍ ବିଙ୍ଗ-ଫିଲ୍‌ଡ୍ ତାଙ୍କ ଘରେ ଏଣୁତେଣୁ ଗ୍ଭଲୁ ଲୋକଙ୍କୁ ରଖନ୍ତି ନାହିଁ । ସେଇ କଥା ଉପରେ ଜୋର ଦିଅନ୍ତି ବି । ଭଲ ପରିବାର ଆଉ ସଂପନ୍ନ ଶ୍ରେଣୀର ଲୋକଙ୍କୁ ହିଁ ସେ ଘରେ ରଖିବାକୁ ରାଜି ହୁଅନ୍ତି । ତାଙ୍କର ସ୍ୱର୍ଗୀୟ ପତି କଲୋନିୟଲ୍ ସର୍ଭିସରେ ଥିଲେ ଆଉ ଶ୍ରୀମତୀ ବିଙ୍ଗ୍‌ଫିଲ୍ଡ ବର୍ଷ ବର୍ଷ ଧରି କଲୋମ୍ବୋରେ 'ମେମ୍ ସାହବ' ମର୍ଯ୍ୟାଦାରେ ଜୀବନ ବିତେଇଥିଲେ । ତାଙ୍କ ଶ୍ୱଶୁର ନାଇଟ୍ ଥିଲେ । ଆଦି ଆଦି । ପତିଙ୍କର ଦେହାନ୍ତ ଓ ଇଂରେଜ ଶାସନର ଅବସାନ ପରେ ସେ ଆପଣା ଦେଶକୁ ଫେରି ଆସିଲେ ଓ ତାଙ୍କୁ ଲେଣ୍ଡଲେଡି ହେବାକୁ ହେଲା । ମୁଁ ସିଢ଼ି ଚଢ଼ି ଉପରକୁ ଗଲା ଆସିଲାବେଳେ ସେ ମୋତେ ପ୍ରାୟ ବାଟରେ ଅଟକେଇ ନିଜର ବିତିଲା ଭଲ ଦିନଗୁଡ଼ିକର କାହାଣୀ ଶୁଣାନ୍ତି ।

ଦିନେ ସେ ମୋତେ ବେଶ୍ ଉଦାସୀ କଣ୍ଠରେ ତାଙ୍କର ଗୋପନ କଥାଟିଏ ଶୁଣେଇଲେ— "କଥାଏ କହିବି, ଏତେ ଭଲ ଭଲ ଜେଣ୍ଟଲମେନ୍ ତମର ବନ୍ଧୁ... ସେମାନଙ୍କ ଭିତରୁ କେହି ଜଣଙ୍କ ସାଙ୍ଗରେ ତମେ ମୋର ବାହାଘର କରେଇଦିଅ ।"

ରାତିରେ ମୁଁ ଯେତେବେଳେ ସେଇ ବାରଣ୍ଡା ଲାଗି କୋଠରିଟି ସଂବନ୍ଧରେ କହିଲି, ସେତେବେଳେ କେଜାଣି ସେ କେମିତି ଭଲ ମୁଡ୍‌ରେ ଥିଲେ । ମୋତେ ଅଜ୍ଞାତ କୋସୋକୁଟୀ ସଂବନ୍ଧରେ କୌଣସି କଥା ପଗ୍ଭରିଲେ ନାଇଁ— ସେ କ'ଣ କରେ, କ'ଣ ନାଇଁ, ଭଡ଼ା ଦେଇପାରିବ କି ନାହିଁ ଆଦି । ଆଉ ଦୁଇ ତିନିଦିନ ପରେ ଅଜ୍ଞାତ ଆସିଗଲା ।

ଗ୍ଭରିତାଲାରେ ମୋର ଫ୍ଲାଟ୍ ଥିଲା । ଦି'ତାଲାରେ ଆଉମାନଙ୍କ ଛଡ଼ା ଟେଲିଭିଜନ ଅଭିନେତ୍ରୀ ଏଡ୍‌ବୀନା କାରଲାଇଲ ରହୁଥିଲା । ତା'ସଂବନ୍ଧରେ ମିସେସ୍ ବିଙ୍ଗଫିଲଡ୍ ମୋତେ ବେଳେବେଳେ କହନ୍ତି— "ମୁଁ ଯାକୁ କେବେହେଲେ ଘର ଦିଅନ୍ତି ନାଇଁ ମାଇଁ ଡିୟର୍ ! ତେବେ ଏ ଭାରୀ ଖାନଦାନୀ ଝିଅ । ଜୀବନ ତା'ର ଟିକିଏ ଲାଇନରୁ ଖସି ଯାଇଛି । ମୋର ତା ସାଙ୍ଗରେ ପରିଚୟ ଅତି ସାଧାରଣ । ବାସ୍ ଗଲା ଆସିଲାବେଳେ କେତେବେଳେ ଆମନା-ସାମନା ହେଲେ ସେ ମୁରୁକି ହସି ହାଲୋ କହିଦିଏ ।" ମିସେସ୍ ବିଙ୍ଗଫିଲ୍ଡ ମୋତେ ସୂଚନା ଦେଇଥିଲେ, ଯେ ସେ ତା'ର କୋଠରିଟି ଭିତରେ ସାରାଦିନ ଏକଲା ବସି ମଦ ପିଉଥାଏ । ସେ ତା'ର ପତିକୁ ଭାରି ଭଲ ପାଉଥିଲା, ହେଲେ ସେ ଯାକୁ ଛାଡ଼ପତ୍ର ଦେଇ ଦେଇଛି । ଆଉ ସେଇଦିନରୁ ବିଗ୍ଭରୀର ଏଇ ଅବସ୍ଥା ।

ଦିନେ ରାତି ଦୁଇଟାରେ କୋଳାହଳ ଶୁଣି ମୋର ନିଦ ଭାଙ୍ଗିଗଲା । ସେତିକିବେଳେ କିଏ କବାଟ ବାଡ଼େଇଲା । ମୁଁ ଦରଜା ଖୋଲି ଦେଖିଲାବେଳକୁ ଗୋଟାଏ ପୁଲିସ କନେଷ୍ଟବଳ ଠିଆ ହୋଇଛି ଆଉ ତା' ପଛକୁ ମିସେସ୍ ବିଙ୍ଗଫିଲ୍‌ଡ । ମିସେସ ବିଙ୍ଗଫିଲ୍ଡ ପାଗଳଙ୍କ ଭଳି ଏଣୁତେଣୁ ବକୁ ଥାଆନ୍ତି । ଯେମିତି ତାଙ୍କର ଚେତା ନଥିଲା... କହୁଥା'ନ୍ତି "ହେ ଭଗବାନ୍, କ'ଣ ହେଲା... ଏଡବୀନା ତମ ବାଥରୁମ୍ ଝରକାରୁ ତଳକୁ ଡେଇଁପଡ଼ି ଆତ୍ମହତ୍ୟା କରିଛି ।"

'ମୋ ବାଥରୁମ ଝରକାରୁ ?'

'ହଁ, ବିଗ୍ଭରୀ ଏଡବୀନାକୁ ସବୁଠାରୁ ଉଚ୍ଚ ଝରକା ଏଇଆ ମିଳିଲା ।'

କନେଷ୍ଟବଲ୍ ବାଥରୁମ୍ ଭିତରକୁ ଗଲା । ଝରକାର ଦୁଇଟିଯାକ କବାଟ ମେଲା ଥିଲା । ଝରକା ତଳେ ଥୁଆ ଟବ୍ ପାଖରେ ଏଡବୀନାର ସ୍ଲିପର ଥିଲା । ବାଥରୁମ୍‌ର କବାଟ ଲେଣ୍ଡିଙ୍ଗ ପଟକୁ ଖୋଲୁଥିଲା । ଆଉ ମିସ୍ ଏଡ୍‌ବୀନା କାରଲାଇଲ ବେଶ ଆରାମରେ ସେଇଥିରେ ପଶି ଡେଇଁପଡ଼ିଥିଲା । ମୋ ମନ ଭିତରେ ସକାଳେ ଗ୍ଭଞ୍ଚଲ୍ୟ ଖେଳଉଥିବା ଖବରକାଗଜମାନଙ୍କର ହେଡ୍‌ଲାଇନ୍‌ଗୁଡ଼ିକ ନାଚି ଉଠିଲେ । ରିପୋର୍ଟର ଆସିବେ । ମୋର ମଧ୍ୟ ଇଣ୍ଟରଭ୍ୟୁ ନେବେ । ଝରକା ଆଉ ଟବ୍ ର ଫଟୋ ନେବେ । ଭଗବାନ୍ ଜାଣନ୍ତି

କ'ଣ କ'ଣ ହେବ । ତଳୁ ସେତେବେଳେ ନାନା ସ୍ୱର ଭିତରେ ଶୁଣାଗଲା, "ଆରେ ବଂଚିଛି... ବଂଚିଛି... !"

ମୁଁ ନଇଁପଡ଼ି ତଳକୁ ଗ୍ଡ଼ିହିଁଲି । ଏତକ୍ଷଣକୁ ଆମ୍ବୁଲେନ୍ସରେ ଶୁଏଇ ସାରିଥିଲେ ।

'ଜୀଇଁଛି ?' କିଛିଟା ନିରାଶ ସ୍ୱରରେ ମିସେସ୍ ବିଙ୍ଗଫିଲ୍ଡ ପଗ୍ଡ଼ରିଲେ ଆଉ କନେଷ୍ଟବଲ ସାଙ୍ଗରେ କ୍ଷିପ୍ରଗତିରେ ତଳକୁ ଓହ୍ଲେଇ ଗଲେ ।

ସକାଳେ ଏ ଘଟଣାଟି ମୁଁ ବି.ବି.ସି କେଣ୍ଟିନ୍‌ରେ ଲୋକଙ୍କୁ ଶୁଣେଇଲି । ସେତିକିବେଳେ ଇକବଲ ଭାଇ ଆସିଲେ । ପୂରା କଥା ଶୁଣି ପଗ୍ଡ଼ରିଲେ "କୋଉ ଡାକ୍ତରଖାନାରେ ଅଛି ?" ମୁଁ ବତେଇ ଦେଲି । ତା'ପରେ ଅନ୍ୟ କଥା ଆରମ୍ଭ ହୋଇଗଲା ।

ଏ ଘଟଣାର ସପ୍ତାହେ ଖଣ୍ଡେ ପରେ ଦିନେ ରାତିରେ ପ୍ରାୟ ସାଢ଼େ ବାରଟା ବେଳକୁ ପୁଣି ପାଟିତୁଣ୍ଡ ଶୁଣି ମୋର ନିଦ ଭାଙ୍ଗିଗଲା । ଝରକା ଦେଇ ମୁଁ ଅନେଇଲି । ଗ୍ରାଉଣ୍ଡଫ୍ଲୋରର ପାହାଚ ଉପରେ ଇକବଲ ଭାଇ ମୁଣ୍ଡ ନୁଆଁଇ ଠିଆ ହୋଇଥିଲେ ଆଉ ମିସେସ୍ ବିଙ୍ଗଫିଲ୍ଡ ତାଙ୍କୁ ରାଗିଯାଇ ବଡ଼ ପାଟିରେ କ'ଣସବୁ କହୁଥା'ନ୍ତି । ମୁଁ ଧାଁବରେଇ ତଳକୁ ଓହ୍ଲେଇ ଆସିଲି । ମିସେସ ବିଙ୍ଗଫିଲ୍ଡ ହିଷ୍ଟରିଆ ଢଙ୍ଗରେ ପାଟି କରୁଥା'ନ୍ତି ।

'ମିସେସ୍ ବିଙ୍ଗଫିଲ୍ଡ, କଥା କ'ଣ ?' ମୁଁ ଚଢ଼ାଗଳାରେ ପଗ୍ଡ଼ରିଲି ।

ସେ ଅଣ୍ଟାରେ ହାତଦେଇ ବୁଲିପଡ଼ି ମୋତେ ଅନେଇଲେ । କହିଲେ, "ତମେ ନିଜେ ଫଇସଲା କର, ଗୁଣ୍ଡାକୁ ଗୁଣ୍ଡା ବୋଲି ହିଁ କୁହାଯିବ !"

ଯେତେବେଳେ ସେ ଇକବଲ ଭାଇଙ୍କୁ ଗୁଣ୍ଡା ବୋଲି କହିଲେ, ସେତେବେଳେ ମୋତେ ଲାଗିଲା ଯେମିତି କିଏ ମୋ ଗାଲରେ ଚଟକଣିଟିଏ ବସେଇ ଦେଇଛି । ଇକବଲ ଭାଇ ମୁଣ୍ଡ ନୁଆଇଁ ଠିଆ ହୋଇଥିଲେ ।

ମିସେସ ବିଙ୍ଗଫିଲ୍ଡ ଗରଜୁ ଥାଆନ୍ତି— "ତମକୁ ଜଣା ଯେ ମୋର ଏଠି କୋଉ ଜେଣ୍ଟଲମେନ୍ ଝିଅମାନଙ୍କ ରୁମ୍‌ରେ ରାତିରେ ରହିପାରିବେ ନାହିଁ । ଏଇଆ ମୋର ନିୟମ । ଏବେ ଏବେ ଗୋଟାଏ ଆତ୍ମହତ୍ୟାର ଘଟଣା ଘଟି ସାରିଛି । ମୋତେ ମୋର ଘରଟିର ସମ୍ମାନ ବଂଚେଇ ରଖିବାକୁ ହେବ । ମୁଁ କେବଳ ଉଚ୍ଚକୂଳର ... !"

'ମିସେସ୍ ବିଙ୍ଗପିଲ୍ଡ... କଥା କ'ଣ ? ଆପଣ ମିଷ୍ଟର ସକ୍‌ସେନାକୁ କ'ଣ କହୁଛନ୍ତି?' ମୁଁ ରାଗିଲା ଆଉ ଚଢ଼ାଗଳାରେ ପଗ୍ଡ଼ରିଲି ।

'ମୁଁ ୟାଙ୍କୁ ପଗ୍ଡ଼ରୁଥିଲି ରାତି ସାଢ଼େ ବାରଟାରେ ଇଏ ମିସ୍ କୋସାକୁଟୀର ରୁମରେ କ'ଣ କରୁଥିଲେ !'

ଇକବଲ୍ ଭାଇଙ୍କ ଭଳି ସଭ୍ୟ ଓ ଶାଳୀନ ଜଣେ ମଣିଷକୁ ମୋ ସାମନାରେ ଏଭଳି ଅଭଦ୍ର କଥା ଶୁଣିବାକୁ ପଡୁଥାଏ । ତାଙ୍କର ଚେହେରା ରାଗ ଆଉ ଦୁଃଖରେ ଲାଲ ପଡ଼ିଯାଉଥାଏ, ମାତ୍ର ସେ ଶାନ୍ତ ଥାଆନ୍ତି ।

ମିସେସ ବିଙ୍ଗପିଲ୍ଲ ରାଗରେ ଚିତ୍କାର କରି ଚାଲିଥା'ନ୍ତି ।' ଗେଲେରୀର ଦରଜା ଖୋଲିଲା ଆଉ ବନ୍ଦ ହେଲା । ଉପର ମହଲାର ଝରକାମାନଙ୍କରୁ ନଇଁପଡ଼ି ଲୋକେ ଅନେଇଲେ । ଇକବଲ ଭାଇ ଚୁପ୍‌ଚାପ୍ ଠିଆ ହୋଇଥା'ନ୍ତି । ତା'ପରେ ମିସେସ୍ ବିଙ୍ଗପିଲ୍ଲ ଅଗ୍ନେନଙ୍କ ଶାନ୍ତ ହୋଇଗଲା ଆଉ ନିଜ କୋଠରି ଭିତରେ ପଶି ଦରଜା ବନ୍ଦ କରିଦେଲେ ।

ତଳେ ତାଙ୍କ କୋଠରିରେ ଅଛମ୍ମା ଭୀଷଣ ଜରରେ ଅଚେତ ଅବସ୍ଥାରେ ପଡ଼ିଥାଏ । ଇକବଲ ଭାଇ ରାତି ଏଗାରଟାରେ ଔଷଧ ନେଇ ତା ପାଖକୁ ପହଞ୍ଚିଥିଲେ । ଆଉ ଘଣ୍ଟାଏ ପାଖାପାଖି ତା ପାଖରେ ବସିଥିଲେ । ସେତିକିବେଳକୁ ମିସେସ୍ ବିଙ୍ଗପିଲ୍ଲ ସିଡ଼ିର ଦରଜା ପାଖକୁ ଆସି ପାଟିକରିବା ଆରମ୍ଭ କରିଦେଲା ।

'ମୁଁ ଜାଣି ନଥିଲି ଯେ ଅଛମ୍ମା ଜରରେ ପଡ଼ିଛି ।' ମୁଁ ଲଜ୍ଜିତ ହୋଇ କହିଲି— ମୁଁ ବି ଦଶଟାରେ ଫେରିଛି ।'

'ମୁଁ ନିଜେ ବି ଜାଣି ନଥିଲି ।' ଇକବଲ ଭାଇ କହିଲେ, 'ଦଶଟାରେ ସେ ଫୋନ୍ କରି କହିଲା, ଯେ ତା' ଦେହ ଭୀଷଣ ଖରାପ ।' ତା'ପରେ ସେ ବରସାତୀ ପାକେଟ୍‌ରୁ ଲଫାପାଟିଏ ବାହାର କରି ମୋତେ ଦେଇ କହିଲେ, ''ତା'ର ଟଙ୍କାର ଦରକାର ପଡ଼ିପାରେ, ସକାଳେ ଦେଇଦେବୁ ।'' ଏତିକି କହି ସେ ପାହାଚ ଓହ୍ଲେଇ ଫାଟକ ବାହାରକୁ ଧୀରେ ଧୀରେ ଚାଲିଗଲେ । ମୁଁ ଲଫାପା ଖୋଲି ଦେଖିଲି, ଦଶ ପାଉଣ୍ଡ ଥିଲା । ସେଇ ଦଶ ପାଉଣ୍ଡ ଯୋଗାଡ଼ କରିବାକୁ ଇକବଲ ଭାଇଙ୍କୁ କେତେ ପରିଶ୍ରମ କରିବାକୁ ପଡ଼ି ନଥିବ; ଭାବିହେଲି । ମୁଁ ତାଙ୍କୁ ସେଇ ଘସରା ବରସାତୀରେ ମୁଣ୍ଡ ନୋଇଁ, ଚଞ୍ଚଳ ପାଦରେ ନିର୍ଜନ ରାସ୍ତାରେ ଚାଲିଯାଉଥିବା ବେଳେ ଅନେଇ ରହିଥାଏଁ ।

ତା'ପରେ କିଛି ସପ୍ତାହ ଲାଗି ମୋର ସହର ବାହାରକୁ ଯିବାର ଥାଏ । ମୁଁ ଫେରିଆସି ଆଉ ଗୋଟାଏ ଜାଗାରେ ରହିଲି । ମୋର କାହିଁକି ମିସେସ୍ ବିଙ୍ଗପିଲ୍ଲ ପ୍ରତି ଘୃଣାଭାବ ପ୍ରବଳ ଥାଏ । ସାଧାରଣତଃ ଲେଣ୍ଡଲେଡିଗୁଡ଼ିକ ନିର୍ମମ, ତେବେ ସେଦିନ ଯେଉଳି ନୀଚସ୍ତରର ଭଙ୍ଗୀରେ ସେ ଇକବଲ ଭାଇଙ୍କୁ ପାଟିକଲେ, ସେ ଦୃଶ୍ୟ ମୋ ଲାଗି ବେଶ୍ କଷ୍ଟଦାୟକ ଥିଲା ।

ଅଛମ୍ମା କୋସୋକୁଟୀ ସେତେବେଳକୁ ଭଲ ହୋଇସାରିଥାଏ । ତାକୁ କୋଉଠି ଚାକିରି ବି ମିଳି ସାରିଥାଏ । ତେବେ ତା'ର ସବୁ କିଛି କରେଇନେଲା ଓ ହୋଇଯିବା ପରେ ସେ ଇକବଲ ଭାଇଙ୍କୁ ଭୁଲି ଯାଇଥାଏ । ଆଉ ଇକବଲ ଭାଇ ସେଇ ଶାଳୀନ ସଂବନ୍ଧ ନିର୍ବାହ କରି ଚାଲିଥା'ନ୍ତି ।

ଦିନେ ଫୋନ୍ ଘଣ୍ଟି ବାଜିଲା । ଗୋଟାଏ ନାରୀକଣ୍ଠ ଶୁଣାଗଲା— 'ହାଲୋ ! ହାଲୋ ମୁଁ ମିସେସ୍ ଆଲୁବେହାର୍ଟ କହୁଛି....!'

'ମିସେସ୍ ଆଲୁବେହାର୍ଟ !' ମୁଁ ପଚାରିଲା ଭଳି କହିଲି ।

'ହଁ, ତମେ ମୋତେ ଚିହ୍ନିନ ? ମୁଁ ତମର ପୁରୁଣା ଲେଣ୍ଡଲେଡି ମିସେସ୍ ବିଙ୍ଗଫିଲ୍ଡ। ମୋର ବିବାହ ହୋଇସାରିଛି । ଆସିବ ଆଜି ସଂଧ୍ୟାରେ, ଗ୍ଲ' ପାଇଁ !''

ସଂଧ୍ୟାରେ ମିସେସ୍ ଆଲ୍ଗୁବେହାର୍ଟ ତାଙ୍କ ଡ୍ରଇଁରୁମ୍ ଦରଜା ମୁହଁରେ ବେଶ୍ ପ୍ରଫୁଲ୍ଲ ମୁଦ୍ରାରେ ପାଛୋଟି ନେଲେ । କୋଠରୀରେ ଲେମ୍ପଷ୍ଟାଣ୍ଡ ତଳକୁ ଗୋଟାଏ ଫଟୋ ଥିଲା, ଯୋଉଥିରେ ମିସେସ୍ ଆଲ୍ଗୁବେହାର୍ଟ ତାଙ୍କ ବୟସରୁ ପ୍ରାୟ ଦଶବର୍ଷ ଛୋଟ ସିଂହଳୀ ଲୋକଟିଏ ସାଙ୍ଗରେ ଫୁଲତୋଡ଼ା ଧରି ମୁରୁକି ହସୁଥିଲେ । 'ବର' ପାଖରେ ଇକବଲ୍ ବଖ୍ତ ସକ୍ସେନା କୋର୍ଟ କଲରରେ କାରନେଶନ୍ ସଜେଇ ମୁରୁକି ହସୁଥା'ନ୍ତି ।

'ମିଷ୍ଟର ସକ୍ସେନା ମୋର ପତିଙ୍କର ବେଷ୍ଟମେନ୍ ଥିଲେ ।' ମିସେସ୍ ଆଲ୍ଗୁବେହାର୍ଟ ସୂଚନା ଦେଲେ ।

'ଇକବଲ ଭାଇ...।' ମୁଁ ତା'ପରଦିନ ପଗ୍ଭରିଲି ।

'ଦେଖ ମୁନ୍ନା, ସେଦିନ ଏ ମାଇକିନା ଯୋଉ ହାତ କଗ୍ଭଡ଼ି କଗ୍ଭଡ଼ି ମୋ ପଛରେ ଲାଗିଯାଇଥିଲା, ମୁଁ ସେତେବେଳେ ହିଁ ବୁଝିଗଲି ଯେ ମାଇକିନା ଟି ଏକାକୀପଣ ଆଉ ଫ୍ରଷ୍ଟ୍ରେସନ୍‌ର ଶିକାର । ମୁଁ ତାକୁ ସାହାଯ୍ୟ କରିବାକୁ ଗ୍ଭହିଁଲି । ତୁ ହିଁ ମୋତେ କହିଥିଲୁ ଯେ କଳାମଣିଷଟିଏ ସାଙ୍ଗରେ ବି ସେ ବାହା କରିବାକୁ ପ୍ରସ୍ତୁତ । ମୁଁ କଲମ୍ବୋର ଏଇ ଆଲ୍ଗୁବେହାର୍ଟକୁ ଜାଣିଥିଲି । ସିଏ ଗୋଟାଏ ଧନବତୀ ବିଧବା ଖୋଜୁଥାଏ । ବେଶ ସିଧା-ସାଦା ଗରିବ ମଣିଷ । ମୁଁ ତାକୁ ମିସେସ୍ ବିଙ୍ଗଫିଲ୍ଡର ଠିକଣା ଦେଲି । ଦୁହିଁଙ୍କ କଥା ବନିଗଲା । କ'ଣ କିଛି ଖରାପ ହେଲା ?''

ଇକବଲ ଭାଇ ସାଙ୍ଗରେ ଛାତ୍ରମାନଙ୍କର ବଡ଼ ଦଳଟିଏ ବାର୍ଷିକ ୟୁଥ୍ ଫେଷ୍ଟିଭାଲ ପାଇଁ ପରାଗ ଯାଉଥାଏ । ସେ ବର୍ଷ ପାକିସ୍ଥାନୀ ଛାତ୍ରମାନଙ୍କୁ କୌଣସି କମ୍ୟୁନିଷ୍ଟ ଦେଶକୁ ଯିବା ଲାଗି ଅନୁମତି ମିଳିନଥାଏ । ସେମାନଙ୍କ ଭିତରୁ ଅନେକେ ସେଇ କାରଣରୁ ଦୁଃଖୀ ଥିଲେ । ପ୍ରତିନିଧି ଦଳର ପରାଗ ଯିବା ଦିନକ ଆଗରୁ ଗୋଟାଏ କାର୍ଯ୍ୟକ୍ରମରେ ପୂର୍ବ ପାକିସ୍ଥାନର ଛାତ୍ରଟିଏ ଭାରି ଦୁଃଖିତ ହୋଇ କହିଲା, ''ଆମେମାନେ ଏବର୍ଷ ଯାଇପାରିବୁ ନାଇଁ— ସେଠି ପୃଥିବୀର ସବୁଦେଶର ଲୋକ ଥିବେ, କେବଳ ପାକିସ୍ଥାନ ଛଡ଼ା ।'' ସେତେବେଳେ ଇକ୍‌ବଲ ଭାଇ ତୁରନ୍ତ ତା' ପାଖକୁ ଗଲେ ଆଉ ଧୀରେ ଧୀରେ ତାକୁ କହିଲେ, 'ମନ ମାରନାଇଁ ଅଲଫ୍ରୁରକାନ୍ ଭାଇ, ପାକିସ୍ଥାନର ପ୍ରତିନିଧିତ୍ୱ ମୁଁ କରିଦେବି ।'

ପରାଗରେ ସାରା ବିଶ୍ୱରୁ ଆସିଥିବା ଯୁବାମଣ୍ଡଳୀ ଗୋଟାଏ ମହାନ୍ କନସର୍ଟରେ ନିଜ ନିଜ ଦେଶର ଲୋକଗୀତ ଶୁଣଉଥିଲେ । ଷ୍ଟେଜରେ ମୌନତା ଖେଳିଗଲା । ଝିଅଟିଏ ଘୋଷଣା କଲା— 'ବର୍ତ୍ତମାନ ଆମର ପ୍ରିୟ ଦେଶ ପାକିସ୍ଥାନର ପ୍ରତିନିଧି ତାଙ୍କ ଦେଶର ମୂଳିଆ ଗୀତ ଶୁଣେଇବେ ।'

ପାକିସ୍ଥାନର ନାଆଁ ଶୁଣି ଅନେକବେଳ ଯାଏଁ ତାଳି ବାଜିଲା । ଧଳା କଡ଼ା ଇସ୍ତ୍ରୀବାଲା

ସଲଓ୍ୱାର, କଳା ଶେରବାନୀ ଓ ଧୂସର ରଙ୍ଗର ଟୋପି ପିନ୍ଧି ବେଶ ଠାଣୀ ଆଉ ଆତ୍ମବିଶ୍ୱାସରେ କମ୍ରେଡ୍ ଇକବଲ ମାଇକ୍ରୋଫୋନ୍ ପାଖକୁ ଗ୍ଡ଼ଲି ଆସିଲେ ।

ସେ ପାକିସ୍ଥାନରେ ପ୍ରଗତିଶୀଳ ଆନ୍ଦୋଳନର ଅସଫଳତାର କାରଣ ଉପରେ ଏକ ଭାଷଣ ଦେଲେ । ତା'ପରେ କହିଲେ, 'ବନ୍ଧୁଗଣ ମୁଁ ବର୍ତ୍ତମାନ ଆପଣମାନଙ୍କୁ ଆମର ପ୍ରିୟ ଦେଶର ଗୋଟାଏ ଅତ୍ୟନ୍ତ ଲୋକପ୍ରିୟ ମୂଲିଆ ଗୀତ ଶୁଣେଇବି...' ସେ ବେଶ ଗଂଭୀର ଓ ଲହରିଆ ସ୍ୱରରେ ଆରମ୍ଭ କଲେ—

'ଉଠାଅ ବୋଝ... ହଇଆ...ହଇଆ
ଉଠିଲା ବୋଝ... ହଇଆ,.. ହଇଆ...
ରଜାଘରଟି ହବ ତିଆର... ହଇଆ
ପେଟ ପୂରିବ ତମ ଆମର... ହଇଆ...
ଉଁଚେଇ ନିଅ... ହଇଆ... ହଇଆ
ଉଠାଅ ବୋଝ ସିଂହ ଛୁଆ... ହଇଆ...''

ଜନସମୂହ ଉପରେ ଏ ଗୀତର ବେଶ ପ୍ରଭାବ ପଡ଼ିଲା । ସ୍ୱାଭାବିକ ଭାବରେ ଶୁଣିବାଲୋକେ ପାଳି ଧରିବା ଆରମ୍ଭ କରିଦେଲେ । ତେବେ ପରେ ସୈୟଦ ମୁତଲ୍ଲବୀ ଫରୀଦାବାଦୀଙ୍କର ଏଇ ପ୍ରସିଦ୍ଧ ଗୀତର ବାକି ଅଂଶ ଇକବଲ ଭାଇଙ୍କ ସ୍ମରଣରୁ କୁଆଡ଼େ ଗ୍ଡ଼ଲିଗଲା ହୁଏତ, ତଥାପି ବି ସେ ଗାଇବା ବନ୍ଦ କଲେ ନାହିଁ । ବାସ୍ତବରେ ସେ ଗୀତର ମାତ୍ର ତିନୋଟି ପଂକ୍ତି—

'ପିଆଲା ଉଠାଅ କେମିତ ବାଇ
ଏମିତି ଭାଇ... ହଇଆ
ଉଠାଅ ଗ୍ଡ଼ମଚ, ଉଠେଇଲି ହଁ ହଁ... ହଇଆ...
ହଜାର ହଜାର ଭିଡ଼ ହଁ ହଁ... ହଇଆ...''

ଏଣୁତେଣୁ ଏମିତି ଶବ୍ଦ ଇକବଲ୍ ଭାଇ ମୁଣ୍ଡରେ ପଶୁଥାଏ ଆଉ ସେ ହଇଆ ହଇଆ ସାଙ୍ଗରେ ଯୋଡ଼ି ଗ୍ଡ଼ଲିଥା'ନ୍ତି । କରତାଳି ଧ୍ୱନି ଭିତରେ ଅତ୍ୟନ୍ତ ସଫଳତା ସହିତ ତାଙ୍କର ଗୀତ ସରିଲା ।

ଚେକୋସ୍ଲୋବାକିଆରୁ ଫେରିବାର କିଛିଦିନ ପରେ ଇକବଲ ଭାଇ ସୂଚନା ଦେଲେ, ''ମୁଁ ସାପ ବେପାର ଆରମ୍ଭ କରିଦେଇଛି ।''

'ସାପ ବେପାର !' ମୁଁ କହିଲି । ମୋତେ ଟିକିଏ ବି ଆଶ୍ଚର୍ଯ୍ୟ ଲାଗିଲା ନାହିଁ । କାରଣ ଇକବଲ ଭାଇ ସବୁକିଛି କରିପାରନ୍ତି ।

'କେତେ ଶହ ମାଙ୍କଡ଼ ବି ଅଛନ୍ତି ।' ସେ ପ୍ରସଙ୍ଗକୁ ଆଗକୁ ବଢ଼େଇ କହିଲେ,... 'ବାସ୍ତବରେ,..' ସେ ଗଳା ଖଂକାରି ନେଲେ ଆଉ ପୁଣି ଆରମ୍ଭ କଲେ... 'କଥା କ'ଣ କି

ମୁନ୍ନୀ, ଯୋଉ ଖାଲିଦ ସାହବ ନା, ତାଙ୍କ ଶ୍ୱଶୁର ମିଷ୍ଟର ଚିରାଗଦ୍ଦୀନ ଆମେରିକାର ଚିଡ଼ିଆଖାନା ଆଉ ପ୍ରୟୋଗଶାଳାମାନଙ୍କୁ ମାଙ୍କଡ଼ ଆଉ ସାପ ସପ୍ଲାଇ କରନ୍ତି । ମୋତେ ତାଙ୍କ ଫାର୍ମରେ ଭର୍ତ୍ତି କରି ନେଇଛନ୍ତି ଆଉ ମୁଁ ସେଇ କାମର ତଦାରଖ କରିବାକୁ ଆମେରିକା ଯାଉଛି ।''

ଏଭଳି ଭାବରେ ସାପ କାରବାର କରିବେ ବୋଲି ଇକବଲ ଭାଇ ଆମେରିକା ଚ୍ଛଲିଗଲେ ।

ଦିନେ ଡାକରେ ମୋତେ ଏଡୱୀନା କାରଲାଇଲର ଛୋଟିଆ ଚିଠିଟିଏ ମିଳିଲା । ଚିଠିଟି ଆୟରଲାଣ୍ଡରୁ ଆସିଥିଲା । ସେ ଲେଖିଥିଲା—

'ସାରା ଦୁନିଆ ମୋତେ ଛାଡ଼ି ଦେଇଥିଲା । ମୋର ନିଜ ଉପରେ ବି ଘୃଣା ଆସିଥିଲା । ମୃତ୍ୟୁର ଆଶ୍ରୟ ନେବାକୁ ଚ୍ଛହିଁଲି; ମାତ୍ର ସେଥିରେ ମଧ୍ୟ ଜୀବନ ଅସଫଳ ହେଲା । ବର୍ଷେକାଳ ଡାକ୍ତରଖାନାରେ ପ୍ଲାଷ୍ଟର ଭିତରେ ଥିଲି । ସେତେବେଳେ ମିଷ୍ଟର ସକ୍‌ସେନା ପ୍ରତି ସପ୍ତାହ, ସବୁ ପାଗ, ସବୁ ଅବସ୍ଥାରେ ଆସି ମୋ ପାଖରେ ବସୁଥିଲେ ଆଉ ମୋତେ ବୁଝଉଥିଲେ ବଂଚି ରହିବା ଲାଗି ସାହସ କେତେ ମାତ୍ରାରେ ଜରୁରୀ । ମୋତେ ସେ ଏଇନେ କେଉଠି ଅଛନ୍ତି ଜଣାନାଇଁ । ଏ ଚିଠି ଆପଣଙ୍କୁ ଲେଖିବାର କାରଣ ହେଲା ଆପଣ ତାଙ୍କୁ ମୋର ପ୍ରଣାମ କହିଦେବେ ।'

ତେବେ ମିଷ୍ଟର ସକ୍‌ସେନା କୋଉଠି ଥିଲେ, ତାହା ମୋତେ ବି ଜଣା ନଥିଲା । ସେ ଆମେରିକା ପହଞ୍ଚିବା ପରେ କାହା ପାଖକୁ ହେଲେ ପୋଷ୍ଟକାର୍ଡ ଖଣ୍ଡିଏ ବି ପଠେଇ ନଥିଲେ ।

ମୁଁ ସ୍ୱଦେଶକୁ ଫେରି ଆସିଲି । ଇକବଲ ଭାଇ କେଉଁଠି ଓ କିଭଳି ପରିସ୍ଥିତିରେ ଅଛନ୍ତି, କାହାକୁ ବି ଜଣା ନଥିଲା । ପ୍ରାୟ ଚ୍ଛରି ବର୍ଷ ତଳେ ମୋର କାକା ଝିଅ ଭଉଣୀ ପଢ଼ା ସାରି ସାନ୍‌ଫ୍ରାନ୍‌ସିସ୍କୋରୁ ଫେରିଲା । ସେଇ କହିଲା 'ମୁଁ ନିଜେ ଇକବଲ୍ ଭାଇକୁ ଦେଖି ଆସିଛି ।'

'କୋଉଠି ?'

'ହଲିଉଡ୍‌ରେ ! ଠିକ୍ ବେବର୍ଲି ହିଲ୍ ଉପରେ ।'

'ବେବର୍ଲି ହିଲରେ କ'ଣ କରୁଛନ୍ତି ?'

'ରହୁଛନ୍ତି । ଗୋଟାଏ ବିରାଟ କୋଠାରେ ! ସେଥିରେ ଦୁଇଟି ସ୍ୱିମିଙ୍ଗ ପୁଲ୍ । କେଡ଼ିଲାକ କାର, ଗୋଟାଏ ଫ୍ଲାଟ ଅଛି; ଆଦି ଆଦି । ମୋତେ ସେ ଖାଇବାକୁ ଡାକିଥିଲେ ବି । ନିଗ୍ରୋ ବଟଲର ଆଉ... ଆଉ...'

ସେ ଏସବୁ କଥା ବି ଜଣେଇଲା ଯେ ସାପବେପାର ପାଇଁ ତାଙ୍କର ଆମେରିକା ପହଞ୍ଚିବାର ପରଦିନ କୋଉ ଗୋଟାଏ କଥା ଉପରେ ତାଙ୍କର ଆଉ ମିଷ୍ଟର ଚିରାଗଦ୍ଦୀନ

ଭିତରେ ଅପଡ଼ ହେଲା । ଫଳରେ ସେ ଗ୍ରକିରି ଛାଡ଼ିଦେଲେ । ତା'ପରେ ଅନେକ ସୁବର୍ଣ୍ଣ ଅବସର ଥିବା ସେଇ ଦେଶରେ ସେ ଅବସର ଖୋଜା ଓ ଏପରିକି ମୂଲ ଲାଗି କାଲିଫୋର୍ଣ୍ଣିଆ ପର୍ଯ୍ୟନ୍ତ ପହଞ୍ଚିଲେ । ସେଠାରେ ସେ ଶିଖ୍ ଆଉ ପଂଜାବୀ ମୁସଲମାନ ଗ୍ରଷୀଙ୍କ କ୍ଷେତ୍ରରେ ମୂଲିଆ ହେଲେ । ସେଇଠୁ ହଲିଉଡ୍ ଗ୍ରଲିଆସିଲେ । ଆଉ ପ୍ରାଚ୍ୟ ଦେଶ ସଂବନ୍ଧରେ ତିଆରି ହେଉଥିବା ଫିଲ୍ମରେ ଚୀନା ରିକ୍ସାବାଲା, ଭାରତୀୟ ସାଧୁ, କୁଲୀ, ସାପୁଆ କେଳା, ଆରବୀ ନାଗରିକ ଆଦି ଆଦି ଦୁଇତିନି ମିନିଟିଆ ରୋଲ ବେଶ ବଢ଼ିଆ କରିବାକୁ ଲାଗିଲେ। ତା'ପରେ ଗୋଟାଏ ରେସ୍ତରାଁରେ ଓ୍ୱେଟର ବନିଗଲେ । ଗୋଟାଏ ପ୍ରସିଦ୍ଧ ଫିଲ୍ମ ନିର୍ମାଣର କୋଟିପତି ବିଧବା ପତ୍ନୀ ବେଳେବେଳେ ସେଇ ରେସ୍ତରାଁକୁ ଆସେ । ସେ ସନ୍ତାନହୀନା ଓ ଅତି ବୃଦ୍ଧା । ଆଖିକୁ ବି ଭଲ ଦେଖାଯାଉ ନଥିଲା । ସେ ବେବର୍ଲି ହିଲ୍ସ ଉପରେ ତା'ର ରାଜପ୍ରାସାଦ ଭଳି ବିରାଟ କୋଠାରେ ଭୟାନକ ଏକାନ୍ତ ଜୀବନ ଯାପନ କରୁଥିଲା । ହଲିଉଡ୍ ସୌନ୍ଦର୍ଯ୍ୟ ଓ ଯୌବନର ପୂଜାରୀ । ଗୋଟାଏ ପଞ୍ଚସ୍ତରୀବର୍ଷୀୟା ବୁଢ଼ୀ ଆଉ ଅନ୍ଧୁଣୀ ସାଙ୍ଗରେ ଦୁଇମିନିଟ ବିତେଇବାକୁ ସେଠାରେ କାହାରି ହେଲେ ଫାଲ୍ତୁ ସମୟ ନଥିଲା । ଯେତେବେଳେ ବୁଢ଼ୀଟି ରେସ୍ତାରାଁକୁ ଆସି ତା'ର ବିଶେଷ ମେଜରେ ଗୋଟାଏ କୋଣକୁ ବସିଯାଉଥିଲା, ସେତେବେଳେ ଇକବଲ ଭାଇ ଆସି ବେଶ ଆଦରରେ ବୁଢ଼ୀର ଭଲମନ୍ଦ ପଗ୍ରରୁଥିଲେ ଆଉ ତତ୍ତ୍ୱ ନେଉଥିଲେ । ତାଙ୍କୁ ଏଇଆ ବି ଜଣା ନଥିଲା ଯେ ସେ କିଏ ? ବୁଢ଼ୀ ତାଙ୍କର ବେଶ ଅନୁଗ୍ରହୀତା ହୋଇଗଲା ଆଉ ତାଙ୍କୁ ତାଙ୍କ ଘରକୁ ନିମନ୍ତ୍ରଣ କଲା । ତା'ପରେ ସେ ତା'ଘରକୁ ଯିବାଆସିବା କଲେ ଆଉ ପତ୍ର-ପତ୍ରିକା ପଢ଼ି ଶୁଣେଇବାକୁ ଲାଗିଲେ ।

ଏଇ କାମ ପାଇଁ ଲୋକେ ମୋଟା ଦରମା ପାଇ ବୁଢ଼ୀ ପାଖରେ ଥିଲେ । ଇକବଲ୍ ଭାଇ କେବଳ ମାତ୍ର ମାନବୀୟ ଦୃଷ୍ଟିରୁ ଏ କାମ କରୁଥିଲେ । ଶେଷକୁ ବୁଢ଼ୀ ତାଙ୍କୁ ସାଙ୍ଗରେ ରହିବାକୁ ଅନୁରୋଧ କଲା । ସେ ରହିବାକୁ ଲାଗିଲେ । ଏପରି ଭାବରେ ଇକବଲ ଭାଇ ଏଇନେ ବେବର୍ଲି ହିଲ୍ସର ସେଇ ପ୍ରାସାଦରେ ରହୁଛନ୍ତି । ସଂଭବତଃ ବୁଢ଼ୀ ତାଙ୍କୁ ଆଇନସଙ୍ଗତ ଭାବରେ ପୋଷ୍ୟପୁତ୍ର କରିନେବ ।

'ଇକବଲ ବଖ୍ତ ସକ୍ସେନାର କାହାଣୀ' ଏକଥା ଶୁଣି କିଏ ଜଣେ ମନ୍ତବ୍ୟ ଦେଲା 'ସଫଳତାର କ୍ଲାସିକ କଥା ।'

ପ୍ରାୟ ଛଅ ମାସ ପରେ ଆଉ ଜଣେ ଆମେରିକାରୁ ଫେରିଲେ । ସେ ଇକ୍‌ବଲ ଭାଇଙ୍କୁ ସେଇ ରେସ୍ତରାଁରେ ଦେଖି ଆସିଥିଲେ । ସେତେବେଳେ ଯା'ଭିତରେ ବୁଢ଼ୀର ଦେହାନ୍ତ ହୋଇଥିବା କଥା ଜାଣିହେଲା, ଆଉ ସେହି ସନ୍ଦେହମନା ବୁଢ଼ୀଟି ତା'ର ସବୁ କିଛି ପ୍ୟାରିସ୍‌ର କୋଉ ଗୋଟାଏ ପରିବା ବ୍ୟବସାୟୀ ନାଆଁରେ କରିଦେଇ ଯାଇଥିଲା । ଇକବଲ୍ ଭାଇ ପୁଣି ସେଇ ରେସ୍ତରାଁକୁ ଫେରିଆସିଥିଲେ ।

ଆଜି ତୃତୀୟ ପହର ବେଳକୁ ମୁଁ ଶାରଦା ମେହେଟାଙ୍କ ଘର ବାଟ ଦେଇ ଗଲାବେଳେ ସେ ମୋତେ ଡାକଦେଲେ । ସେ ସେତିକିବେଳେ ତାଙ୍କ କାରକୁ ଉଠୁଥିଲେ । 'କୋଉଠି କି ଯାଉଛ ?' ସେ ମୋତେ ପଚାରିଲେ । 'ମୁଁ କହିଲାରୁ ମୁଁ ବି ସେଲଘଟକୁ ଯାଉଛି— ଆସ ମୋ ସାଙ୍ଗରେ, ମୁଁ ତମକୁ ବାଟରେ ଓହ୍ଲେଇ ଦେଇ ଯିବି । ଆଜି ସତ୍‌ସଙ୍ଗକୁ ମୋର ବି ଡେରି ହେଲାଣି ।'

ଶାରଦା ମେହେଟା ଜଣେ ସାଦାସିଧା, ନିର୍ମଳ, ଧାର୍ମିକ ଗୃହିଣୀ । ଯୋଉଦିନରୁ ତାଙ୍କର ଗୋଟିଏ ବୋଲି ଝିଅକୁ ପୋଲିଓ ହୋଇଛି, ସେଇଦିନରୁ ପୂଜା-ପାଠ, ମନ୍ଦିର, ତୀର୍ଥ, ସାଧୁସନ୍ଥ, ପୀର, ଫକୀର, ଦରଗାହ, ମାନସିକ ଆଦି ଆଦିର ଧାରା ବେଶ ବଢ଼ି ବଢ଼ି ଚାଲିଛି । ଭାବିଲେ ସେଇମାନଙ୍କ ଉପରେ ବିଶ୍ୱାସ, ଭରସା, ଆସ୍ଥା ଉପରେ ତ ଦୁନିଆ ଚାଲିଛି ।

ସେଠି ପହଞ୍ଚି ଗୋଟାଏ ଜାଗାରେ ଜଣେ ଗୁଜରାଟୀ ସେଠଙ୍କର ଭବ୍ୟ ଭିଲାର ମୁଖ୍ୟ ଦରଜା ଦେଇ ଗାଡ଼ିଟି ପ୍ରବେଶ କଲା । ସେତେବେଳକୁ ସତ୍‌ସଙ୍ଗ ସମାପ୍ତ ହୋଇ ସାରିଥିଲା ଆଉ ଗାଡ଼ିଗୁଡ଼ିକ ଫେରି ଆସୁଥିଲେ ।

'ଆରେ, ତମର ସତ୍‌ସଙ୍ଗ ତ ସରିଗଲାଣି ଭଳି ଲାଗୁଛି ।' ମୁଁ କହିଲି ।

'କିଛି କଥା ନାହିଁ । ଗୁରୁଜୀଙ୍କର ଦର୍ଶନ ତ ମିଳିବ ! କାଲି ସକାଳେ ସେ ଅମରନାଥ ଚାଲିଯିବେ । ମୋତେ ବେଶୀ ହେଲେ ପାଞ୍ଚ ମିନିଟ୍ ଲାଗିବ । ତମେ ବି ଆସୁନ !' ସେ କହିଲେ ।

ସାମନା ବାରଣ୍ଡାରେ ଜଣେ ବିଦେଶୀ ମହିଳା ଧଳା ଶାଢ଼ୀ ପିନ୍ଧି, ବେଶ୍ ବଡ଼ ଚନ୍ଦନ ଟିପା ଲଗେଇ, ଚକା ପକେଇ ବସିଥିଲେ ଆଉ ସାମନାରେ ବସିଥିବା କେତେଜଣ ମହିଳାଙ୍କୁ ଗୀତାର ଶିକ୍ଷା ବଖାଣୁଥିଲେ । ଉଚ୍ଚାରଣରୁ ଆମେରିକାନ୍ ଭଳି ମନେହେଲା । ଶାରଦା ପାଖକୁ ଯାଇ ପ୍ରଣାମ କଲେ । 'ଏ ହେଉଛନ୍ତି ମାତାଜୀ' ମୋତେ ଚୁପ୍‌ଚୁପ କହିଦେଇ ମୋତେ ଠାରରେ ଆସିବାକୁ କହି କୋଠରି ଭିତରକୁ ପଶିଗଲେ ।

ବାହାରେ ଚପଲ ରଖି, ପଣତକାନି ମୁଣ୍ଡରେ ଦେଇ ମୁଁ ବି ଭିତରକୁ ଗଲି । କୋଠରିଟିରେ ଧଳା ଚାଦର ବିଛା ହୋଇଥିଲା, ଯାହା ଉପରେ ଜାଗା ଜାଗାରେ ଗେଣ୍ଡୁଫୁଲ ଓ ଗୋଲାପ ପାଖୁଡ଼ା ବିଛେଇ ହୋଇ ରହିଥିଲା । ଶ୍ରଦ୍ଧାଳୁ ଭକ୍ତମାନେ ଏଇମାତ୍ର ଉଠି ଯାଇଥିଲେ । ସେଇ କାରଣରୁ ସେଇ ଧଳା ଚାଦର ଠାଏ ଠାଏ ଲୋଚାକୋଚା ହୋଇଯାଇଥାଏ । ଗୋଟାଏ ପଟକୁ ହାରମୋନିୟମ, ମୃଦଙ୍ଗ, ଗିନି, ତାନପୁରା ଆଦି ଥୁଆ ହୋଇଥିଲା । ଝରକା ପାଖରେ ଫୁଲଦାନୀମାନଙ୍କରେ ସଜଫୁଲ ସଜିଲ ହୋଇ ରହିଥାଏ, ଧୂପକାଠି ଜଳୁଥାଏ । ମଝିରେ ଚନ୍ଦନକାଠର ଚଉକି ଉପରେ ଅତି ନିର୍ମଳ ଧଳା ଲୁଗାପିନ୍ଧି, ଉନ୍ମୁକ୍ତକେଶୀ ଗୁରୁଜୀ ପଦ୍ମାସନରେ ବସିଥାଆନ୍ତି । ଗୀତାପାଠ ଏଇମାତ୍ର ସଂପୂର୍ଣ୍ଣ ହୋଇଥାଏ । ପୁସ୍ତକ ପୀଢ଼ ଉପରେ ଥୁଆ ହୋଇଥାଏ । ସେ ମୌନମୁଦ୍ରାରେ ଝରକା ବାହାରକୁ

ଦେଖୁଥାଆନ୍ତି । ମୁଁ ତାଙ୍କୁ ଦେଖି ଆଦୌ ଆଶ୍ଚର୍ଯ୍ୟ ହେଲିନାହିଁ ଯେ ସେ ଇକବଲ୍ ବଖ୍‌ତ ସକ୍‌ସେନା ।

ସେ ହୁଏତ ପୁଣିଥରେ ମୋତେ ଚିହ୍ନିପାରିଲେ ନାହିଁ । ଆଉ ଯଦିବା ଚିହ୍ନିଥିବେ, ତା'ହେଲେ ପ୍ରକାଶ କଲେ ନାହିଁ । କିଛି ବେଳ ଏକଲୟରେ ଅନେଇ ରହିଥିଲେ । ତା'ପରେ ସେ ସେପରି ଭାବରେ ଶୂନ୍ୟରେ ଦୃଷ୍ଟି ନିବଦ୍ଧ କଲେ ।

ଶାରଦା ଆଗକୁ ବଢ଼ି ଅତି ଶ୍ରଦ୍ଧାରେ ତାଙ୍କର ପାଦସ୍ପର୍ଶ କରି ପଛକୁ ଘୁଞ୍ଚିଆସି ମୋତେ ଆସିବାକୁ ଆଖିର ଇଙ୍ଗିତରେ କହିଲେ । କାରଣ ତାଙ୍କର ଦର୍ଶନ ସରିଥିଲା । ମାତ୍ର ଶାରଦା ବିସ୍ମିତ ହେଲେ ଯେ ମୁଁ ବି ଆଗକୁ ବଢ଼ିଗଲି ଆଉ ନଇଁପଡ଼ି ଗୁରୁଜୀଙ୍କର ଚରଣସ୍ପର୍ଶ କଲି ।

ପିଲାଦିନେ ଇକବଲ ଭାଇ ମୋର କାନ ମୋଡ଼ିଥିଲେ । ମୋତେ ଡରେଇ ସ୍ନେହଦେଇ ବେଶ ପରିଶ୍ରମରେ ଲେଖାପଢ଼ା ଶିଖେଇଥିଲେ । ଗୁରୁପଦଟି ପିତାମାତାଙ୍କ ଭଳି । ସେ ଦୁନିଆ ଲାଗି କେଜାଣି କୋଉ ଢଙ୍ଗରେ ଗୁରୁଜୀ ହୋଇଥିଲେ; ମାତ୍ର ତାଙ୍କୁ ଗୁରୁଜୀ ବୋଲି ମାନିବାର ଏକମାତ୍ର ଅଧିକାର ମୋର ଥିଲା ।

ସେ ହାତଟେକି ମୋତେ ଆଶୀର୍ବାଦ ଦେଲେ ଆଉ ସେଇଭଳି ଶୂନ୍ୟଦୃଷ୍ଟିରେ ଅନେଇ ରହିଲେ । ମୁଁ ପାଦ ଚିପିଚିପି ଆସି ଚପଲ ପିନ୍ଧି ଶାରଦା ସାଙ୍ଗରେ ଚାଲି ଆସିଲି ।

ସେତେବେଳେ ସ୍ତ୍ରୀ ଓ ପୁରୁଷଙ୍କର ଏକ ପଂକ୍ତି ଦର୍ଶନ କରିବାକୁ ପ୍ରବେଶ କରୁଥାଏ ।

ବାରଣ୍ଡାରୁ ଓହ୍ଲେଇ ଆସିଲା ବେଳକୁ ମୁଁ ଭାବିଲି, ଯଦି ମୁଁ ପ୍ରଶ୍ନ କରିଥା'ନ୍ତି— "ଇକବଲ ଭାଇ, ଆପଣ ଏଥର ଏତେ ଲମ୍ବା ଚୌଡ଼ା ଫ୍ରଡ୍ କାହିଁକି କଲେ ?" ତା'ହେଲେ ସେ ଉତ୍ତର ଦେଇଥା'ନ୍ତେ

'ଦେଖ ମୁନ୍ନୀ, ଦୁନିଆ ଶାନ୍ତି ଖୋଜି ଖୋଜି ପାଗଳ ହେଲାଣି । ଯଦି ମୁଁ ଏଇ ବେଶରେ କିଛି ଦୁଃଖୀ ଆତ୍ମାଙ୍କୁ ଟିକିଏ ନା'କୁ ଶାନ୍ତି ଦେଇପାରୁଛି, ତା'ହେଲେ ସେଥିରେ ମୋର କ'ଣ କ୍ଷତି ହେବ ?'

କିଏ ଜାଣେ ହୁଏତ ଇକବଲ ଭାଇ ମୁକ୍ତିପଥରେ ପହଞ୍ଚି ସାରିଥିଲେ । ତାଙ୍କର ମନର ଗୋପନ କଥା ସେ ଜାଣିଥିବେ ଆଉ ଜାଣିବା ଲୋକ କିଏ ଅଛି ?

# କାରମନ୍

ରାତି ଏଗାରଟାରେ ସହରର ଶାନ୍ତ ରାସ୍ତାଗୁଡ଼ିକରେ ଘୂରି ଟେକ୍ସିଟି ଆସି ଗୋଟାଏ ପୁରୁଣା ଢଙ୍ଗର ଫାଟକ ସାମନାରେ ରହିଗଲା । ଡ୍ରାଇଭର ଦରଜାଖୋଲି ବେଶ ବିଶ୍ୱାସ ସହିତ ମୋର ସୁଟକେଶଟି ବାହାର କରି ଫୁଟପାଥ ଉପରେ ରଖିଦେଇ ପଇସା ପାଇଁ ହାତ ବଢ଼େଇଲାରୁ ମୋତେ କେମିତି ଯେ ବିଚିତ୍ର ମନେହେଲା ।

ମୁଁ ସନ୍ଦେହ କଲାଭଳି ପଚ୍ଚାରିଲି— 'ଏଇଟା ସେ ଜାଗା ତ ?'

'ଆଜ୍ଞା !' ସେ ଅତି ବିଶ୍ୱାସ ସହିତ ଉତ୍ତର ଦେଲା । ମୁଁ ଗାଡ଼ିରୁ ଓହ୍ଲେଇ ଆସିଲି । ଟେକ୍ସିଟି ଗଳିର ଅନ୍ଧକାର ଭିତରେ ହଜିଗଲା । ଆଉ ମୁଁ ଫୁଟପାଥ୍ ଉପରେ ଠିଆ ହୋଇ ରହିଲି । ମୁଁ ଦରଜା ଖୋଲିବାର ଚେଷ୍ଟା କଲି । ଭିତରପଟୁ ବନ୍ଦ ଥିଲା । ଦରଜା ଦେହରେ ଲାଗିଥିବା ଛୋଟ ଗେଟ୍‌ଟିକୁ ଖଟ୍‌ଖଟ୍ କଲି । କିଛି ସମୟ ପରେ ସେଇ ଛୋଟ ଗେଟ୍‌ଟି ଖୋଲିଲା, ମୁଁ ଚ୍ଚାରିପଟକୁ ଅନେଇଲି । ଅଗଣା କିଛିଟା ଅନ୍ଧାରୁଆ ଲାଗିଲା । ତା'ର ଗୋଟାଏ କୋଣରେ ନାଇଟ୍ ଡ୍ରେସ୍ ପିନ୍ଧି ଝିଅଦୁଇଟି କଥା ହେଉଥିଲେ । ଅଗଣାର ଗୋଟାଏ ପଟେ ପୁରୁଣା ଘରଟିଏ ଥିଲା । ମୋତେ ମୁହୂର୍ତ୍ତକ ଲାଗି ଲକ୍ଷ୍ନୌର ଘିସିୟାରୀ ମଣ୍ଡୀ ସ୍କୁଲ ମନେପଡ଼ିଗଲା । ସେଠାରେ ମୁଁ ବନାରସ ବିଶ୍ୱବିଦ୍ୟାଳୟରେ ମେଟ୍ରିକ୍ ପାଶ୍ କରିଥିଲି । ମୁଁ ପଛକୁ ଲେଉଟି ଗଳିକୁ ଚ୍ଚାହିଁଲି । ସେଇଠି ଶାନ୍ତି ବିରାଜମାନ କରିଥିଲା । ଅନୁମାନ କରନ୍ତୁ, ମୁଁ ସେତେବେଳେ ନିଜେ ନିଜକୁ ପଚ୍ଚାରିଲି— ଏ ଜାଗାଟି ଯଦି ଅଫିମ ଖୋର, ସ୍ମଗଲର ଆଉ କ୍ରୀତଦାସ ବିକ୍ରୟ କେନ୍ଦ୍ରଭଳି କିଛି ହୋଇଥିବ, ତାହେଲେ ! ମୋ'ଭଳି ଝିଅଟିଏ ଗୋଟାଏ ଅଜଣା ଦେଶ, ଅଜଣା ସହରରେ ରାତି ଏଗାରଟା ବେଳେ ଗୋଟାଏ ଅଜଣା ଅପରିଚିତ ଦୁଆର ଖଟଖଟେଇ ଚ୍ଚାଲିଛି; ସେ ପୁଣି ସେଇ ଘିସିୟାରୀ ମଣ୍ଡୀ ସ୍କୁଲ ଭଳି ଗୋଟାଏ ଘର ।

ଝିଅଟିଏ ଦୁଆର ପାଖକୁ ଆସିଲା

'ଗୁଡ୍ ଇଭିନିଙ୍ଗ, ଏଇଟା ଓ୍ୱାଇ, ଡବ୍‌ଲ୍ୟୁ, ସି.ଏ ତ ? ମୁଁ ହସିଦେଇ ବିନୀତ ଭାବରେ ପଚ୍ଚାରିଲି, "ମୁଁ ମୋ ଲାଗି ରିଜର୍ଭେସନ ପାଇଁ ତାର ଦେଇଥିଲି ବି ।" ଆଉ ମନେମନେ ଭାବୁଥାଏ କେତେ ହୀନ ଅବସ୍ଥାର ଏ ଓ୍ୱାଇ, ଡବ୍‌ଲ୍ୟୁ, ସି.ଏ !

"ଆମକୁ ସେମିତି କୌଣସି ଟେଲିଗ୍ରାମ ବି ମିଳିନାଇଁ । ଦୁଃଖର କଥା, ସବୁ ରୁମ ଭରପୂର !"

ସେତେବେଳକୁ ଦ୍ୱିତୀୟ ଝିଅଟି ବି ପାଖକୁ ଆସି ସାରିଥାଏ । କହିଲା, "ଏଇଟା ଓ୍ୱାର୍କିଂଗ୍ ଗର୍ଲସ ହୋଷ୍ଟେଲ୍ ! ଏଇଠି ସାଧାରଣତଃ ଯାତ୍ରୀମାନଙ୍କୁ ରଖାଯାଏ ନାଇଁ ।" ମୁଁ

ପୂରା ଘାବରେଇ ଗଲି । ଏଇନେ କ'ଣ ହେବ ? କୁଆଡ଼େ ଯିବି, କ'ଣ କରିବି ? ଅନ୍ୟ ଝିଅଟି ମୋର ଭୟମିଶା ବ୍ୟସ୍ତତା ଦେଖି ମୁରୁକି ହସିଲା ।

''କିଛି ନାହିଁ । ଡରନା । ଆସ ଏପଟୁ, ଡେଇଁ ଆସ ।''

''ଗୋଟିଏ ବି ରୁମ୍ ଖାଲି ନାହିଁ ଯେ ?'' ମୁଁ ଡରି ଡରି କହିଲି... ''ମୋ ଲାଗି କ'ଣ କରିବେ !''

''ହଁ, ହଁ, କିଛି କଥା ନାହିଁ, ତମେ ଆସୁନ ! ଯେମିତି ହେଉ କରିବା । ଏ ଅଧରାତିରେ କୁଆଡ଼େ ପୁଣି ଯିବ ?'' ଝିଅଟି କହିଲା । ମୁଁ ସୁଟକେଶ ଉଠେଇ ସେଇ ଛୋଟିଆ ଗେଟ୍‌ରେ ଭିତରକୁ ଗ୍ଲିଗଲି । ଝିଅଟି ମୋ ହାତରୁ ସୁଟକେଶ୍ ନେଇଗଲା । ସେ ହତା ଭିତରକୁ ଗଲା ପରେ ମୁଁ କିଛିଟା ଅନୁନୟ ସ୍ୱରରେ କହିଲି, ''ଖାଲି ଏଇ ରାତିକ ଲାଗି ମୋତେ ଏଇଠି ରହିଯିବାକୁ ଦିଅ । ସକାଳୁ ମୁଁ ମୋର ବନ୍ଧୁମାନଙ୍କୁ ଫୋନ୍ କରି ସୁବିଧା କରିନେବି । ଏଠାକାର ତିନି ଗ୍ରିଜଣ ମୋର ଜଣାଶୁଣା । ତମମାନଙ୍କର କୌଣସି ଅସୁବିଧା ହେବ ନାହିଁ ।''

''କିଆଁ ବ୍ୟସ୍ତ ହେଉଛ ?'' ସେ ଝିଅଟି କହିଲା । ଅନ୍ୟ ଝିଅଟି 'ଗୁଡ୍‌ନାଇଟ୍' କହି ଗ୍ଲିଗଲା ।

ଆମେ ସିଡ଼ି ଦେଇ ଉପର ବାରଣ୍ଡାକୁ ଗଲୁଁ । ବାରଣ୍ଡାର ଗୋଟାଏ କୋଣକୁ କାଠ ପାର୍ଟିସନ୍ ଦେଇ କୋଠରିଟିଏ ଭଳି ତିଆରି ହୋଇଥାଏ । ଝିଅଟି ଲାଲଲାଲ ଫୁଲ ପକା ମୋଟା କପଡ଼ାର ପରଦା ଆଡ଼େଇ ଭିତରକୁ ଗଲା । ମୁଁ ତା'ର ପଛେ ପଛେ ଗଲି । 'ମୁଁ ଏଇଠି ରହେଁ, ତମେ ବି ଏଇଠି ଶୋଇଯିବ ।' ସେ ସୁଟକେଶଟିକୁ ଗୋଟାଏ କୋଣକୁ ରଖିଦେଲା । ଆଉ ଆଲମିରାରୁ ନୂଆ ସାବୁନ ଓ ସଫା ତଉଲିଆ କାଢ଼ି ବସିଲା । ଗୋଟାଏ କୋଣକୁ ଛୋଟ ପଲଙ୍କଟିଏରେ ସଫା ମଶାରୀଟିଏ ଲାଗିଥାଏ । ତା'ରି ସଳଖରେ ଡ୍ରେସିଂ ଟେବୁଲ ଆଉ ବହି ଆଲମିରା । ସେ କୋଠରିଟିର ରଖାଥୁଆ ସେମିତି ଯେମିତି ପ୍ରାୟ ସବୁ ଝିଅ ହୋଷ୍ଟେଲ୍‌ରେ ହୋଇଥାଏ । ଝିଅଟି ତୁରନ୍ତ ଅନ୍ୟ ଆଲମିରାରୁ ଗ୍ରଦର ଓ କମ୍ବଳ ଆଣି ରଙ୍ଗଛଡ଼ା ଚଟାଣରେ ବିଛେଇ ନେଲା । ପଲଙ୍କ ଉପରେ ନୂଆ ଗ୍ରଦର ପାରିଦେଇ ମଶାରୀ ପକେଇଦେଲା ।

''ତମ ବିଛଣା ରେଡ଼ି ।''

''ଶୁଣ, ମୁଁ ତଳେ ଶୋଇଯାଉଛି ।'' ମୁଁ ଲଜ୍ଜିତ ମନେକଲି ।

'ମୋଟେ ନୁହଁ । ଏତେ ମଶା କାମୁଡ଼ିବେ ଯେ ଅବସ୍ଥା ଖରାପ ହେଇଯିବ । ଆମର ତ ଅଭ୍ୟାସରେ ପଡ଼ିଗଲାଣି । ହଉ, ଲୁଗା ବଦଳେଇ ନିଅ ।''

କହିଦେଇ ସେ ଚଟାଣ ଉପରେ ଖୁସିରେ ବସି ପଡ଼ିଲା 'ମୋ ନା କାରମନ୍ । ମୁଁ ଏଇଠି ଗୋଟାଏ ଅଫିସରେ କାମ କରୁଛି । ସନ୍ଧ୍ୟାରେ ବିଶ୍ୱବିଦ୍ୟାଳୟରେ ରିସର୍ଚ୍ଚ ।

ମୋର ବିଷୟ କେମେଷ୍ଟ୍ରୀ । ମୁଁ ଓ୍ୱାଇ, ଡବଲ୍ୟୁ, ସି.ଏ ର ସୋଶିଏଲ ସେକ୍ରେଟେରୀ ବି । ତମେ ତମ ସଂପର୍କରେ କୁହ।''

ମୁଁ କହିଲି ।

''ଏଣିକି ଶୋଇପଡ଼ ।'' ମୋତେ ଢୁଳଉଥିବା ଦେଖି କହିଲା ସେ । ତା'ପରେ ସେ ସାମନାକୁ ନଇଁ, ବସିପଡ଼ି ପ୍ରାର୍ଥନା କଲା ଓ ଘଡ଼ିକ ପରେ ଶୋଇପଡ଼ିଲା ।

ସକାଳେ ଆମେ ସମସ୍ତେ ଉଠିଲୁ । ଝିଅଗୁଡ଼ିକ ହାଉସ୍ କୋଟ୍ ପିନ୍ଧି, ମୁଣ୍ଡରେ ତଉଲିଆ ଗୁଡ଼େଇ ବାଥରୁମ୍‌ରୁ ବାହାରି ଆସୁଥିଲେ । ବାରଣ୍ଡାରୁ କଫିର ସୁଗନ୍ଧ ଭାସି ଆସୁଥାଏ । ଦୁଇ ତିନୋଟି ଝିଅ ବାରାଣ୍ଡାରେ ବୁଲିବୁଲି ବ୍ରଶ୍ କରୁଥା'ନ୍ତି ।

''ଚାଲ, ତମକୁ ବାଥ୍‌ରୁମ ଦେଖେଇ ଦେବି ।'' ମୋତେ କାରମନ୍ କହିଲା ଆଉ ହଲ୍ ପାରକରି ଗୋଟାଏ ବାରଣ୍ଡାକୁ ନେଇଆସିଲା । ସେଇ ବାରଣ୍ଡାର ଗୋଟାଏ କୋଣକୁ କୋଠରିଟିଏ ଭଳି କରାହେଇଥିଲା । ଭିତରେ କେବଳ ଗୋଟାଏ ଟେପ୍ ଆଉ କାନ୍ଥରେ ଗୋଟାଏ ଖୁଣ୍ଟି, ବାସ୍ ସେତିକି । ତା'ର ଚଟାଣ ସିମେଣ୍ଟ ଠାଏ ଠାଏ ଫାଟି ଯାଇଥିଲା । ବେଶ୍ ସନ୍ତସନ୍ତିଆ କାନ୍ଥ । ସ୍କାଇଲାଇଟ୍ ଦେଇ ସେପଟେ କୋଉ ଗୋଟାଏ ଝିଅ ଗାଉଥିବା ଗୀତ ଶୁଭୁଥିଲା । ସେଇ ବାଥରୁମ୍ ଭିତରେ ଠିଆହୋଇ ମୁଁ ବିଚିତ୍ର ଭାବରେ ଭାବିଲି— ଏ ଦେଶରେ ଏ ବାଥରୁମ୍ କୋଉକାଳରୁ ଅଛି, ଏଇ କୋଠାରେ କୋଉକାଳରୁ ରହିଛି । ଆଉ ମୋର ବ୍ୟକ୍ତିତ୍ୱ ନେଇ ସଂପୂର୍ଣ୍ଣ ଅଜ୍ଞ ମୁଁ ତା'ରି ଭିତରେ ଅଛି । କେତେ ମୂର୍ଖଙ୍କ ଭଳି ଭାବନା ନୁହଁ ! ମୁଁ ଗାଧୋଇ ଆସିଲା ବେଳକୁ ଗୋଟାଏ ଅନ୍ଧାରୁଆ କୋଠରିରେ ଟେବୁଲ ଉପରେ ମୋ ପାଇଁ ଜଳଖିଆ ବଢ଼ା ହୋଇ ରହିଥିଲା । ଅନେକ ଝିଅ ସେଇଠି ରୁଣ୍ଡ ହୋଇ ସାରିଥିଲେ । କାରମନ୍ ସେମାନଙ୍କ ସାଙ୍ଗରେ ମୋର ପରିଚୟ କରେଇଦେଲା । ବେଶ୍ ଚଂଚଳ ଆମେମାନେ ଅତି ପୁରୁଣା ବନ୍ଧୁଭଳି ମନଖୋଲା ହସ ହସିବାକୁ ଲାଗିଲୁ ।

'ମୁଁ ଯାଏ, କେତେ ଜଣଙ୍କୁ ଫୋନ୍ କରିଦିଏ— !' ଚା' ଖାଇନେଇ ମୁଁ କହିଲି ।

କାରମନ୍ ଦୁଷ୍ଟାମିର ମୁରୁକିହସା ଦେଲା । 'ହଁ, ତମେ ତମର ବଡ଼ ବଡ଼ ମହାନ୍ ବନ୍ଧୁଙ୍କୁ ଫୋନ୍ କର ଆଉ ସେମାନଙ୍କ ପାଖକୁ ଚାଲିଯାଅ । ଦେଖ, କିଏ ତମ କଥା ଭାବୁଛି ? କ'ଣ ରୋଜା, ଭାବୁଛୁ ?''

'ବିଲ୍‌କୁଲ ନୁହଁ ।' ସମସ୍ତେ ପ୍ରାୟ ଏକସାଙ୍ଗରେ କହିଲେ ।

ଝିଅଗୁଡ଼ିକ ମେଜରୁ ଉଠିଆସିଲେ— ''ଆମେସବୁ ନିଜେ ନିଜ କାମରେ ଯାଉଛୁଁ । ସଂଜକୁ ଦେଖାହେବ ।' ମେଗଡ୍‌ଲୀନା କହିଲା ।

'ସଂଜକୁ ?' ଅମେଲିୟା କହିଲା— 'ଆରେ ସଂଜବେଳେ ତ ଇଏ କୋଉ କଣ୍ଟ୍ରୀ କ୍ଲବରେ ଥିବ ।''

କାରମନର ଯିବା ପରେ ମୁଁ ବାରଣ୍ଡାକୁ ଆସି ଫୋନ୍ କରିବା ଆରମ୍ଭ କଲି । ପ୍ରତିରକ୍ଷା ବିଭାଗର ଚିଫ୍ ମେଜର ଜେନରାଲ କେମୋ ଗିନ୍ଲାସ୍, ଯେ ଯୁଦ୍ଧ ସମୟରେ

ମୋର ମାମୁଁଙ୍କ ସାଙ୍ଗରେ ଥିଲେ । ମିସେସ୍ ଏଣ୍ଟୋନିଆଁ କୋଷ୍ଟିଲୋ, ଗୋଟାଏ କୋଟିପତି ବ୍ୟବସାୟୀଙ୍କର ପତ୍ନୀ । ସେ ନିଜେ ମଧ୍ୟ ଜଣେ ପ୍ରସିଦ୍ଧ ସମାଜସେବିକା । ତାଙ୍କ ସାଙ୍ଗରେ ମୋର ଗୋଟାଏ ଅନ୍ତର୍ଜାତୀୟ ସମ୍ମିଳନୀରେ ଦେଖା ହୋଇଥିଲା । ଅଲଫାନ୍ସୋ ବିଲୋରା, ଏ ଦେଶର ଜଣେ ପ୍ରସିଦ୍ଧ ଲେଖକ ଓ ଜର୍ଣ୍ଣାଲିଷ୍ଟ । ସେ ଥରେ କରାଚୀ ଆସିଥିଲେ ।.... 'ହଲ୍ଲୋ... ଆରେ ତମେ !... କେବେ ଆସିଲ ! ଆମକୁ ସୂଚନା ପର୍ଯ୍ୟନ୍ତ ଦେଲନାହିଁ କେମିତି ? କୋଉଠି ଅଛ ? ... ସେଠି ? ଗୁଡ୍ ଗଡ୍... ଆରେ ସେ କ'ଣ ରହିବା ଜାଗା ! ମୁଁ ପହଞ୍ଚିଛି । ପ୍ରସ୍ତୁତ ହେଇଥିବ ।'... ସମସ୍ତେ ପ୍ରାୟ ଭିନେ ଭିନେ ବାଗରେ ସେଇ ଗୋଟିଏ କଥା କହିଲେ । ଶେଷକୁ ମୁଁ ଡନ୍ ଗାର୍ସିଆ ଡେଲ୍ ଫ୍ରେଡୋସ୍‌ଙ୍କୁ ଫୋନ୍ କଲି । ସେ ପଶ୍ଚିମ ୟୁରୋପର ଗୋଟାଏ ଦେଶରେ ରାଜଦୂତ ଥିଲେ । ସେଠାରେ ମୋର ତାଙ୍କର ପତ୍ନୀଙ୍କ ସାଙ୍ଗରେ ଘନିଷ୍ଠ ବନ୍ଧୁତା ଥିଲା । ତାଙ୍କର ସେକ୍ରେଟେରୀ ସେମାନେ ସେତେବେଳେ କୋଉ ଏକ ଶୈଳନିବାସରେ ରହୁଥିବା କଥା କହିଲେ ଏବଂ ତାଙ୍କର ଶୈଳନିବାସକୁ ଫୋନ ଲଗେଇଦେଲେ ।

କିଛି ସମୟ ପରେ ମିସେସ୍ କୋଷ୍ଟୀଲୋ ତାଙ୍କର ମର୍ସିଡିସ କାରରେ ମୋତେ ସାଙ୍ଗରେ ନେଇଯିବାକୁ ଆସି ପହଞ୍ଚିଲେ । କାରମନ୍‌ର କୋଠରିକୁ ଆସି ଗ୍ୱରିପଟେ ଅନେଇଲେ ଆଉ ନିଜେ ମୋର ସୁଟ୍‌କେଶ ଉଠେଇ ନେଲେ ।

ମୋତେ ଧକ୍କା ଲାଗିଲା ଭଳି ହେଲା । ମୁଁ ଏମାନଙ୍କୁ ଛାଡ଼ିଯିବି ନାହିଁ । ମୁଁ କାରମନ୍, ଅମେଲିୟା, ବାରନାର୍ଡ଼ା, ରୋଜା, ମେଗଦଲୀନାଙ୍କ ସାଙ୍ଗରେ ରହିବାକୁ ଗ୍ୱହୁଁଛି ।

'ସୁଟକେଶ୍ ଥାଉ ଏଇନେ । ସନ୍ଧ୍ୟାରେ ଦେଖିବା ।' ମୁଁ ଅପ୍ରତିଭ ହୋଇ ମିସେସ କୋଷ୍ଟୀଲୋଙ୍କୁ କହିଲି ।

'ତେବେ ତମର ଏମିତି ଏକ ବାଜେ ଜାଗାରେ ବେଶ ଅସୁବିଧା ହେବ ।' ସେ ମୋତେ ବାରମ୍ବାର ଏଇ ଗୋଟାଏ କଥା କହୁଥିଲେ ।

ରାତିରେ ମୁଁ ଫେରିଲାବେଳକୁ କାରମନ୍ ଆଉ ଅମେଲିଆ ଦରଜା ପାଖରେ ଜଗି ବସିଲା ଭଳି ରହିଥିଲେ । ସେମାନେ ମୋର ଅପେକ୍ଷାରେ ଥିଲେ । 'ଆଜି ଆମେ ତମ ପାଇଁ ରୁମ୍ ବ୍ୟବସ୍ଥା କରିଦେଇଛୁ ।' କାରମନ୍ କହିଲା । ଆଉ ତାକୁ ଚଟାଣ ଉପରେ ଶୋଇବାକୁ ପଡ଼ିବ ନାହିଁ ଭାବି ମୋତେ ବି ଭଲ ଲାଗିଲା ।

ହଲର ଅନ୍ୟପଟକୁ ସେଭଳି ଏକ ସନ୍ତସନ୍ତିଆ କୋଠରିରେ ଦୁଇଟି ପଲଙ୍କ ପଡ଼ିଥିଲା । ଗୋଟାଏରେ ମୋ ପାଇଁ ବିଛଣା କରାହେଇଥିଲା । ଅନ୍ୟଟି ଉପରେ ବସି ବସି ମିସେସ୍ ସୌରେଲ ସିଗାରେଟ ଟାଣୁଥିଲେ । ତାଙ୍କର ବୟସ ପାଖାପାଖି ଗ୍ୱଳିଶ ହେବ । ତାଙ୍କ ଆଖିରେ ବିଚିତ୍ର ଉଦାସପଣ ଭରି ରହିଥିଲା ।

ପୋଲିନେସିୟନ ବର୍ଗର କୋଉ ଶାଖା ସହିତ ତାଙ୍କର ସମ୍ବନ୍ଧ ଥିଲା, ତାଙ୍କର

ଚେହେରା ଦେଖି କହିବା ଆଦୌ ସମ୍ଭବ ନୁହଁ । ପଲଙ୍କ ଉପରେ ଶୋଇପଡ଼ି ସେ ତୁରନ୍ତ ନିଜର ଜୀବନ କାହାଣୀ କହିବା ଆରମ୍ଭ କରିଦେଲେ.... 'ମୁଁ ଗାମ୍‌ରୁ ଆସିଛି ।

'କୋଉଠି ଅଛି ଗାମ୍ ?' ମୁଁ ପଗ୍ଗରିଲି

'ପ୍ରଶାନ୍ତ ସାଗର ମଝିରେ ଦୀପଟିଏ ଅଛି । ଆମେରିକାନ ତା'ର ଶାସକ । ସେ ଏତେ ଛୋଟ ଦ୍ୱୀପଟିଏ ଯେ ଦୁନିଆର ମାନଚିତ୍ରରେ ସେଇ ଦ୍ୱୀପର ନାଆଁ ଭାବରେ ବିନ୍ଦୁଟିଏ ଅଛି । ସେଇ ଦୃଷ୍ଟିରୁ ମୁଁ ଆମେରିକାର ନାଗରିକ ।' ସେ କିଛିଟା ଗର୍ବରେ କଥାଟି କହିଲା ।

'ଗାମ୍' ମୁଁ ମନେ ମନେ କହିଲି । ବିଚିତ୍ର କଥା— ଦୁନିଆଁରେ କେତେ ଯେ ଥାନ ଅଛି, ଯୋଉଠି ଆମଭଳି ଲୋକେ ରହନ୍ତି ।

'ମୋର ଝିଅ ଗୋଟାଏ ଭାୟୋଲିନ୍ ବାଦକ ସାଙ୍ଗରେ ପଳେଇ ଆସିଛି । ମୁଁ ତାକୁ ଧରିବି ବୋଲି ଆସିଛି । ସେ କେବଳମାତ୍ର ସତର ବର୍ଷର, ହେଲେ କାହିଁରେ କଣ ଜିଦ୍‌ଖୋର । ଏମାନେ ସବୁ ଆଜିକାଲିକା ଝିଅ ।' ତା'ପରେ ସେ ଉଠି ବିଛଣା ଉପରେ ବସିପଡ଼ିଲା । 'ମୋତେ କେନ୍‌ସର ହୋଇଥିଲା ।'

'ଆହା !' ମୋ ମୁହଁରୁ ବାହରିଗଲା ।

'ମୋ ଛାତିରେ କେନ୍‌ସର ହୋଇଥିଲା ।' ଭାରି ଦୁଃଖରେ କହିଲା ସେ । 'ତିନିବର୍ଷ ତଳେ... ତିନିବର୍ଷ ତଳେ ମୁଁ ବି ସମସ୍ତଙ୍କ ଭଳି ନର୍ମାଲ ଥିଲି ।' ତା'ର କଣ୍ଠସ୍ୱର ବେଦନାର୍ଦ୍ର ହୋଇ ଉଠିଲା । 'ଦେଖ'— ସେ ତା'ର ନାଇଟ୍ ଗାଉନ୍ ଖୋଲି ଦେଖେଇଲା ଆଉ ମୁଁ ଆତଙ୍କରେ ଆଖି ବୁଜିନେଲି । ଗୋଟାଏ ନାରୀର ଦେହରୁ ତା'ର ସୌନ୍ଦର୍ଯ୍ୟମୟ ଅଂଶ ସବୁଦିନ ପାଇଁ ଗ୍ଗଲିଯିବା କେତେ ଭୟାନକ କଥା ନୁହଁ !

କିଛି ସମୟପରେ ସେ ସିଗାରେଟ୍ ଲିଭେଇ ଶୋଇ ପଡ଼ିଲେ । କୋଠରିରୁ ମେଗଦଲୀନାର ଗାଇବାର ଗୁଣୁ ଗୁଣୁ ସ୍ୱର ବି ବନ୍ଦ ହୋଇ ସାରିଥିଲା ।

ଅକସ୍ମାତ୍ ମୋର କଇଁ କଇଁ କାନ୍ଦିବାକୁ ମନ ହେଲା ।

ତା'ପର ସପ୍ତାହଟି ଫେଶନେବୁଲ୍ ପତ୍ରିକାମାନଙ୍କର ଭାଷାରେ ସାମାଜିକ ଏବଂ ସାଂସ୍କୃତିକ ବ୍ୟବସ୍ଥାର ତୋଫାନ୍ ଭଳି ଆର୍ଟ ଓ କଲ୍‌ଚରର ଆଳାପ ଆଲୋଚନାରେ କଟିଗଲା । ଦିନବେଳା ମିସେସ୍ କୋଷ୍ଟୀଲୋଙ୍କର ବା ତାଙ୍କର ବାନ୍ଧବୀମାନଙ୍କର ସୁନ୍ଦର ସୁନ୍ଦର ଘରମାନଙ୍କରେ କଟୁଥାଏ; ସନ୍ଧ୍ୟାଗୁଡ଼ିକ ସହରର ମନୋରଞ୍ଜନ ସ୍ଥାନମାନଙ୍କରେ ବିତି ଯାଉଥାଏ । ସବୁପ୍ରକାର ଲୋକ, ବୁଦ୍ଧିଜୀବୀ, ସାମ୍ବାଦିକ, ଲେଖକ, ରାଜନୈତିକ ନେତା ମିସେସ କୋଷ୍ଟୀଲୋଙ୍କ ଘରକୁ ଆସୁଥିଲେ । ସେମାନଙ୍କ ସାଙ୍ଗରେ ତର୍କବିତର୍କ ଗ୍ଗଲେ ଆଉ ମୁଁ ନୂଆ ନୂଆ ଇଂରାଜୀ ଅଭିବ୍ୟଂଜକ ଶବ୍ଦରେ ନିଜକୁ ଏନ୍‌ଜୟ୍ କରି ଗ୍ଗଲିଥାଏ । ରାତିରେ ମୁଁ ସେଇ ୱାଇ.ଡବ୍ଲ୍ୟୁ.ସୀ.ଏକୁ ଗ୍ଗଲିଆସେଁ ଆଉ ସେତେବେଳେ ହଲ୍‌ର ଗ୍ଗରିକୋଣିଆ ମେଜର ଗ୍ଗରିପଟେ ଘେରି ରହି ପାଞ୍ଚୋଟିଯାକ ଝିଅ ବେଶ୍ ଜିଜ୍ଞାସାରେ

ମୋ'ଠାରୁ ସାରା ଦିନର ଘଟଣା ଶୁଣନ୍ତି । 'ବିଚିତ୍ର କଥା'— ରୋଜା କହେ 'ଆମେସବୁ ଏଇ ସହରର ଆଉ ଆମକୁ ଜଣାନାହିଁ ଯେ ଆମ ସହରରେ ବି ଏଭଳି ରୋମାଞ୍ଚକ ବାତାବରଣ ଅଛି ।'

'ଏ ଅତି ଧନୀ ଲୋକେ ଯୋଉ ଅଛନ୍ତି, ସେମାନେ ଏତେ ଟଙ୍କାରେ କରନ୍ତି କ'ଣ ?' ଆମେଲିୟା ପ୍ରଶ୍ନ କରେ । ଆମେଲିୟା ଗୋଟାଏ ସ୍କୁଲରେ ପଢ଼ଉଥିଲା । ରୋଜା ଗୋଟାଏ ସରକାରୀ ଅଫିସରେ ଷ୍ଟେନୋଗ୍ରାଫର୍ । ମେଗଦଲୀନା ଆଉ ବରନାର୍ଡ଼ୀ ଗୋଟାଏ ସଂଗୀତ ମହାବିଦ୍ୟାଳୟରେ ପିଆନୋ ଆଉ ଭାୟୋଲିନ୍‌ରେ ଉଚ୍ଚତର ଶିକ୍ଷା ଲାଗି ଛାତ୍ରୀ ଥିଲେ । ସମସ୍ତେ ମଧ୍ୟମ ବା ନିମ୍ନମଧ୍ୟମ ଶ୍ରେଣୀର ଝିଅ ।

ରବିବାର ସକାଳେ କାରମନ୍ ଗୀର୍ଜାକୁ ମାସେ ଲାଗି ଯିବ ବୋଲି ପ୍ରସ୍ତୁତ ହେଉଥାଏ । କ'ଣ ଗୋଟାଏ ଜିନିଷ ବାହାର କରିବି ବୋଲି ମୁଁ ଆଲମିରାର ଡ୍ରୟର ଖୋଲିଲି । ସେତିକିବେଳେ ଦୋହଲି ଯାଇ ଉପର ଥାକରୁ ଉଲ୍ ତିଆରି ଠେକୁଆଟିଏ ଖସିପଡ଼ିଲା । ମୁଁ ତାକୁ ନେଇ ସେଇଠି ରଖିଦେବାକୁ ଯାଇ ଦେଖିଲି ଆହୁରି ଅନେକ ଛୋଟ ବଡ଼ ଖେଳନା ଥୁଆ ହୋଇଛି ।

'ସେ ସବୁ ମୋର ପୁଅର ଖେଳନା ।' କାରମନ ଦର୍ପଣ ଆଗରେ ମୁଣ୍ଡ କୁଣ୍ଡଉଥିବା ଭିତରେ ବେଶ ବିଶ୍ୱାସପୂର୍ଣ୍ଣ କଣ୍ଠରେ କହିଲା ।

'ତମ ପୁଅର !' ମୁଁ ଆବା-କାବା ରହିଗଲି । ତାକୁ ବେଶ କାତର ଆଖିରେ ଦେଖିଲି । କୁମାରୀ ମାତା !

ଦର୍ପଣରେ ମୋ ମୁହଁରେ ଉକୁଟି ଉଠିଥିବା ପ୍ରତିକ୍ରିୟାର ଭାବ ଦେଖି ମୋତେ ବୁଲିପଡ଼ି ଅନେଇଲା । କହିଲା— ''ତମେ ଭୁଲ୍ ବୁଝିଲ ମୋତେ ।'' କହିଦେଇ ଖିଲିଖିଲି ହସିଲା । ତା'ପରେ ଆଲମିରାର ତଳ ଥାକରୁ ବେବୀ ବୁକ୍‌ଟିଏ ବାହାର କରି କହିଲା— ''ଦେଖ, ଏ ମୋ ପୁଅର ଜନ୍ମଦିନର ବହି । ଯେତେବେଳେ ସେ ବର୍ଷକର ହବ, ଏଇଆ କରିବ— ଦୁଇବର୍ଷ ବେଳକୁ ସେଇଆ କରିବ । ଆଉ ଏଇଠି ମୁଁ ତା'ର ଫଟୋ ଲଗେଇବି ।'' ଏତକ କହିଦେଇ ସେ ସେଇ ବହି ଭିତରେ ସୁନ୍ଦର ସୁନ୍ଦର ଆମେରିକାନ ପିଲାଙ୍କର ରଙ୍ଗିନ ଛବି କେତୋଟି ପଲଙ୍କ ଉପରେ ଖେଳେଇ ଦେଲା ଆଉ ନିଜେ ଚକା ପାରି ବସିଗଲା । ଦେଖୁନ ମୋ ନାକ କେମିତି ଚେପା ଆଉ ନିକ୍ ତ ମୋଠୁଁ ବାଜେ । ଭାବି ଦେଖ ଆମ ଦୁହିଁଙ୍କର ପୁଅ କେମିତି ହେବ ? ମୁଁ ତା' ଜନ୍ମର ମାସ ମାସ ଆଗରୁ ଏ ସବୁ ଛବି ଦେଖୁଥିବି, ଯେମିତି ତା'ର ନାକ ଉପରେ କିଛିଟା ପ୍ରଭାବ ପଡ଼ିବ ।'

'ତମେ ବେଶ୍ ପାଗଳ ଦେଖୁଛି ।' ମୁଁ କହିଲି ଆଉ ପଚାରିଲି ''ଆଚ୍ଛା ଏ ନିକ୍ ମହୋଦୟ କିଏ ?''

ତା'ର ଚେହେରା ପୂରା ଶେତା ପଡ଼ିଗଲା— 'ଏଇନେ ତା କଥା ପକାନା । ତା' ନା' ପଡ଼ିଲେ ମୋତେ ଲାଗୁଛି, ଯେମିତି ଛାତି ମୋର କରତି ହେଇଯିବ ।''

ଆଉ ସେ ତା'ପରେ କିଛୁ ସେଇ ନିକ ବାବତରେ ହିଁ କହିବାକୁ ଲାଗିଲା । 'ମୁଁ ଏତେ ଅସୁନ୍ଦରୀ— କେବେ ନିକ୍ କହେ; କାରମନ୍, ମୁଁ ତମର ମନ, ବୁଦ୍ଧି, ଆତ୍ମାକୁ ଭଲପାଏ । ନିକ୍ ଦୁନିଆ ଦେଖୁଛି । କେତେ କେତେ ସୁନ୍ଦରୀ ଝିଅ ତା'ର ସାଙ୍ଗ ଆଉ ତାକୁ ମୋର ଅସୁନ୍ଦରପଣ ଟିକିଏ ବି ଦିଶେନାଇଁ ।'' ଗୀର୍ଜାରୁ ଫେରିବା ପରେ, ସାଗରତଟରେ ବୁଲୁଥିବା ବେଳେ, ଓ୍ୱାଇ.ଡବଲ୍ୟୁ. ସି.ଏ.ର ସନ୍ତସନ୍ତିଆ କୋଠରି ଭିତରେ କପଡ଼ା ଇସ୍ତ୍ରୀ କରୁ କରୁ କାରମନ ମୋତେ ତା'ର ଆଉ ନିକ୍‌ର କାହାଣୀ ଶୁଣେଇବାକୁ ଲାଗିଲା । ନିକ୍ ଡାକ୍ତର । ହାର୍ଟ ସର୍ଜରୀ ପରେ ଉଚ୍ଚଶିକ୍ଷା ପାଇବ ବୋଲି ବାହାରକୁ ଯାଇଥିଲା । ତାକୁ ବହୁତ ଭଲ ପାଉଥିଲା ।.

ରାତିରେ ମୁଁ ମିସେସ୍ ସୋରେଲ୍‌ଙ୍କ ରୁମ୍‌ରୁ କାରମନର ରୁମ୍‌କୁ ଆସିଗଲି । କାରଣ ମିସେସ ସୋରେଲ ତାଙ୍କ ଝିଅକୁ ଧରିବାରେ ସଫଳ ହୋଇଥିଲେ ଆଉ ସେ ଝିଅଟି ଆସି ତାଙ୍କର ସାଙ୍ଗରେ ରହିଲା । ଶୋଇବା ଆଗରୁ ମୁଁ ମଶାରୀ ଠିକ୍ କରୁଥିଲି । ଆଉ ସେତିକିବେଳେ ସେଇ ଚଟାଣରେ କାରମନ୍ ଆସନ ଜମେଇ ବସିଗଲା ।

'ନିକ୍....' ସେ କହିବା ଆରମ୍ଭକଲା ।

'ଏବେ କୋଉଠି ଅଛି ?'' ମୁଁ ପଚାରିଲି ।

'ମୁଁ ଜାଣିନି'

'ତମେ ତାକୁ ଚିଠି ଲେଖୁନ !'

'ନା'

'କାହିଁକି ?' ମୋତେ ଆଶ୍ଚର୍ଯ୍ୟ ଲାଗିଲା ।

'ତମେ ଈଶ୍ୱରଙ୍କୁ ବିଶ୍ୱାସ କର ?' ସେ ମୋତେ ପଚାରିଲା ।

'ସେ ତ ଗୋଟାଏ ବିରାଟ ପ୍ରସଙ୍ଗ, ଛାଡ଼ ସେ କଥା ।' ମୁଁ ହାଇମାରି ଉତ୍ତର ଦେଲି । ''ତମେ କହୁନ, ତା ପାଖକୁ ଚିଠିପତ୍ର ଦଉନ କାହିଁକି ?''

''ତମେ ପହିଲେ ମୋ କଥାର ଉତ୍ତର ଦଉନ । ତମେ ବିଶ୍ୱାସ କର ଈଶ୍ୱରଙ୍କୁ ?'' ସେ ମୋ କଥାରେ ଉତ୍ତର ନ ଦେଇ କହିଲା ।

'ହଁ' ମୁଁ ଆଲୋଚନା କମ୍ ହେଉ ବୋଲି ପଦକରେ ଛିଡ଼େଇ ଦେଲି ।

''ତା' ହେଲେ ତମେ ଈଶ୍ୱରଙ୍କୁ କାହିଁକି ଚିଠି ଦେଉନ ?''

ସେତେବେଳେ ସବୁ ଆଲୁଅ ଲିଭିଗଲା । ରାତିର ଏକାନ୍ତ ପବନରେ ପତ୍ରସବୁ ମର୍ମରିତ ହେଉଥିଲେ । କୋଠରି ଦୁଆରେ ଲାଗିଥିବା ଲାଲ୍ ଲାଲ୍ ଫୁଲବାଲା ପର୍ଦ୍ଦା ପବନ ହାଦୋଳାରେ ଫରଫର୍ ଉଡୁଥିଲା । ମୁଁ ଉଠି ତାକୁ ଗୋଟାଏ ପଟକୁ ଖସେଇ ଦେଲି ।

'ଭାରି ସୁନ୍ଦର ପର୍ଦ୍ଦାଟିଏ ।' ମୁଁ ପଲଙ୍କକୁ ଫେରିଆସି କହିଲି । କାରମନ ଚଟାଣ ଉପରେ କଡ଼ମାଡ଼ି ଶୋଇଥିଲା । ମୋର କଥା ଶୁଣି ସେ ଉଠିବସିଲା । ଧୀରେ ଧୀରେ

କହିବା ଆରମ୍ଭ କଲା "ମୁଁ ଆଉ ନିକ୍ ଥରେ ଗୋଟାଏ ପାହାଡ଼ୀ ଅଞ୍ଚଳରେ ଅନେକ ମାଇଲ ଡ୍ରାଇଭ କରି ଚ୍ୱଲିଗଲୁଁ ।... ଶୁଣୁଛ ?"

"ହଁ... କହୁନ ତମେ !"

"ରାସ୍ତାରେ ନିକ୍ କହିଲା— ଚ୍ୱଲ ଡନ୍ ରେମୋଙ୍କ ସାଙ୍ଗରେ ଭେଟ ହୋଇଯିବା । ଡନ୍ ରେମୋ ନିକ୍‌ର ପିତାଙ୍କର ବନ୍ଧୁ ଆଉ ଏକଦା ମନ୍ତ୍ରୀମଣ୍ଡଳରେ ସଦସ୍ୟ ମଧ୍ୟ ଥିଲେ । ସେ ସେଇ ନିକଟରେ ନିଜ ଇଲାକାର ପାହାଡ଼ୀ ଅଞ୍ଚଳରେ ସୁନ୍ଦର କୋଠିଟିଏ କରିଥିଲେ । ଯେତେବେଳେ ଆମେ ତାଙ୍କର କୋଠି ପାଖରେ ପହଞ୍ଚିଲୁ, ସାମନାରୁ ଧଳା ଫ୍ରକ୍-ପିନ୍ଧି ଅନେକ ଛୋଟ ଛୋଟ ଝିଅ ଗୋଟାଏ ସ୍କୁଲରୁ ଆସୁଥିବା ଆଖିରେ ପଡ଼ିଲା । ସପନ ଭଳି ସେ ଦୃଶ୍ୟ ମୋର ଏବେ ବି ମନେଅଛି । ତା'ପରେ ଆମେ ଭିତରକୁ ଗଲୁଁ । ମିସେସ ରୋମୋଙ୍କର ଭବ୍ୟ ଡ୍ରଇଁରୁମ୍‌ରେ ତାଙ୍କର ଅପେକ୍ଷା କଲୁଁ । କେବିନେଟ୍ ମିନିଷ୍ଟର ଘରେ ନଥିଲେ ସେତେବେଳେ । ଡ୍ରଇଁରୁମ୍ ଓ ଷ୍ଟଡିରୁମ୍ ମଝିରେ ଯୋଉ କାନ୍ଥ ଥିଲା, ସେଥିରେ କାଚଲଗା ଗୋଟାଏ ଚ୍ୱରିକୋଣିଆ ଥାକରେ ପ୍ଲାଷ୍ଟିକର ଅନେକ କଣ୍ଢେଇ ସଜା ହୋଇଥିଲା । କୋଠରିର ସୁନ୍ଦର ସାଜସଜ୍ଜା ସାଙ୍ଗକୁ ଆଦୌ ମେଳ ନଥିବା ହେତୁ ବାଜେ ଲାଗିଲା । ତା'ପରେ ମିସେସ ରେମୋ ଆସିଲେ । ସେ ଆମକୁ ଥଣ୍ଡା ଚ୍ୱ' ପିଏଇଲେ ଆଉ ସାରା ଘର ବୁଲେଇ ଦେଖେଇଲେ । ତାଙ୍କର ବାଥରୁମ୍‌ରେ କଳା ଟାଇଲ ଲାଗିଥିଲା । ଗେଷ୍ଟରୁମ୍‌ରେ ଚମତ୍କାର ଦୀବାକ୍- ବେଡ୍ ଲାଲ ଟେପସ୍ଟ୍ରୀର ଝାଲରଲଗା ଖୋଳରେ ଢଙ୍କା ହୋଇ ରହିଥିଲା । ସେଇ ପଲଙ୍କକୁ ଦେଖି ନିକ୍ ମୋତେ ଫିସ୍ ଫିସ୍ କରି କହିଲା— "ବାଜେ ଟେଷ୍ଟର ଚରମ ସୀମା ।" ଆଉ ମୁଁ ମୋର ମନକୁ ବୁଝେଇଥିଲି— "କିଛି ମନ୍ଦ ଟେଷ୍ଟ ନୁହଁ । ମୁଁ ତ ମୋର ଘର ପାଇଁ ଏମିତି ପଲଙ୍କ କିଣିବି । ଏଇଭଳି ଖୋଳ ତିଆରି କରେଇବି ।" ତା'ପରେ ମୁଁ ଯେତେବେଳେ ବି ଘରପାଇଁ ସେଇଭଳି ଦୋକାନ ସାମନା ଦେଇ ଯାଏଁ, ସେତେବେଳେ ମୋ ଆଖି ସେଇଭଳି କପଡ଼ା ଉପରେ ପଡ଼ିଗଲେ ରହିଯାଏଁ । ତା'ପରେ ମୁଁ ଦରମାରୁ ସଂଚି ସଂଚି ସେଭଳି ଦାମୀ କନାର ଏଇ ପରଦାଟି କିଣିନେଲି । ଯେତେବେଳେ ମୁଁ ଗୋଟାଏ ବିଶେଷ ରେଷ୍ଟୁରେଣ୍ଟ ସାମନା ଦେଇ ଯାଏ କାରମନ୍ ସେଇ ସ୍ୱରରେ କହି ଚ୍ୱଲିଥାଏ, "ଆଉ କାଚ ସେପଟେ ସଜା ହୋଇଥିବା ମେଜ୍, ତା' ଉପରେ ଜଳୁଥିବା ସବୁଜ ଆଲୁଅ ଦିଶେ, ସେତେବେଳେ ମୋର ମନ ମରିଯାଏଁ । ସେଇଠି ଦିନେ ସଂଧ୍ୟାରେ ମୁଁ ନିକ୍ ସାଙ୍ଗରେ ଖାଇଥିଲି ।"

ମୋର ଆଖି ଲାଗି ଆସୁଥିଲା । ମୁଁ ଏଇ ନିକ୍ ନାଆଁର ଜପ ଶୁଣି ଶୁଣି ଅଘେଇ ବସିଥିଲି । ମୁଁ ମଶାରୀର ପାତଳ ପରଦା ପକେଇ କହିଲି— "ଗୋଟାଏ କଥା କହ, ତମେ ଯେତେବେଳେ ତାକୁ ଏତେ ଭଲପାଉଛ, ତାକୁ ବାହା ହେଇ ପଡୁନ କାହିଁକି ?"

"ମୋତେ ଦଶବର୍ଷ ଯାଏଁ ବହୁ ଦୂରର ସେଇ ଦ୍ୱୀପଟିରେ ବାପାଙ୍କ ସାଙ୍ଗରେ ରହିବାକୁ ହେଲା ।" ସେ ଉଦାସ କଣ୍ଠରେ କହୁଥାଏ... 'ପହିଲେ ଆମେ ଏଇ ସହରରେ

ଥିଲୁ । ଲଢ଼େଇ ବେଳେ ବମ୍ ପଡ଼ି ଆମର ଛୋଟିଆ ଘରଟି ପୋଡ଼ି ପାଉଁଶ ହୋଇଗଲା । ମୋର ମାଆ ଆଉ ଦୁଇଭାଇ ମଲେ । କେବଳ ମୁଁ ଆଉ ବାପା ବଂଚିଗଲୁ । ବାପା ଗୋଟାଏ ସ୍କୁଲରେ ସାଇନ୍ସ ଟିଚର ଥିଲେ । ତାଙ୍କୁ ଟି.ବି. ହେଲା ଆଉ ମୁଁ ତାଙ୍କୁ ଚିକିତ୍ସାପାଇଁ ସାନିଟୋରିୟମକୁ ନେଇଗଲି । ସେ ଦୂରସ୍ଥ ସେଇ ଦ୍ୱୀପ । ଭାରି ମହରଗ ସେ ସାନିଟୋରିୟମ୍ । ତେଣୁ କଲେଜ ଛାଡ଼ିବା ମାତ୍ରକେ ମୁଁ ସେଇ ସାନିଟୋରିୟମ୍‌ର ଅଫିସରେ ଗ୍ୱକିରି କଲି । ଆଖପାଖରେ କେତୋଟି ଜମିଦାର ଘରେ ଟ୍ୟୁସନ କଲି । ହେଲେ ବାପାଙ୍କର ଚିକିତ୍ସା ଅଧିକ ମହଙ୍ଗା ହେଲା । ଗାଆଁକୁ ଯାଇ ଆମର ପୈତୃକ ସପୁରୀ ବଗିଗ୍ୱ ବନ୍ଧା ପକେଇ ଦେଲି । ତେବେ ବି ବାପା ଭଲ ହେଲେ ନାଇଁ । ମୁଁ ଗୋଟାଏ ଦ୍ୱୀପରୁ ଆଉ ଗୋଟାଏକୁ ନାଆରେ ଯାଏଁ ଆଉ ଜମିଦାରଙ୍କ ଘରେ ତାଙ୍କର ଓଲା ପିଲାଙ୍କୁ ପଢ଼େଇ ପଢ଼େଇ ଥକିଯାଏ । ତେବେ ବି ବାପା ଭଲ ହେଲେ ନାଇଁ । ନିକ୍ ସାଙ୍ଗରେ ଆଜିଠୁଁ ଦଶବର୍ଷ ତଳେ ଗୋଟାଏ ମିଲିଟାରୀ କେମ୍ପରେ ଦେଖା ହେଇଥିଲା । ସେ ଭିତରେ ମୁଁ ଯେତେବେଳେ ବି ରାଜଧାନୀକୁ ଆସିଛି ତାକୁ ଭେଟିଛି । ସେ ଆସି ଭେଟିଛି । ତିନି ବର୍ଷ ପରେ ସେ ବିବାହ ପ୍ରସ୍ତାବ ଦେଲା । ସେତେବେଳେ ବାପକୁ ମରିବାକୁ ଛାଡ଼ିଦେଇ ଗ୍ୱଲିଆସିବା ମୋ ପକ୍ଷରେ ସଂଭବ ନଥିଲା । ସେ ସମୟରେ ନିକ୍‌କୁ ବାହାରକୁ ଯିବାକୁ ହେଲା ବି । ବାପାଙ୍କ ମଲାପରେ ମୁଁ ଏଠାକୁ ଗ୍ୱଲି ଆସିଲି । ଏଇନେ ମୁଁ ଏଇଠି ଗ୍ୱକିରି କରୁଛି ଆଉ ଆସନ୍ତା ବର୍ଷ ବିଶ୍ୱବିଦ୍ୟାଳୟରେ ମୋର ଥେସିସ ଦାଖଲ କରିଦେବି । ମୁଁ ବାପାଙ୍କର ସପୁରୀ ବଗିଗ୍ୱ ମୁକୁଳେଇ ନେବି । ନିକ୍ ସେତେବେଳେ ମୋତେ ସାହାଯ୍ୟ କରିବାକୁ ଗ୍ୱହୁଁଥିଲା । ତେବେ ବାହା ହେଲା ଆଗରୁ ତାଠୁଁ ପଇସାଟିଏ ହେଲେ ନିଅନ୍ତି କେମିତି ? ତା'ର ପରିବାର ଲୋକେ ଭାରି ଆଡ଼ବୁଝା ଆଉ ରୁକ୍ଷ । ଆଉ ଗୋଟାଏ ଝିଅପାଇଁ ତା'ର ଇଜ୍ଜତ ଭାରି ବଡ଼ ଜିନିଷ । ଇଜ୍ଜତ, ଆତ୍ମସମ୍ମାନ, ଆତ୍ମବିଶ୍ୱାସ... କେତେବେଳେ ବି ନିକ୍ ମୋତେ ହୀନ ଦୃଷ୍ଟିରେ ଦେଖେ... କିମ୍ବା ମୋତେ... ! ଆରେ ଶୋଇ ପଡ଼ିଲ ନା କ'ଣ ?... ଆଚ୍ଛା ଗୁଡ଼ ନାଇଟ୍ !''

ତା'ପରଦିନ ସକାଳେ ସେ ପ୍ରସ୍ତୁତ ହୋଇ ଯଥାରୀତି ସବା ଆଗ ସବୁ କଥାର ବ୍ୟବସ୍ଥା କରିବାକୁ ଜଳଖିଆ ଟେବୁଲରେ ପହଞ୍ଚି ଯାଇଥିଲା । ସେଦିନ ମିସେସ୍ ସୋରେଲ୍ ଗାମ ଫେରି ଯାଉଥିଲେ । ତାଙ୍କର ଜ୍ୱାଇଁ ସାଙ୍ଗରେ ବୁଝାମଣା ହୋଇଯାଇଥିଲା । ସେ ସକାଳୁ ସକାଳୁ ପହଞ୍ଚି ଯାଇଥିଲା । ଗୋଟାଏ ସିଧାସାଦା ଯୁବକ । ବାରଣ୍ଡାର ଗୋଟାଏ କୋଣକୁ ଡରକୁଳା ବିଲେଇଟିଏ ଭଳି ଜାକିଜୁକି ହେଇ ବସିଥିଲା । ବାତାବରଣରେ ଏକ ବିଚିତ୍ର ପ୍ରସନ୍ନତା ଖେଳି ରହିଥିଲା । ଝିଅଗୁଡ଼ିକ କଥାକଥାକେ ଖିଲ ଖିଲ ହସୁଥିଲେ । ମୁଁ ବି ସେଦିନ ଆନନ୍ଦିତ ଥିଲି । ସବୁ ବୋଝ ମୁଣ୍ଡ ଉପରୁ ଖାଲି ହେଇଯାଇଥିଲା ଭଳି ଲାଗୁଥାଏ । ସେ ଭଳି ଫୁର୍ତ୍ତି ଭାବଟିଏ ଆଉ ଶାନ୍ତି ସନ୍ତୋଷର ଅନୁଭବ ଜୀବନରେ ଅତି କମ୍ ଆସେ । ତାହା ଜୀବନରେ ଘଡ଼ିକ ଲାଗି ଆସିଲେ ବି ବହୁମୂଲ୍ୟ ମନେହୁଏ ।

କାରମନ ଶୀଘ୍ର ଶୀଘ୍ର ଜଳଖିଆ କରିନେଇ ଅଫିସକୁ ଚାଲିଗଲା ।

''ଆଜି ବି ତମେ ତମର ମହତ୍ତ୍ୱପୂର୍ଣ୍ଣ ମହାନ୍ ବନ୍ଧୁଙ୍କୁ ଭେଟିବାକୁ ଯାଉ ନଥା'ନ୍ତ ଯଦି ଆମେ ତମକୁ ଜିପ୍‌ରେ ବସେଇ ଏ ସହରର ଗଳିକନ୍ଦି ବୁଲେଇ ଥାଆନ୍ତୁ ।'' ମେଗଦଲୀନା ମୋତେ କହିଲା ।

''ତମ ଲାଗି ଗୋଟାଏ କେଡ଼ିଲାକ୍ ଆସିଛି ଭାଇ !'' ରୋଜା ଭିତରକୁ ଆସି ସୂଚନା ଦେଲା ।

''କେଡ଼ିଲାକ୍... ବାହ ... ।'' ସମସ୍ତେ ପ୍ରାୟ ଏକାସାଙ୍ଗରେ କହିଲେ ।

'ତମ ଲାଗି ଏମିତି ଦାମୀ ଦାମୀ ଗାଡ଼ି ଆସୁଛି ଯେ ଗର୍ବରେ ଆମର ଛାତି କୁଣ୍ଢେମୋଟ ହୋଇଯାଉଛି ।'' ବରର୍ନାଡ଼ୀ ଖୁସିରେ ଉଚ୍ଛୁଳି ପଡ଼ି କହିଲା । ମୁଁ ଝିଅମାନଙ୍କଠୁଁ ବିଦାନେଇ ଟୁରିଂ ବେଗଟି କାନ୍ଧରେ ଝୁଲେଇ ବାହାରକୁ ଆସିଗଲି । ମୁଁ ଭୂତପୂର୍ବ ରାଜଦୂତ ଡନ୍ ଗାର୍ସିୟା ଡେଲ୍ ଫ୍ରେଡେସଙ୍କ ପରିବାର ସହିତ ଦୁଇଦିନ କଟେଇବା'କୁ ତାଙ୍କର ହିଲ ଷ୍ଟେସନକୁ ଯାଉଥିଲି । ତାଙ୍କର ପୋଷାକଧାରୀ ଡ୍ରାଇଭର କଳା କେଡ଼ିଲାକ୍‌ର ଦରଜା ବେଶ୍ କାଇଦାରେ ଖୋଲିଲା ଓ ବନ୍ଦ କଲା । କାର ସହରର ଭିଡ଼ ଛାଡ଼ି ଶ୍ୟାମଳ ପାହାଡ଼ଘେରା ରାସ୍ତାରେ ଆଗେଇବାକୁ ଲାଗିଲା ।

... ପାହାଡ଼ ତିଖରେ ଡନ୍ ଗାର୍ସିୟାଙ୍କର ହିସ୍ ପାନ୍‌ବୀ ଢଙ୍ଗର ଭବ୍ୟ ଘରଟି ତୋଟା ଉହାଡ଼ରୁ ବେଶ୍ ଦୂରରୁ ଦେଖାଯାଉଥିଲା । ଘାଟିରେ କୁହୁଡ଼ି ଘେରି ରହିଥିଲା । ଧଳା, ବାଇଗଣୀ, ନାଲ ଆଉ ହଳଦିଆ ପାହାଡ଼ୀ ଫୁଲ ଘାଟ ରାସ୍ତାର ଦି' କଡ଼େ ଫୁଟିଥିଲେ । କାରଟି ଫାଟକ ପାର କରି ପୋର୍ଟରେ ରହିଲା । କଳା କଦାକାର ଚାକରାଣୀମାନେ ବାହାରି ଆସିଲେ । ବଟଲର ଓହ୍ଲେଇ ଆସି କାରର ଦରଜା ଖୋଲିଲା । ହଲର ଦୁଆର ମୁହଁରେ ଡନ ଗାର୍ସିୟା ଆଉ ତାଙ୍କର ପତ୍ନୀ ଡୋନା ମାରିୟା ମୋର ପ୍ରତୀକ୍ଷା କରୁଥିଲେ । ତାଙ୍କର ଘର ଧଳା ଗାଲିଚା, ସୁନେଲୀ ଫର୍ଣ୍ଣିଚର ଓ ବହୁମୂଲ୍ୟ ସାଜ ସାମଗ୍ରୀରେ ସଜେଇ ହୋଇ ରହିଥିଲା । ଏମିତି ମନେହେଉଥିଲା, ଯେମିତି ଲାଇଫ ମେଗାଜିନ୍‌ର ସୁନ୍ଦର ଛବିଟିଏ । ସେମିତି ଛବି ରଙ୍ଗିନ ପୃଷ୍ଠାରେ ଫର୍ଣ୍ଣିଚର କିମ୍ବା ଇଣ୍ଟରିୟର ଡେକୋରେସନ ସଂବନ୍ଧୀୟ ଲେଖା ସାଙ୍ଗରେ ପ୍ରାୟ ପ୍ରକାଶିତ ହୋଇଥାଏ ।

କିଛି ସମୟ ପରେ ମୁଁ ଡୋନା ମାରିୟା ସାଙ୍ଗରେ ଉପର ମହଲାକୁ ଗଲି । ସେଠି କାଚଘେରା ବାରଣ୍ଡାରେ ଗୋଟାଏ କୋଣକୁ ଗୋଟାଏ ବେତ ତିଆରି ଝୁଲନାରେ ଅତି ସୁନ୍ଦର ଗୋଲାପୀ ରଙ୍ଗର ଛ'ମାସର ଝିଅଟିଏ ଜୋର ଜୋର କାନ୍ଦୁଥାଏ । ସେ ଝିଅଟି ଏତେ ସୁନ୍ଦର ହୋଇଥାଏ ଯେ ମୁଁ ଡୋନା ମାରିଆଙ୍କ କଥା ଅଧାରେ ରଖି ଝୁଲନା ପାଖକୁ ଚାଲିଗଲି । ବେଶ୍ ସୁନ୍ଦରୀ, ସ୍ୱଚ୍ଛ ଫୁଲ ଭଳି ସତେଜ । ଆମେରିକାନ ଯୁବତୀଟିଏ ପାଖ ସୋଫାରୁ ଉଠିଆସି ହାତ ମିଳେଇବାକୁ ବଢ଼ି ଆସିଲା ।

'ଏ ମୋର ବୋହୂ... ।' ଡୋନା ମାରିଆ କହିଲେ ।

ଆମେ ତିନିହେଁ ଝୁଲନ୍ତା ଗ୍ୱରିପଟେ ଘେରିରହି ଝିଅଟିକୁ ଗେଲ କରିବାରେ ବୁଡ଼ିଗଲୁଁ । ଦି'ପହରରେ ଲଞ୍ଚ ବେଳେ ସେଇ ଆମେରିକନ୍ ଝିଅର ସ୍ୱାମୀ ବି ଆସି ପହଞ୍ଚିଗଲା ।

'ଇଏ ଆମର ପୁଅ ହୋଜେ ।' ଡନ୍ ଗାର୍ସିଆ କହିଲେ ।

ହୋଜେର ବୟସ ପାଖାପାଖି ପଇଁତିରିଶ ହେବ । ସେ ସେ ଜାଗାର ଫୁଲପକା ଫିକା ରଙ୍ଗର କମିଜ ଓ ଧଳା ପେଣ୍ଟରେ ବେଶ୍ ଶାଳୀନ ମନେହେଉଥିଲା । ସେ ନିଜଠାରୁ ବେଶ କମ୍ ବୟସର ପତ୍ନୀ ଆଉ ଝିଅକୁ ଅତି ଭଲ ପାଉଥିଲା । ବେଶୀ ଭାଗ ସେ ସେଇକଥା ହିଁ ହେଉଥିଲା ।

ରାତିରେ ମୋତେ ଏଭଳି ଏକ ସୁନ୍ଦର ଓ ସୁସଜ୍ଜିତ କୋଠରି ଶୋଇବାକୁ ଦିଆହେଲା ଯେ, କାଳେ ମଇଳା ହୋଇଯିବ ବୋଲି ତା'ର ଜିନିଷପତ୍ରକୁ ଛୁଇଁବାକୁ ବି ଡର ମାଡୁଥିଲା । ସେ ସମୟରେ ମୋତେ ୱାଇ.ଡବ୍ଲ୍ୟୁ. ସି.ଏ ର ସେଇ ସନ୍ତସନ୍ତିଆ କୋଠରି ଓ ଅଣଓସାରିଆ ମଶାରୀ, ମିସେସ ସୋରେଲ, ହଲର ରଙ୍ଗଛଡ଼ା ଆସବାବପତ୍ର ସବୁକିଛି ମନେପଡ଼ିବାକୁ ଲାଗିଲେ ।

ଦୁଇଦିନ ପରେ ଫ୍ରେଡୋସ ପରିବାର ମୋ ସାଙ୍ଗରେ ରାଜଧାନୀକୁ ଫେରିଲା । ବାପା ମାଆଙ୍କୁ ତାଙ୍କର ଟାଉନ ହାଉସରେ ଓହ୍ଲେଇ ଦେଇ ମୋତେ ମୋ ଜାଗାରେ ପହଞ୍ଚେଇ ଦେବ ବୋଲି ହୋଜେ କେଡିଲକ୍‌ରେ ଷ୍ଟାର୍ଟ ଦେଲା । ହୋଜେ ଆଉ ତା'ର ପତ୍ନୀ ଗେରୁଥା ଦୁଇ ସପ୍ତାହ ତଳେ ଆମେରିକାରୁ ଆସିଥିଲେ । ତାଙ୍କର ଅନେକ ଜିନିଷପତ୍ର କଷ୍ଟମ ହାଉସରେ ରହିଯାଇଥିଲା । ସେ ସବୁ ଆଣିବାଲାଗି ସେମାନଙ୍କର ଯିବା କଥା ।

ସହରର ସବୁଠାରୁ ଦାମୀ ନାମୀ ହୋଟେଲ ଆଗରେ ଗାଡ଼ି ରଖିନେଲା ହୋଜେ ।

"ଏଠି କ'ଣ କରିବା !" ମୁଁ ପଗ୍ଚରିଲି

"ତମେ ଏଇଠି ରହିଛ ତ ?"

"ନାଁ, ଡିୟର ହୋଜେ, ମୁଁ ୱାଇ, ଡବଲ୍ୟୁ.ସି.ଏ ରେ ଅଛି !"

"ୱାଇ-ଡବଲ୍ୟୁ.ସି.ଏ ! ଗୁଡ୍ ଗଡ୍ ! ଆଶ୍ଚର୍ଯ୍ୟ କଥା, ତମକୁ ଆଉ କୋଉଠି ଜାଗା ମିଳିଲା ନାଇଁ ? ତମେ ପହଞ୍ଚିଲାକ୍ଷଣି ଡାଡ଼ିଙ୍କୁ ଫୋନ୍ କରିଆ'ନ୍ତ !"

ସେତେବେଳେ ମୁଁ ହଠାତ୍ ଭାବିଲି ଯେ ମୁଁ ପ୍ରତ୍ୟେକ ଶ୍ରେଣୀର ମଣିଷଙ୍କ ସାଙ୍ଗରେ ଆଉ ସବୁ ଧରଣର ଲୋକଙ୍କୁ ନିଜର ସ୍ୱଭାବ ଅନୁସାରେ, ଆପଣାର ସୀମା ଭିତରେ ମାନସିକ ସ୍ତରରେ ଭାରସାମ୍ୟ ରଖି ଚଳିଆସିଛି । ମାତ୍ର ହୋଜେର ପିତା ମାତା ଏଇ ଦେଶର ଅତ୍ୟନ୍ତ ଧନୀ ଦଶୋଟି ପରିବାର ଭିତରେ ଗୋଟିଏ । ସେମାନେ ଏଠାକାର ଶାସନର ଏକ ମହତ୍ତ୍ୱପୂର୍ଣ୍ଣ ସ୍ତମ୍ଭ ମଧ୍ୟ । ସେମାନଙ୍କୁ ମୋତେ ୱାଇ.ଡବ୍ଲ୍ୟୁ.ସି.ଏ କାହିଁକି ଏତେ ଭଲ ଲାଗିଲା ବୁଝେଇବା ବୃଥା ।

ହୋଜେ ଗଳିର ମୋଡ଼ ଠେଇଁ ଗାଡ଼ି ରଖିନେଲା । କାରଣ ଜିପ୍‌ମାନଙ୍କର ପୂରା ଧାଡ଼ିଟିଏ ପ୍ରାୟ ରାସ୍ତାକୁ ଘେରି ରହିଥିଲା । ମୁଁ ୱାଇ.ଡବଲ୍ୟୁ.ସି.ଏରେ ପହଞ୍ଚିଲା ବେଳକୁ

ସମସ୍ତେ ଶୋଇ ସାରିଥିଲେ । ମୁଁ ଧିର ଧିର ଯାଇ ମୋର ମଶାରୀ ଭିତରେ ପଶିଗଲି । କାରମନ ସେହିଭଳି ଆରାମରେ ଚଟାଣ ଉପରେ ଶୋଇଥିଲା । ତା'ର ମୁଣ୍ଡପାଖକୁ ସେଣ୍ଟ ଥୋମାସ୍‌ଙ୍କ ଚିତ୍ର ଉପରେ ରାସ୍ତାର ବତୀଖୁଣ୍ଟର ଚେନାଏ ନରମ ଆଲୁଅ ବିଛେଇ ହୋଇପଡ଼ିଥିଲା । ସକାଳ ଗ୍ଘରିଟାବେଳକୁ ମୁଁ ପାଦ ଚିପି ଚିପି ସେଇ ଦଦରା ବାଥରୁମକୁ ଯାଇ ଧୀରେ ଧୀରେ ଟେପ୍ ଖୋଲିଲି । ତେବେ ପାଣି ଧାର ଏତେ ଜୋର୍‌ରେ ପଡ଼ିଲା ଯେ ମୁଁ ଚମକି ପଡ଼ିଲି । ସେଇଭଳି ଧୀରପାଦରେ ଆସି ମୋର ଜିନିଷପତ୍ର ବନ୍ଧାବନ୍ଧି କଲି ଯେମିତି କାରମନର ନିଦ ଭାଙ୍ଗିନଯାଉ । ସେତିକିବେଳକୁ ମୋର ଚଟାଣ ଉପରେ ନଜର ପଡ଼ିଲା । କାରମନ୍ କେତେବେଳୁ ଉଭାନ୍ ହୋଇ ସାରିଥାଏ । କିଛି ସମୟ ପରେ ସେ ଆସି କହିଲା ''ଟିଫିନ୍ ରେଡ଼ି'; ଟେକ୍ସି ପାଇଁ ବି ଫୋନ୍ କରି ଦେଇଥିଲା ।

'କେମିତି ହେଲା ତମର ଯାତ୍ରା ?' କପରେ ଗ୍ଘ' ଢାଳୁ ଢାଳୁ ସେ ପଗ୍ଘରିଲା, ''ତମର ଏ ବନ୍ଧୁବାନ୍ଧବ କିଏ, ସେମାନଙ୍କ ବାବତରେ ତ କିଛି କହିଲ ନାଇଁ ?''

ମୁଁ କଥା ଆରମ୍ଭ କରିଦେବାକୁ ହଠାତ୍ କଥାଟିଏ ମନେପଡ଼ିଗଲାରୁ ରହିଗଲି । ଶୀଘ୍ର କୋଠରିରୁ ଫେରିଆସି ସୁଟକେଶରୁ ନୂଆ ବନାରସୀ ଶାଢ଼ୀଟିଏ ବାହାର କରି ଗୋଟାଏ କାଗଜରେ ଲେଖିଲି— ''ତମ ବାହାଘର ପାଇଁ ଅଗ୍ରୀମ ଉପହାର !'' ଶାଢ଼ୀ ଆଉ କାଗଜଟି ତକିଆ ତଳେ ରଖିଦେଲି ।

''ଟେକ୍ସି ଆସିଲା'' ବାରଣ୍ଡାରୁ ଡାକଦେଲା କାରମନ !

ଆମେ ଦୁହେଁ ଜିନିଷପତ୍ର ଉଠେଇ ବାହାରକୁ ଆସିଲୁଁ ।

ମୁଁ ଟେକ୍ସିରେ ବସିଗଲି । ସେତିକିବେଳେ ଫାଟକରେ ମୁଣ୍ଡ ଗଳେଇ କାରମନ ପାଟିକଲା— ''ଆରେ ତମେ ତମର ଠିକଣା ଦେଲ ନାଇଁ ?''

ମୁଁ ଟୁକୁରାଏ କାଗଜ ବାହାର କରି ଠିକଣା ଲେଖି ତା' ହାତକୁ ବଢ଼େଇ ଦେଲି । ତା'ପରେ ମୋର ନିହାତି ଜରୁରୀ କଥାଟିଏ ମନେପଡ଼ିଲା... ''ଆଚ୍ଛା କଥା କାରମନ୍... ତମର ଓ୍ୱାଇ.ଡବଲ୍ୟୁ ସି.ଏ.ରୁ ମୁଁ ମୋର ବିଲ୍... !''

''ବକ୍ ନା ମ !''

''ଆରେ ସେ ତ ତମର ନିଜ ଘର ନୁହଁ !''

''ତମେ ମୋର ଅତିଥି ଥିଲ !''

''ବକ୍ ନା ମ !''

''କିଆଁ ବକଝକ କରୁଛୁ ! ତୋର ପ୍ଲେନ୍ ଛାଡ଼ିଦବ । ବାହାଘର ହେଲେ କାର୍ଡ ପଠେଇଲେ ଆସିବ ନିଶ୍ଚୟ ! ମୁଁ ସେତେବେଳେ ତମର କୌଣସି ବାହାନା ଶୁଣିବି ନାହିଁ । ଭାବିବ ଟିକିଏ, ତମକୁ ଭେଟିଲେ ନିକ୍ କେତେ ଆନନ୍ଦିତ ହେବନାଇଁ !''

ତେବେ ଆମ ଦୁହିଁଙ୍କୁ ଜଣାଥିଲା ଯେ ଆଉଥରେ ଏତେଦୂର ଆସିବା ଆମ ପକ୍ଷରେ ସମ୍ଭବ ନୁହଁ ।

ମୁଁ ବିଦାନେଇ ଆସିଲି ।

ସେ ଅନେକ ବେଳଯାଏଁ ହାତ ହଲେଇ ରହିଥାଏ । ଟେକ୍ସି ସକାଳର ଛାଇ ଅନ୍ଧାରରେ ଏଆରପୋର୍ଟ ଆଡ଼କୁ ବଢ଼ିଗଲା ।

ପୋର୍ଟରେ ଜାହଜ ପ୍ରସ୍ତୁତ ହୋଇ ରହିଥିଲା । ମୁଁ କଷ୍ଟମ କାଉଣ୍ଟରରୁ ଫେରିବା ବେଳେ ପଛରୁ ଡାକ ଶୁଭିଲା— ଡନ୍ ଗାର୍ସିୟା ଡାକ ପକେଇ କହିଲେ— "ନିକ୍ ମୁଁ ସିଗାର ନେଇଆସୁଛି ।"

"ହଁ ଡାଡ଼ି !" ତାହା ହୋଜେର କଣ୍ଠସ୍ୱର । ମୁଁ ଚମକି ପଡ଼ି ପଛକୁ ଅନେଇଲି । ହୋଜେ ହସି ହସି ମୋ ଆଡ଼କୁ ବଢ଼ି ଆସୁଥାଏ... ପାଖକୁ ଆସି କହିଲା— "ଦେଖ ଆମେ କେମିତି ଠିକ୍ ସମୟରେ ପହଞ୍ଚିଗଲୁ ।"

'ହୋଜେ !' ମୁଁ ଉଦାସ କଣ୍ଠରେ ପଗ୍ଚରିଲି— "ତମର ଆଉ ଗୋଟାଏ ନାଆଁ ଅଛି ?"

"ନିକ୍ ! ବାପା ଅତି ସ୍ନେହରେ ମୋତେ ନିକ୍ ବୋଲି ଡାକନ୍ତି । ସାଧାରଣତଃ ମୋ ନାଆଁ ହୋଜେ ! କାହିଁକି କ'ଣ ହେଲା ?"

"କିଛି ନାଇଁ ।" ମୁଁ ତା ସାଙ୍ଗରେ ଧୀରେ ଧୀରେ ଲାଉଂଜକୁ ବଢ଼ିଗଲି । "ତମେ ଆମେରିକା କାହିଁକି ଯାଇଥିଲ ?" ମୁଁ ପଗ୍ଚରିଲି ।

"ହାର୍ଟ ସର୍ଜରୀରେ ସ୍ପେସିଏଲାଇଜ୍ କରିବାକୁ ! ତମକୁ କହିଥିଲି ନା !"

"ତମେ... କେବେ ତମେ... ତମେ... !"

"କ'ଣ... କହୁନ !"

"କିଛି ନାଇଁ ... ସ୍ୱର ମୋର ମଉଳିଗଲା । ଲାଉଡ଼ ସ୍ପିକର ନିରନ୍ତର ଡାକୁଥାଏ— "ପାନ ଆମେରିକାନ୍‌ର ଯାତ୍ରୀ... ପାନ୍ ଆମେରିକାନ୍‌ର ଯାତ୍ରୀ !"

"ବିଦାବେଳ ଏତେ ଚଂଚଳ ଆସିଗଲା ?" ନିକ୍ ଆଶ୍ଚର୍ଯ୍ୟ ହୋଇ ଘଡ଼ି ଦେଖିଲା । ଡନ୍ ଗାର୍ସିୟା ଆଉ ନିକ୍ ରେଲିଙ୍ଗ ପାଖରେ ନଇଁ ରୁମାଲ ହଲେଇ ବିଦା ଦେଉଥିଲେ ଜାହଜ ଭୂଇଁ ଛାଡ଼ିବା ଆରମ୍ଭ କଲା ....।

ଏଠାରୁ ଅନେକ ଦୂର ପୂର୍ବ ସାଗରରେ ତୋଫାନ୍ ଘେରା ଛୋଟ ଛୋଟ ଦ୍ୱୀପ ଫିଲିପାଇନ ନାଆଁରେ ପରିଚିତ । ତା'ର ଝଲମଲ ରାଜଧାନୀ ମନିଲାର ଗୋଟାଏ ରଙ୍ଗହୀନ ଗଳିରେ ଗୋଟାଏ ପୁରୁଣା କୋଠାରେ ଚେପଟୀ ନାକୀ ଝିଅଟିଏ ରହେ, ଯେ ତା'ର ଭବିଷ୍ୟତର ପୁଅଟି ଲାଗି ଖେଳନା ଜମେଇ ରଖିଛି ଆଉ ତା'ର 'ପ୍ରଭୁ'ର ବାଟ ଅନେଇ ରହିଛି । ତା'ଉପରେ ତା'ର ଭରସା ଅଗାଧ ।

## ଗୋଟିଏ କଥାବାର୍ତ୍ତା— 'ସଂଳାପ'

ଅ: ଗରମ ମାସ ଯାଉଛି । ଆମେ ଆଉ ଏକ ପାଦ କବର ଆଡ଼କୁ ବଢ଼ିସାରିଛୁଁ । ଦି'ପହର ବେଳା ବାବନାଭୂତ ଉଡୁଛି । ଗରିବ ସାହିରେ ଲୋକେ କୁଡ଼ କୁଡ଼ ମରୁଛନ୍ତି ।

ବ: ଶୁଣିଛି ଭାରି ଭୟାନକ ବେମାରି ମାଡିଛି ?

ଅ: ବେମାରି ବ୍ୟାପିଛି ଆଉ ଲୋକେ ମରୁଛନ୍ତି । ଯଦି ମରିବେ ନାଇଁ, ତା'ହେଲେ ଦୁନିଆଁର ଜନସଂଖ୍ୟା ବଢ଼ିଯିବ । ଆଉ ଅଧିକ ଗଣ୍ଡଗୋଳ ହେବ ।

ବ: ଆଗରୁ କ'ଣ କିଛି କମ୍ ଅଛି କି ?

ଅ: ଈଶ୍ୱରଙ୍କଠାରୁ ଆଶା କରୁଛୁଁ, ପଚିଶ ଲକ୍ଷ ତ ଅବଶ୍ୟ ମରିବେ ।

ବ: ଏତେ ବେଶୀ ।

ଅ: ତେବେ ବି କିଛି କମିବ ନାଇଁ । ଦୁନିଆଁ ଭରି ରହିଛି ।

ବ: ବିଶେଷ କରି ଏସିଆ ।

ଅ: ଅଧିକ ସେମାନଙ୍କର ମରିବା କଥା, ଯୋଉମାନେ ପୂରା ବେକାର । ତମେ ସେମାନଙ୍କର ଘର ଦେଖିଛ ?

ବ: ନା ।

ଅ: ବିଶ୍ୱାସ ହେଉନାହିଁ, ଏମାନେ ସବୁ ମଇଳା ଭିତରେ ବଂଚିରହନ୍ତି, ମାଛି ଆଉ ଲାଙ୍ଗୁଡ଼ିଆ ପୋକ ଭଳି ଆଉ ପୋକ ମାଛି ଭଳି ମରନ୍ତି ବି । ଏମାନଙ୍କୁ ଆଦୌ ସରମ ଲାଗେନାଇଁ ।

ବ: ଏମାନେ ଈଶ୍ୱରଙ୍କର ସୁନ୍ଦର ଦୁନିଆକୁ ଧ୍ୱଂସ କରିଦେଲେ । ଏତେ ଆବର୍ଜନା !

ଅ: ହଁ, ମୁଁ ଦିନେ ତାଙ୍କର ଲିଡ଼ରକୁ କହିଲି ଯେ ସଂଧ୍ୟାର ଲାଲିମା ଓ ଫୁଲର ଶୋଭା ଦେଖି ତା'ର ସ୍ୱଭାବ ତାଜା କରିନଉ, ମାତ୍ର ସେ ସେମିତି ଗରଗର ହେଉଥାଏ ।

ବ: କିଛି ଗୋଟାଏ ଭଲ କଥା ଶୁଣାଅ !

ଅ: ଭଲ ଖବର ବହୁତ କମ । ଭୂମିକମ୍ପ ହେବାର ଅଛି ।

ବ: ବେଶ୍ ଖରାପ ସଂବାଦ । ମୁଁ ରୂପକର ପ୍ରୟୋଗ କରିଥିଲି ।

ଅ: 'ଓଲ୍ଡ ଅର୍ଡର' ଏଇନେ ପକ୍କା ଆଉ ସୁରକ୍ଷିତ ତ ?

ବ: ଯେତେବେଳ ପର୍ଯ୍ୟନ୍ତ ଅବଦୁଲ୍ ଅଛି, 'ଓଲ୍ଡ ଅର୍ଡର' ସୁରକ୍ଷିତ ଥିବ ।

ଅ: ଆମର ଅବଦୁଲ୍ ପ୍ରତି କୃତଜ୍ଞ ହେବା ଉଚିତ । ମୁଁ ତାକୁ ଦେଖିଲେ ଆଖି ମୋର ଲୁହରେ ଭରିଯାଏ ।

ବ: ତମେ ଆଜିକାଲି ଖରାବେଳେ କୋଉଠି କଟଉଛ ?

ଅ: ବେଶ୍ ପ୍ରୋବ୍ଲେମ ହେଉଛି । ଗତବର୍ଷ ଭିସା ନେଇ ମସୋରୀ ଯାଇଥିଲି, ହେଲେ ସେଠି ପହଞ୍ଚି ଅଧିକ ବୋର ହେଲି । ଦୁନିଆ ବଦଳି ସାରିଛି ।

ବ: ଠିକ୍ କହୁଛ ।

ଅ: ଦୁନିଆ ବଦଳି ଯାଇଛି ଆଉ ଆମେ ବି । ତେବେ ଦୁନିଆ କେମିତି ବଦଳି ଯାଇଛି, ମୁଁ ଆଦୌ ବୁଝିପାରୁନି । ଆମେ କ'ଣ ତା'ର କାର୍ଯ୍ୟ ପରିବର୍ତ୍ତନକୁ ଅଟକେଇ ଦେଇପାରିବା ନାହିଁ । ତମେ ମୋ କଥାର ଅର୍ଥ ବୁଝୁଛ ?

ବ: ହଁ, ତେବେ ତମେ ବେଶ୍ ଡରିଯାଇଛ । ଏତେ ଡରିବା କଥା ନୁହଁ । ଏବେବି କିଛି ହରେଇନୁ... ବରଂ କିଛି ବୋଲି କିଛି ହରେଇନୁ ।

ଅ: ଝିଅମାନେ ବି ବଦଳି ଯାଇଛନ୍ତି । ମୋ କଥାର ଅର୍ଥ ବୁଝୁଛ ?

ବ: ହଁ, କିନ୍ତୁ ଆମର ତାଙ୍କ ପାଖରେ କୃତଜ୍ଞ ହେବା କଥା ।

ଅ: ମୁଁ ବେଗମମାନଙ୍କ ପାଖରେ କୃତଜ୍ଞ !

ବ: ହଁ ବେଗମମାନେ ! ବେଶ୍ ଆକର୍ଷକ ବ୍ୟକ୍ତିତ୍ୱ ।

ଅ: ସେଇମାନଙ୍କର ଦମ୍ଭରେ ଏ ଅର୍ଡରର କାଏମ୍ ହୋଇ ରହିଛି । ଅବଦୁଲ ଆଉ ବେଗମମାନେ... ଆଉ...

ବ: ଆଉ ୟଙ୍ଗ ଜିମୀ !

ଅ: ୟଙ୍ଗ ଜିମୀ (ଘଡ଼ିଏ ରହି ।) ସେ ପୁଣି କିଏ ?

ବ: ୟଙ୍ଗ ଜିମୀ ମୋର ଛୋଟ ଭାଇ । ତମକୁ ତାକୁ ଭେଟିବାକୁ ହିଁ ହେବ । ଓଲ୍ଡ ଅର୍ଡରର ନୂଆ ଭର୍ସନ୍ ତା'ରି ଦମ୍ଭରେ ଅତୁଟ ରହିଛି ।

ଅ: ୟଙ୍ଗ ଜିମୀ କରୁଛି କ'ଣ ?

ବ: ସିଭିଲ ସାର୍ଭିସ ଅକ୍ସଫୋର୍ଡ (ଅଣ୍ଡର କଲୋମ୍ବୋ ପ୍ଲାନ୍) । ଗୋଟାଏ ବର୍ଷ ଆମେରିକା (ଫୁଲ ବ୍ରାଇଟ୍) ସ୍ପୋର୍ଟସ-ଟେନିସ, ରୁଚି ସାଁଫୋନୀର ଏଲ.ପି.ରେକର୍ଡ ଜମା କରିବା । ପୁରୁଣା ସିନ୍ଧୁ ପ୍ରଦେଶର ସବୁଠାରୁ ସ୍ମାର୍ଟ ବଡ଼ ସିଭିଲିଏନ୍ ଭାବରେ ପରିଚିତ ।

ଅ: ହଁ, ମୋର ସ୍ୱର୍ଗୀୟ କାକା ବି ଠିକ ସେମିତି ଥିଲେ । ଅକ୍ସଫୋର୍ଡ ସ୍ପୋର୍ଟସରେ ହକି ଆଉ ଟେନିସ୍, ସିଂଫନୀର ଏଲ.ପି. ରେକର୍ଡ ବଦଳରେ ତାଙ୍କର ସଉକ ଥିଲା ଚିତା ଶିକାର । ସେ ସି.ପି (ମଧ୍ୟପ୍ରଦେଶ)ର ସବୁଠାରୁ ପ୍ରଭାବଶାଳୀ ସିଭିଲିଏନ୍ ଥିଲେ ।

ବ: ୟଙ୍ଗ ଜିମୀ ତାଙ୍କ ସଂବନ୍ଧରେ ପ୍ରାୟ ତାର ସିନିୟର ଅଫିସରମାନଙ୍କଠାରୁ ଶୁଣିଛି । ସେ ତାଙ୍କୁ ତାର ଆଦର୍ଶ ବୋଲି ଭାବେ । ବିଶେଷ କରି ସେଇ ଘଟଣାରୁ ଯେତେବେଳେ ସେ...

ଅ: ଯେତେବେଳେ ସେ ଦ୍ୱାଦଶ ସିଂଗାପୁର ଅଧିବେଶନରେ କଂଗ୍ରେସୀଙ୍କ ଉପରକୁ ଗୁଳି ଚଳେଇଥିଲେ ।

ବ: ହ; ଆଉ ସେଇ ଘଟଣା ବି; ଯେତେବେଳେ ସେ ଅଧା ଜିଲ୍ଲାକୁ ଜେଲରେ ପୂରେଇ ଦେଇଥିଲେ ।

ଅ: ସେକାଳ ଏଇନେ ସପନ ଭଳି ମନେହେଉଛି । ସେତେବେଳର ଡିଷ୍ଟ୍ରିକ୍ ମାଜିଷ୍ଟ୍ରେଟ୍‌ଗୁଡ଼ିକଙ୍କର ବାଘ ଭଳି ଛାତି ।

ବ: ଏଇନେ ବି ସେଇ ଜମାନା ଅଛି । ଭିଡ଼ର ମାନସିକତା ଆଦୌ ବଦଳି ନାହିଁ । ଭିଡ଼ ସନାତନ ।

ଅ: ହଁ, ଭିଡ଼ ସନାତନ ?

ବ: ଯେମିତି ଜଙ୍ଗଲ, ବାଘ, ଚିତା, ଆଉ ଶିକାରୀ... ସନାତନ...

ଅ: ମୁଁ ୟଙ୍ଗ୍ ଜିମୀକୁ ଭେଟିବି ନିଶ୍ଚୟ ।

ବ: ଆଉ କିଛି ଗପ ଶୁଣାଅ ।

ଅ: କ'ଣ ଶୁଣେଇବି, ସବୁ ପ୍ରସଙ୍ଗ ତ ସରିଗଲାଣି । ମନ ମୋର ଉଚ୍ଚାଟ ଲାଗିଲାଣି ।

ବ: କ'ଣ ତୋର ମନ ଭିତରେ କିଛି ପ୍ରହେଳିକା ଅଛି ? କ'ଣ ତମକୁ ଅନ୍ଧାର, ଗଭୀରତା, ବିସ୍ତୃତି ଆଉ ନୀରବତାକୁ ଡର ମାଡ଼େ ? ବା ସଂକୀର୍ଣ୍ଣ ଜାଗା, ନୂଆଁଣିଆ ଛାତ, ଅଜଣା ମଣିଷ, ମାଇପି ପିଲା ଆଉ କୁକୁର ଦେଖିଲେ ଘାବରେଇ ଯାଅ ? ଯଦି ସେମିତି ହେଉଥାଏ ତା'ହେଲେ—

ଅ: ମୋତେ ଭିଡ଼ ଦେଖିଲେ ଘୃଣା ଲାଗେ । ବାହାରକୁ ଦେଖ ସମୟ ଖସି ଗ୍ଲଲିଛି । ସମୟ ପାଇଁ ସବୁ ଉପମାନ ବୃଥା । ସେ ଛୋଟା, ଅନ୍ଧ ବା ଭାବନାହୀନ ନୁହଁ, ସେ ବେଶ ହୀନ, କପଟୀ ଆଉ ଗ୍ଲରିଶ ବିସ୍ । ମୁଁ ବୁଢ଼ା ହେଇ ଗ୍ଲଲିଛି । ଦେଖ, ଗୋଟାଏ ବର୍ଷ ଆହୁରି କଟିଗଲା । ଏଇଟା ଜୁନ୍ ମାସ ।

ବ: ଏଇଟା ଜୁନ୍ ମାସ... ଏ ଗୋଟାଏ ଗୀତର ବିଷୟ ହୋଇପାରିବ । ତମେ ତା'ର ଶୋକ ସଂଗୀତ ଲେଖ । ତମର ଚିନ୍ତାର କ'ଣ କିଛି ଗୋଟାଏ କାରଣ ଅଛି— ?

ଅ: ମୋତେ ଲୋକେ 'ଟାଇପ' ମନେକରନ୍ତି । ସାମ୍ବାଦିକ, ଲେଖକ, ନାଟ୍ୟକାର, ନାଟୁଆ ଆଉ ଆଲୋଚକ । ତମେ ବି କ'ଣ ଭାବୁଛ ମୁଁ ଗୋଟାଏ ଟାଇପ୍ ? ଦୁର୍ବଳ, ଭୀରୁ, ଡରୁଆ, ଗ୍ଲଲାକ୍, ବୁଦ୍ଧିମାନ, ସବୁଠାରୁ ସଫଳ ମଣିଷ ଯେ ଯୁବାକାଳରେ ସପନ ଦେଖେ ଆଉ ଧକ୍କା ଖାଇବା ପରେ ସିଧା ରାସ୍ତା ଧରେ, ଆଉ ଯେ ଏଇନେ ବି ନିଶ୍ଚିନ୍ତ ନୁହେଁ, କାରଣ ତା'ର ବଦହଜମୀ ଅଛି । ଲଗାଏତ ଚିଟା ଲାଗୁଛି ଆଉ ଛିଙ୍କୁଛି ଆଉ ବୟସ ଗଡ଼ିଗ୍ଲଲିଛି । ମୁଁ କେମିତି ଗୋଟାଏ ଆଜେବାଜେ 'ଟାଇପ୍' !

ବ: ତମ ବିନା ଦୁନିଆ ଚଳିବ ନାହିଁ । ତମେ ଦୁନିଆଁର ମେସିନ୍ ଚଳଉଛ ।

ଅ: ମୁଁ... ମୁଁ... !

ବ: ହଁ ।

ଅ: ଲୋକେ, ଯୋଉମାନେ ମୋତେ **'ଟାଇପ'** କରିଦେଇଛନ୍ତି, ସେମାନେ କହନ୍ତି ଯେ ମୁଁ ଅନୁଭୂତିହୀନ ଆଉ ମଣିଷର ପରି**ହାସ କ**ରେ । ମୋର ଫାଇଦା କେବଳ ଲଢ଼େଇରେ... ଆଉ...

ବଃ ଲୋକେ ଠିକ୍ କହୁଛନ୍ତି ।

ଅଃ କାରଖାନାରୁ ଲୋକେ ଖାଲି ଟିଫିନ୍ କେରିଅରଟିମାନ ମଇଳା ପୁଟୁଳିମାନଙ୍କରେ ବାନ୍ଧି ପିମ୍ପୁଡ଼ିଧାର ପରି ଛୁଟି ଚାଲିଛନ୍ତି । କିରାଣି ଧାଡ଼ି ମୁଣ୍ଡ ନୁଏଇଁ ହଲଦିଆ ବସ୍ ଷ୍ଟପ୍‌ଟିମାନଙ୍କରେ ବସ୍ ଅପେକ୍ଷାରେ ଅଛନ୍ତି । ଦି'ଘଣ୍ଟା ହେଲା ସମସ୍ତେ ସେମିତି ଅଛନ୍ତି । ଏମାନେ ଘରକୁ ଯାଉନାହାନ୍ତି କାହିଁକି ? ଟି' ଷ୍ଟଲମାନଙ୍କରେ ଧୂଆଁ ଭର୍ତ୍ତି ହେଇ ରହିଛି । ଫୁଟ୍‌ପାଥ୍ ଉପରେ ଶୋଇବାଲୋକେ ଧୀରେ ଧୀରେ ରୁଣ୍ଡ ହେଲେଣି । ସଂଧ୍ୟା ଘନେଇ ଆସୁଛି ।

ବଃ ଏଇନେ ବି ଲୋକେ ମରୁଥିବେ ତ ?

ଅଃ ସତକଥା, ପ୍ରତ୍ୟେକ ମୁହୂର୍ତ୍ତରେ, ପ୍ରତି ସେକେଣ୍ଡରେ ଲୋକେ ମରୁଛନ୍ତି ।

ବଃ ଆଉ ନିଜ ଠୁଁ ନୁହଁ !

ଅଃ ମୌଲାନା ଅବଦୁଲ ମତୀନ ନଦବୀ କହନ୍ତି ଯେ ସବୁକିଛି ଈଶ୍ୱରଙ୍କ ଇଚ୍ଛା ।

ବଃ ଯେ କେତେଜଣ ଅନ୍ୟ ମଣିଷଙ୍କୁ ମାରନ୍ତୁ ବା ସେମାନଙ୍କର ମୃତ୍ୟୁର ବାହାନା ହୁଅନ୍ତୁ ?

ଅଃ ସବୁ ସେଇ, ତାରି ଦ୍ୱାରା ହେଉଛି । ତା'ର ଇଚ୍ଛା ବିନା ପତରଟିଏ ବି ହଲିବ ନାଇଁ ।

ବଃ ଆଉ କହ ଖବର କ'ଣ ?

ଅଃ ମୋତେ କିଛି ସନ୍ଦେହ ଘେରିଛନ୍ତି !

ବଃ ବୁଢ଼ିଆଣୀ ବସି ଜାଲ ବୁଣୁଛି... ବୁଣୁଛି !

ଅଃ ସେ ବୁଢ଼ିଆଣୀଠୁଁ ଉବୁରି ଯିବି ?

ବଃ ହଁ, ଏଇନେ ଅବସ୍ଥା ସେତେ ଖରାପ ନୁହଁ । ତମ ଲାଗି ଅନେକ କିଛି ବାକି ଅଛି ।

ଅଃ ବୋଧହୁଏ । ତେବେ ମୁଁ ବେଶ୍ ଦୁଃଖୀ ! ମୋର ଆରମ୍ଭ ହିଁ ମୋର ଶେଷ । ଆଦି...ଆଦି....

ବଃ ବାଜେ ବକୁଛ କିଆଁ !

ଅଃ ବଗିଚ୍ଚାରେ ଭିନ୍ନ ସ୍ୱର ଶୁଭୁଛି । ଆମେ କ'ଣ ତା' ପଛରେ ଗୋଡ଼େଇବା ! ଜଲଦି କର... ଜଲଦି କର... ଚଢ଼େଇଟି କହିଲା

ବଃ କିଆଁ ପ୍ରଳାପ କରୁଛ ?

ଅଃ ଆଗକୁ ବଢ଼ ଯାତ୍ରୀ, ତମେ ଯେ ଭାବୁଛ ଯେ ଯାତ୍ରାରେ ଅଛ, ତମେ ସିଏ ନୁହଁ, ଯିଏ ବନ୍ଦରକୁ ଆଖି ଆଗରୁ ଅଦୃଶ୍ୟ ହୋଇଯିବା ଦେଖିଛି । ବା ତମେ ସିଏ ଯେ ଆରପଟେ ଓହ୍ଲେଇବ । ଏଠା ଆଉ ଆରପଟ ମଝିରେ ସମୟ ବୃଥା ହୋଇ ସାରିଛି ।

ବଃ ଚୁପ୍ ରହ ଆଉ ବାହାରକୁ ଅନାଅ, ରାତି ହେଇ ଆସିଲାଣି !

ଅଃ ଲୋକେ ଘରକୁ ଯାଉଛନ୍ତି, ମୁଣ୍ଡ ନୁଏଇଁ । ଯେମିତି ନିୟମ ଅଛି ଏମାନେ ମୁଣ୍ଡ ଉଠେଇ ଚାଲୁନାହାନ୍ତି କାହିଁକି ? ତମର କଥାର ମତଲବ ହେଲା— ଏମାନଙ୍କ ଭାଗ୍ୟରେ ଖୁସି ନାଇଁ ! ସେମାନେ ସବୁ ଏମିତି ବଂଚି ଚାଲିବେ ।

ବ: ଆଉ ମରିଯିବେ

ଅ: ତମେ ପୁଣି ମୃତ୍ୟୁ କଥା ମନେପକେଇ ଦେଲ । ମୁଁ ନିଜେ ପ୍ରତି ମୁହୂର୍ତ୍ତରେ ମୃତ୍ୟୁ କଥା ମନେପକଉଛି । ମୋ ମଥା ଘୂରିଯାଉଛି । ମୁଁ ମୋ ଦଉଡ଼ିର ଶେଷପଟକୁ ଅଛି... ମୋର ଆରମ୍ଭରେ...

ବ: ମୋର ତମଲାଗି ଚିନ୍ତା ହେଉଛି ।

ଅ: ମୋର ଛୋଟ ଛୋଟ କଥାରେ ରାଗ ହେଉଛି । ମୋର ରକ୍ତ ଟକମକ ହେଇ ଫୁଟୁଛି । ମୁଁ ସାମୂହିକ ରୂପରେ ଜୀବନରେ ଉଦାସୀନ... ।

ବ: ତମେ କାହିଁକି ସ୍ୱୀକାର କରୁନ ଯେ ଯାହା ହେବାର ଥିବ, ତାହାହିଁ ହେବ !

ଅ: ସେ ମୂର୍ଖ କଥା । ଯାହା ହେବାକୁ ଅଛି, ସତ ଯେ ତାହାହିଁ ହେବ । ଆଉ କିଛି ହେବାକୁ ଥିବ, ସିଏ ବି ସତ ଯେ, ତାହା ହେବ ହିଁ ହେବ । ଯାହା ହେବାର ନୁହଁ, ତାହା କଦାପି ହେବନାଇଁ ।

ବ: ବୃଥାଟାରେ ମେଟାଫିଜିକଲ ହୁଅନା !

ଅ: ତମେ କ'ଣ ଭାବୁଛ ଯେ ଦୁନିଆର ସବୁ ସମସ୍ୟା ଆଉ ଦୁଃଖର ମୂଳକାରଣ ମାନସିକ ନୁହଁ ଆର୍ଥିକ !

ବ: ପ୍ରେସ୍‌ର ମେସିନ୍‌ଗୁଡ଼ିକ ଘରଘର ଗ୍ଧିଲିଛନ୍ତି । ଖବର ଗ୍ରଅଲ୍ୟକର । ସେ ଛୋଟା ଖବରକାଗଜ ହକରକୁ ଦେଖ, ଯେ ପାଗଳ ଭଳି ଚିହ୍ନାର କରୁଛି ।

ଅ: ଇଏ ପ୍ରତୀକମାନଙ୍କର ଦୁନିଆଁ । ମୋତେ ସବୁ ଜିନିଷରେ କିଛି ନା କିଛି ପ୍ରତୀକ ଦିଶେ । ମୁଁ ପଂକ୍ତିମାନଙ୍କର ମଝିରୁ ପଢ଼େଁ ।

ବ: ତମେ ଯାହାସବୁ ପଢ଼ିଛ ଭୁଲିଯାଅ । ଆମର ଶିକ୍ଷା ବିଶେଷଜ୍ଞ ସେଇ ପରିମାଣରେ ପହଞ୍ଚି କହନ୍ତି ଯେ ସବୁ ଶିକ୍ଷା ଛଳନା, ବେକାର...

ଅ: ସେମାନେ ସବୁ ଠିକ୍ କହୁଛନ୍ତି । ଆମର ବହିଠାରୁ ଅଧିକ ଜରୁରୀ ବନ୍ଧୁକ । ଦେଶର ପିଲାଙ୍କୁ ବହି ନ ଦେଇ ବନ୍ଧୁକ ଦିଅ, ଯେମିତି ସେମାନେ ବାହାଦୁର ହେବେ ।

ବ: ଏ ଲେଖା-ପଢ଼ା ସବୁକିଛି ଗରିବଙ୍କର ଅଫିମ ଭଳି । ଗରିବଙ୍କୁ ଅଫିମ ଦିଅନାଇଁ । ତାଙ୍କୁ ଖାଇ ସେମାନଙ୍କର ମତି ଘୂରିବ । ଆଉ ବୁଦ୍ଧି ନାଶ ହେବ ।

ଅ: ହେଲେ ସେଗୁଡ଼ା ଏମିତି ଚିହ୍ନାର କରନ୍ତି...

ବ: କରୁଥା'ନ୍ତୁ । ତମେ ସେଇ କୁକୁରମାନଙ୍କୁ ଦେଖିଛ, ଯୋଉମାନେ ଶୀତରାତିରେ ଜହ୍ନ ତଳେ ବସି ଆକାଶକୁ ମୁହଁ ଟେକେଇ ଭାଦ୍ନୁ ଥାଆନ୍ତି ?

ଅ: ଜହ୍ନକୁ ପାଇବା ଇଚ୍ଛାରେ ?

ବ: ନା, ସେମାନଙ୍କୁ କେବଳ ଥଣ୍ଡା ଲାଗେ ।

ଅ: ମୋର ଜେଜେବାପା ନବାବ ବାହାଦୁର ଝମ୍ପସଟଗଡ଼ଙ୍କ ପାଖରେ ଡଜନେ ସରିକି ଏକୁ ଆରେକ ଶିକାରୀ କୁକୁର ଥିଲେ । ହଁ, ମୋର ସେଇ ମହଲଟି ବେଳେବେଳେ ମନେପଡ଼େ, ଯାହା ମୁଁ ଛାଡ଼ି ଦେଇ ଆସିଛି—

ବ: ବକ ନାହିଁ । ସେଇ ମନଗଢ଼ା ମହଲଠାରୁ ଚାରିଗୁଣ ବଡ଼ ମହଲ ତମେ ଏଠି ତିଆରି କରିସାରିଛ । କୁମ୍ଭୀର କାନ୍ଦଣା କାନ୍ଦ ନାହିଁ ।

ଅ: କ'ଣ ତମେ ମୋତେ ଭାବନା ବିଳାସୀ ବି କରେଇ ଦେବନାହିଁ ଟିକିଏ ନାଆଁକୁ...?

ବ: ତମକୁ କୌଣସି କଥାରେ କଷ୍ଟ ନ ହେବା ଉଚିତ । ତମେ ଏମିତି ଦୁନିଆଟିଏ ଗଢ଼ିଛ, ଯୋଉଠି ପିଲାଏ ଭିକ ମାଗନ୍ତି । ଯୁବତୀଙ୍କର ଇଜ୍ଜତ ସୁରକ୍ଷିତ ନୁହେଁ ଆଉ ଯୁବକ ସବୁ ଯକ୍ଷ୍ମାଗ୍ରସ୍ତ.... ଆଉ—

ଅ: ଏ ଦୁନିଆ ସବୁବେଳେ ଥିଲା । ମୁଁ ତା ଦେହରେ କେତୋଟି ଝୁମର ଝାଲର ଲଗେଇ ଦେଇଛି । ଅଲଟ୍ରା ମଡର୍ଣ୍ଣ କୋଠି, ଏମିତି ଉତ୍ସବ, ଏଭଳି ସମାରୋହ ତମେ କେବେ କ'ଣ ସ୍ୱପ୍ନରେ ହେଲେ ଦେଖିଛ ? ଆଉ ଏତେବଡ଼ ବଡ଼ ମୋଟରରେ ଥାଟ ସଜେଇଥିବା ଏଇ ସମୁଦ୍ର ?

ବ: କୋଡ଼ିଏ ବର୍ଷ ତଳେ ମାତ୍ର ଗୋଟିଏ ପ୍ଲେନ ଥିଲା, ଏଇନେ ଚାରିପଟେ ପ୍ଲେନ୍ ।

ଅ: ମୋର ଗୋଟାଏ ବନ୍ଧୁ, ଯେ ସେତେବେଳେ କେମ୍ବ୍ରିଜରେ ପଢୁଥିଲା, ସେ ଲଢ଼ିବାକୁ ଯାଇଥିଲା— ହେଲେ ଏଇନେ ତା'ର ଠିକ୍ ରାସ୍ତାରେ ପଡ଼ିବା ବି ଗୋଟାଏ ଯୁଗ ହେଲାଣି ।

ବ: ଏଇନେ ଲୁହ ଆଉ ମୁରୁକି ହସ ଦୁଇ କଥା ବେକାର । ସବୁ କଥାର ସମୟ ବିତି ସାରିଛି ।

ଅ: ଶୁଣିଛି କଲ୍‌ଚରର ଖୁବ୍ ଶକ୍ତି । ସେ ଆମକୁ ଉଦ୍ଧାର କରିବ । ଆଜିକାଲି ତା' ଉପରେ ଚର୍ଚ୍ଚା ଖୁବ୍ ଚାଲିଛି । ତା'ଦ୍ୱାରା କିଛି ନା କିଛି ଅବଶ୍ୟ ହେବ ?

ବ: ୟୁରୋପରେ ଗୋଥେକ ଆଉ ବ୍ରୋକ୍ କେଥେଡ୍ରାଲ ବୋମାମାଡ଼ର ଲକ୍ଷ୍ୟ ପାଲଟିଗଲେ ।

ଅ: ଆଦର୍ଶ କେମିତି ଜିନିଷଟିଏ । ଆଦର୍ଶଗୁଡ଼ିକ କୋଉମାନେ ତିଆରି କରନ୍ତି ?

ବ: ଏହି ପ୍ରଶ୍ନଟି କୌଣସି ବେଦାନ୍ତୀକୁ ପଚାରିବ ଯେ କିଏ କା'ର ନିର୍ଣ୍ଣୟ କରିବ । ମାତ୍ର ଧୀରେ ଧୀରେ ଶବ୍ଦର ଭଣ୍ଡାର ଖାଲି ହୋଇଯାଉଛି ।

ଅ: ଫଇସଲାକୁ ମୋର ଭାରି ଡର !

ବ: ତମେ ତମଠାରୁ ଦୁର୍ବଳ ଲୋକର ଭାଗ୍ୟର ଫଇସଲା କରୁଛ ।

ଅ: ଆଉ ମୋ'ଠାରୁ ଅଧିକ ଶକ୍ତିମାନ ମୋ ଭାଗ୍ୟର ଫଇସଲା କରୁଛନ୍ତି ।

ବ: ଗୋଟାଏ ସମୟ ଥିଲା, ଯେତେବେଳେ ଜୀବନ ଭାରି ସହଜ ଥିଲା । ଯଦିଓ ଗୋଟାଏ ସୀମା ଭିତରେ ସୀମିତ ହୋଇ ରହିଥିଲା ।

ଅ: ହଁ ଜୀବନରେ ଦ୍ୱନ୍ଦ୍ୱ ନଥିଲା ବା ରାଜନୈତିକ ବାଧା ନିଷେଧ ବି ନଥିଲା । ମୋର ସେ କାଳ କଥା ମନେଅଛି, ଯେତେବେଳେ ଦୁଇ ସେପ୍‌ଟେମ୍ବର ୧୯୩୯ରେ ହଙ୍ଗ୍‌କଙ୍ଗ୍‌ରେ ଟ୍ରେନ ଧଇଲେ ସିଧା ଲଣ୍ଡନରେ ପହଞ୍ଚେଇ ହେଉଥିଲା । ଜୀବନ ସରଳ ଥିଲା ।

ବ: ହଁ ସେତେବେଳେ ପ୍ରତ୍ୟେକ କଥା ଆପଣାର ସ୍ୱାଭାବିକ ଆକାରରୁ ଶହେଗୁଣ ବଡ଼

ହୋଇ ନଥିଲା । ଲୋକେ, ଯୋଉମାନଙ୍କର ବୁଦ୍ଧି ଶହେ ଆଗକୁ ଯାଇ ନଥିଲା, ଏଇନେ ଲକ୍ଷ କୋଟି କଥା କହୁଛନ୍ତି । ଏଇନେ ସବୁ କଥା ଏନଲାର୍ଜଡ଼ ଆଉ ଆଉଟ୍ ଅଫ୍ ଫୋକସ । ସହରଗୁଡ଼ିକ ଜଳୁଛନ୍ତି । ଖେତରେ ନିଆଁ ଲାଗିଛି, ହେଲେ ନା କେହି ନିଆଁକୁ ଦେଖୁଛି, ନା କେହି ଧୂଆଁ ।

ଅ: ଏଇନେ ଆଉ ହେବ କ'ଣ ?

ବ: ପଶାକାଠି ତିଆରି ହେଲାଣି, କେବଳ ଫିଙ୍ଗା ହେବ ।

ଅ: ବାରୁଦ ଧୂଆଁରେ ମୋର ଶ୍ୱାସରୁଦ୍ଧ ହୋଇଯାଉଛି । ମୋତେ ପ୍ରତ୍ୟେକ ଜିନିଷରେ ବାରୁଦର ଗନ୍ଧ ଆସୁଛି ।

ବ: ହ୍ୟୁମେନିଷ୍ଟ କ୍ୟୁକେର, ବେଦାନ୍ତିଷ୍ଟ, ଥିଓସୋଫିଷ୍ଟ, ବ୍ରିଟିଶ୍ ଲିବରାଲ, ଲେଫଟ୍‌ଓ୍ୱିଙ୍ଗ ଇଣ୍ଟଲେକ୍‌ଚୁଏଲ, ଶାନ୍ତିର ପୂଜାରୀ ମୁକ୍ତ ବିଗ୍ରହବନ୍ତ ମୌଲାନା, ଯେ 'ରୁଷରେ ଇସ୍ଲାମ' ଶୀର୍ଷକ ପ୍ରବନ୍ଧ ଲେଖନ୍ତି, ସ୍କୁଲ୍ ଟିଚର, ଛୋଟ ସହରର ଡାକ୍ତର... ବିଶ୍ୱବିଦ୍ୟାଳୟର ପ୍ରଫେସର, ଯେ କମ୍ ଦରମାରେ ସବୁ କିଛି ବିଦ୍ୟା 'ପାରି'ଦିଅନ୍ତି ଆଉ ଘୋଡ଼େଇ ହୁଅନ୍ତି ବି; ସେମାନେ ବେଶ ସନ୍ତୋଷରେ ଜୀବନ ବ୍ୟତୀତ କରନ୍ତି— ଏଇଆ ଭାବି ଯେ ହୁଏତ ସେମାନେ ଏକ ନୋବେଲ ପ୍ରଫେସନ୍‌ରେ ଥିଲେ ଆଉ ସେମାନେ ହାଇଡ୍ରୋଜେନ ବୋମା ବିରୋଧରେ ସ୍ୱର ଉତ୍ତୋଳନ କରିଥିଲେ । ସେହି ଦୃଷ୍ଟିରୁ ତାଙ୍କୁ ଶତ୍ରୁପକ୍ଷର ଏଜେଣ୍ଟ ଆଉ ଫେଲୋ ଟ୍ରାଭେଲର ବୋଲି ସନ୍ଦେହ କରାଗଲା । ଆଉ ସେ ବୁଢ଼ା ୟୁହୁଦୀ ବୈଜ୍ଞାନିକ ଆଉ ସେ ବୁଢ଼ା ମୁସଲମାନ ବିଦ୍ୱାନ, ଯେ ରାଷ୍ଟ୍ରପ୍ରେମୀ ତଥା ଆଜମଗଡ଼ରେ ବା ବହରାଇଚରେ କିମ୍ବା ଗୋରଖପୁରରେ ଚୁପ୍‌ଚାପ ବସିଛି ଆଉ ମାଇପିମାନେ ଯୋଉମାନଙ୍କର ପିଲାମାନେ—

କୋରିଆରେ

ଡନ୍‌ବିନ୍ ଫୁ ରେ

କିନିୟାରେ

ମାଳୟରେ

ଇଣ୍ଡୋନେସିଆରେ

ଇସ୍ରାୟଲ, ଏଡନ୍ ଆଉ ଲେବାନନ୍‌ରେ, ଶ୍ୟାମ, ମିସର, ଆଉ ଭାରତ ଆଉ ପାକିସ୍ଥାନ ସୀମାରେ

ଏଲଜେରିଆରେ

ମରକ୍କୋରେ

ସୁରମା ନଦୀ ତଟରେ

ନିହତ ହେଲେ କିମ୍ବା ଯେଉଁମାନଙ୍କର ହତ୍ୟା କରାଯାଇଛି ପ୍ରତି ମୁହୂର୍ତ୍ତରେ, ପ୍ରତି ମିନିଟରେ, ସକାଳେ, ସଂଧ୍ୟାରେ । ସେମାନେ ସମସ୍ତେ ଶାନ୍ତି ଚାହାନ୍ତି ବୋଲି ନାରା

ଲଗେଇଥିଲେ । କାରଣ ଆଜି ମରୁଥିବା ପିଲାମାନଙ୍କରେ ବାପମାନେ ମରିଥିବା ୟୁରୋପର ଲଢ଼େଇ ସରିବାବେଳେ ସେମାନଙ୍କର ମାଆମାନଙ୍କୁ କହିଥିଲେ— ତମେମାନେ ଏ ଦୁନିଆକୁ ସୁରକ୍ଷିତ ରଖିବା ପାଇଁ ବଳିଦାନ କରିଛ, ଯେମିତି ତମର ପିଲାମାନେ ଶାନ୍ତିର ଜଗତରେ ଜୀବିତ ଓ ସୁରକ୍ଷିତ ରହିଥିବେ ।

ଅ: ତମେ ମୋତେ ଏ ସବୁ କାହିଁକି ଶୁଣଉଛ ?

ବ: ଆଉ ଏ ପିଲାମାନେ ବଡ଼ ମଧ୍ୟ ହୋଇ ପାରି ନଥିଲେ, ଯେତେବେଳେ ସେମାନଙ୍କୁ କିଟ୍‌ବେଗ୍ କାନ୍ଧରେ ଉଠେଇ ମାର୍ଚ୍ଚ କରି କରି ନୂଆ ଟ୍ରେଂଚ ଆଡ଼କୁ ମୁହେଁଇବାକୁ ହେଲା । ଯଦିଓ ଏଇନେ ସାରା ଦୁନିଆଁରେ କୌଣସି ଘୋଷିତ ଲଢ଼େଇ ଚ୍ଚଲିନାହିଁ। ଆଉ ସୁନ୍ଦର-ସୁନ୍ଦର ଥାଇ, ଜାପାନୀ, ଫ୍ରେଞ୍ଚ, ପାକିସ୍ଥାନୀ ଓ ଭାରତୀୟ ଗାଇଡ଼ ଝିଅମାନେ ନ୍ୟୁୟର୍କରେ ପର୍ଯ୍ୟଟକମାନଙ୍କୁ ୟୁ.ଏନ୍.ଓ ଭବନ ବୁଲେଇ ଦେଖଉଛନ୍ତି । ରାସ୍ତାଗୁଡ଼ିକ ଆଲୁଅ ଝଲମଲ । କାର, ବସ୍, ମୋଟର, ରିକ୍ସା । ଗରମ ଆଉ ନୂଆ ହୋଇ ସଂପନ୍ନ ହୋଇଥିବା ଲୋକଙ୍କର ସନ୍ତୋଷବିଧାନ ନିମନ୍ତେ ଫେସନେବୁଲ ସେଣ୍ଟରର ସେକେଣ୍ଡ ରେଟ ବାତାବରଣରେ ଶ୍ୱାସରୁଦ୍ଧ ହୋଇଯାଉଛି । ସିନେମା ହଲଗୁଡ଼ିକରେ ମେରେଲୀନ ମନ୍‌ରୋ ଛବିଗୁଡ଼ିକ ସବୁଠାରୁ ଉଚ୍ଚରେ ଲାଗିଛି । କଳା ମଚମଚ ନିଗ୍ରୋ ଆଉ ଗୋଆ ପିଲାଏ ଜିନ୍ସ ପିନ୍ଧି ରକ୍ ଏଣ୍ଡ ରୋଲର ଧୂନ ଗୁଣୁଗୁଣୁ ଗାଉଛନ୍ତି । ବେଗମମାନେ ସୁନ୍ଦର ସୁନ୍ଦର ସୁତୀ ଶାଢ଼ୀ ପିନ୍ଧିବା ଆରମ୍ଭ କରି ଦେଇଛନ୍ତି, ଯାହା ସେମାନେ ଭାରତରୁ ଅଣାନ୍ତି । ବାଳର ପୋନିଟେଲ କରି, ସଲୱାର ଉପରେ ଉଚ୍ଚା ଉଚ୍ଚା କାମିଜ ପିନ୍ଧି ଝିଅଗୁଡ଼ିକ ଶାଗୁଆ ଘାସ ଉପରେ ବସି କ'ଣ ଭାବୁଛନ୍ତି (ଯଦି ସେମାନେ କିଛି ଭାବୁଥା'ନ୍ତି) ମୁଁ ସେମାନଙ୍କ ପାଇଁ ଗୋଟାଏ ପେନି ଦେବି ।

ଉଦାସୀନ ରହ, ଦୁଃଖୀ ରହ... ସେଇ ଅସଲ ଜିନିଷ । ତମର ଷ୍ଟେଟ୍‌ମେଣ୍ଟରେ ଭାବୁକ ହେବା ଉଚିତ ନୁହେଁ ।

ଅ: ଦୁନିଆର ଗାଡ଼ି ଏଇନେ ଆଉ ଚଳେଇ ହେଉନି । ଦୁନିଆ ଗ୍ଲୋରିପଟୁ ଭାଙ୍ଗି ମୋର ଏଣେତେଣେ ଅଜାଡ଼ି ହୋଇପଡୁଛି ।

ବ: ଆମେ ପିଲାଟି ଦିନରୁ ଅନୁଚିତ ବୋଲି ଘୋଷିତ କରିଦେଇଥିବା ପ୍ରତ୍ୟେକ ଜିନିଷ ଉଚିତ ବୋଲି ଘୋଷିତ ହୋଇସାରିଛି । ଉଚିତ ଅନୁଚିତ ଆଉ ଅନୁଚିତ ଉଚିତ । ଜୀବହତ୍ୟା ମହାପାପ ନୁହଁ, ତା'ଦ୍ୱାରା ଦେଶର ମାନଚିତ୍ର ବଦଳାଯାଏ । ସୀମାରେଖାର ମହତ୍ତ୍ୱ ଅତି ବେଶୀ । ସେଇ ରେଖାମାନଙ୍କ ଆଗରେ ମନୁଷ୍ୟର କୌଣସି ମୂଲ୍ୟ ନାହିଁ... ମାର... ମାର ଅଧିକ ଅଧିକ ମଣିଷଙ୍କୁ ମାର ।

ଅ: କ'ଣ କ'ଣ ହେଲା ! କୋଉଠି ଗଣ୍ଡଗୋଳ ହେଲା ? ଗୁଣ୍ଡାଗିରୀ ! ପୋଲିସକୁ ଫୋନ୍ କର, ହୋଇପାରେ ଡାକୁ ପଶି ଆସିଥିବେ । ଏଇ ନଗର ପ୍ରାଚ୍ୟର ସବୁଠାରୁ

କରସ୍ଥ ରାଜଧାନୀ, ଏହାକୁ ପୂର୍ବର ଚିକାଗୋ ହେବାର ଗୌରବ ମିଳିବାକୁ ଅଛି । ବିଦେଶୀ ସାମ୍ବାଦିକମାନଙ୍କୁ ଡାକ, ଗୋଟାଏ ବିବୃତି ଦେବି ।

ବଃ ଜନ୍ ଜେରଲ୍ଡଓ ଏମ୍ବିଲ୍ ଷ୍ଟେନ୍‌ଫୋର୍ଡର ଖେଳାଳୀ ଫିଲାଡେଲଫିଆରେ ଏରିଆ ଟ୍ରେନିଂ ପାଇ ପହଞ୍ଚିଲା । ଏଇନେ ତାକୁ ଆଫଗାନମାନଙ୍କର ରୀତି-ନୀତି, ଜମିଦାରୀ, ବଜେଟ୍, ଚଟଗାଓଁର ଟ୍ରେଡ୍ ୟୁନିୟନମାନଙ୍କର ଅବସ୍ଥା ଆଉ ସିନ୍ଧୁ ପ୍ରଦେଶବାଲାଙ୍କ କାହାଣୀ ଜଣାଥିଲା । ପେଲେସ ପୋଲିଟିକ୍ସ, ସିନ୍ଧୁ ପ୍ରଦେଶ କାହାଣୀ ଓ ପୋଲିଟିକ୍ସ ସବୁ ତାର ଜଣା । ବେଶ୍ ପ୍ରଭାବଶାଳୀ ମିଡିଲ ଇଷ୍ଟ ଏକ୍ସପର୍ଟ । ସେ ମୋତେ ପରୀକ୍ଷା କରିବାକୁ ଚାହିଁଲା । ସେ ପ୍ରଶ୍ନକଲା— ହଂଗେରୀ ବାବତରେ ତମର ମତ କ'ଣ ? ଆଲଜେରିଆ ନେଇ ତମର କ'ଣ ମତି ? ମୁଁ ତାକୁ ଉତ୍ତର ନ ଦେଇ ପଚାରିଲି ।
ଡ.ଉକାବ୍ ଅଷ୍ଟମ ଶତାବ୍ଦୀର ଆଫ୍ରିକୀୟ ଇସଲାମୀ ଧର୍ମଶାସ୍ତ୍ର ଉପରେ ରିସର୍ଚ୍ଚ କରି ଅକ୍ସଫୋର୍ଡରୁ ଫେରିଲା । ତମେସବୁ ଫାଙ୍କା ମଣିଷ । ତମେସବୁ ଏକାଠି ହେଇ କାନ୍ଦୁଛ । ତମେ କ'ଣ ଜାଣିନ ଯେ ଇସ୍‌ଲାମରେ ସବୁ ପୀଡ଼ାର ଉପଚାର ଅଛି ? ତେଣୁ ମୁଁ ଇସଲାମୀ ଗୋଟିଏ ସଚିତ୍ର ଧାର୍ମିକ ପତ୍ରିକା ପଢ଼ିବା ଆରମ୍ଭ କରିଦେଲି । ତେବେ ଗଭୀରକୁ ଯାଇ ପଢ଼ିଲାରୁ ଜାଣିଲି ଯେ ତାକୁ କମରେଡ୍ ସିଫତେହସନ୍ ଏଡ଼ିଟ୍ କରୁଛନ୍ତି । ଯେମିତି ଇସଲାମର ରାସ୍ତାରେ ବିପ୍ଳବ ଆସିବ । ବାଧ୍ୟତା ସବୁ କିଛି କରେଇ ଦିଏ ।

ଅଃ ମୁଁ ଦୁନିଆର ସମସ୍ୟାରେ କୋଟି କୋଟି ମଣିଷଙ୍କର ଜୀବନ ଗଢ଼ିବା ଭାଙ୍ଗିବା ନେଇ ନୈତିକ, ସାମାଜିକ ଓ ଧାର୍ମିକ ସ୍ୱରୂପ ଗଠନ ଦିଗରେ ଅନଧିକାର ଚର୍ଚ୍ଚା କରିବି । ମୋର ଏତେ ସାହସ କେମିତି ହେଲା । ଅନ୍ତଃରାଷ୍ଟ୍ରୀୟ ସମସ୍ୟାଗୁଡ଼ିକରେ ଦଖଲ ଦେବି; ମୁଁ ଏସବୁ କେମିତି କଲି ! ମୁଁ ତ କେବଳ ମୋର ବ୍ୟକ୍ତିଗତ ଲାଭ ଚାହୁଁଥିଲି । ଟା' ସାଙ୍ଗକୁ ନାଆଁ, ପ୍ରତିଷ୍ଠା । କାରଣ ମଣିଷ ଯଦି କ୍ଷମତାକୁ ଆସିବାକୁ ଡରୁଛି, ତା'ହେଲେ ଉଚିତ ହେବ ଯଦି ସେ ଲଣ୍ଡା ହେଇ ସାଧୁ ପାଲଟିଯିବ । କ୍ଷମତା, ପ୍ରାବଲ୍ୟ, ଶକ୍ତି, ଅନୁଶାସନ, ପ୍ରବନ୍ଧ, ଅନ୍ତରାତ୍ମା, ସିଦ୍ଧାନ୍ତ— ଏସବୁ ଶବ୍ଦଙ୍କୁ ହଟାଅ ମୋ ସାମନାରୁ । ମୋର କେବଳ ମେଘ ଆଉ ପତ୍ରଙ୍କର ଖସ୍‌ଖସ୍ ଶବ୍ଦ ଦରକାର !

ବଃ ମାତ୍ର ପଶାକାଠି ଫିଙ୍ଗା ସରିଛି । କ୍ଷମତା ତମ ଭାଗରେ ପଡ଼ିଛି । ତମେ ଶକ୍ତିଶାଳୀ ଆଉ ତମର ଶକ୍ତି ଅନ୍ୟମାନଙ୍କ ପାଇଁ, ପ୍ରତ୍ୟେକ ମଣିଷ ପାଇଁ ହାନିକାରକ, କେବଳ ତମକୁ ଛାଡ଼ି— ଏଇନେ ତମେ ଯେ ଏଇଠି ବସିଛ ଆଉ ସାମନାରେ ତମର ସେଇ ଘାସ ଉପରେ ଝିଅମାନେ ହସୁଛନ୍ତି, ପିଲାମାନେ ଖେଳୁଛନ୍ତି, ସଂଗୀତର ସ୍ୱର ଭାସି ଆସୁଛି; ଠିକ୍ ଏଇନେ ତମରି କାରଣରୁ ଜଙ୍ଗଲ ଆଉ ବସ୍ତିରେ ବାରୁଦ ଗୁଳା ଫୁଟୁଛି । ଆଉ ମଣିଷ ଦେହ ଛିନଛତ୍ର ହେଇ ଉଡ଼ିଯାଉଛି ।

ଅଃ ଏ ଦୃଷ୍ଟାନ୍ତ ମୋ ସାମନାରେ ଦେଇ ମୋତେ ଧମକେଇବାର ଚେଷ୍ଟା କରନାଇଁ ।

ବଃ ମୋ ଆଗକୁ ଗୋଟାଏ ପୋଲିସ ଅଫିସର ଆସେ, ଯେ ଗଲା ରବିବାର ଦିନ କୋମୋ

ସୋମାର୍ଟର ଗୋଟାଏ କେଫେରେ ବସି ସାର୍ତ୍ତ୍ରେ ପଢୁଥିଲେ । ସେ ସ୍ୱାଧୀନତାର ସମର୍ଥକ ।

ଅ: ମୁଁ ଏବେ ବି ଦେଖୁଛି— ତମ ଲୁଗାପଟା ଖୋଲିପକା ।

ବ: ଆଉ ସେ ଉଲଗ୍ନା ହୋଇଯାଏ ![୧]

ଏଇନେ ବେଗମମାନେ ଅଲଗା ନୃତ୍ୟ ପ୍ରଦର୍ଶନ କରିବେ । ଐକ୍ୟତାନିକଙ୍କୁ କହ ସେମାନେ ଆର୍ଥକିଟର କୋଉ ଗୋଟାଏ ଧୂନ୍ ବଜାନ୍ତୁ ବା ସୈମ୍ବୀ । ବେଗମ ସାହିବାଙ୍କ ପାଇଁ ଗୋଟାଏ ଶେରୀ ।

ଅ: ଅବଦୁଲ ତମେ ଆସିଗଲ ? ମୋତେ ଭାରି ଡର ମାଡୁଥିଲା । ମୁଁ ଭାରି ଖରାପ ସ୍ୱପ୍ନଗୁଡ଼ିଏ ଦେଖେ, ଡରିଯାଏ । ଅବଦୁଲ, ମୁଁ ଭାବୁଛି ଯେ ତମେ ମୋ'ଠାରୁ ଅଲଗା ହୋଇଯିବ । ଅବଦୁଲ, ମୋ ପାଇଁ କଫି ଆଉ ବେଗମ୍ ସାହିବାଙ୍କ ପାଇଁ ଡ୍ରାଇ ମାଟିନୀ । ଅବଦୁଲ, କ'ଣ ଇଏବି ସତ ଯେ ତମର ପ୍ରଭାବରେ ଓଲ୍ଡ ଅର୍ଡର ହୋଇଛି, ବିଦ୍ୟାର୍ଥୀମାନେ ଗରିବ ଓ ପ୍ରତିଭାଶାଳୀ, ମହିଳାମାନେ ସତୀତ୍ୱ ପରିପୂର୍ଣ୍ଣ ଓ ବିଶ୍ୱସ୍ତ ! ମୁଁ ତମର ଚେହେରାରେ ବୟସର ଅଁକାବଙ୍କା ରେଖା ଦେଖୁଛି । ତମର ଦାଢ଼ି ପୂରାପୂରି ଧଳା ପଡ଼ିଯାଇଛି । ଯଦିଓ ତମର ନୂଆ ଆମେରିକାନ୍ ସାହେବମାନେ ପୁରଣା ଇଂରେଜ ସାହବମାନଙ୍କଠାରୁ କେତେ ବେଶୀ ଉଦାର । କ'ଣ ସିଏ ବି ଗୋଟାଏ ଗୁଜବ ?

ବ: ଛାଇ ଭଳି, ବେଗମ ସାହିବାଙ୍କ ପାଇଁ ଡ୍ରାଇ ମାଟିନୀ ଆଣିବାକୁ ଅବଦୁଲ ଚାଲିଗଲା । ପ୍ରେଷ୍ଟ୍ରୀଯାଇ ସେ ପାଣି ଦଉଥିବା ଲୋକକୁ କହିବ ଯେ ଆଜି ବଡ଼ ସାହେବ ଭାରି ଉଦାସ ।

ଅ: ମୁଁ ଯେତେବେଳେ କଥା ହେଉଛି, ମୋତେ ଲାଗୁଛି, ଯେମିତି ଗୋଟାଏ ମୃତ ଭାଷାରେ କଥା ହେଉଛି । ଲୋକେ ବୁଝିପାରୁନାହାନ୍ତି ସଂସ୍କୃତ, ପହ୍ଲବୀ, ବା ଲେଟିନ୍ ଶବ୍ଦର ଅର୍ଥ ବଦଳି ଯାଇଛି ।

ବ: ବାଲ୍‌ଜ ବେଗମ୍ ସାହେବାଙ୍କର ଭାରି ପସନ୍ଦିଆ ନାଚ । ଆଜିକାଲି ଲୋକେ ସବାୟ ଆଉ ଥ୍ରୀହଣ୍ଡ୍ରେଡ଼୍‌ରେ କୋଉ ନାଚ ନାଚୁଛନ୍ତି ?

ଅ: ଅନେକ ଲୋକ ଅଛନ୍ତି (ଆଉ ତମେ ଜାଣିଛ ସେମାନେ କିଏ), ଯେଉଁମାନଙ୍କର ନା ମୋ ଭଳି ଭୟାନକ ସ୍ୱପ୍ନ ଆସେ ବା ସେମାନଙ୍କର ହୃଦୟ ଡରିଯାଏ । ଯଦିଓ ସେମାନେ ସେହି ସବୁକଥା କରୁଛନ୍ତି, ଯାହା ମୁଁ କରୁଛି । ତମେ କ'ଣ ମନେକରୁଛ ଯେ ଏ ସବୁ ମୋର ଅଧିକ ପରିଶ୍ରମର ଫଳ ?

---

୧ ଅଲଜାୟରରେ ପ୍ରତ୍ୟେକ ଫ୍ରେଞ୍ଚ ମିଲଟାରୀ ବା ପୁଲିସ ଅଧିକାରୀଙ୍କୁ ଅଧିକାର ମିଳିଥିଲା ଯେ, ଯେ କୌଣସି ସ୍ତ୍ରୀଲୋକକୁ ବୋମା କି କୌଣସି ଅସ୍ତ୍ରଶସ୍ତ୍ର ଲୁଚେଇ ରଖିନାହିଁ ବୋଲି ପ୍ରମାଣିତ କରିବାକୁ ଉଲଗ୍ନ ହୋଇ ଦେଖେଇବାକୁ ଆଦେଶ ଦେଇପାରିବ ।

ବ: ବେଗମ ସାହେବାଙ୍କୁ ଆଉ ଗୋଟାଏ ଡ୍ରାଇମାର୍ଟିନ ଦିଅ ।

ଅ: ଦେଶଦ୍ରୋହୀ ଓ ଗୁପ୍ତଚର, ଅପରାଧୀ ଓ ହତ୍ୟାକାରୀ, ଲେଜର ଆଉ ଫାଶିଦଉଡ଼ି, କୋଠରିର ମଜବୁତ ଲୁହା ରେଲିଂ, ଅପମାନିତ ଜୀବନ, ଅସମ୍ମାନିତ ମୃତ୍ୟୁ, ଲୋକହସା, ବଦନାମୀ ଆଉ ଏଇଭଳି ବିଗ୍ରହଗୁଡ଼ିକର ସତେ ଯେମିତି ଗୋଟାଏ ବେଲେ ଅଛି, ଯାହା ରାତିହେଲେ ମୋ ସାମନା କାଛରେ ଖେଳିଯାଏ । ଏତେ ହତ୍ୟା ହେଲା, ଏତେ ମୋକଦ୍ଦମା ଚାଲିଲା, କିଏ କାହାକୁ ଲାଞ୍ଚ ଦେଲା, କିଏ କେମିତି କୋଉ ଜାଲ ବିଛେଇ ଦେଲା, ଜଜ୍ ଲାଞ୍ଚ ଖାଇ ଗଲା, ଓକିଲକୁ ମାରି ଦିଆଗଲା, ଭୁଲ୍ ଲୋକଙ୍କୁ ଜେଲ ହେଲା, ଅପରାଧୀ ବିଲାତରୁ ନୂଆ କାର କିଣି ଆଣିଲା— ଏମିତି ମୋ ମଗଜରେ ଏହିଭଳି ଶୃଙ୍ଖଳ୍ୟକର ସଂବାଦର ଖବର କାଗଜ ଛାପା ହେଉଥାଏ । ମୋ ମୁଣ୍ଡର ଟେଲେକ୍ସରେ ଏଭଳି ବିଚିତ୍ର ଖବର ସବୁ ଆସେ । ମୋର ମନେହୁଏ ଯେମିତି ସୁରକ୍ଷା ବୋଲି କିଛି ହେଲେ କୋଉଠି ନାହିଁ । ଏଇନେ ମୁଁ ବିପଦରେ ଅଛି । ଘର, ଟଙ୍କାପଇସା, ପ୍ରତିଷ୍ଠା, ସମ୍ମାନ, ଅନୁଭବ ସବୁ ବେକାର । ବିଶେଷକରି ବ୍ୟକ୍ତିଗତ ସଂପତ୍ତି ଅର୍ଥାତ୍ ପ୍ରାଇଭେଟ ପ୍ରପର୍ଟି ବିଲକୁଲ ପାଣି ଫୋଟକା ବୋଲି ଭାବ; କେଜାଣି କୋଉ ସମୟରେ ମୁଁ ମରିଯିବି ଆଉ ଏସବୁ ଯେମିତି କି ସେମିତି ପଡ଼ିରହିବ। ହୋଇପାରେ ମୁଁ ବଂଚିଥିବି ଆଉ ଏସବୁ ମୋ ହାତରୁ କୁଆଡ଼େ ଚାଲିଯିବ । ଭାରି ଭୟ ହେଉଛି । ଟିକିଏ ବୋଲି ସୁରକ୍ଷା ନାହିଁ ।

ବ: ବସ୍ତି ପରେ ବସ୍ତି, ଦେଶ ପରେ ଦେଶକୁ କନସେନ୍‌ଟ୍ରେସନ କେମ୍ପରେ ପରିଣତ କରି ଦିଆଯାଉଛି । ପ୍ରଥମେ ଗୋଟାଏ 'ଓ୍ୱିଲସନ୍' ଥିଲା, ଏଇନେ ସବୁ କ୍ଷେତ୍ରରେ ଓ୍ୱିଲ୍‌ସନ୍ ଅଛନ୍ତି । ସେଇମାନଙ୍କୁ କହ, ଯୋଉମାନେ ବର୍ଷେ ଦି ବର୍ଷରେ ନୂଆ ବର୍ଷର ଗ୍ରୀଟିଂ କାର୍ଡ ତିଆରି କରନ୍ତି । ଯେମିତି ଗୋଟାଏ ବଡ଼ ମଇଳା ଟାଙ୍କି ତିଆରି କର, ଆଉ ଠକାମିର ସବୁ କିଛି ଆନନ୍ଦ ଭାବର ସହିତ ସବୁ ଉପହାର ସେଇଥିରେ ଫିଙ୍ଗିଦିଅ ।

ଅ: ଏଇ ଝରକାରୁ ଅନେଇ ମୁଁ ନିଜେ ନିଜକୁ ଦେଖୁଛି । ଆଜି ରାତିରେ ମୁଁ ଏଇଆ ।

ବ: ଅନେକ ଲୋକ ଇତିହାସର କଥା କହୁଛନ୍ତି; ଦର୍ଶନର ନୈତିକତାର ଆଉ ଧର୍ମର ଆଉ ମୁଁ ସେମାନଙ୍କୁ ଆଶ୍ଚର୍ଯ୍ୟରେ ଦେଖେଁ ।

ଅ: ଓମର, ଖାଲିଦ, ତାରିକ୍, ଔରଙ୍ଗଜେବ, ଟୀପୁ, ସିରାଜୌଦ୍ଦୁଲ୍ଲା, ସୈୟଦ ଅହମଦ୍, ଜମାରୁଦ୍ଦୀନ୍, ସର ସୈୟଦ, ଶାହଜାଦା ଅଲୀ ଖାନ୍, ବାଦଶାହୀ ମସ୍‌ଜିଦ୍, ଶାଲୀମାର ବାଗ, ମୁଲତାନ୍‌ର କବରଖାନା, ମୋଗଲ ବାଦଶାହ, ଅଧିକ ମସ୍‌ଜିଦ୍, ଇସ୍ଲାମ୍... ଇସ୍ଲାମ... ଇସ୍ଲାମ... ।

ବ: ବେଗମ ସାହିବା ଫ୍ରାନ୍ସରୁ ଇଣ୍ଟିରିୟର ଡେକୋରେସନ୍‌ରେ ଡିଗ୍ରୀ ନେଇ ଆସିଛନ୍ତି। ଫୁଲ ସଜେଇବାର କଳାର ସେ ଭାରି ସୂକ୍ଷ୍ମ ଅଧ୍ୟୟନ କରିଛନ୍ତି ।

ଅ: ଆପଣାର ମୂର୍ଖାମିକୁ ନିଜର ଢାଲ, ନିଜର ଚିହ୍ନ ଓ ମହତ୍ତ୍ୱ ବନେଇ (ତମେ ଆମେ ସମସ୍ତେ ଜାଣୁ ସେ କିଏ) ମାର୍ଚ୍ଚ କରି ଚାଲିଛୁଁ— ଲେଫ୍‌ଟ-ରାଇଟ୍-ଲେଫ୍‌ଟ୍-ରାଇଟ୍

ଏପରିକି ମୋର ନିଜର ବିଶ୍ୱାସ ଆସିଗଲାଣି ଯେ ମୁଁ ନିଜେ ସଂସାରର ସବୁଠାରୁ ମହତ୍ତ୍ୱପୂର୍ଣ୍ଣ ଓ ସବୁଠାରୁ ଅଧିକ ବୁଦ୍ଧିମାନ ବ୍ୟକ୍ତି ଏବଂ ମୁଁ ବାକି ଜଗତକୁ ଫଇସଲା ଶୁଣଉଚି । ମୋର ନିର୍ଣ୍ଣୟ ହିଁ ଅନ୍ତିମ ଶବ୍ଦ । କିଏ ଅଛି ଯେ ମୋର ସାମନାରେ କଥା ହେବ ? ଇତିହାସରେ ସବୁଠାରୁ ମହତ୍ତ୍ୱପୂର୍ଣ୍ଣ ଫଇସଲାଗୁଡ଼ିକ ମୁର୍ଖମାନେ ହିଁ କରିଛନ୍ତି ।

ବ: ବେଗମ୍ ସାହିବା, ଆପଣଙ୍କର କବିତା ପ୍ରତି ଅନୁରାଗ ଅଛି ? ବେଶ୍, ଆସନ୍ତୁ ମୁଁ ଆପଣଙ୍କୁ କେତୋଟି କବିତା ଶୁଣେଇବି । ପସନ୍ଦ ନହେଲେ କେବଳ ସୌଜନ୍ୟ ଦୃଷ୍ଟିରୁ କବିତାର ପ୍ରଶଂସା କରିବେ ନାହିଁ । କାରଣ ଏ କବିତା ମୋର ନୁହେଁ ।

ଯେଉଠି ଶବ୍ଦ ଫୁତ୍କାର କରୁଥିବା ନାଗଭଳି
କିମ୍ବା ମାଛି
ଯୋଉମାନେ ମସଜିଦ, ମନ୍ଦିର ଆଉ ଶବଘରେ
ଭଣଭଣ ହେଇ ମଣିଷର ତୃଟିରେ ବି ତନ୍ମୟ
ଆପଣାର ପେଟଭରେ...
ହେଲେ ସବୁ ଶବ ତଥାପି ବି ଚିରନ୍ତନ ।
ଏଠି ବରଗଛ ତା'ରି ପିଲାଙ୍କର ଭାଗ୍ୟ ନେଇ କାନ୍ଦେ
ଆଉ ଫୁଟ୍‌ପାଥରେ ରକ୍ତ ଓ କ୍ଷତର ଫୁଲ ଫୁଟେ ।
ତେଣୁ ବୌଦ୍ଧସ୍ତୂପ, ମୋଗଲ କବର ଓ ମୁଦ୍ରା,
ଶୋକ ଓ ପବିତ୍ର ସ୍ୱର୍ଗୀୟ ଗ୍ରନ୍ଥର ଆୟତଗୁଡ଼ିକରେ ଲୁଚିଥାଇ
ସବୁକିଛି ସୌନ୍ଦର୍ଯ୍ୟ ସତ୍ତ୍ୱେ, ଯାହା
ଆତ୍ମାର କଳାରାତିକୁ ସାର୍ଥକ କରେ ।'
(ଲୁଇ ମିକନୀସଙ୍କର ଏକ କବିତାରୁ ଉଦ୍ଧୃତ)
ଧୂଆଁର ଏ ଭୟଙ୍କର ଭଉଁରୀରେ ଆମର ଛୋଟିଆ ରାତିକୁ
ଜାଗା ମିଳିଲା ନାଇଁ, ପାରିଲା ନାଇଁ ।
ଏଇ ଭଉଁରୀଗୁଡ଼ିକ ଯୋଉଠି ବଂଚି, ମୁରୁକେଇ ହସି
ମରି ଓ ମାରି...
ତାଙ୍କର ବଂଚିବା ଓ ମରିବାର ସ୍ୱପ୍ନ ଆପାତତଃ
ସମାନ୍ତରାଳ ଥାଏ
ଆଉ ଏ ସମସ୍ତ ଆନନ୍ଦର ପରିବେଶ
ଗୋଟାଏ ଦୀର୍ଘ ଉଦାସୀନ ରୂପ ନିଏ
ସେଠାରେ ନା ଧୂପ ଜଳେ
ନା ପଦ୍ମ ଫୁଟେ ।
ଏହା ସତ୍ୟ, ତାକୁ ଏଇନେ ଦେଖିଲୁଁ ଆମେ !
ଏହା ପ୍ରଳୟ

ଏଇ କାଳ କୋଠରିରେ ଯେଉଁ ପୋକ ସବୁ ସଲସଲ
ସେଇ ଆମେ
ଆଉ ଆମେ ସବୁକାଳେ ଥିଲୁଁ
ଆଉ ଆମେ ସବୁବେଳେ ଚକା ପକେଇ
ବ୍ରହ୍ମର ଧ୍ୟାନ କଲୁଁ
ଏଇନେ କିନ୍ତୁ ସେମାନେ ଆମର ଅତି ପାଖରେ...
ଠିକ୍ ଆମରି ଆଗରେ ।

ଅ: ତମେ ବେଗମ ସାହେବଙ୍କୁ ଦୁଃଖୀ କରିଦେଲ । ତମେ ଏମିତି କଥା କେମିତି କରୁଛ ? ତମକୁ କ'ଣ ଈଶ୍ୱରଙ୍କର ଡର ନାହିଁ ? ତମେ କ'ଣ ଜାଣିନ ଯେ ତମେ ତମ ଲାଗି କଣ୍ଟା ଅମଳ କରୁଛ ! ଆଉ ସବୁ ଦରଜା ତମ ଲାଗି ବନ୍ଦ ହୋଇଯିବ ? ତମେ ଯୋଉ ଏ ଡ୍ରାମାରେ ଅଂଶଗ୍ରହଣ କରିବାକୁ ମନା କରୁଛ; ଆମେ ଯୋଉ ସୁନା ତାର ତିଆରି ସାମିଆନା ତଳେ ଏତେ ଜନଗହଳି ଲାଗି ନାଟକ କରୁଛୁଁ; ଏତେ ବିରାଟ ରଙ୍ଗମଞ୍ଚ ତିଆରି କରିଛୁଁ; ଏ ବିଶ୍ୱବିଦ୍ୟାଳୟ, ଏ ମନ୍ତ୍ରୀମଣ୍ଡଳ, ଏ ଆଇନ ଅଦାଲତ ଆମେ ଯଦି ଭଲ କରି ଏ ନାଟକ କରିପାରିବୁ ନାହିଁ, ତା'ହେଲେ ଲୋକଙ୍କର ମନ ଭାଙ୍ଗିଯିବ ଆଉ ସେମାନେ ଟିକଟ ଫେରିପାଇବାକୁ ଦାବି କରିବେ । ଏବଠୁଁ ସେମାନେ ମଝିରେ ମଝିରେ ହୁଟିଙ୍ଗ କରିବା ଆରମ୍ଭ କରିଦେଲେଣି । ତମେ ଯଦି ଆମ ସାଙ୍ଗରେ ମିଶିବ ନାହିଁ, ତା'ହେଲେ ତମ ଉପରେ କଡ଼ା ନଜର ରଖିବାକୁ ହେବ । ବୋଧହୁଏ ତମକୁ ଜଣାନାହିଁ ଯେ ମୁଁ ତମର ଜଜ୍, ମୁଁ ହିଁ ତମର ସାକ୍ଷୀ । ମୁଁ ତମକୁ ଯେ କୌଣସି ସମୟରେ ଦୋଷୀ ସାବ୍ୟସ୍ତ କରିଦେଇ ପାରିବି । ଏଇନେ କ୍ଷୀର-କ୍ଷୀର, ନୀର-ନୀର ଅଲଗା ହୋଇସାରିଛି । ମୋ ହାତରେ ନିକିତି ଅଛି । ମୁଁ ସବୁବେଳେ ଫଇସଲା କରି ଚାଲିଛି । ଅପେକ୍ଷା କରିଥାଅ । କେଜାଣି କେତେବେଳେ ଘାତକ ଆସି ତମ ଦୁଆରେ କରାଘାତ କରିବ । ସମୟ ଅତି କମ୍ । ତମର ଯାହାକିଛି କହିବାର ଅଛି କହିଦିଅ । ତମେ ଦୁନିଆ ଲାଗି କିଛି ବାର୍ତ୍ତା, କିଛି ଉଇଲ ଛାଡ଼ି ଯିବାକୁ ଚାହୁଁଛ ? ଅତି ଚଂଚଳ ତମର ଆଉ ଅନ୍ୟମାନଙ୍କର ଶେଷ ହୋଇଯିବ ।

ବ: ମାଇ.ଲର୍ଡ ଆପଣଙ୍କୁ ଜଜ୍ କିଏ କଲା ଆଉ ଶେଷ ଫଇସଲା କୋଉ ଅଦାଲତରେ ହେବ ?

ଅ: ମୁଁ ନିଜେ । ଆଉ ଶେଷ ଅଦାଲତ ବି ମୁଁ ହେବି । ମୁଁ ନିଜେ ସବୁକିଛି । ମୁଁ ନିଜେ କୋମଳ ମାଟିପାତ୍ର । ସେଇ ପାତ୍ରର ନିର୍ମାତା ଓ ମାଟି ବି । ଅର୍ଜୁନ, ମୁଁ ସବୁ । ମୁଁ ଅନେକ ରୂପରେ ପ୍ରକଟିତ ହୋଇଛି । ମୁଁ ନିଷ୍ଠାବାନ୍ । ତମର ନିଷ୍ଠାରେ କଳଙ୍କ ଅଛି । ମୁଁ ରାଷ୍ଟ୍ରପ୍ରେମୀ, ରାଷ୍ଟ୍ରଲାଗି ହାଣ ଖାଇବି । ରକ୍ତର ପ୍ରଥମ ବିନ୍ଦୁ ମୁଁ ନିଜେ ଝରେଇବି । ତମେ ଦେଶଦ୍ରୋହୀ, ମୋର ଆଦର୍ଶ ଉଚ୍ଚକୋଟୀର । ତମେ ନୀଚ । ମୋର ଅଧିକାର ଅଛି, ମୁଁ ଆରାମରେ ବିଳାସରେ ରହିପାରିବି । କାରଣ ମୋ କାନ୍ଧରେ ଦାୟିତ୍ୱର

ବୋଝ ଅଛି । ଯେତେ ସବୁ ଭୂମି, ଏ କାରଖାନା, ବଜାର, ଏ କ୍ଷେତ, ଖଳା, ଏ କୋଠାବାଡ଼ି, ଏ ବେଙ୍କ୍ ଓ ଭବନ ସବୁ ମୋର । ମୁଁ ଏ ସବୁର ଅସଲ ମାଲିକ ଓ ହକ୍‌ଦାର । ମତେ ତମେ ରଗାଅ ନାହିଁ— ମୁଁ ତମକୁ... ତମକୁ... ମୁଁ କହୁଛି ତମେ ତମର ସୀମା କେମିତି ଭୁଲିଯାଉଛ ? ଫେରିଯାଅ, ଓହ୍ଲା ତଳକୁ, ଆହୁରି ତଳକୁ... ସେଇ ତମର ଥାନ ! ଏ ସବୁ ଗଳୀ, ଏ ସବୁ କୋଠରି, ବସ୍ତି, ଟାଟି, ମଶିଣା, ବାଉଁଶ, ଖଟ ଏସବୁ କ'ଣ ତମଲାଗି ଯଥେଷ୍ଟ ନୁହଁ ? ତମେ କ'ଣ ଆଉ ଗଭର୍ଣ୍ଣମେଣ୍ଟ ହାଉସ ଗ୍ରହୁଁଛ ? ଗଭର୍ଣ୍ଣମେଣ୍ଟ ହାଉସ କ'ଣ ତମ ବେପାର ? ହଁ ମୋ ବେପାର !

ବଃ ମୁଁ ଏମିତି ଜଣେ ଲୋକକୁ ଜାଣିଛି, ଯେ ସେନାରେ ଲେଫ୍‌ଟେନାଣ୍ଟ ଥିଲା ଆଉ ଏଇନେ ଜଣେ ମହାନ୍ ସନ୍ଥ ।

ଅଃ ଆଚ୍ଛା !

ବ ସେ କହେ ଯେ ସୂଫୀ ମତବାଦର ବା ଯାହାକିଛି ବି ସେ ସେଇଆର ସବୁ ପଥ ଅତିକ୍ରମ କରି ଆସିଛି । ସେ କହେ, ଗଲା ପନ୍ଦର ବର୍ଷ ହେଲା ସେ ଶୋଇନି । ସାରା ରାତି ଚେଇଁଛି । ଅର୍ଥାତ୍ ଜଣେ ମହାନ୍ ଉପାସକ । ତାକୁ ମନେକର ପୂର୍ଣ୍ଣ ପରମହଂସ । ଆଉ ଏଇନେ ତା'ର ଏତେ ଶକ୍ତି ଯେ ସେ ତା'ର ଦିବ୍ୟଚକ୍ଷୁରେ ମଣିଷର ବାସ୍ତବିକତାକୁ ଦେଖିପାରେ ! ମାନେ 'କସ୍‌ମସ୍' ବାର୍‌କୁ ଗଲେ ତାକୁ ଷ୍ଟୁଲ୍ ଉପରେ ଘୁଷୁରି, ଘୋଡ଼ା ଗଧ, ମୂଷା ସବୁ ବସିଥିବା ଦିଶେ । ଡ୍ରଇଁରୁମ ସୋଫାରେ ତାକୁ ବିଲେଇ, ଛେଳି, ଗଧିଆ, ହାଡୁଣୀ, ବିଲୁଆ ସବୁ ଦେଖାଯାଆନ୍ତି ।

ଅଃ ହେ ଭଗବାନ୍, କେତେ ଭୟଙ୍କର କଳ୍ପନା ନୁହଁ !

ବଃ ସେ ଯେତେବେଳେ ମୋ ସାଙ୍ଗରେ କଥା ହୁଏ, ସେତେବେଳେ ସେ ମୋର ମଣିଷରୂପ ଛାଡ଼ି ମୋର ବାସ୍ତବ ରୂପକୁ ଦେଖେ । ଯଦିଓ ସେ ମୋତେ ଏଯାଏଁ ମୋର ବାସ୍ତବିକ ରୂପ କ'ଣ କହିନାହିଁ ।

ଅଃ ବିଚିତ୍ର କଥା, ଆମର ସେନାର ବି ଏଇଭଳି ଅବସ୍ଥା !

ବଃ ହଁ, ସୂଫୀ ଆଉ ସନ୍ଥ ତ ସବୁଠେଇଁ ଜନ୍ମଗ୍ରହଣ କରି ଆସିଛନ୍ତି ।

ଅଃ ମୁଁ ନିଜେ ନିଜକୁ ଶୃଗାଳଟିଏ ବୋଲି ମନେକରୁଛି !

ବଃ ମୁଁ ତମକୁ ଗୋଟାଏ ଶାଗୁଣା କହିବି, ଯିଏ ସୁଟ୍ ଡ୍ରେସ୍ ପିନ୍ଧି ଗୋଟାଏ ଡେଙ୍ଗା ଓକ ଗଛର ଡାଇନିଂ ଟେବୁଲର ଗୋଟାଏ କୋଣକୁ ବସି ଢୁଳଉଛି । ଆପେକ୍ଷା କରି ରହିଛି ଆଉ ତା'ର ପଂଝାରେ—

ଅଃ ଏଇ ଉପମାକୁ ଆଉ ଆଗକୁ ବଢ଼େଇ କହନାହିଁ, ମୋର ଭୟାନକ ସ୍ୱପ୍ନ ଅଧିକ ବଢ଼ିଯିବ ।

ବଃ ସାରା ଦେଶ ପାର୍ସୀଙ୍କର ଭବ୍ୟ, ବିଶାଳ, ନିର୍ଜନ, ନୀରବ ଗଁବୁଜଟିଏ । ତଳେ ଚୂନ ଆଉ ଏସିଡର ଖାଇ ଆଉ ତା ଦେହରେ ଗୋଟି ଗୋଟି ଆମର ଶବ ପଡୁଛି । ସେଇ ଶବ ସବୁ ଖତ ସାର ହେଉଛି । ସେଇଥିରେ ତମର ଲନର ମାଟିକୁ ଉର୍ବର କରାହେବ ।

ତମେ ମୋତେ ସେଇ ପାର୍ସୀ ପୁରୋହିତ ଭଳି ଦିଶୁଛ, ଯିଏ ମୁଣ୍ଡଠୁଁ ଗୋଡ଼ଯାଏଁ ଧଳା ପୋଷାକ ପିନ୍ଧି ମୋ ଶବକୁ ଦହି ଲଗେଇ ଦେଉଛି । ମୋର ଶବ ତ ଏମିତି ଯେ କୁକୁର ବି ଶୁଙ୍ଘିଦେଇ ଛାଡ଼ିଦେବ ।

ଅ: ଭାରି ପ୍ରଖର ଝଂଝା ବହୁଛି । ହଳଳଦିଆ, କଳା ଆଉ ଲାଲ ବାଲି ମୋ ଆଖିରେ ପଶିଲାଣି । ମୋର ମୁଣ୍ଡ ଆଉ କାମ କରୁନି । କିଏ ଅଛି, ଯେ ଆସି ମୋତେ ବଂଚେଇ ନବ !

ବ: ଆମେ ଏମିତି ଗୋଟାଏ ଦୁନିଆରେ ବଂଚି ରିହଛୁଁ, ଯୋଉଠି ପ୍ରତ୍ୟେକ ମଣିଷ ପ୍ରତ୍ୟେକର ଗୁପ୍ତଚରୀ କରୁଛି । ବନ୍ଧୁ ବନ୍ଧୁର, ଅଫିସର ଅଫିସର ଆଉ ବସ୍, ଭାଇ ଭାଇ ବିରୋଧରେ ! ତମେ କାହାକୁ ତମର ସାହାଯ୍ୟ କରିବାକୁ ଡାକିବ ?

ଅ: ଯେଉଠି ତମେ ଆମେ ସମୟ ଉପରେ ଡେରାପକେଇ ବସିଛୁଁ ଆଉ ଭୀଷଣ କଳା ଝଡ଼ ଉଠୁଛି, ବାବନା ଭୂତ ଚକ୍କର କାଟୁଛି—

ତମେ ଜାଣିଛ ମୁଁ ବି ଜୀବନରେ ଗୋଟାଏ ବେଳ ଥିଲା ସପନ ଦେଖୁଥିଲି । ବର୍ଷ ବର୍ଷ ଧରି, ବେଶ୍ ଚୁପଗୁପ୍ ସ୍ୱପ୍ନ ଦେଖୁଥିଲି ।

ବ: ଜାଣିଛ ଆମ ଭିତରୁ ଅଧିକାଂଶ ଲୋକ ତାଙ୍କର ସ୍ୱପ୍ନକୁ ତୁଚ୍ଛାଟାରେ ହଜେଇ ଦେବାକୁ ଦେଇଛନ୍ତି ।

ଅ: ଜଙ୍ଗଲପଟକୁ ପାହାଡ଼ୀ ରାସ୍ତା ଯାଏ । ଦି'ପଟ ଦେବଦାରୁର ଗହନ ବଣ ଆଉ ଘାଟି ! ତା'ରି ଉପରେ ଘନନୀଳ କୁହୁଡ଼ି ଘେରି ରହିଛି । ଲାଲ ଘରଗୁଡ଼ିକର ଛାତ ଅଛି । ଆଉ ବର୍ଷାଭିଜା ଗୋଟାଏ ପଥର ଉପରେ ବୁଢ଼ୀଟିଏ ବିସଛି । ସେ ରାସ୍ତାରେ ଯା' ଆସ କରୁଥିବା ଲୋକଙ୍କୁ ନୀରବରେ ଅନେଇ ରହେ । ଗୋଟାଏ ସ୍କୁଲ ପିଲା ନୀଳ ମୋଜା ପିନ୍ଧି ପିଠି ଉପରେ ଭାରି ବସ୍ତାନୀ ପକେଇ, ସେଓ ଖାଇ ଖାଇ ଚଢ଼ାଣି ଚଢୁଛି । ସିଦାସାଧା, ନିରୀହ, ବାରବରଷର ପିଲା । ମୁଁ ସବୁବେଳେ ସେଇଠୁ ଜାଗ୍ରତ ଅବସ୍ଥାକୁ ଫେରିଆସିବାକୁ ମନ କରୁଛି ।

ବ: କାଛଗୁଡ଼ିକର ପଛପଟେ ଭରପୂର ତାରା । ସ୍ୱରିପଟେ ପାହାଡ଼ୀ ଗୋଲାପର ମହକ । ବିଳମ୍ବିତ ରାତିରେ ଅଜଣା ସଂଗୀତ ଶୁଣିବାକୁ ମୁଁ ସିଢ଼ି ଉପରେ ଠିଆ ହୋଇଛି । ସେ ଗୀତ ବଟାବିୟା ରେଡ଼ିଓ ଷ୍ଟେସନ୍‌ରୁ ଶୁଣାଯାଉଛି । ସନ ୧୯୩୭ । ମୁଁ ବିସ୍ମିତ ଯେ ଆକାଶରେ ତାରା ଅଛନ୍ତି । ପବନରେ ପାହାଡ଼ୀ ଫୁଲର ସୁଗନ୍ଧ ଅଛି । ମୋତେ ବି ଜଣାନାଇଁ, ଦୁନିଆରେ ଆଉ କ'ଣ କ'ଣ ଭୋଗିବାକୁ ଅଛି । ମୁଁ ବିଶ୍ୱଭାରତୀ ଶାନ୍ତି ନିକେତନକୁ ଯିବାକୁ ଚାହୁଁଛି !

ଅ: ତମେ ମୋର ସପନ କଥା ଶୁଣ । ଥାଉ ସବୁ ବୃଥା କଥା ।

ବ: ଆମେ ସବୁ ଦୋଷୀ, କାରଣ ଆମେ ଆମର ସବୁ ସ୍ୱପ୍ନକୁ ହଜିଯିବାକୁ ଦେଲୁଁ ।

ଅ: ଏଇନେ ଅନ୍ୟର ସ୍ୱପ୍ନରେ ବାଧା ଦେଉଛୁଁ ।

ବ: ତମକୁ ସେ ଅଧିକାର କିଏ ଦେଲା ଯେ ତମେ ଏମିତି ସ୍ୱପ୍ନ ଦେଖ, ଏମିତି ନୁହଁ ବୋଲି ଅନ୍ୟକୁ କହିବ ?

ଅ: ଏଇନେ ମୋତେ ସାହାଯ୍ୟ କରିବାକୁ କିଏ ଆସିବ ?

ବ: ମୁଁ ଜାଣେନାଇଁ ।

ଅ: ତମେ ଆଉ ମୁଁ, ଆମେ ଦୁହେଁ ଦୁହିଁଙ୍କର ଗୁପ୍ତଚର । ଆମେ ଦୁହେଁ ସାପ, ଦୁହେଁ ବିଛା । ଆମେ ଦୁହେଁ ଦି' ରକମର କୁକୁର । ଗୋଟାଏ କକର ସ୍ପେନିୟଲ୍, ରୋମାଣ୍ଟିକ୍ ଆଉ ଉଦାସ ଆଖିବାଲା, ଯେ ସେଇଠି ସୋଫା ଉପରେ ବସିଛି ଆଉ ଆରଟି ବଜାରୀ କୁକୁର, ଯିଏ ରାସ୍ତାକଡ଼ରେ ଲକଲକ ହେଉଛି, ଭୋକରେ ! ତଫାତ୍ ଏଇଆ ଯେ ଜଣକ ସାମନାରେ ଗୋଟାଏ ନିର୍ଦ୍ଦିଷ୍ଟ ସମୟରେ ହାଡ଼ କୁଢ଼େଇ ଦିଆଯାଏ, ଯେତେବେଳେ ଅନ୍ୟଟି ସେମିତି ଲକଲକ ହେଉଥାଏ ।

ବ: ବେଗମ୍ ସାହିବା, ଆପଣଙ୍କୁ ଆର୍ଥକିଟ୍ର ସ୍ୱର ଭଲ ଲାଗିଲା ?

ଅ: ଝଡ଼ ବଢ଼ି ଗଲାଣି । ଏଇନେ ତ କାନକୁ ବି ଆଉ କିଛି ଶୁଣାଯାଉନି । ବିଚିତ୍ର ବିଚିତ୍ର ରୂପର ମଣିଷ । ସେମାନଙ୍କ ମୁହଁଟିମାନ କଳାଚୋପି ପଛରେ ଲୁଚିଚି; ମୋତେ ଭଲ କରି ଦେଖାଯାଉନି, ଏଇ ତୋଫାନ୍‌ରେ ଯେମିତି ପିଶାଚୀ ଭଳି ଚକ୍କର କାଟୁଛନ୍ତି ।

ବ: ମୁଁ ସେମାନଙ୍କୁ ଚିହ୍ନିଛି । ତମେ ବି ଏମାନଙ୍କୁ ଚିହ୍ନିବା କଥା ।

ଅ: ହଁ ମୋ ସାମନାରେ ହଂଗେରୀବାଲା ହୁସୈନ୍ ଫାତମୀ, ମୁସ୍ଲମୀନ୍‌ବାଲା ଲଖ୍ୱାନୁଲ୍ ଆଉ ଅଗଣିତ ଚୀନା, ଋଷୀୟ, ଜାପାନୀ, ଆଫଗାନୀ, କୋରିୟନ୍, ମାଲେଶିୟନ୍ ଆଦି ଆଦି କେଜାଣି କିଏ କିଏ ଗୋଟାଏ ଧାଡ଼ିରେ ରସିରୁ ଝୁଲୁଛନ୍ତି । ଆଉ ଝଡ଼ରେ ସେମାନଙ୍କର ଗୋଡ଼ସବୁ ଦୋହଲୁଚି ।

ବ: ହୁସୈନ୍ ଫାତମୀ ବେଶ୍ ସୁନ୍ଦର ଯୁବକଟିଏ ।

ଅ: ହଁ, ମୋତେ ସେ ଦେଖାଯାଉଛି । ସେ ତ ମୁରୁକେଇ ହସୁଛି । ମୋତେ ତା'ର ସେଇ ହସ ଲାଗି ଡ଼ର ମାଡୁଛି ।

ବ: କ'ଣ ସେ ହଂଗେରୀ ବାଲା ବି ମୁରୁକି ହସୁଛି ?

ଅ: ହଁ, ଆଉ ବାକି ସବୁ ଖିଲି ଖିଲି ହସୁଛନ୍ତି । ଏମାନେ ସବୁ ମରାଯାଇ ଏତେ ପ୍ରସନ୍ନ ମନେହେଉଛନ୍ତି କେମିତି ?

ବ: ତାହା ତମେ ବୁଝି ପାରିବ ନାଇଁ । କାରଣ ସେମାନେ ତାଙ୍କର ସ୍ୱପ୍ନମାନଙ୍କୁ ହଜିବାକୁ ଦେଲେନାଇଁ ।

ଅ: ମୁଁ ଜାଣିଛି ଯେ ଏଇନେ ମୁଁ ତାକୁ ଡାକିବି, ଯିଏ ମୋତେ ଏ ପ୍ରାଣଘାତୀ ସ୍ୱପ୍ନରୁ ବଂଚେଇବ । ଅବଦୁଲ.... ଅବଦୁଲ.... ଅବଦୁଲ....

ବ: ୟଙ୍ଗ ଜିମୀ ବି ଟେନିସ୍ କୋର୍ଟରୁ ଫେରିଛି ।

ଅ: ହାୟ୍ ଜିମୀ ! ଅବଦୁଲ୍, ସାହେବଙ୍କ ଲାଗି ଏକ ଡ୍ରାଇ ମାର୍ଟିନୀ !

(ପର୍ଦ୍ଦା)

## ପଞ୍ଚଟରାର ସ୍ୱର

ସକାଳେ ମୁଁ ଦରଜା ପାଖରେ ଠିଆହେଇ ପରିବାବାଲା ସାଙ୍ଗରେ କୋବି ଦରକୁ ଝଗଡୁଥାଏଁ। ଉପରେ ରୋଷେଇ ଘରେ ଗ୍ୱଉଳ, ଡାଲି ବସେଇ ଦେଇ ଆସିଥାଏ ଚୂଲିରେ। ଗ୍ୱକର-ପିଲା ସଉଦାପତ୍ର ଆଣିବ ବୋଲି ବଜାରକୁ ଗ୍ୱଲି ଯାଇଥାଏ । ବାଥ୍‌ରୁମରେ ବଙ୍କାର ସାହେବ ଚୀନା ଦର୍ପଣଦାନୀର ଦର୍ପଣରେ ନରମ ଆଲୁଅରେ ମୁହଁ ଦେଖି ଗୁଣୁଗୁଣୁ ଗାଇ ଖିଅର ହଉଥା'ନ୍ତି । ପରିବାବାଲା ସାଙ୍ଗରେ କଥା କଟାକଟି ଭିତରେ ମୁଁ ମନେମନେ ରାତିବେଳକୁ କ'ଣ ତିଆରି ହେବ, ସେଇକଥା ଭାବୁଥାଏ । ସେତିକିବେଳକୁ ସାମନାରେ ଆସି କାର୍‌ଟିଏ ଠିଆହେଲା । ଝିଅଟିଏ ଝରକା ଦେଇ ବାହାରକୁ ଅନେଇଲା ଆଉ ଦରଜା ଖୋଲି ଗାଡ଼ିରୁ ଓହ୍ଲେଇ ଆସିଲା । ମୁଁ ପଇସା ଗଣୁଥାଏ, ତେଣୁ ତାକୁ ମୁହଁ ଟେକି ଅନେଇ ପାରିନାହିଁ । ସେ ସେତେବେଳକୁ ଦି'ପାଦ ଆଗେଇ ଆସିଥାଏ । ତା'ପରେ ଆଖି ଟେକି ମୁଁ ତାକୁ ଅନେଇଲି ।

'ଆରେ ତୁ !' ସେ ଆବାକାବା ହେଇ କହିଲା ଆଉ ଥମକି ରହିଗଲା । ମନେହେଲା ଯେମିତି ସେ ମୋତେ ଅନେକ ଦିନରୁ ମଲାଣି ବୋଲି ଧରିନେଇଛି । ଆଉ ଏଇନେ ତା ସାମନାରେ ମୋର ଭୂତ ଠିଆ ହେଇଛି ।

ମୁଁ ତା' ଆଖିରେ ମୁହୂର୍ତ୍ତକ ଲାଗି ଯୋଉ ବିବ୍ରତ-ବିସ୍ମୟ ଭାବଟି ଦେଖିଲି, ସ୍ମୃତି ତାର ମୋତେ କିଛିଟା ବାଉଳା କରିଦେଲା । ଯେମିତି ମୁଁ ସେଇକଥା ଭାବି ଭାବି ପାଗଳୀ ହୋଇଯିବି ।

ସେଇ ଝିଅଟି (ତା'ର ନାଆଁ ପର୍ଯ୍ୟନ୍ତ ମୋର ମନେନାଇଁ । ସେତେବେଳେ ମୁଁ ତାକୁ ଲାଜରେ, କାଳେ ସେ ଖରାପ ଭାବିପାରେ, ବୋଲି ପଗ୍ୱରି ପାରିନାହିଁ । ସେ ମୋ ସାଙ୍ଗରେ ଦିଲ୍ଲୀର କ୍ୱୀନ୍ ମେରୀ ସ୍କୁଲରେ ପଢୁଥିଲା ।) ହାରାହାରି କୋଡ଼ିଏ ବର୍ଷର ତଳର କଥା ହେବ। ମୋତେ ସେତେବେଳେ ସତର ବର୍ଷ ହୋଇଥିବ ହୁଏତ । ତେବେ ମୋର ସ୍ୱାସ୍ଥ୍ୟ ଆଉ ଗଢ଼ଣ ଏମିତି ଥାଏ ଯେ ମୁଁ ମୋ ବୟସ ଅନୁସାରେ ବଡ଼ ଦିଶେ ଆଉ ମୋର ସୌନ୍ଦର୍ଯ୍ୟର ଚର୍ଚ୍ଚା ଓ ପ୍ରଶଂସା ହେବାକୁ ଲାଗିଥାଏ । ଦିଲ୍ଲୀରେ ସେତେବେଳେ ଗୋଟାଏ ଚଳଣି ଆରମ୍ଭ ହୋଇଯାଇଥାଏ । ପୁଅ ଘର ଲୋକେ ଏପରିକି ସ୍କୁଲ ସ୍କୁଲ ବୁଲି ଝିଅ ପସନ୍ଦ କରୁଥିଲେ । ମନକୁ ପାଇଗଲେ ଝିଅଘରକୁ ଖବର ପଠେଇ ବାକି କଥାରେ ଆଗଉ ଥିଲେ । ସେତେବେଳେ ଆମକୁ ଜଣାପଡ଼ିଲା ଯେ ଏଇ ଝିଅଟିର ମାଆ ଓ ମାଉସୀ ମୋତେ ପସନ୍ଦ କରିନେଇଛନ୍ତି (ସ୍କୁଲଡେ'ର ସମାରୋହରେ ଦେଖି) ଏଇନେ ବୋହୂ କରିବାକୁ ବସିଛନ୍ତି । ସେମାନେ ନୂରଜହାଁ ରୋଡ୍‌ରେ ରହୁଥିଲେ ଆଉ ପିଲାଟି ରିଜର୍ଭ ବେଙ୍କ୍ ଅଫ୍

ଇଣ୍ଡିଆରେ ଦେଢ଼ଦୁଇଶହ ଟଙ୍କାର ଚାକିରି କରୁଥାଏ । ସେମାନଙ୍କର ଖବର ପହଞ୍ଚିଲା, ହେଲେ ମୋର ମାଆ ମୋତେ ନେଇ ବେଶ୍ ବଡ଼ ବଡ଼ ସ୍ୱପ୍ନ ଦେଖୁଥିଲେ । ମୋର ବାପା ମା ଦିଲ୍ଲୀ ବାହାରେ ମେରଠରେ ରହୁଥିଲେ । ସେତେବେଳେ ମୋର ବାହାଘରର ପ୍ରଶ୍ନ ହିଁ ଉଠୁ ନଥିଲା । ସେହି ବିବାହ ପ୍ରସ୍ତାବକୁ ଅସ୍ୱୀକାର କରାହେଲା ।

ତା'ପରେ ଏଇ ଝିଅଟି ମୋ ସାଙ୍ଗରେ କିଛି ବର୍ଷ ପାଇଁ କଲେଜରେ ପଢ଼ିଲା । ତା'ପରେ ବାହାସାହା ହୋଇ କଲେଜ ଛାଡ଼ି ଚାଲିଗଲା । ଆଜି ଏତେଦିନ ପରେ ଲାହୋରର ମାଲ୍‌ରୋଡ୍ ପଛପଟ ଗଳିରେ ତା'ସାଙ୍ଗରେ ମୋର ଆମନାସାମନା ହେଲା । ମୁଁ ତାକୁ ଡାକିଲି, "ଆସ ଉପରକୁ ଆସ, ଆରାମରେ ବସି କଥା ହେବା ।" ହେଲେ ସେ କହିଲା— ମୁଁ ଟିକିଏ ବ୍ୟସ୍ତ ଅଛି । ଶ୍ୱଶୁର ଘରର କେହିଜଣେ ଆତ୍ମୀୟଙ୍କର ଘର ଖୋଜୁଁ ଖୋଜୁଁ ଏ ଗଳିକୁ ଆସିଯାଇଛି । ଭଗବାନ୍‌ଙ୍କ ଇଚ୍ଛା ଥିଲେ ଆଉ ଦିନେ ନିଶ୍ଚୟ ଆସିବି । ତା'ପରେ ସେଇଠି ସେ ଠିଆରେ ଠିଆରେ କେତେ ଜଣ ପଢ଼ାସାଙ୍ଗଙ୍କ ବାବତରେ ବଖାଣିଗଲା । କିଏ କୋଉଠି ଅଛି, କ'ଣ କରୁଛି । ସଲୀମା, ଅମୁକ ବ୍ରିଗେଡିୟରର ସ୍ତ୍ରୀ, ଚାରୋଟି ପିଲାପିଲି । ଫରଖୁନ୍ଦାର ସ୍ୱାମୀ ଫରେନ୍ ସର୍ଭିସରେ ଅଛନ୍ତି, ତା'ର ବଡ଼ଝିଅ ଲଣ୍ଡନରେ ପଢୁଛି । ରେହାନା ଅମୁକ୍ କଲେଜରେ ପ୍ରିନ୍ସିପାଲ । ସାଦିଆ ଆମେରିକାରୁ କେତେ କ'ଣ ଡିଗ୍ରୀ ନେଇ ଆସୁଛି । ଆଉ ଏଇନେ କରାଚୀରେ ବେଶ୍ ବଡ଼ କୋଉ ଗୋଟାଏ ପଦବୀରେ ଅଛି । କଲେଜର ହିନ୍ଦୁ ସାଙ୍ଗମାନଙ୍କ ଖବର ବି ସେ ରଖିଥିଲା । ପ୍ରଭାର ପତି ଇଣ୍ଡିୟାନ୍ ନେଭିରେ କମାଣ୍ଡର । ସେ ଏଇନେ ବମ୍ବେରେ ରହୁଛି । ସରଳା ଅଲଇଣ୍ଡିଆ ରେଡ଼ିଓରେ ଷ୍ଟେସନ୍ ଡାଇରେକଟର, ଉତ୍ତର ଭାରତର କୋଉ ଗୋଟାଏ ଜାଗାରେ ଅଛି । ଲତିକା ଏଇନେ ଜଣେ ପ୍ରସିଦ୍ଧ ଆର୍ଟିଷ୍ଟ ଆଉ ନୂଆ ଦିଲ୍ଲୀରେ ତାର ଷ୍ଟୁଡ଼ିଓ ଅଛି, ଆଦି ଆଦି । ଏସବୁ କଥା ସେ କହି ଚାଲିଥିଲା; ମାତ୍ର ମୁଁ ତା'ର ଆଖିର ସେଇ ବ୍ୟଥାଯୁକ୍ତ ବିସ୍ମୟ ଭାବଟିକୁ ଆଦୌ ଭୁଲିପାରୁ ନଥାଏଁ ।

ସେ କହିଲା— 'ମୁଁ, ସାଦିଆ, ରେହାନା ଆଦି ଯେତେବେଳେ ବି କରାଚୀରେ ଏକାଠି ରହୁ, ତୋତେ ବରାବର ମନେପକଉ ।'

'ସତରେ !' ମୁଁ ତୁଚ୍ଛା ହସିଦେଇ ପଚାରିଲା ଭଳି କହିଲି । ମୁଁ ଜାଣେ ସେମାନେ କେମିତି ଭାବରେ ମୋତେ ମନେପକଉଥିବେ— ପଛକହୀଗୁଡ଼ିକ ! ଏମାନେ କେବେହେଲେ କ'ଣ ମୋର ସାଙ୍ଗ ଥିଲେ ? ମାଇକିନାଗୁଡ଼ିକ ବାସ୍ତବିକ ଜଣେ ଜଣକ ପାଇଁ ଡାହାଣୀ... କୁଟଣୀଗୁଡ଼ା, ଭାରି ଚାଲାକ । ସେ ମୋତେ ଏତିକି ବି ପଚାରି ପାରିଲା ନାହିଁ ଯେ ମୁଁ ଏଇ ଅନ୍ଧାରୁଆ ଏକାନ୍ତ ଗଳିରେ ଦରଭଙ୍ଗା ଘରଟିଏର ଦୁଆର ମୁହଁରେ ଠିଆହୋଇ କରୁଛି କ'ଣ ? ହୁଏତ ସେ ସେ ଖବର ବି ରଖିଥିବ !

ମାଇକିନାଙ୍କର ଇଣ୍ଟେଲିଜେନ୍ସ ସର୍ଭିସ ଭାରି ତୀବ୍ର । ତା ସାମନାରେ ଇଣ୍ଟରପୋଲ୍ ବି ଘାସ କାଟିଯିବ । ତା'ପରେ ମୋର ତ ଦୁନିଆସାରା ପ୍ରସିଦ୍ଧ କାହାଣୀ ! ମୁଁ । ମୁଁ ଯେମିତି

ଜଣେ ଅଜ୍ଞାତବାସୀ । ତେଣୁ ମୋ ବାବତରେ କାହାରି ହେଲେ ଚିନ୍ତା ନାହିଁ ଆଉ ମୋ ନିଜର ବି ନିଜ ପାଇଁ ଚିନ୍ତା ନାହିଁ ।

ମୁଁ ତନବୀର ଫାତିମା । ମୋର ବାପା ୟୁ.ପି.ର ବାସିନ୍ଦା ଥିଲେ । ସାଧାରଣ ପ୍ରତିପତ୍ତି ସଂପନ୍ନ ଜମିଦାର । ଯେତେବେଳେ ମୁଁ ସ୍କୁଲରୁ ଅନେକ କିଛି ଛାତ୍ର ବୃତ୍ତି ପାଇଲି, ସେତେବେଳେ ଦଶମ ଶ୍ରେଣୀରେ, ବିଶେଷ କରି ପଢ଼ାପଢ଼ି ଠିକ୍ ହେବ ବୋଲି କ୍ୱିନ୍ ମେରୀ ସ୍କୁଲରେ ମୋତେ ଭର୍ତ୍ତିକଲେ । ଇଣ୍ଟରପାଇଁ ମୁଁ ଆଲିଗଡ଼ ଆସିଲି । ଆଲିଗଡ଼ ଗାର୍ଲସ କଲେଜର ସମୟଟି ମୋ ଜୀବନର ମହତ୍ତ୍ୱପୂର୍ଣ୍ଣ ସମୟ, କେତେକେତେ କଳ୍ପନାରେ ଭରପୂର । ମୁଁ ଭାବୁକ ନୁହେଁ, ତେବେ ଏଇନେ ବି ଯେତେବେଳେ କଲେଜର ଅଗଣା, ଫୁଲ କିଆରୀ, ତେଙ୍ଗାତେଙ୍ଗା ଘାସ, ଗଛଗୁଡ଼ିକ ଉପରେ ନଇଁ ଆସୁଥିବା ବର୍ଷା, ପ୍ରଦର୍ଶନୀ ପଡ଼ିଆରେ ଘୁରିବୁଲୁଥିବା ଦଳଦଳ କଳା କଳା ବୁର୍କା, ହଷ୍ଟେଲର ଛୋଟଛୋଟ ବାରଣ୍ଡାକୁ ଲାଗି ଛୋଟିଆ କୋଠରିଟିମାନଙ୍କର ଘରୋଇ ପରିବେଶ ଅକସ୍ମାତ୍ ମନେପଡ଼ିଗଲେ ମନ ଭାରି ହେଇଯାଏ । ତା'ପରେ ଏମ୍.ଏସସି ପାଇଁ ମୁଁ ଦିଲ୍ଲୀ ଚାଲିଆସିଲି । ସେଇ କଲେଜରେ ଏଇସବୁ ଝିଅ, ରୋହନା, ସାଦିୟା, ପ୍ରଭା ଆଦି ପଢୁଥିଲେ । ଏ ଝିଅମାନଙ୍କୁ ମୁଁ କେବେହେଲେ ପସନ୍ଦ କରିନାହିଁ । ଏମାନେ ସବୁ ବାଜେ । ମୁଁ ବି ବେଶ ଗର୍ବୀ ଥିଲି । ସୌନ୍ଦର୍ଯ୍ୟ ଏମିତି ଗୋଟାଏ ଜିନିଷ, ଯାହାଲାଗି ହୁଏତ ମୁଣ୍ଡ ଖରାପ ହେବାକୁ ଡେରି ଲାଗେ ନାହିଁ । ଆଉ ମୁଁ ତ କୋଟିଏରେ ଗୋଟିଏ ଥିଲି । ଦର୍ପଣଭଳି ସ୍ୱଚ୍ଛ ଦେହର ରଙ୍ଗ, କୁଞ୍ଚିତ ସୁନେଲୀ କେଶ, ଅତ୍ୟନ୍ତ ସୁଗଠିତ ଅଙ୍ଗଲତା, ବନାରସୀ ଶାଢ଼ୀ ପିନ୍ଧିନେଲେ କୋଉ ଗୋଟାଏ ରାଜକୁମାରୀ ମନେହେଉଥିଲି ।

ସେତେବେଳେ ଯୁଦ୍ଧ ଲାଗିଥାଏ ବା ସେଇବର୍ଷ ଯୁଦ୍ଧ ବନ୍ଦ ହେଇଥାଏ । ମୁଁ ଠିକ୍ ଠିକ୍ ମନେପକେଇ ପାରୁନାହିଁ । ଦିଲ୍ଲୀରେ ଯେମିତି ବସନ୍ତ ଆବୋରି ରହିଥିଲା । କୋଟିପତି ବେପାରୀ ଆଉ ଗଭର୍ଣ୍ଣମେଣ୍ଟ ଅଫ୍ ଇଣ୍ଡିଆର ଉଚ୍ଚପଦାଧିକାରୀମାନଙ୍କର ଝିଅମାନେ— ହିନ୍ଦୁ, ଶିଖ, ମୁସଲମାନ, ଲମ୍ବାଲମ୍ବା କାରରେ ଉଡ଼ିବୁଲୁଥିଲେ । ପ୍ରତିଦିନ ନୂଆ ନୂଆ ପାର୍ଟି, ସମାରୋହ, ହଙ୍ଗାମା । ଆଜି ଇନ୍ଦ୍ରପ୍ରସ୍ଥ କଲେଜରେ ନାଟକ ତ କାଲି ମିରାଣ୍ଡା ହାଉସରେ: ପରଦିନ ଲେଡ଼ୀ ଇର୍ବିନ୍ କଲେଜରେ କନସର୍ଟ । ଲେଡ଼ୀ ହାର୍ଡିଙ୍ଗ ଓ ସେଣ୍ଟ ଷ୍ଟିଫେନ୍ସ କଲେଜ, ଚେମସ୍‌ଫୋର୍ଡ କ୍ଲବ, ରୋଶନାଆରା, ଇମ୍ପେରୀୟଲ, ଜିମଖାନା ଯୋଉଠି ଦେଖ, ସେଇଠି ନାଚତାମସାର କାହାଣୀ ବୁଣିହୋଇ ରହିଥିଲା । ସବୁଠେଇ ଯୁବକ ସେନାବିଭାଗ ଅଫିସର ଆଉ ସିଭିଲ ସର୍ଭିସର ବାହାସାହା ହେଇ ନଥିବା ଯୁବକଦଳ ଲହରେଇ ଯାଉଥିଲେ । କେମିତି ଗୋଟାଏ ଫୂର୍ତ୍ତି ଥିଲା ।

ପ୍ରଭା ଓ ସରଳା ସାଙ୍ଗରେ ମୁଁ ଦିନେ କିଂଗ୍ ଏଡ୍‌ବର୍ଡ ରୋଡର ଗୋଟାଏ ଭବ୍ୟ କୋଠାର ଗାର୍ଡନ୍ ପାର୍ଟିକୁ ନିମନ୍ତ୍ରଣ ପାଇଥିଲି । ଦିଲ୍‌ଜୀତ କୌର, କୋଟିପତି ଶିଖ କଣ୍ଟ୍ରାକ୍ଟରର ଝିଅ; ସେଇ ଆମକୁ ଡାକିଥିଲା ।

ସେଇଠି ମୋର ମେଜର ଖୁଶ୍‌ବଖ୍‌ତ ସିଂହ ସାଙ୍ଗରେ ଦେଖାହେଲା । ସେ ଝାଁସୀ ପଟର ଚୌହାନ୍ ରାଜପୁତ । ସୁନ୍ଦର, ଉଚ୍ଚା-ପୂରା, କଳା ବଳିଷ୍ଠ ବପୁ ଯୁବା । ଲମ୍ବ ଲମ୍ବ ଖଣ୍ଡାପରି ଉପରକୁ ବଙ୍କେଇ ରହିଥିଲା ମୁନିଆ ନିଶ, ବେଶ ଝଟକି ଯାଉଥିବା ଧଳା ସୁନ୍ଦର ସୁନ୍ଦର ଦାନ୍ତ । ହସିଲେ ବେଶ ମାନେ । ସେ ଗାଲିବ ଭକ୍ତ । କଥାକଥାକେ ଗାଲିବଙ୍କ ପଂକ୍ତି ଗାଇ ବସିବ । ଖିଲଖିଲ ହସିବ । ବେଶ ନମ୍ର, ଶାଳୀନ ଓ ଭଦ୍ର ବ୍ୟବହାର । ସେ ଆମକୁ ଦିନେ ସିନେମା ଯିବାକୁ ନିମନ୍ତ୍ରଣ ଦେଲା । ସରଳା, ପ୍ରଭା ଆଦି ଭାରି ବଦମିଜାଜର ଆଉ ପୁରୁଣା ବିଗ୍ରହର ବି । ସେମାନେ ପିଲାଙ୍କ ସାଙ୍ଗରେ ବାହାରେ ବୁଲିବାକୁ ଆଦୌ ଯାଆନ୍ତି ନାହିଁ । ଖୁଶ୍‌ବଖ୍‌ତ ସିଂହ ଦିଲଜୀତର ଭାଇର ସାଙ୍ଗ । ମୁଁ ତାକୁ କ'ଣ ବୋଲି କହିବି କିଛି ଭାବି ପାରିଲି ନାହିଁ । ସେତେବେଳେ ସରଳା ଚୁପି ଚୁପି ମୋତେ କହିଦେଲା— 'ଦେଖ୍ ଖୁଶ୍‌ବଖ୍‌ତ ସାଙ୍ଗରେ କଦାପି ସିନେମା ଦେଖି ଯିବୁନାହିଁ । ଭାରି ଲୋଫର୍ ।' ମୁଁ କିଛି ନ କହି ଚୁପ୍ ହେଲି ।

ସେତେବେଳେ ଦିଲ୍ଲୀର ଦୁଇ ତିନୋଟି ବଜାରୀ ଝିଅଙ୍କ କଥା ଭାରି ପ୍ରସିଦ୍ଧି ପାଇଥାଏ । ମୁଁ ବେଳେବେଳେ ଭାବିଦେଲେ ଡରିଯାଏ । ଭଦ୍ରଘରର ଝିଅଗୁଡ଼ିକ ବାପମାଆଙ୍କ ଆଖିରେ ଧୂଳି ଦେଇ କେମିତି ମଉଜ ମଜଲିସ୍ କରନ୍ତି । ହଷ୍ଟେଲରେ ଆମେ ମଝିରେ ମଝିରେ ଏମିତି ସବୁ ଝିଅଙ୍କ ବାବତରେ କଥାହେଉ । ସେମାନେ ବେଶ ବିଚିତ୍ର ଓ ରହସ୍ୟମୟ ମନେହୁଅନ୍ତି । ଯଦିଓ ଦେଖିବାକୁ ସେମାନେ ବି ଆମରି ଭଳି ଝିଅ । ଶାଢ଼ୀ, ସଲୱାର ପିନ୍ଧି ଆକର୍ଷକ, ସୁନ୍ଦର ଓ ଶିକ୍ଷିତ ।

'ଲୋକେ ବଦନାମ କରନ୍ତି... ।' ସାଦିୟା ବେଶ ଜୋର ଦେଇ କହେ... 'ତେବେ କ'ଣ ବି ଅଛି ସେମିତି ?'

'ଯଥାର୍ଥରେ ଏଯାଏଁ ଆମର ସୋସାଇଟି ସେତେ ବିକଶିତ ହୋଇନାହିଁ ଯେ ଶିକ୍ଷିତ ଝିଅମାନଙ୍କୁ ସ୍ୱୀକାର କରିପାରିବ ।' ସରଳା କହୁଥିଲା ।

'ଏମିତି ହୁଏ, ଝିଅମାନେ ତାଙ୍କର ଭାରସାମ୍ୟ ହରେଇ ବସନ୍ତି ।' ରେହାନା ତା'ର ରାୟ ଶୁଣେଇଦିଏ ।

ତେଣୁ କୌଣସି ପ୍ରକାରେ ବିଶ୍ୱାସ କରି ହୁଏନାହିଁ ଯେ ଆମଭଳି, ଆମ ସାଙ୍ଗସାଥୀ କେତୋଟି ଝିଅ ଏତେ ଭୟାନକ କାମ କେମିତି କରି ଦେଇପାରନ୍ତି ।

ତା' ପରିଦିନ ସନ୍ଧ୍ୟାରେ ମୁଁ ଲେବରୋଟରୀକୁ ଯାଉଥିବାବେଳେ ନିକଲସନ୍ ମେମୋରିୟଲ ପାଖରେ ଲାଲରଙ୍ଗର କାରଟିଏ ଧୀରଗତିରେ ଆସି ରହିଗଲା । ତା'ରି ଭିତରୁ ଖୁଶବଖତ୍ ସିଂହ ଅନେଇଲା, ଇଷତ୍ ଆଲୁଅରେ ତା'ର ଧଳା ଧଳା ଦାନ୍ତଗୁଡ଼ିକ ଚମକି ଉଠିଲେ ...

''ଆପଣ ଆପଣଙ୍କର ଏପଏଣ୍ଟମେଣ୍ଟ ଭୁଲିଗଲେ, ଏଇଆ ନା ମାଡାମ୍ !''

''ହଁ'', ମୁଁ ଅପ୍ରତିଭ ହୋଇ କହିପକେଇଲି ।

'ହଜୁର ! ଚାଲନ୍ତୁ ମୋ ସାଙ୍ଗରେ ଚଟାପଟ୍ ! ଏ ସଂଧ୍ୟା ଲେବରୋଟରୀ ଭିତରେ ପଶି ବିତେଇ ଦେବାର ବେଳ ନୁହଁ— ଏତେ ପଢ଼ି କରିବେ କ'ଣ ?''

ମୁଁ ଆଦୌ ଇଚ୍ଛା କରୁ ନଥିଲେ ମଧ୍ୟ ଚାରିପଟକୁ ଅନେଇଲି ଆଉ କାର ଭିତରେ ଜାକିଜୁକି ହୋଇ ବସିଗଲି ।

ଆମେ କନାଟ୍‌ପ୍ଲେସକୁ ଯାଇ ଇଂରାଜୀ ଫିଲ୍ମଟିଏ ଦେଖିଲୁ ।

ତା'ପରଦିନ ବି ।

ତା'ପରେ ପ୍ରାୟ ଗୋଟିଏ ସପ୍ତାହ ମୁଁ ତା ସାଙ୍ଗରେ ବେଶ୍ ବୁଲିଲି । ସେ ମେଡେନ୍ସରେ ରହିଥାଏ । ଆଉ ସେଇ ସପ୍ତାହର ଶେଷ ପର୍ଯ୍ୟନ୍ତ ମୁଁ ମେଜର ଖୁଶବଖତ୍ ସିଂହଙ୍କ ମିଷ୍ଟ୍ରେସ ପାଲଟିଗଲି ।

ସାହିତ୍ୟ ମୋର ବିଷୟ ନୁହଁ । ଚାଇନିଜ୍, ଜାପାନୀ, ରୁଷୀ, ଇଂରାଜୀ ବା ଉର୍ଦ୍ଦୁ କବିତାର ଅଧ୍ୟୟନ କରିନାଇଁ ମୁଁ । ସାହିତ୍ୟ ପଢ଼ିବା ମୋ ପାଇଁ ସମୟ ନଷ୍ଟ କରିବା ସଙ୍ଗେ ସମାନ । ପନ୍ଦର ବର୍ଷ ବୟସରୁ ସାଇନ୍ସ ମୋର ସବୁ କିଛି । ମୁଁ ଅଲୌକିକ ସ୍ୱରୂପ କ'ଣ ଜାଣେନାଇଁ । ମିଷ୍ଟିକ ବା ଆକର୍ଷଣ କ'ଣ ? କାବ୍ୟ ଦର୍ଶନ ପାଇଁ ନା ସେତେବେଳେ ମୋ ପାଖରେ ସମୟ ଥିଲା ନା ଏଇନେ ଅଛି । ମୁଁ ବଡ଼ ବଡ଼ ଅସ୍ପଷ୍ଟ ଓ ରହସ୍ୟମୟ ଶବ୍ଦର ପ୍ରୟୋଗ ମଧ୍ୟ କରିପାରିବି ନାଇଁ ।

ତେଣୁ ପନ୍ଦରଟି ଦିନ ଭିତରେ ଏ ସବୁ ଘଟଣା କଲେଜରେ ପ୍ରାୟ ସମସ୍ତଙ୍କୁ ଜଣାପଡ଼ି ଯାଇଥାଏ । ହେଲେ ମୋ' ଭିତରେ ଚିରକାଳର ସେଇ ବିଚିତ୍ର ଆତ୍ମବିଶ୍ୱାସ ରହିଥାଏ । ମୁଁ ସେ ସବୁ କଥାର ପରୁଆ କରୁ ନଥାଏ । ସରଳା ଆଦିଙ୍କର ଗ୍ରୁପ୍ ମୋତେ ଏମିତି ଅନେଇ ଦେଖିଥିଲେ, ଯେମିତି ମୁଁ ମଙ୍ଗଳ ଗ୍ରହରୁ ଓହ୍ଲେଇ ଆସିଛି, ବା ମୋ କପାଳରେ ଶିଂଘ ଉଠିଛି । ଡାଇନିଂରୁ ମୋର ଗଲାପରେ ମୋ ଉପରେ ସେମାନଙ୍କର ଘଣ୍ଟା ଘଣ୍ଟା ଧରି ଚର୍ଚ୍ଚା ଚାଲିବ । ସେମାନଙ୍କର ଇନ୍‌ଟେଲିଜେନ୍ସ ସର୍ଭିସ ମୋର ଆଉ ଖୁଶବଖତ୍ ସିଂହର ପ୍ରତି ମୁହୂର୍ତ୍ତର ଖବର ରଖୁଥିବ । ରାତିରେ ନୂଆଦିଲ୍ଲୀର କୋଉ ବଲରୁମରେ ନାଚିଲୁ, (ଖୁଶବଖତ୍ ଭାରି ବଢ଼ିଆ ଡାନ୍ସର । ସେ ମୋତେ ନାଚିବା ଶିଖେଇ ଦେଇଥିଲା ।) ସେ ମୋତେ କ'ଣ କ'ଣ ଉପହାର ଦେଲା, କୋଉ କୋଉ ଦୋକାନରୁ କିଣିଦେଲା..ଆଦି.. ।

ଖୁଶବଖତ୍ ମୋତେ ଭାରି ମାରୁଥିଲା । ଆଉ ତା ସାଙ୍ଗକୁ ଏତେ ଭଲ ପାଉଥିଲା... ଏତେ ଭଲ ପାଉଥିଲା, ସେତେ ହୁଏତ ଆଜି ପର୍ଯ୍ୟନ୍ତ ଏ ଦୁନିଆଁରେ କୌଣସି ପୁରୁଷ କୌଣସି ସ୍ତ୍ରୀକୁ ପାଇ ନଥିବ ।

ଅନେକ ମାସ ବିତିଗଲା । ମୋର ଏମ୍.ଏସସି. ପ୍ରଥମ ବର୍ଷର ପରୀକ୍ଷା ଆସି ହେଲା । ମୁଁ ପଢ଼ାପଢ଼ିରେ ବ୍ୟସ୍ତ ରହିଲି । ପରୀକ୍ଷା ପରେ ସେ କହିଲା...''ଡିୟର... ଚାଲ

କୋଉ ଗୋଟାଏ ଶାନ୍ତ ପାହାଡ଼ୀ ଇଲାକାକୁ ଯିବା ... ସୋଲାନ, ଡେଲହୌସୀ, ଲେନ୍ସ ଡାଉନ୍ ।'' ମୁଁ କିଛିଦିନ ପାଇଁ ଘରକୁ ଆସିଲି ଆଉ ବାପାଙ୍କୁ ଏଇଆ କହି ଚ୍ଛଲିଆସିଲି ଯେ ଫାଇନାଲ୍ ଇୟର ପାଇଁ ମୋତେ ବେଶ୍ କିଛି ପଢ଼ାପଢ଼ି କରିବାକୁ ପଡ଼ିବ । ଉତ୍ତର ଭାରତରୁ ପାହାଡ଼ୀ କ୍ଷେତ୍ରଗୁଡ଼ିକରେ ଅନେକ ଜଣାଶୁଣା ଲୋକଙ୍କୁ ଭେଟିବାର ସଂଭାବନା ଅଛି । ସେଥିଲାଗି ଆମେ ଉଟୀ ଚ୍ଛଲିଗଲୁ । ସେପରେ ମାସେ ଖଣ୍ଡେ ରହିଲୁ । ଖୁଶବଖତ୍‌ର ଛୁଟି ସରିଲାରୁ ଆମେ ଦିଲ୍ଲୀ ଫେରି ତିମାରପୁରର ଗୋଟାଏ ବଙ୍ଗଳାରେ ରହିଗଲୁ ।

କଲେଜ ଖୋଲିବାର ସପ୍ତାହେ ଆଗରୁ ମୋର ଆଉ ଖୁଶବଖତ୍‌ର ବେଶ ଝଗଡ଼ା ହେଲା । ସେ ମୋତେ ଏତେ ମାରିଲା, ଏତେ ମାରିଲା ଯେ ଲହୁଲୁହାଣ ହେଇଗଲି... ମୋର ବାହୁ ଜଂଘ ସବୁଠେଇଁ ନୀଳନୀଳ ଦାଗ ପଡ଼ିଗଲା । ଝଗଡ଼ାର କାରଣ ଥିଲା— ତା'ର ସେଇ ବାଗଦତ୍ତା... କେଜାଣି କେଉଠୁଁ ଆସି ପହଞ୍ଚି ଯାଇଥାଏ ଆଉ ସବୁଠେଇଁ ମୋ ବିରୋଧରେ ବିଷୋଦ୍ଗାର କରୁଥାଏ । ପାରନ୍ତା ଯଦି ମୋତେ ଯେମିତି କଞ୍ଚା ଖାଇ ଯାଆନ୍ତା । ସେ ଚ୍ଛରିଶ ବିସ୍ ଝିଅଟି ଲଢ଼େଇ ବେଳେ ବର୍ମାରେ ଥିଲା, ସୈନ୍ୟବିଭାଗରେ, ଆଉ ସେଇଠି ତା'ର ଖୁଶବଖତ ସାଙ୍ଗରେ ଭେଟ ହୋଇଥିଲା । ଖୁଶବଖତ୍ କେଜାଣି କେମିତି ତାକୁ ବାହାହେବ ବୋଲି କଥା ଦେଇଥିଲା । ତେବେ ମୋତେ ଦେଖିଲା ପରେ ସେ ମୁଦି ଫେରସ୍ତକୁ ଅଡ଼ି ବସିଥିଲା ।

ସେଦିନ ରାତିରେ ତିମାରପୁରର ସେଇ ନିର୍ଜନ ବଙ୍ଗଳାରେ ମୋ ଆଗରେ ହାତ ଯୋଡ଼ି କାନ୍ଦି କାନ୍ଦି ଅନୁନୟ ବିନୟ କଲା... ବାହା ହେବାକୁ, ନହେଲେ ସେ ମରିଯିବ । ମୁଁ ସଫା ସଫା କହିଦେଲି ''ନା'... କଦାପି ନୁହଁ । ମୁଁ ଉଚ୍ଚ ଜମିଦାର ପିରବାରର ଝିଅ... ଆଉ ତୋ'ଭଳି କଳା ଧୂଆଁପତ୍ର ବିଡ଼ା ସାଙ୍ଗରେ ବାହାହେଇ ମୋ ବଂଶ ମର୍ଯ୍ୟାଦାକୁ କଳଙ୍କିତ କରିଦେବି ନାଇଁ ।'' ମୁଁ କୌଣସି ଗୋଟାଏ ସୁନ୍ଦର, ଆକର୍ଷକ, ମର୍ଯ୍ୟାଦାବନ୍ତ ମୁସଲମାନ ବଂଶର ସୁପୁତ୍ରର ସ୍ୱପ୍ନ ଦେଖିଆସିଛି, ଯିଏ କି ଦିନେ ନା ଦିନେ ଧୁମଧାମରେ ବରଯାତ୍ରୀ ଧରି ବାହାହବାକୁ ଆସିବ । ଆମର 'ଆରସୀ ମୁସହଫ' ହେବ । ଦୁହେଁ ଦୁହିଁଙ୍କର ମୁହଁ ଦର୍ପଣରେ ଦେଖିବୁ ପହିଲା କରି । ମୁଁ ମର୍ଯ୍ୟାଦାରେ ବିଦା ହେଇଯିବି । ସେଇଠି ଅଳିଅଳୀ ନଣନ୍ଦମାନେ ଦରଜା ଆଗରେ ଅଡ଼ିବସି ଭାଇଠାରୁ ଉପହାର ପାଇଁ ଝଗଡ଼ା କରିବେ । ଡମ୍ଫୁଣୀଗୁଡ଼ିକ ଢୋଲକ ନେଇ ଠିଆ ହେଇଥିବେ । କେତେ କ'ଣ ହେବ । ମୁଁ କ'ଣ ହିନ୍ଦୁ ମୁସଲମାନ ବାହାଘରର ଦଶା ଦେଖିନାଇଁ ନା' ? କେତେ ପ୍ରଗତିଶୀଳ ଆଉ ପ୍ରେମର ଆଳରେ ହିନ୍ଦୁଙ୍କ ସାଙ୍ଗରେ ବାହାହେଇ ବର୍ଷେ ଅଧେ ଭିତରେ ଜୋତାରେ ଦଳି ହେବା ଦେଖିଛି । ପିଲାଛୁଆ ହେଲେ ସେମାନଙ୍କର ଅବସ୍ଥା ନିଆରା । ନା ଏ କୁଳର ହେବେ ନା ସେ କୁଳର । ମୁଁ ଅସ୍ୱୀକାର କଲାରୁ ଲାତ ଜୋତା ମାରି ମାରି ସେ ମୋତେ ଲହୁଲୁହାଣ କରିଦେଲା । ତା'ପରଦିନ ସେ ସେଇ କାଳୀ ଡାହାଣୀ କେଥରିନ୍ ଧର୍ମଦାସ ସାଙ୍ଗରେ ଆଗ୍ରା ଚ୍ଛଲିଗଲା । ସେଇଠି ସେ ସେଇ ବଜ୍ଜାତ ସାଙ୍ଗରେ ସିଭିଲ୍ ମେରେଜ କଲା ।

ନୂଆ ସେସନ୍ ଆରମ୍ଭ ବେଳେ ମୁଁ ଯେତେବେଳେ ହଷ୍ଟେଲରେ ପହଞ୍ଚିଲି, ମୋର ଏଇ ଦୁର୍ଦ୍ଦଶା ପାଇଁ ମୁଣ୍ଡରେ ମୁହଁରେ ପଟି ଲାଗିଥାଏ । ବାପାଙ୍କୁ ଲେଖି ଦେଇଥାଏ, ''ଲେବରଟାରୀରେ ଏକ୍ସ୍‌ପେରିମେଣ୍ଟ ବେଳକୁ ଭକ୍ କିନା ଏସିଡ୍ ଉଠି ମୁହଁ ସାମାନ୍ୟ ଟିକିଏ ଜଳି ଯାଇଛି । ଏଇନେ ଠିକ୍ ଅଛି । ଚିନ୍ତା କରିବେ ନାଇଁ ।''

ଝିଅମାନଙ୍କୁ ତ ସବୁକଥା ଆଗରୁ ମାଲୁମ ଥିଲା । ତେଣୁ ସେମାନେ ମୋତେ ଔପଚାରିକ ଢଙ୍ଗରେ ବି କିଛି ପଚାରିଲେ ନାଇଁ । ଏତେ ବଡ଼ ସ୍କାଣ୍ଡେଲ୍ ପରେ ମୋତେ ହଷ୍ଟେଲରେ ରଖେଇ ଦେଇ ନଥା'ନ୍ତେ, ତେବେ ହୋଷ୍ଟେଲ୍ ଓ୍ୱର୍ଡନଙ୍କର ଖୁଣବଖତ ସିଂହ ସାଙ୍ଗରେ ବନ୍ଧୁତା ଥିଲା ବୋଲି ସମସ୍ତେ ଚୁପ୍‌ହେଲେ । ସେମାନଙ୍କ ପାଖରେ କିଛି ପ୍ରମାଣ ବି ତ ନଥିଲା । କଲେଜ ଝିଅଙ୍କୁ ଲୋକେ ଏଇଭଳି ବୃଥାଟାରେ ବଦନାମ କରନ୍ତି ।

ମୋର ସେକଥା ବେଶ୍ ଭଲ କରି ମନେଅଛି, ସତେ ଯେମିତି ଗଲା କାଲିର ଘଟଣା । ଦିନ ଦଶଟା ବାରଟା ହୋଇଥିବ । ରେଲୱେ ଷ୍ଟେସନରୁ ଗୋଟି ଗୋଟି କରି ଝିଅମାନଙ୍କର ଟାଙ୍ଗା ଆସି ଫାଟକ ପାଖରେ ରହୁଥାଏ । ହଷ୍ଟେଲ ଲନ୍‌ରେ ଥିବା ବରଗଛ ତଳେ ଝିଅମାନେ ତାଙ୍କର ଜିନିଷପତ୍ରସବୁ ଟାଙ୍ଗାରୁ ଓହ୍ଲେଇ ରଖଉଥା'ନ୍ତି । ଯେତେବେଳେ ମୁଁ ମୋ ଟାଙ୍ଗାରୁ ଓହ୍ଲେଇଲି, ମୋର ପଟିବନ୍ଧା ଶେତା ଚେହେରା ଦେଖି ମୋ ଆଗରୁ ସେଠି ଥିବା ଝିଅମାନେ ଏମିତି ଆଶ୍ଚର୍ଯ୍ୟ ଚକିତ ଆଖିରେ ଅନେଇଲେ, ଯେମିତି କାଠ ହୋଇଯାଇଛନ୍ତି । ମୁଁ ଚୌକିଦାରକୁ ମୋର ଜିନିଷପତ୍ର ବୁହେଇ ଦେଲି ଆଉ ମୋର ରୁମ୍ ଆଡ଼କୁ ଆଗେଇଲି । ଦି'ପହରବେଳା ମୁଁ ଯେତେବେଳେ ଆସି ଡାଇନିଂରେ ବସିଲି, ସେତେବେଳେ ସେଇ ଡାହାଣୀମାନେ ମୋ ସାଙ୍ଗରେ ଏମିତି ଶାଳୀନତାରେ କଥା ହେଲେ, ଯେମିତି ସେମାନେ ସବୁକଥା ଜାଣନ୍ତି, ଜାଣନ୍ତି ଦୁର୍ଘଟଣାର ପ୍ରକୃତ କାରଣ କ'ଣ ଆଉ ମୋତେ ନିନ୍ଦା ଅପବାଦରୁ ବଂଚେଇ ନେବାକୁ ସେ କଥାର ଆଲୋଚନା କରୁନାହାନ୍ତି । ତାଙ୍କ ଭିତରୁ ଗୋଟାଏ, ଯେ ସେଇ ଡାହାଣୀ ଗ୍ରୁପ୍‌ର ଗୁରୁ ଆଉ ସବୁକଥାର ଓସ୍ତାଦ, ସେ ଏପରି ବି କହିପକେଇଲା, ଯେ ମନୋବିଜ୍ଞାନର ପରିଭାଷାରେ ମୁଁ ଗୋଟାଏ ଯୌନାଗ୍ରୋନ୍ମୁଖୀ(Nympho Maneac) । ମୋତେ ମୋର ଗୁପ୍ତଚରଙ୍କଠାରୁ ତୁରନ୍ତ ଖବର ମିଳିଗଲା, ଯେତେବେଳେ ମୁଁ ମୋ ରୁମ୍‌ରେ ଝରକା ପାଖରେ ଟେବୁଲ ଲେମ୍ପ ରଖି ପଢ଼ାପଢ଼ିରେ ବ୍ୟସ୍ତ ଥିଲି । ଆଉ ଏ ଧରଣର କଥା ତ ସାଧାରଣ କଥା । ଗୋଟାଏ ମାଛ ପୋଖରୀ ସାରାକୁ ଆଇଁଷ କରିପକାଏ । ସେଇ କାରଣରୁ ଝିଅମାନଙ୍କର ପର୍ଦ୍ଦା ନ କରିବା, ସ୍ୱାଧୀନ ଘୂରାଫେରାକୁ ବିପଜ୍ଜନକ ଓ ଉଚ୍ଚଶିକ୍ଷାରେ ବଦନାମ...ଆଦି ଆଦି ଅନେକ କଥା...

ମୁଁ ନିଜ ସୀମା ଭିତରେ ସେ ଟିପ୍ପଣୀକୁ ଶତକଡ଼ା ଶହେ ସହମତ ଥିଲି । ମୁଁ ନିଜେ ଭାବେ ଯେ କେତେକ ଭଲ, ଉଚ୍ଚଶିକ୍ଷିତା ଝିଅ କେମିତି ବଜାରୀ ହେଇଯାଆନ୍ତି । ଗୋଟିଏ ଥିଓରୀ ଅଛି— ସେଇମାନେ ବିପଥଗାମିନୀ ହୁଅନ୍ତି, ଯେଉଁମାନଙ୍କର ଆଇକ୍ୟୁ କମ । ବୁଦ୍ଧିମାନ

ମଣିଷ କେବେହେଲେ ଆପଣାର ସର୍ବନାଶର ରାସ୍ତାରେ ପାଦେ ହେଲେ ଆଗେଇବ ନାହିଁ । ମାତ୍ର ମୁଁ ତ ବେଶ ଭଲ, କୁଶାଗ୍ର ବୁଦ୍ଧି, ଶିକ୍ଷିତା ଝିଅଙ୍କର ଲୋଫରୀ ଦେଖିଛି । ଅନ୍ୟ ଥିଓରୀଟି ହେଲା— ଏଣେତେଣେ ଭ୍ରମଣ, ଟଙ୍କାପଇସା, ବିଳାସ ବ୍ୟସନ, ଦାମୀ ଉପହାରର ଲୋଭ, ରୋମାନ୍ସ୍‌ର ଲାଳସା, ଏଡ୍‌ଭାନ୍‌ଚରର ଇଚ୍ଛା, ମନୋଟୋନୀ, ପର୍ଦ୍ଦାର ଜେଲ୍‌ଖାନାରୁ ବାହାରି ମୁକ୍ତ ପରିବେଶରେ ପହଞ୍ଚି ପୁରୁଣା ମୂଲ୍ୟବୋଧ ପ୍ରତି ବିଦ୍ରୋହ ଇତ୍ୟାଦି ଏହି ପରିସ୍ଥିତିର କାରଣ ବୋଲି କୁହାଯାଇପାରେ । ଏସବୁ କଥା ଅବଶ୍ୟ ହୋଇଥିବ, ନତୁବା ଆଉ କ'ଣ କାରଣ ଥାଇପାରେ ? ମୁଁ ଫାଷ୍ଟ ଟର୍ମିନାଲ ପରୀକ୍ଷା ଦେଇଥାଏ । ଖୁଶବଖତ୍ ପୁଣି ଆସି ପହଞ୍ଚିଲା । ସେ ମୋତେ ଲେବରୋଟରୀକୁ ଫୋନ୍ କରି ତାକୁ ନରୁଲାରେ ଛଅଟା ବେଳକୁ ଭେଟିବାକୁ କହିଲା । ମୁଁ ସେଇଆ କଲି । ସେ କେଥରିନକୁ ତାର ବାପ-ମା'ଙ୍କ ପାଖରେ ଛାଡ଼ିଦେଇ ସରକାରୀ କାମରେ ଦିଲ୍ଲୀ ଆସିଥାଏ । ସେଥିର ଆମେ ଉଡାଜାହାଜରେ ସପ୍ତାହକ ପାଇଁ ବମ୍ବେ ଗ୍ଲିଗଲୁ ।

ତା'ପରେ ତା ସାଙ୍ଗରେ ପ୍ରତି ମାସେ କି ଦୁଇ ମାସରେ ଭେଟ ହେଉଥାଏ । ଏମିତି ଭାବରେ ଗୋଟାଏ ବର୍ଷ ବିତିଗଲା । ଏଥର ସେ ଯେତେବେଳେ ଦିଲ୍ଲୀ ଆସିଲା, ମୋତେ ନେଇ ଆସିବାକୁ ତା'ର ଜଣେ ଘନିଷ୍ଠ ବନ୍ଧୁକୁ ପଠେଇଲା । ସେ ଗାଡ଼ି ନେଇ ଆସିଥାଏ । ଖୁଶବଖ୍ତ ଲକ୍ଷ୍ନୌରୁ ଲାହୋର ଯିବା ବାଟରେ ପାଲମରେ କେଇ ଘଣ୍ଟା ପାଇଁ ରହିଥାଏ । ତା'ର ସେଇ ବନ୍ଧୁଜଣକ ଦିଲ୍ଲୀର ଜଣେ ଅତି ନାମଜାଦା ମୁସଲମାନ ବ୍ୟବସାୟୀଙ୍କ ପୁଅ । ଯୁବକ ନ କହିବା କଥା । ବୟସ ତା'ର ସେତେବେଳେ ଗ୍ଲିଶ ପାଖାପାଖି ହେବ । ପତ୍ନୀ, ପିଲାପିଲି ଅଛନ୍ତି । ରନ୍ଧାମୁଣ୍ଡିଆ । ବେଶ୍ ଭୁଲ୍‌ଭାଲ ଇଂରାଜୀ କହୁଥାଏ । କଳା ଅସୁନ୍ଦର, ପକ୍ଷାଧରାଳି ଶବର ଭଳି ଚେହେରା ।

ସେଥର ଖୁଶବଖତ୍ ଦିଲ୍ଲୀରୁ ଗଲା ଯେ ଗଲା ଆଉ ଫେରିନାହିଁ । କାରଣ ମୁଁ ସେତେବେଳକୁ ଫାରୁକ୍‌ର ମିଷ୍ଟ୍ରେସ ହୋଇ ସାରିଥାଏ । ଫାରୁକ ସାଙ୍ଗରେ ମୁଁ ଏଇନେ ବେଶ୍ ବଡ଼ ବଡ଼ ସୋସାଇଟିରେ ତା'ର ବାଗଦତ୍ତା ଭାବରେ ସାମିଲ ହୋଇସାରିଥାଏ । ମୁସଲମାନ୍‌ମାନଙ୍କ ପାଇଁ ଗ୍ରୋଟି ବିବାହର ଅନୁମତି ମିଳିଛି । ତେଣୁ ଏସବୁ କିଛି ଖରାପ କଥା ନୁହଁ । ଅର୍ଥାତ୍ ଧାର୍ମିକ ଦୃଷ୍ଟିକୋଣରୁ ସେ ତା'ର ଅଶିକ୍ଷିତ, ପ୍ରୌଢ଼ା, ପର୍ଦ୍ଦାବାଲୀ ପତ୍ନୀ ଥାଆନ୍ତେ ଆଉ ଏକ ଶିକ୍ଷିତା ସହିତ ବିବାହ କରିବାକୁ ଗ୍ହୁଁଥିଲା । କାରଣ ସେ ସୋସାଇଟିରେ ମିଶିପାରିବ, ଗ୍ରିଜଣ ମଣିଷରେ ଜଣେ ଭାବରେ ଉଚିତ ଢଙ୍ଗରେ ବସିପାରିବ । ତା'ପରେ ସଂପନ୍ନ ଶ୍ରେଣୀରେ ସବୁକିଛି ଉଚିତ । ମଧ୍ୟମ ଶ୍ରେଣୀରେ ସିନା ଇଏ କର, ସିଏ କର ନାହିଁ ବୋଲି ନାନା ଆଇନ । ଲମ୍ବା ଛୁଟିରେ ମୋତେ ଫାରୁକ ନେଇ ଅନେକ ଜାଗା ଦେଖେଇଛି । କଲିକତା, ଲକ୍ଷ୍ନୌ, ଆଜମିର ଏମିତି କୋଉ ଜାଗା ଅଛି, ଯାହା ମୁଁ ତା' ସାଙ୍ଗରେ ଦେଖିନାହିଁ । ସେ ମୋତେ ହୀରା ମୋତି ଗହଣାରେ ଲଦି ଦେଇଥାଏ ।

ବାପାଙ୍କୁ ଲେଖି ଦେଇଥାଏ ଯେ ମୁଁ ୟୁନିଭରସିଟିର ଛାତ୍ରଙ୍କ ସାଙ୍ଗରେ ଟୁର୍‌ରେ ଯାଉଛି ବା ଅମୁକ ଜାଗାରେ ଗୋଟାଏ ସାଇନ୍ସ କନ୍‌ଫରେନ୍‌ସ ପାଇଁ ଡାକରା ଆସିଛି । ସେଥିରେ ଭାଗନେବାକୁ ଯାଉଛି । ମାତ୍ର ମୋ ଭିତରେ ଶିକ୍ଷାର ରେକର୍ଡ ଉନ୍ନତ କରି ରଖିବାର ପାଗଳାମିଟି ବି ଥାଏ । ବାର୍ଷିକ ପରୀକ୍ଷାରେ ମୋର ଅନେକ ପେପର ଖରାପ ହୋଇଥାଏ। ତାହା ସରିବା ପରେ ପରେ ମୁଁ ଘରକୁ ଚ୍ଲିଗଲି ।

ସେଇ ସମୟରେ ଦିଲ୍ଲୀରେ ଗଣ୍ଡଗୋଳ ଆରମ୍ଭ ହେଲା । ସାଂପ୍ରଦାୟିକ ଦଙ୍ଗା ଗୋଳର ସୂତ୍ରପାତ ହେଲା । ଫାରୁକ୍ ମୋତେ ଚିଠି ଲେଖିଲା, "ତମେ ତୁରନ୍ତ ପାକିସ୍ଥାନ ଚ୍ଲିଆସ । ମୁଁ ତମକୁ ସେଇଠି ଭେଟିବି ।" ମୋର ବି ଆଗକୁ ସେଇ ଇଚ୍ଛା ଥିଲା । ବାପା ବି ଅନେକ ବ୍ୟସ୍ତ ଥିଲେ ଓ ଚ୍ହୁଁଥିଲେ ଯେ ସେଭଳି ପରିସ୍ଥିତିରେ ମୋର ଇଣ୍ଡିଆରେ ନ ରହିବା ଭଲ । ଏଇଠି ଭଦ୍ର ମୁସଲମାନ ଝିଅମାନଙ୍କର ଇଜ୍ଜତ ସବୁ ସମୟରେ ବିପଦପୂର୍ଣ୍ଣ। ପାକିସ୍ଥାନ ଆମର ଇସଲାମୀ ଦେଶ । ତା'ର କଥା କ'ଣ ନଥିଲା ! ବାପା ସମ୍ପତ୍ତି ଲାଗି ସେତେବେଳେ ଦେଶ ଛାଡ଼ି ପାରୁନଥିଲେ । ମୋର ଦୁଇ ଭାଇ ବେଶ୍ ଛୋଟ ଛୋଟ । ମାଆଙ୍କ ମଲାପରେ ବାପା ସେମାନଙ୍କୁ ମୋର ମାଉସୀ ପାଖକୁ ଦକ୍ଷିଣକୁ ହାଇଦ୍ରାବାଦ ପଠେଇ ଦେଇଥିଲେ । ମୋର ପରୀକ୍ଷା ଫଳ ବାହାରି ସାରିଥାଏ । ଥାର୍ଡ ଡିଭିଜନ୍‌ରେ ପାଶ କରି ମନ ମୋର ଭାଙ୍ଗିପଡ଼ିଥାଏ । ସେତେବେଳେ ଦଙ୍ଗା କିଛି କମିଲାରୁ ମୁଁ ଉଡ଼ାଜାହାଜରେ ଲାହୋର ଚ୍ଲିଆସିଲି । ଫାରୁକ ମୋ ସାଙ୍ଗରେ ଆସିଲା । ସେ ପ୍ରୋଗ୍ରାମ କରିଥାଏ ଯେ ତା'ର ବ୍ୟବସାୟର ଗୋଟାଏ ଶାଖା ପାକିସ୍ଥାନରେ ଖୋଲି ହେଡ୍‌ଅଫିସ୍ ଲାହୋରରେ ରଖିବ । ମୋତେ ତା'ର ମାଲିକ କରି ସେଇଠି ବାହାହବ । ସେ ଦିଲ୍ଲୀ ପୂରାପୂରି ଛାଡ଼ି ଦେବାକୁ ଚ୍ହୁଁ ନଥାଏ, କାରଣ ତା'ର ବାପା ଥିଲେ କଂଗ୍ରେସୀ । ପ୍ଲାନ୍ ଥିଲା, ସେ ଦୁଇତିନି ମାସରେ ଦିଲ୍ଲୀରୁ ଲାହୋର ଆସୁଥିବ । ଲାହୋରରେ ଗୃହଲ୍ୟ ଖେଳି ଯାଇଥାଏ । ସେଇଠି ଏକୁଆରେକ ବଢ଼ିଆ କୋଠା ଏଲଟ ହୋଇ ପାରିଥା'ନ୍ତା । ମାତ୍ର ସେ ସେଠି କାହାକୁ ଜାଣି ନଥାଏ । ଯାହାବି ହେଉ ସଦ୍ଧ ନଗରରେ ଏକ ଛୋଟଘର ମୋ ନାଆଁରେ ଏଲଟ କରେଇ ସେ ମୋତେ ସେଇଠି ଛାଡ଼ି, ମୋ ପାଖରେ ମୋର ଦେଖାଶୁଣା କରିବାକୁ ତା'ର ଆଉ ଏକ ଆତ୍ମୀୟ ପରିବାରକୁ ରଖେଇଦେଲା । ସେମାନେ ଶରଣାର୍ଥୀ ଭାବରେ ଲାହୋର ଆସି ଅନିଶ୍ଚିତତାରେ ବୁଲୁଥିଲେ ।

ମୁଁ ଜୀବନର ଏ ଆକସ୍ମିକ ପରିବର୍ତ୍ତନରେ ଏତେ ଅବାକାବା ହୋଇଯାଇଥିଲି ଯେ କଣରୁ କଅଣ ହୋଇଗଲା, ଆଦୌ ବୁଝିପାରିଲି ନାହିଁ । କାହିଁ ଅବିଭାଜିତ ଭାରତର ସେଇ ପରିପୂର୍ଣ୍ଣ, ସୁଖକର ରଙ୍ଗିନ୍ ଦୁନିଆ, କାହିଁ ୪୮ର ଲାହୋରର ସେହି ସଂକୀର୍ଣ୍ଣ ଅନ୍ଧାରୀ ଘର । ଦେଶଠାରୁ କେତେ ଦୂର ! ଅଲ୍ଲାହ ହୋ ଅକବର ! ଅଲ୍ଲାହ କେଡ଼େ ମହାନ୍ ! ମୁଁ କେତେ କ'ଣ ହୃଦୟବିଦାରକ ସମୟ ଦେଖିନାହିଁ ! ମୋର ମୁଣ୍ଡ ଆଉ କାମ

କରୁ ନଥାଏ । ମୁଁ ଚ୍ୱାକିରି ଖୋଜିବାର ଚେଷ୍ଟା ବି କଲିନାହିଁ । ଟଙ୍କା ପଇସା ନେଇ ସେତେବେଳେ ମୋର ଚିନ୍ତା ନଥାଏ, କାରଣ ଫାରୁକ୍ ଦଶହଜାର ଜମା କରି ଯାଇଥାଏ । (କେବଳ ଦଶ ହଜାର, ଯଦିଓ ସେ କୋଟି କୋଟି ଟଙ୍କାର ମଣିଷ । ମାତ୍ର ସେତେବେଳେ କିଛିହେଲେ ବୁଝି ପାରୁ ନଥିଲି । ଏଇନେ ବି ପାରୁନି ।)

ଦିନ କଟି ଚ୍ୱାଲିଲା । ମୁଁ ସକାଳୁ ସଂଜଯାଏଁ ପଲଙ୍କରେ ପଡ଼ି ପଡ଼ି ଫାରୁକର ସମ୍ପର୍କୀୟା ମାଉସୀ କି ନାନୀ, ଯାହା ବି ହେଉ ସେଇ ପ୍ରୌଢ଼ା ମହିଳାଙ୍କଠାରୁ ତାଙ୍କର ଏଠି ଆସି ପହଞ୍ଚିବାର କଷ୍ଟକର ଓ କଠିଣ କାହାଣୀ, ତାଙ୍କର ପୁରୁଣା ଧନୀପଣର କଥା ଶୁଣେ ଆଉ ପାନ ଉପରେ ପାନ ଚ୍ୱୋବେଇ ଚ୍ୱାଲିଥାଏ । ତାଙ୍କର ମିଡ଼ିଲ ପଢୁଥିବା ଝିଅକୁ ଅଲଜେବ୍ରା ଜ୍ୟାମେଟ୍ରି ପଢ଼ଉଥାଏ । ତାଙ୍କର ପୁଅ ଫାରୁକର ବ୍ୟବସାୟର ଦେଖାଶୁଣା କରୁଥାଏ ।

ଫାରୁକ ବର୍ଷକରେ ପାଞ୍ଚ ଛଅ ଥର ଆସୁଥାଏ । ସେତେବେଳକୁ ଲାହୋରର ଜୀବନ ବି ସ୍ୱାଭାବିକ ହୋଇ ସାରିଥାଏ । ସେ ଆସିଲେ ମୋର କିଛିଦିନ ଭଲରେ ଭଲରେ କଟିଯାଏ । ତା'ର ମାଉସୀ ସେତେବେଳେ ବେଶ ତନ୍ମୟତାରେ ଦିଲ୍ଲୀ ଭଳି ରୋଷେଇ-ବାସ କରେ । ମୁଁ ମାଲରେ ହେୟାର ଡ୍ରେସର ପାଖକୁ ଯାଇ ବାଳ ସେଟ୍ କରେଇ ଆସେ । ସଂଧ୍ୟାରେ ଆମେ ଜିମଖାନା କ୍ଲବକୁ ଯାଉ ଆଉ ସେଇଠି ଗୋଟାଏ କୋଣକୁ ଟେବୁଲ ଉପରେ ବିୟର ବୋତଲ ରଖି ଫାରୁକ ମୋତେ ଦିଲ୍ଲୀର ଘଟଣା ଶୁଣାଏ । ଶୁଣେଇ ଚ୍ୱାଲିଥାଏ, ଥକେ ନାହିଁ ଆଉ ଅଚ୍ୱାନକ ଚୁପ୍ ହେଇ କୋଠରି ଭିତରକୁ ଆସୁଥିବା ଅଜଣା ମଣିଷଙ୍କୁ ଚ୍ୱାହେଁ । କେବେହେଲେ ବି ସେ ଆମର ବାହାଘର ବିଷୟରେ କଥା ପକାଏ ନାହିଁ । ମୁଁ ବି ତାକୁ କେବେ ସେ କଥା କହିନାହିଁ । ମୁଁ ସେତେବେଳକୁ ବିରକ୍ତ ହୋଇ ସାରିଥାଏଁ । କୌଣସି କଥାକୁ ମୋର ମନ ନଥାଏ । କୌଣସି କଥାରେ କିଛି ଫରକ ପଡୁ ନଥାଏ ବି । ଯେତେବେଳେ ସେ ଦିଲ୍ଲୀ ଚ୍ୱାଲିଯାଏ, ମୁଁ ପ୍ରାୟ ପ୍ରତି ପନ୍ଦର ଦିନରେ ମୋର ହାଲଚ୍ୱାଲ ଆଉ ତା'ର ବ୍ୟବସାୟ ସମ୍ପର୍କରେ ଚିଠି ଦିଏଁ । ଲେଖେ ବି ଯେ ଆସିଲାବେଳେ କନାଟ୍ ପ୍ଲେସର ଅମୁକ ଅମୁକ ଦୋକାନରୁ ଏମିତି ଏମିତି ଶାଢ଼ୀ ଆଣିବ । ପାକିସ୍ଥାନରେ ଭଲ ଶାଢ଼ୀ ମିଳେନାହିଁ ।

ଦିନେ ଏ ଭିତରେ ବାପାଙ୍କର ଦେହାନ୍ତ ହୋଇଯାଇଛି ବୋଲି କାକାଙ୍କର ଚିଠି ଆସିଲା ।

ମୁଁ ଭାବୁକ ନୁହେଁ । ମାତ୍ର ବାପା ହିଁ ମୋ ପାଇଁ ଜଣେ ମଣିଷ, ଯେ ମୋ ଲାଗି ଜୀବନ ଦେଇଦେବେ । ତାଙ୍କର ମୃତ୍ୟୁ ପାଇଁ ମୋତେ ବେଶ ଦୁଃଖ ହେଲା । ଫାରୁକ ମୋ ପାଖକୁ ଅତି ସ୍ନେହରେ ସାନ୍ତ୍ୱନା ଦେଇ ଚିଠି ଦେଲାରୁ ଧୈର୍ଯ୍ୟଧରି ରହିଲି । ସେ ନିୟମିତ ନମାଜ ପଢ଼ିବାକୁ ଲେଖିଥିଲା । ସେ ଲେଖିଥିଲା— ଭାରି ଖରାପ ସମୟ ଆସୁଛି । ପୃଥିବୀ

ଉପରେ ଧ୍ୱଂସର ଝଡ଼ ଘୋଡ଼େଇ ହୋଇ ରହିଛି । ସୂର୍ଯ୍ୟର ସ୍ଥିତି ବଦଳୁଛି । କୌଣସି ମୁହୂର୍ତ୍ତରେ କ'ଣ ଯେ ଘଟିଯିବ, ତା'ର କିଛି ଭରସା ନାହିଁ । ସବୁ ବ୍ୟବସାୟୀଙ୍କ ଭଳି ସେ ବି ଭାରି ରଢ଼ିବାଦୀ ଧାର୍ମିକ ଓ ଅନ୍ଧବିଶ୍ୱାସୀ ଥିଲା । ବେଶ୍ ସବୁ ପାଳନ କରି ଆଜମିର ଶରୀଫକୁ ଯାଉଥିଲା । ଜ୍ୟୋତିଷ, ପଣ୍ଡିତ, ପୀର-ଫକୀର, ଭଲ, ମନ୍ଦ ଶକୁନ, ସ୍ୱପ୍ନ ଫଳ ସବୁ କଥାକୁ ମାନୁଥିଲା । ମୁଁ ଗୋଟାଏ ମାସ ନମାଜ ପଢ଼ିଲି ବି ଆଉ ଯେତେବେଳେ ମୋର ଚେତା ପଶୁଥିଲା, ଜୋର୍‌ରେ ହସିବାକୁ ମନ ହେଉଥାଏ ।

ବିଜ୍ଞାନର ମହିଳା ପ୍ରାଧ୍ୟାପିକାଙ୍କର ବେଶ୍ ଚାହିଦା ଥିଲା ସେତେବେଳେ । ମୋତେ ଗୋଟାଏ ସ୍ଥାନୀୟ କଲେଜ କର୍ତ୍ତୃପକ୍ଷ ବାଧ୍ୟ କଲାରୁ ମୁଁ ଅଧ୍ୟାପିକା ଭାବରେ ଯୋଗଦେଲି, ଯଦିଓ ମାଷ୍ଟରୀ କରିବାକୁ ମୁଁ ଘୃଣା କରେ । କିଛି ସମୟ ପରେ ମୋର ପଞ୍ଜାବର ଏକ ଦୂରସ୍ଥ ମହିଳା କଲେଜକୁ ବଦଳି ହେଲା । ଅନେକ ବର୍ଷ ମୁଁ ସେଠି କାମ କଲି । ମୋତେ ମୋର ଛାତ୍ରୀଗୁଡ଼ିକ ପ୍ରାୟ ପଚାରନ୍ତି..., "ମିସ୍ ତନଵୀର ! ଆପଣ କେତେ ସୁନ୍ଦର ! ଆପଣ ଆପଣଙ୍କର ସେଇ କୋଟିପତି ନିର୍ବନ୍ଧ ସରିଥିବା ପୁରୁଷଟିକୁ ବାହା ହେଉନାହାନ୍ତି କାହିଁକି ? ହାୟ ଅଲ୍ଲାହ !"

ଏଇ ପ୍ରଶ୍ନର କୌଣସି ଉତ୍ତର ମୋ ପାଖରେ ବି ନଥିଲା ।

ଏ ନୂଆ ଦେଶ, ନୂଆ ଲୋକ, ନୂଆ ଚାଲିଚଳଣି । ଏଠି କେହି ବି ମୋର ଅତୀତ ସମ୍ବନ୍ଧରେ କିଛି ଜାଣନ୍ତି ନାହିଁ । କେହି ବି ଭଦ୍ରପୁରୁଷ ମୋତେ ବାହାହେବାକୁ ରାଜି ହୋଇ ପାରିଥାନ୍ତା (ତେବେ କୌଣସି ସୁନ୍ଦର, ଭଦ୍ର, ସିଧାସାଦା ଲୋକ ମୋର୍ ପସନ୍ଦକୁ ଆସୁନଥିଲେ, ମୁଁ କ'ଣ କରନ୍ତି ?) ଦିଲ୍ଲୀର କାହାଣୀ ଦିଲ୍ଲୀରେ ରହିଯାଇଥିଲା । ଆଉ ତା'ପରେ ମୁଁ ଦେଖୁଥିଲି ଯେ ଏକୁ ଆରେକ ନୀଚ ବିଟପୀ ଝିଅ ଏଇନେ ଏତେ ପବିତ୍ର ପାଲଟି ଯାଉଛନ୍ତି... ସେମାନଙ୍କୁ ଖାଲି ଦେଖୁଥ । ସ୍ୱୟଂ ଇଡିଥ୍ ହରୀରାମ ଓ ରାଣୀ ଖାନ୍‌ର ଉଦାହରଣ ମୋ ସାମନାରେ ଅଛି ।

ଏବେ ଫାରୁକ ବି କେବେ କେମିତି ଆସୁଛି । ଆମେ ଏମିତି ଭେଟ ହେଉ, ଯେମିତି କୋଡ଼ି କୋଡ଼ି ବର୍ଷର ପୁରୁଣା ପତିପତ୍ନୀ, ଯେଉଁମାନଙ୍କର ପାରସ୍ପରିକ ଆକର୍ଷଣ ସରିଯାଇଛି, ନୂଆ ବୋଲି କିଛି ନାହିଁ । ଏଇନେ ଶାନ୍ତି, ବିଶ୍ରାମ ଓ ସ୍ଥିରତାର ସମୟ ଆସିଛି । ଫାରୁକର ଝିଅର ଏଇମାତ୍ର ଦିଲ୍ଲୀରେ ବାହା ହେଇଛି । ତା'ର ପୁଅ ଅକ୍ସଫୋର୍ଡ ଯାଇସାରିଛି । ପତ୍ନୀର ସବୁବେଳେ ଶ୍ୱାସ ରୋଗ । ଫାରୁକ ବ୍ୟବସାୟର ଅନେକ ଶାଖା ଦେଶବିଦେଶରେ ଖୋଲି ସାରିଛି । ନୈନିତାଲରେ ନୂଆ ବଙ୍ଗଳା ତିଆରି କରୁଛି । ଫାରୁକ ତା'ର ପରିବାର ଓ ବ୍ୟବସାୟର କଥା କହି ଚାଲିଥିବ ଆଉ ମୁଁ ତା ଲାଗି ପାନ ଭାଙ୍ଗୁଥିବି ।

ଏଥର ମୁଁ ଯେତେବେଳେ କଲେଜ ଛୁଟିରେ ଆସି ଲାହୋରରେ ପହଞ୍ଚିଲି, ସେତେବେଳେ ଫାରୁକର ଜଣେ ପୁରୁଣା ବନ୍ଧୁ ବକାର ହୁସୈନ୍ ଖାନ୍‌ଙ୍କ ସାଙ୍ଗରେ ମୋର ଭେଟ ହେଲା । ସେ ବି ଏକାକୀ ଥିଲେ, କିଛି କମ ଅସୁନ୍ଦର ନଥିଲେ । ଉଚ୍ଚାପୂରା, ମୋଟା

କଳା ତାମ୍ବାଭଳି ରଙ୍ଗ । ପ୍ରୌଢ଼ତାରେ ବି ଜଣେ ପହିଲମାନ୍ ଭଳି ଦିଶୁଥିଲେ । ତାଙ୍କୁ ମୁଁ ପ୍ରଥମ କରି ଦିଲ୍ଲୀରେ ଭେଟିଥିଲି । ସେଠି ତାଙ୍କର ଡାନ୍‌ସିଂ ସ୍କୁଲ ଥିଲା । ସେ ୟୁ.ପିର ଗୋଟାଏ ଭଦ୍ର ପରିବାରର ଏକମାତ୍ର ସୁପୁତ୍ର । ପିଲାଦିନୁ ଘରୁ ପଳେଇ ସର୍କସ, କର୍ନିବାଲ ଓ ଥିଏଟର କମ୍ପାନୀଗୁଡ଼ିକ ସାଙ୍ଗରେ ଦେଶବିଦେଶରେ ବୁଲୁଛନ୍ତି । ସିଙ୍ଗାପୁର, ହଂକଙ୍ଗ୍ ସାଙ୍ଘାଇ, ଲଣ୍ଡନ୍, କେଜାଣି କେତେ ଜାଗା, ଅଗଣିତ ଜାତିର ଝିଅଙ୍କୁ ବାହା ହେଇଛନ୍ତି । ତାଙ୍କର ବର୍ତ୍ତମାନ ପତ୍ନୀ ଓଡ଼ିଶାର ଗୋଟେ ମାରୱାଡ଼ୀ ଝିଅ । ତାକୁ ସେ କଲିକତାରୁ ଉଡ଼େଇ ଆଣିଛନ୍ତି । ବାର ପନ୍ଦର ବର୍ଷ ତଳେ ମୁଁ ତାକୁ ଦିଲ୍ଲୀରେ ଦେଖିଥିଲି । ସୁନ୍ଦର, ସାବଳୀ, ବାଙ୍ଗର ଝିଅଟିଏ । ଚେହେରା ଦେଖିଲେ ଭାରି ଉଦାସ ଦିଶେ । ତେବେ ଶୁଣିଛି ସେ ଭାରି ପତିବ୍ରତା । ପତିର ଦୁର୍ବ୍ୟବହାରରେ ଅତିଷ୍ଠ ହୋଇ ଏଣେତେଣେ ପଳେଇ ଯାଏ, ହେଲେ ପୁଣି କିଛିଦିନ ପରେ ଫେରିଆସେ । ଖାନ୍‌ସାହେବ କନାଟ୍ ସର୍କସର ଗୋଟାଏ ବିଲଡିଂର ଉପର ମହଲାରେ ଇଂଲିଶ୍‌ନାଚ ଶିଖେଇବାକୁ ସ୍କୁଲଟିଏ ଖୋଲିଥିଲେ । ସେଥିରେ ଷ୍ଟାଫ୍ ଭାବରେ ସେ, ତାଙ୍କର ପତ୍ନୀ ଆଉ କେତୋଟି ଆଙ୍ଗ୍ଲୋଇଣ୍ଡିୟନ୍ ଝିଅ ଥିଲେ । ଯୁଦ୍ଧକାଳରେ ସେଇ ସ୍କୁଲ ଉପରେ ଧନର ବର୍ଷା ହେଉଥିଲା । ରବିବାର ଦିନ ସ୍କୁଲର ଜାମ ସେଶନ୍ । ଥରେ ମୁଁ ଖୁଶବଖତ ସାଙ୍ଗରେ ସେଠିକି ଯାଇଥିଲି । ଶୁଣିଥିଲି, ବକାର ସାହବଙ୍କ ପତ୍ନୀ ଏତେ ପତିବ୍ରତା ଯେ "ଅମୁକ ଅମୁକ ଝିଅ ସାଙ୍ଗରେ ଭଉଣୀ ଭଉଣୀ ହୁଅ ଆଉ ତାକୁ ମୋ ସାଙ୍ଗରେ ଭେଟ କରେଇବା ବ୍ୟବସ୍ଥା କର" ବୋଲି ଆଦେଶ ପାଇବା ମାତ୍ରକେ ସେଇଆ କରୁଥିଲା । ଥରେ ସେ ଆମ ହଷ୍ଟେଲକୁ ବି ଆସିଥିଲା, ଆଉ କେତେ ଜଣ ଝିଅଙ୍କ ପଛରେ ଲାଗିପଡ଼ି ସେମାନଙ୍କୁ ତା' ସାଙ୍ଗରେ ଗ୍ବ' ପାଇଁ ବାରହଖମ୍ବା ରୋଡ଼କୁ ଯିବାକୁ କହିଲା ।

ବିଭାଜନ ପରେ ବକାର ସାହେବ ସବୁକିଛି ହରେଇ ଲାହୋର ପହଞ୍ଚିଗଲେ ଆଉ ମାଲ ରୋଡ଼ ପଛପଟେ ଗୋଟାଏ ଫ୍ଲାଟ୍ ଏଲଟ କରେଇ ସେଠି ତାଙ୍କର ସ୍କୁଲ ଖୋଲି-ଦେଲେ । ପ୍ରଥମେ ପ୍ରଥମେ କାରବାର ବେଶ୍ ମାନ୍ଦା ହେଲା । ସେଯାଏଁ ଲୋକଙ୍କ ମନରେ ହତ୍ୟା, ଧ୍ୱଂସର ବିଭୀଷିକା ରହିଥିଲା; ନାଚ, ଗୀତ, କୁ କା'ର ମନ ! ସେଇ ଫ୍ଲାଟ୍‌ରେ ବିଭାଜନ ପୂର୍ବରୁ ଆର୍ଯ୍ୟସମାଜୀ ହିନ୍ଦୁମାନଙ୍କର ମ୍ୟୁଜିକ ସ୍କୁଲ ଥିଲା । କାଠ ଚଟାଣ ଥାଇ ହଲ, ତା ପାଖକୁ ଲାଗି ଦୁଇଟି ଛୋଟିଆ ଛୋଟିଆ ରୁମ୍, ବାଥରୁମ୍ ଓ ରୋଷେଇ ଘର । ସାମନାରେ କାଠ ତିଆରି ବାଲକନୀ ଆଉ ଦରଭଙ୍ଗା ହଲୁଥିବା କାଠ ସିଢ଼ି । 'ହିନ୍ଦ ମାତା ସଂଗୀତ ମହାବିଦ୍ୟାଳୟ' ଲେଖା ଥିବା ବୋର୍ଡଟି ଝରକାରେ ବନ୍ଧା ହୋଇ ରହିଥିଲା । ତାକୁ ଉତାରି 'ବିକାର୍ଜ ସ୍କୁଲ ଅଫ୍ ବଲରୁମ ଏଣ୍ଡ ଟେପ ଡାନସିଂ'ର ବୋର୍ଡ ସେଇଠି ଝୁଲେଇ ଦିଆହୋଇଥିଲା । ଆମେରିକାନ୍ ସିନେମା ପତ୍ରିକାଗୁଡ଼ିକରୁ କାଟି ଜୀନ୍‌କେଲୀ, ଫ୍ରେଡ୍ ଏଷ୍ଟରୟର୍, ଫ୍ରେନ୍‌କ ସିନାଟ୍ରା, ଡୋରେସ୍ ଡେ ଆଦିଙ୍କର ରଙ୍ଗିନ ଚିତ୍ର ହଲର ଚୂନଛଡ଼ା

କାଳର ଏଣେତେଣେ ମାରି ସ୍କୁଲ ଆରମ୍ଭ ହେଲା । ରେକର୍ଡମାନଙ୍କର ଛୋଟ ଭଣ୍ଡାରଟିଏ ଖାନ୍ ସାହବ ଦିଲ୍ଲୀରୁ ନିଜ ସାଙ୍ଗରେ ନେଇ ଆସିଥିଲେ । ଗ୍ରାମୋଫୋନ୍ ଓ ସେକେଣ୍ଡହେଣ୍ଡ ଫର୍ଣ୍ଣିଚର ଫାରୁକ ପାଖରୁ କରଜ କରି କିଣାହେଲା । କଲେଜର ମଫିକରା ପିଲା ଆଉ ନବଧନିକ ସୋସାଇଟିର ତାଜା ଫେସନେବୁଲ୍ ବେଗମ୍‌ମାନଙ୍କୁ ଈଶ୍ୱର କୃପା କରିଥା'ନ୍ତୁ, ଦୁଇ-ତିନି ବର୍ଷରେ ତାଙ୍କର ସ୍କୁଲ ଚମକିଗଲା ।

ଫାରୁକ ସାଙ୍ଗରେ ବନ୍ଧୁତା ଫଳରେ ତାଙ୍କ ସାଙ୍ଗରେ କିଛିଟା ଦେଢ଼ଶୁର ଭାଉଜ ଭଳି ସଂବନ୍ଧ ହୋଇଯାଇଥିଲା । ମଝିରେ ମଝିରେ ମୋ କଥା ବୁଝିବାକୁ ସେ ଆସୁଥିଲେ । ତାଙ୍କର ପତ୍ନୀ ମୋ ସାଙ୍ଗରେ ଘଣ୍ଟା ଘଣ୍ଟା ଧରି ରନ୍ଧାବଢ଼ା, ସିଲେଇ, ଫୁଲ କାମ ଆଦି ବାବଦରେ କଥା ହୁଏ । ବିଗ୍ରଣ ମୋତେ ପୂରାପୂରି ବଡ଼ ଜାଆ ଭଳି ସ୍ନେହ କରେ । ସେମାନଙ୍କର କୌଣସି ସନ୍ତାନ ନଥିଲେ । ବେଶ ଉଦାସ, ବେରଙ୍ଗ, ମଉଜହୀନ ଯୋଡ଼ି ଭଳି ମନେହେଉଥିଲେ ସେମାନେ । ଏମିତି ମଣିଷ ବି ଦୁନିଆଁରେ ଅଛନ୍ତି ।

କଲେଜରେ ନୂଆ ନୂଆ ଆମେରିକାରୁ ଫେରିଥିବା କଥାକଥାକେ ନାକ ଡିଆଁଉ ଥିବା ପ୍ରିନ୍ସିପାଲ ସାଙ୍ଗରେ ମୋର ଝଗଡ଼ା ହୋଇଗଲା । ସେ ପାଏ କୁ ମୁଁ ଦେଢ଼ ପା' । ମୁଁ କୋଉ ଅବୁଲ୍ ହସନ୍ ତାନାଶାହଠୁଁ କମ୍ ଯେ ! ମୁଁ କମିଟିକୁ ଇସ୍ତଫା ଧରେଇ ଦେଇ ସବ୍ଜ ନଗର, ଲାହୋର ଆସିଗଲି । ମୋର ପଢ଼େଇ ପଢ଼େଇ ବିରକ୍ତି ଆସିଯାଇଥିଲା । ମୁଁ କିଛି ନା କିଛି ଛାତ୍ରବୃତ୍ତି ନେଇ ପି.ଏଚ୍.ଡ଼ି ପାଇଁ ବାହାରକୁ ଯାଇପାରିଥା'ନ୍ତି; କିନ୍ତୁ ସେଇ ଇଚ୍ଛାକୁ ବି କାଲି କାଲି କରି ଟାଳିଦେଇ ଗଲି । କାଲି ଆମେରିକାନ ଅଫିସକୁ ଯିବି, ଯୋଉଠି ସେମାନେ ଛାତ୍ରବୃତ୍ତି ବାଣ୍ଟୁଛନ୍ତି । କାଲି ବ୍ରିଟିଶ କାଉନସିଲକୁ ଯିବି, କାଲି ଏଡୁକେଶନ୍ ମିନିଷ୍ଟ୍ରିରେ ସ୍କଲରସିପ୍ ପାଇଁ ଦରଖାସ୍ତ ଦେବି... ।

. ଅନେକ ସମୟ ଗୁଲିଗଲା, କ'ଣ କରିବି । କୋଉ ବାହାରକୁ ଗଲେ ଗଡ଼ ଜୟ କରି ପକେଇବି ? କେଜାଣି ମୁଁ କୋଉ କଥାର ଅପେକ୍ଷା କରୁଥିଲି, ମୋତେ ବି ଜଣା ନଥିଲା !

ମଝିରେ ଦିନେ ବଡ଼ାର ଭାଇ ବେଶ ବ୍ୟସ୍ତହେଇ ଆସି କହିଲେ—"ତମ ଭାଉଜର ଦିମାଗ ଚଢ଼ିଗଲା ଆଉ ସେ ଭିସା କରି ଇଣ୍ଡିଆ ଫେରିଗଲା । ଆଉ କେବେହେଲେ ଆସିବ ନାହିଁ ।"

"ଏମିତି କେମିତି ହେଲା ?" ମୁଁ କଥାଟି ଉପରେ ଆଦୌ ଗୁରୁତ୍ୱ ନ ଦେଲା ଭଳି ପଗ୍ରରିଲି ଓ ଚ୍' ପାଇଁ ଷ୍ଟୋଭରେ ପାଣି ବସେଇବାକୁ ଉଠିଗଲି ।

"କଥା ହେଲା ମୁଁ ତାକୁ ତଲାକ୍ ଦେଲି... କଥା ତାର ବଳି ପଡୁଥିଲା... ଯେତେବେଳେ ଦେଖ୍ ଟର୍ର୍... ଟର୍ର୍... !" ତା'ପରେ ସେ ସାମନାରେ ପଲଙ୍କ ଉପରେ ବସିପଡ଼ି ବିଶୁଦ୍ଧ ପତିର ଠାଣୀରେ ପତ୍ନୀଟିର ବିରୋଧରେ ଯେମିତି ଗୋଟାଏ ଅଦାଲତ ଖୋଲି ପକେଇଲେ ଆଉ ନିଜକୁ ସବୁ ଦୃଷ୍ଟିରୁ ନିର୍ଦ୍ଦୋଷ ବୋଲି ପ୍ରମାଣିତ କରିବାର ଚେଷ୍ଟାରେ ଲାଗି ରହିଲେ ।

ମୁଁ ବେପରୁଆ ଢଙ୍ଗରେ ସବୁ କଥା ଶୁଣିଗଲି । ଜୀବନର ସବୁକଥା ଏଭଳି ରଙ୍ଗହୀନ, ମହତ୍ତ୍ୱହୀନ ଓ ନିରର୍ଥକ ଥିଲା ।

କିଛି ଦିନ ପରେ ସେ ମୋ ପାଖକୁ ଆସି ଦୁଃଖ ଗାଇ ବସିଲେ—

''ଗ୍ୱିକରତକ ନାକେଦମ କଲେଣି । କେବେ ଦିନେ ଏଇଆ ବି ଭାବିପାରିଲ ନାଇଁ ଯେ ଯାଏଁ ଥରୁଟିଏ ଯାଇ ଭାଇ ଘରଟିର ଅବସ୍ଥା ସୁଧାରି ଦେଇ ଆସେ । ମୁଁ ସ୍କୁଲ ବି ଚଳେଇବି ଆଉ ଘର ବି... ।''

କିଛିଦିନ ପରେ ମୁଁ ମୋର ଜିନିଷପତ୍ର ନେଇ ବକାର ସାହବଙ୍କ ଘରକୁ ଗ୍ୱଲି ଆସିଲି । ନାଚ ଶିଖେଇବାକୁ ଏସିଷ୍ଟେଣ୍ଟ ବି ପାଲଟିଗଲି । ତା'ର ମାସେ ଖଣ୍ଡେ ପରେ ଗଲା ରବିବାର ଦିନ ସେ ଦି'ଜଣଙ୍କର ସାକ୍ଷ୍ୟ ନେଇ ମୋ'ଠୁ ନିକାହ ପଢ଼େଇ ନେଲେ... ।

ଏଇନେ ମୁଁ ସାରାଦିନ ଘରକାମରେ ବ୍ୟସ୍ତ ରହିଛି । ମୋର ,ରୂପ, ସୌନ୍ଦର୍ଯ୍ୟ ଭୂତକାଳ ହୋଇସାରିଛି । ମୋତେ କୋଳାହଳ, ପାର୍ଟି ଆଦି ଆଦୌ ଭଲ ଲାଗୁନାହିଁ । ମାତ୍ର ଘରେ ସବୁବେଳେ ଗ୍ୱ...ଗ୍ୱ...ଗ୍ୱ... ଆଉ କୈଲିପସୋ, ରକ ଏଣ୍ଡ ରୋଲର କୋଳାହଳ ଲାଗିରହୁଛି । ସେଇ ମୋର ଘର । ମୋ ପାଖରେ ଏଇନେ ଅନେକ କଲେଜରେ କେମିଷ୍ଟ୍ରି ପଢ଼େଇବାର ଅଫର୍ ଅଛି, ତେବେ ଘର ଓ ଗୃହିଣୀପଣରୁ କ'ଣ କେବେହେଲେ କାହାକୁ ସମୟ ମିଳେ ? ଗ୍ୱିକରଙ୍କ କଥା ହେଲା— ଆଜି ରଖିଲେ କାଲି ଗ୍ୱଲିଯିବେ । ମୁଁ ଅଧିକର ଇଚ୍ଛା କେବେହେଲେ କରିନାହିଁ । କେବଳ ଏତିକି ଗ୍ୱହିଁଛି ଯେ ସାଧାରଣ ଘରଟିଏ ହେଉ, ଗାଡ଼ିଟିଏ ଥାଉ, ଏଣେତେଣେ ଯାଇ ହେବ । ସାଙ୍ଗସାଥୀ ମହଲରେ ବେଇଜ୍ଜତ ହେବାକୁ ନ ପଡୁ । ଘରକୁ ତିନି ପାଞ୍ଚଜଣ ଆସିଲେ ସେମାନଙ୍କୁ ଉଚିତ ଢଙ୍ଗରେ ବସେଇ ଚର୍ଚ୍ଚା କରାଯାଇ ପାରିବାର ସାମର୍ଥ୍ୟ ଥାଉ... ବାସ୍...

ଏଇନେ ଆମର ମାସିକ ଆୟ ଦେଢ଼-ଦୁଇ ହଜାର, ଯାହା ଆମ ଦୁଇଜଣଙ୍କର ପାଇଁ ଆବଶ୍ୟକତାରୁ ଅଧିକ । ମଣିଷ ତା'ର ଭାଗ୍ୟରେ ସନ୍ତୁଷ୍ଟ ହୋଇଯିବ, ଯଦି ତା'ର ଆଉ କୌଣସି ଦୁଃଖ ରହିବ ନାଇଁ ।

ବାହା ହୋଇଗଲା ପରେ ସତରେ ଯେମିତି ଗୋଟାଏ ଝିଅକୁ ଛାତଟିଏ ମିଳିଯାଏ । ଆଜିକାଲିର ଝିଅମାନେ କେଜାଣି କେମିତି ଧାରାରେ ବହିଗ୍ୱଲିଛନ୍ତି । କେମିତି ସେମାନେ ହାତରୁ ଖସି ଯାଆନ୍ତି । ମୁଁ ଏସବୁ ନେଇ ଯେତେ ଭାବେ, ମୋତେ ସେତେ ବିଚିତ୍ର ଲାଗେ ।

ମୁଁ ତ କେବେହେଲେ କାହା ସାଙ୍ଗରେ ଫ୍ଲର୍ଟ କରିନାଇଁ । ଖୁଣବଖତ୍, ଫାରୁକ ଆଉ ଏଇ କଳା ଭୁଷଣ୍ଡ ମଣିଷଟି ଛଡ଼ା, ଯିଏ ମୋର ପତି । ମୁଁ କୌଣସି ଚତୁର୍ଥ ବ୍ୟକ୍ତିକୁ ଜାଣେନାହିଁ । ମୁଁ ବୋଧହୁଏ ବଦମାସ୍ ତ ନଥିଲି ! କେଜାଣି ମୁଁ କ'ଣ ଥିଲି ? ଆଉ ଅଛି କ'ଣ ? ରେହାନା, ସାଦିୟା, ପ୍ରଭା ଆଉ ଏ ଝିଅଟି, ଯା'ର ଆଖିରେ ମୋତେ ଦେଖିଲା ମାତ୍ରକେ ଅପ୍ରତିଭ ଭାବଟିଏ ଖେଳିଗଲା, ହୁଏତ ସେ ମୋତେ ମୋ'ଠାରୁ ଅଧିକ ଭଲଭାବରେ ଜାଣିଛି ।

ଏଇନେ ଖୁଶବଖତ୍‌କୁ ମନେପକେଇ ଲାଭ କ'ଣ ? ସମୟ ବିତି ଯାଇଛି । ଏଇନେ ସେ ହୁଏତ ବ୍ରିଗେଡ଼ିୟର ମେଜର ଜେନେରାଲ ହୋଇ ସାରିଥିବ । ଆସାମ ସୀମାରେ ଚୀନାଙ୍କ ବିରୋଧରେ ଶିବିର ଥାପି ବସିଥିବ ବା ଭାରତର କୋଉ ଗୋଟାଏ ମିଲିଟାରୀ ଛାଉଣୀର ମେସ୍‌ରେ ଆନନ୍ଦରେ ନିଶରେ ହାତ ମାରି ବସିଥିବ । ମୁରୁକି ହସୁଥିବ । ହୋଇପାରେ କାଶ୍ମୀରରେ ଯୁଦ୍ଧବେଳେ ମରିଥିବ... କେଜାଣି !

ଅନ୍ଧାର ରାତିରେ ମୁଁ ଆଖି ଖୋଲି ପଡ଼ିରହେ । ବିଜ୍ଞାନ ମୋତେ ସୃଷ୍ଟିର ଅନେକ ରହସ୍ୟ ସମ୍ବନ୍ଧରେ ଅବଗତ କରାଇଛି । ମୁଁ କେମେଷ୍ଟ୍ରିର ଅଗଣିତ ଗ୍ରନ୍ଥ ପଢ଼ିଛି । ଭାବିଛି !

ଆଉ ମୋତେ ଭାରି ଡର ମାଡ଼େ । ଅନ୍ଧାର ରାତିରେ ମୋତେ ଭାରି ଡରମାଡ଼େ ।

ଖୁଶବଖତ୍ ସିଂହ..... ଖୁଶବଖତ୍ ସିଂହ...

ତମର ଆଉ ମୋ ସାଙ୍ଗରେ କି ମତଲବ ଅଛି ?

# ହାଉସିଂ ସୋସାଇଟି

ଜାନୁଆରୀର ଶୀତ ସକାଳର କୁହୁଡ଼ି ଗଛମାନଙ୍କରୁ ଉଭେଇ ଯିବାକୁ ବସିଲା । ଦୂର ଗୋମତୀ ତଟ ସେପାରି ବାଲିକୁଦଗୁଡ଼ିକ ପଛରୁ ସୂର୍ଯ୍ୟ ଉଇଁ ଆସିଥିଲା । ନଈ ତଟରେ ବିଛେଇ ପଡ଼ିଥିବା ସୀପଗୁଡ଼ିକ ଝିଲିମିଲି କରିବା ଆରମ୍ଭ କରିଥିଲେ । ଶବ୍‌ବରବ ମଶାଲଚୀ କିଚ୍ଚେନର ଶେଡ୍ ତଳେ ନରମ ମାଟି ଉପରେ ଆଣ୍ଠୁ ମାଡ଼ି ବସିପଡ଼ି ଲମ୍ବା କଳା ମସଲା ଶିଳରେ ବେଶ୍ ଜୋର୍ ଜୋର ଘଷି ଚକୁଗୁଡ଼ିକୁ ସଫାକରି ପାଖରେ ଗଦେଇ ଗ୍ଲାଲିଥାଏ ଆଉ ଶୀତକୁ ଦୂର କରିବା ଲାଗି ଗୀତରେ ବୁଡ଼ି ରହିଥାଏ...

ତଜଲ୍ଲୀ[୧] ତୂରକୀ[୨] ମୂସା କଲୀମା[୩] ବନକେ ନିକଲେଁଗେ

ମୋହମ୍ମଦ ମୁସ୍ତଫା ମଶହର[୪] ମେ ଦୂଲ୍‌ହା ବନକେ ନିକଲେଁଗେ ।

ତା'ପରେ ସେ ଆଉ ଏକ କବ୍‌ବାଲୀ ବୋଲିବା ଆରମ୍ଭ କରିଦେଲା—

ଦେଖନା ସାକୀ ଘଟା ଫୁଲଜାର ପେ ଛାୟୀ ନ ହୋ

(ସାକୀ ଦେଖିବୁ ଯେମିତି ବଗିଗ୍ଗ ଉପରେ ମେଘ ଘୋଟି ନଥିବ)

'ବାପରେ ବାପ, ଏତେ ଶୀତ' ଗ୍ଧକର ଦ୍ୱାରକା ପ୍ରସାଦ ଚପରାସୀମାନଙ୍କର ସାହାଲାରୁ ବାହାରି ତା'ର ମତପ୍ରକାଶ କଲା ।

'ଆଜି ଅଧରାତି ଯାଏଁ ଗହଳଚହଳ ହେବ ।' ଶବ୍ବରବ ଉତ୍ତର ଦେଲା ଆଉ ସେଇ ଛୁରୀ ସଫା କରିବା କାମରେ ଲାଗିପଡ଼ିଥିଲା । ଆମ୍ବତୋଟାର ଛାଇ ଅନ୍ଧାର ଭିତରୁ ଦୁଇଟି ଛାୟା ବାହାରି ଆସିଲା ଭଳି ଦେଖାଦେଲା । କୁହୁଡ଼ିଘେରା ବାତାବରଣରେ ସୂର୍ଯ୍ୟ କିରଣର ଚଉଡ଼ା ରାସ୍ତା ଭଳି ପଡ଼ିଥିଲା । ସୂର୍ଯ୍ୟଠୁ ବାହାରି ଠିକ୍ ଶବ୍ବରବର ମୁଣ୍ଡଠେଇଁ ସରିଯାଇଥିଲା । ଖରା ଧାସ ଆଖି ମିଟମିଟ୍ କରି ସେ ଆଗରେ ଆଗରେ ଆସିଥିବା ଲୋକଟିକୁ ପାଟିକରି ସ୍ୱାଗତ କରି ଡାକିଲା— 'ବନ୍ଦଗୀ, ସଲାମ୍ ଓ୍ୱାଲେକୁମ୍' ଆଉ ଦ୍ୱାରକା ପ୍ରସାଦକୁ କହିଲା— ''ବେଶ୍ ସକାଳୁ ସକାଳୁ ଉପହାର ଡାଲା ପହଁଚେଇଲେଣି ।'

---

୧। ତୂର ପର୍ବତ ଉପରେ ପୈଗମ୍ବର ମୂଷା ଦେଖିଥିବା ଅଲୌକିକ ବା ଈଶ୍ୱରୀୟ ଆଲୋକ ।

୨। ଖୁଦା (ଈଶ୍ୱର)ଙ୍କ ସାଙ୍ଗରେ କଥାହେବା ଲୋକ ।

୩। କୟାମତ (ପ୍ରଳୟ । ମୁସଲମାନମାନଙ୍କର ଧାର୍ମିକ ବିଶ୍ୱାସରେ ତାହା ସୃଷ୍ଟିର ଅନ୍ତିମ ଦିନ ଏବଂ ସେଦିନ ସବୁ ମୃତବ୍ୟକ୍ତି ଆପଣା ଆପଣା କବରରୁ ଉଠିବେ ଏବଂ ଈଶ୍ୱରଙ୍କ ନିକଟରେ ସେମାନଙ୍କର ବିଗ୍ଭର ହେବ) ଦିନ ହଶ୍ର (କୟାମତ-ପ୍ରଳୟ) ପଡ଼ିଆରେ

୪। କୟାମତ ପଡ଼ିଆ— ସେଇଠାରେ ବିଗ୍ଭର ନିମନ୍ତେ ସମସ୍ତେ ଏକତ୍ର ହେବେ ।

ସୈୟଦ ମଜହର ଅଲ୍ଲୀ, ଗ୍ୱକର ମୁଣ୍ଡରେ ବଡ଼ କୁକୁଡ଼ା ଟୋକେଇଟିଏ ଲଦେଇ ପାଖେଇ ଆସିଲେ । ଡ୍ରାଇଫ୍ରୁଟ ଆଉ ତାଜା ଫଳ ଟୋକେଇ ନିଜେ ଧରିଥାଆନ୍ତି ।

ଦ୍ୱାରକା ପ୍ରସାଦ ଝାଡ୍ରୁ କାଢେଇ ବେଶ୍ ଦୂରକୁ ଯାଇ ମେମସାହବଙ୍କ ସାହାଲାରେ ପହଞ୍ଚି ବାହାରୁ କହିଲେ,

"ହଜୁର କିଏ ଜଣେ ଉପହାର ଡାଲା ନେଇ ଆସିଛନ୍ତି ।"

"ଫେରେଇ ଦିଅ" ଭିତରୁ ଶୁଭିଲା ।

କିଛି ସମୟ ପରେ ଦ୍ୱାରକା ପ୍ରସାଦ ପୁଣି ଫେରିଆସି କହିଲେ— "ମେମ୍ ସାହେବ, ସେ କହୁଛନ୍ତି କି... ।"

"ହଉ ହଉ... ତାଙ୍କୁ ଆମର ସଲାମ କହ ଆଉ ଭେଟି ଡାଲା ଫେରେଇ ଦିଅ ।"

ଦ୍ୱାରକା ପ୍ରସାଦ ଫେରିଆସି ମେମ୍ ସାହେବଙ୍କ କଥାର ପାଳିଆ ଧରିଦେଲେ—

"ଆଚ୍ଛା !" ସୈୟଦ ଅଜହର ଅଲ୍ଲୀ ତେଣିକି ଜିଦ୍ କଲେ ନାଇଁ ଆଉ ଗାଆଁ ଆଡ଼କୁ ଫେରିଗଲେ । ସେ ସୁତୀ ଅଚକନ ଉପରେ ମୋଟା କନାର ଉତ୍ତରୀୟ ପକେଇଥିଲେ ଆଉ କାନଟୋପି ଲଗେଇ ମୋଟା ଜୋତାରେ ହାତ ତିଆରି ମୋଜା ପିନ୍ଧି ଆସିଥିଲେ । ମୋଜାରୁ ଗୋଇଠି ଦିଶିଯାଉଥିଲା । ତାଙ୍କ ପଛେ ପଛେ ବଡ଼ କୁକୁଡ଼ା ଟୋକେଇ ମୁଣ୍ଡେଇ ଝୀଙ୍ଗାପାସୀ ଡେଙ୍ଗଁଲା ଛୋଟେଇଲା ପରି ଗ୍ୱଲିଥାଏ । ତାକୁ ଦେଖି ଶବ୍ଦରବ ମନରେ ଦୟାଭାବଟିଏ ଜାଗରିତ ହେଲା । ଦୁହେଁ ତା'ଆଖିରେ ଭାରି ଦୀନ ଭଳି ଦିଶିଲେ । ସେ ଟଙ୍କା ଉପରେ ପାଉଡ଼ର ଛିଞ୍ଚି 'ରାଜା ହରିଶ୍ଚନ୍ଦ୍ର' ଗୀତିନାଟ୍ୟର 'ଜିନିଷ' ଗାଇବା ଆରମ୍ଭ କରିଦେଲା—

'ହମ ମହଲନ କେ ବାସୀ ରେ ପଣ୍ଡିତ
କିତ ତକ ଦୂର ତୋରୀ କାସୀ...

ସୂର୍ଯ୍ୟକିରଣ ପ୍ରଖର ହେଲା । କେମ୍ପରେ ଗହଳଚହଳ ଆରମ୍ଭ ହୋଇଗଲା । ଆମ୍ବତୋଟାରେ ଦରବାର ବସିଗଲା ଯେମିତି । ଦୂର ଦୂର ଯାଏଁ ଖେତଗୁଡ଼ିକର ଆଡ଼ିପାଖିଆ ଘୋଡ଼ାଗାଡ଼ି, ବଳଦ ଗାଡ଼ି, ସାଇକଲ ସବୁ ଠିଆ ହୋଇଥିଲେ । କର୍ମଗ୍ୱରୀ, ଅର୍ଜିନବିସ, ମୁନସୀ, ଗ୍ୱଷୀ, ଜମିଦାର, ସାକ୍ଷୀ, ପକ୍ଷ ଗଛତଳମାନଙ୍କରେ ବସିଥିଲେ । ଦି'ଜଣ ଗଉଡ଼ ସବାରି ଉଠେଇ ଇଜଲାସ ଆଡ଼କୁ ଆସିଲେ । ସବାରୀ ଗଛ ତଳେ ଥୁଆ ହେଲା । ତା' ଭିତରେ ବସିଥିବା ମାଇପିଟି ଧୀରେ ଧୀରେ କାନ୍ଦିବା ଆରମ୍ଭ କରିଦେଲା । ମୋକଦ୍ଦମାଗୁଡ଼ିକର ଶୁଣାଣି ଆରମ୍ଭ ହେଲା । ଆଉ ମାଇକିନାଟି ତା'ର ବୟାନ ଦେଲା, ତା'ପରେ ପୁଣି କଇଁ କଇଁ କାନ୍ଦିବାକୁ ଲାଗିଲା ।

ଦି'ପହର ହେଲା । ଶିରୀଷ ଗଛଗୁଡ଼ିକର ଉହାଡ଼ରୁ ହାତୀଟିଏ ଆସୁଥିବା ଦେଖାଗଲା । ସେ ଝୁଲି ଝୁଲି କେମ୍ପ ପାଖକୁ ଆସିଲା । ମଝିରେ ଗୋଟାଏ ବଡ଼ ତମ୍ବୁ ପାଖରେ ଅଟକି

ଗ୍ରୁକର ଓହ୍ଲେଇ ପଡ଼ିଲା ଆଉ ଦ୍ୱାରକା ପ୍ରସାଦଙ୍କୁ ଡାକ ପକେଇଲା । ତା'ପରେ ଦ୍ୱାରକା ପ୍ରସାଦ ମେମ୍ ସାହେବଙ୍କ ସାହାଲାକୁ ଗଲେ ।

''ନବାବ ସମସଆରା ବେଗମ୍‌ଙ୍କର ହାତୀ ଆସିଛି, ଝିଅ ସାହିବା ଲାଗି ।''

''ଫେରେଇ ଦିଅ'' ମେମ୍ ସାହେବ ପହିଲାଥର ପରି ଜବାବ ଦେଲେ । ସେ ସେତେବେଳେ ପଛପଟେ ଆରାମ ଚଉକୀରେ ବସି ଏଲ୍ଲାବାଦ୍‌ରେ ଥିବା ପୁଅ ପାଖକୁ ଚିଠି ଲେଖୁଥିଲେ । ଛୋଟ ଝିଅଟି ଅନ୍ୟ ସାହାଲାରୁ ତୀର ଭଳି ଛୁଟି ଆସିଲା... 'ମମ୍ମୀ... ମମ୍ମୀ... ମମ୍ମୀ' ସେ ରଡ଼ି ପକେଇଲା, ''ମୁଁ ତ ଜମ୍ବୋ ଉପରେ ନିଶ୍ଚୟ ଚଢ଼ିବି । ମୁଁ ଜମ୍ବୋକୁ ପିଜୁଳି ଖୁଆଇବି... ମମ୍ମୀ !' ଏତିକି କହି ସେ ଧୂଳିରେ ଗଡ଼ିବା ଆରମ୍ଭ କରିଦେଲା ।

''ଆଚ୍ଛା, ଆଚ୍ଛା, ଯା' ଧୂଳିରେ ଗଡ଼ ନା'' ମେମ୍‌ସାହେବ୍ ବିରକ୍ତ ହୋଇ କହିଲେ ଆଉ ଚିଠି ଲେଖି ବସିଲେ ।

ଛୋଟ ଝିଅଟି ନଇଁପଡ଼ି ତା'ର ଲାଲ ଯୋତାର ଫିତା ବାନ୍ଧିଲା, ଆଉ କାଖ ହେବାକୁ ଦ୍ୱାରକା ପ୍ରସାଦଙ୍କ ଆଡ଼କୁ ହାତ ବଢ଼େଇ ଦେଲା । ଗ୍ରୁକର ମଦାର ବକ୍‌ଶ ଚଞ୍ଚଳ ଯାଇ ଫୁଲବାଲା ରେଶମୀ ଛତା ଆଣିଦେଲା । ମାହୁନ୍ତ ହାତୀକୁ ଆଣ୍ଠେଇଲାରୁ ଦ୍ୱାରକାପ୍ରସାଦ ଝିଅକୁ କୋଳରେ ଧରି ଆହୁଦା ଉପରକୁ ଚଢ଼ିଗଲେ । ବେଶ ଗର୍ବରେ ଆପଣାର ବଡ଼ ବଡ଼ ଧଳା ନିଶହଳକ ଉପରେ ହାତ ବୁଲେଇ ନେଲେ । ସେ କଲେକ୍ଟର ସାହେବଙ୍କ ଚପରାଶି, କ'ଣ ଥଙ୍ଗା ପଡ଼ିଛି ! ନବାବ ଶମସଆରା ବେଗମ୍‌ଙ୍କ ପିଆଦା ସେଥିରେ ବେଶ ପ୍ରଭାବିତ ହେଲା । ଘସରା ଜରିବାଲା ଝାଲର ଆଉ ଜାଲିକାମବାଲା ଆହୁଦାର ହାତୀ ଇଜଲାସ୍ ସାମନା ଦେଇ ପାର୍ବତୀପୁର ଗଡ଼ପଟକୁ ବଢ଼ି ଚାଲିଲା ।

ଅଦାଲତରେ ସବାରି ଭିତରେ ପର୍ଦ୍ଦାରେ ଥିବା ସେଇ ମହିଳାଙ୍କର ପ୍ରାର୍ଥନା ଜାରି ରହିଥିଲା । ସବାରୀ ପଛ ତିନିପଟେ ଛୋଟ ଛୋଟ ତମ୍ବୁ ପଡ଼ିଥାଏ । ତମ୍ବୁ ଭିତରେ ଗୋଟାଏ ଚଉଦ ପନ୍ଦର ବର୍ଷର ଝିଅ ଶାଗୁଆ ଛିଟର ଚିପା ପାଇଜାମା, ଗୋଲାପୀ ମଲମଲର ଓଢ଼ଣୀରେ ମୁଣ୍ଡ ଢାଙ୍କି ମାଟି ଉପରେ ବସିଥାଏ । ଗୋଟାଏ ହାତରେ ସବାରୀ ପରଦା ଧରିଥାଏ ଆଉ ଅନ୍ୟ ହାତରେ ମାଟି ଉପରେ ଗାର ଟାଣି ଚାଲିଥାଏ । କେତେବେଳେ କେମିତି ଶଂକିତ ଆଖିରେ ସେ ଏଣେତେଣେ ଅନଉଥାଏ । ବାହାରେ ଅଦାଲତ ଲାଗିଥିଲା । ତା' ନାଆଁର ବାରମ୍ବାର ଡାକରା ହେଉଥିଲା । ତମ୍ବୁ ଭିତରୁ ସେ ବାହାରକୁ ଦେଖିଲା । ସାମନା ଦେଇ ହାତୀ ଯାଉଥାଏ । ତା'ଉପରେ ଚକଚକ ସୁନେଲୀ କେଶବାଲୀ ଛୋଟ ଝିଅଟିଏ ସବାର ହୋଇଥାଏ । ଝିଅଟି ଭାଲୁ ଚମଡ଼ା ଭଳି ଲମ୍ବା ଲମ୍ବା ବାଳ ଥିବା କଳାକୋଟଟିଏ ପିନ୍ଧିଥାଏ । ତାକୁ କୋଳରେ ବସେଇ ଧଳା ଲମ୍ବା ନିଶବାଲା ବୁଢ଼ାଟିଏ ଫୁଲପକା ଛତା ଘୋଡ଼େଇ ଛାଇ କରିଥାଏ, ଯେମିତି ପରୀ କାହାଣୀରେ ଥାଏ । ସବାରୀ ପାଖରେ ବସିରହି ଆଶ୍ଚର୍ଯ୍ୟ ଆଖିରେ ଏ ଦୃଶ୍ୟ ଦେଖୁଥାଏ ଝିଅଟି । ଏପରିକି ହାତୀ ଆଖି ଆଗରୁ ଚାଲିଗଲା ଆଉ ସେ ଝିଅଟି ଓଦାମାଟି ଉପରେ ଛବି ଆଙ୍କିବା ଆରମ୍ଭ କରିଦେଲା ।

ସେ ହାତୀର ଛବି କଲା, ତା'ଉପରେ ଆହୁଦାର ଗାର ଟାଣିଲା ଆଉ ତା' ଉପରେ ମୁକୁଟ ପିନ୍ଧିଥିବା ରାଜକୁମାରୀ ବସେଇ ଦେଲା । ସେ ନିଜକୁ ନିଜେ କହିଲା— ସେ ରାଜକୁମାରୀ ମୁଁ ନିଜେ, ମୁଁ ବସନ୍ତୀ ବେଗମ୍ !

ମୁସ୍ମମାତ୍ ସୁରୈୟା ସୁଲତାନ୍ ଓରଫ ବସନ୍ତୀ ବେଗମ ନାବାଳିକା । ଅଦାଲତରେ ପୁଣିଥରେ ତା ନାଆଁରେ ଡାକରା ପଡୁଥିଲା । ସେ ଶଂକିଯାଇ ସବାରୀ ପରଦାକୁ ଆହୁରି ଜୋରରେ ଧରିନେଲା ।

ହାତୀ ଗାଆଁରୁ ବାହାରକୁ ବାହାରିଲା । ଲୋକବସତି ବାହାରେ ଶହ ଶହ ବର୍ଷ ପୁରୁଣା ଖାନ୍‌କାହ (ପୀର ଫକୀରଙ୍କର ସ୍ଥାନ) ଥିଲା । ତା'ର ଟିକିଏ ଆଗକୁ ବିରାଟ କୂଅ ଆଉ ତା'ଠୁଁ ଟିକିଏ ଆଗକୁ ମଖଦୁମଜାଦା ଶାହ ମୁନବ୍ବର ଅଲୀଙ୍କର ଘର । ହାତୀ ସେଇ ଘରର ପାଖଗଳି ଦେଇ ଗଲା । ଆହୁଦା ଉପରୁ ଛୋଟ ଝିଅକୁ ଘର ଭିତରର କଚ୍ଚା ଅଗଣା ଦେଖାଗଲା । ଅଗଣାରେ ଲମ୍ବବାଳ ଆଉ ଲମ୍ବ କଳା ଦାଢ଼ୀବାଲା ଜଣେ ବୟସ୍କ, ନାରଙ୍ଗ ରଙ୍ଗର ଆଲଖାଲୀ ପିନ୍ଧି ଖଟ ଉପରେ ବସି ଆକାଶକୁ ଅନେଇ ରହିଥିଲେ । ଉଦାସ ଚେହେରା ଓ ଛୋଟ ଛୋଟ ଦାଢ଼ୀବାଲା ଆଉ ଜଣେ ପ୍ରୌଢ଼ ମୋଢ଼ା ଉପରେ ବସିଥିଲେ । ପିଜୁଳିଗଛ ପଛକୁ ଲାଲରଙ୍ଗର ଚିପା ପାଇଜାମା ପିନ୍ଧି ଝିଅଟିଏ ତା'ର ଛୋଟ ଛୋଟ ହାତରେ ମସଲା ବାଟୁଥିଲା । ସେ ରୂପାର ମଇଳା ମଇଳା ଚୂଡ଼ି ପିନ୍ଧିଥିଲା । ହାତୀ ଆଗକୁ ବଢ଼ିଗଲା ।

ଖରା ଟାଣ ହେଲା । ଅଦାଲତ ଲଂଚ ଲାଗି ମୁଲତବୀ ହେଲା । ଲାଲା ହୁସୈନ୍ ବଖ୍ଶ ମୁନ୍‌ସୀ ଫାଇଲ ବନ୍ଦ କଲେ, ଯୋଉ ଫାଇଲରେ ମୁସ୍‌ସମାତ୍ ବୂଟା ବେଗମଙ୍କର ପ୍ରାର୍ଥନାପତ୍ର ଲାଗିଥିଲା ।

"ମୁଁ ମୁସ୍‌ସମାତ୍ ବୂଟା ବେଗମ, ଧର୍ମ ମୁସଲମାନ, ଜା-ସୈୟଦ, ସାକିନ ମୋହମ୍ମଦଗଂଜ, ତହସିଲ-ହିରୌନୀ. ସୈୟଦ୍ ଜବ୍‌ବାଦ ହୁସୈନ୍‌ଙ୍କର ବିଧବା ଓ ସ୍ୱତ୍ୱାଧିକାରିଣୀ ଅଟେ । ମୋହମ୍ମଦ ସାହବଙ୍କର ସୁପୁତ୍ରୀ ହଜରତ ଫାତିମାଙ୍କର ଆଶୀର୍ବାଦରୁ ସୁନ୍ଦର ରୂପ, ସଦଗୁଣ ଓ ସଦ୍‌ଚରିତ୍ରବତୀ ମୋର ଏକମାତ୍ର ଝିଅ ସୈୟଦ ସୁରୈୟା ସୁଲତାନ୍ ଓରଫ ବସନ୍ତୀ ବେଗମ ସାଙ୍ଗରେ ତିନିବର୍ଷ ତଳେ ନବାବ ସିକନ୍ଦର କୁଲୀ ଖାନ୍ ଓରଫ ନବାବ ଭୂରେ ବିବାହ କରିବେ ବୋଲି ଇଚ୍ଛାପ୍ରକାଶ କରିଥିଲେ; ମାତ୍ର ମୁଁ ସେ ପ୍ରସ୍ତାବ ସ୍ୱୀକାର କଲିନାହିଁ । କାରଣ ନବାବ ସାହେବଙ୍କର ଅନେକ ବିବାହିତା, ଅବିବାହିତା ପତ୍ନୀ ଅଛନ୍ତି ଏବଂ ସେ ନିଜେ ଜଣେ ପଁଷଠୀ ବର୍ଷ ବୟସର ଦୁରାଗ୍ରହୀ ତଥା ବିଳାସୀ ବ୍ୟକ୍ତି । କିଛିଦିନ ପରେ ୨୨ ଫେବୃୟାରୀ ୧୯୩୭ ଦିନ ରାତି ସ୍ୱରିଘଡ଼ି ବେଳକୁ କେତେଜଣ ସିପାହୀଙ୍କ ଦ୍ୱାରା ବସନ୍ତୀ ବେଗମକୁ ସେ ବଳପୂର୍ବକ ନେଇଗଲେ । ସେତେବେଳେ ସେ ସାଢ଼େ ତେର ବରଷର ଅବୋଧ ଝିଅ । ସେଇ ସରଳ ଓ ନିରୀହ ଝିଅକୁ ଦୁର୍ଗାକୁଣ୍ଡ ଗଡ଼କୁ ନେଇ ବନ୍ଦ କରି ରଖିନେଲେ । ସେତେବେଳଯାଏଁ ପାର୍ବତୀପୁରର ତାଲୁକଦାର ନବାବ ଶମ୍‌ସଆରା

ବେଗ୍ ମୋର ସମର୍ଥକ ଥିଲେ । ତା'ର କାରଣ ହେଲା— ସେ ପିଲାଦିନେ ମୋ'ଠାରୁ କୋରାନ୍ ଶରୀଫ ପଢ଼ିଥିଲେ । ମୁଁ ପାର୍ବତୀପୁର ଗଡ଼ରେ କୋରାନ୍ ଶରୀଫ ପଢ଼େଇବାକୁ ଅନେକ ଦିନ ଥିଲି । ଆଉ ମୋର ପତି, ଶେଷ ପର୍ଯ୍ୟନ୍ତ, ଦୃଷ୍ଟିଶକ୍ତି କମି ଯାଇଥିବା ସତ୍ତ୍ୱେ ଧାର୍ମିକ ବୈଠକୀରେ ଶୋକଗୀତ ପଢୁଥିଲେ । ତେଣୁ ବେଗମ୍ ସାହିବା ମୋ ପ୍ରତି ଦୃଷ୍ଟି ଦେଇ ନବାବ ଭୂରେଙ୍କୁ ଆଗୁଆ କରି ଫୌଜଦାରୀ ମୋକଦ୍ଦମା ଦାଏର କରିଦେଲେ, ଯାହା ଏ ପର୍ଯ୍ୟନ୍ତ ଚାଲିଛି । ତାଲୁକଦାରୀ ଓ ଅନ୍ୟାନ୍ୟ କାରଣ ହେତୁ ଶମ୍ସଆରା ବେଗମ ଓ ନବାବ ସାହବଙ୍କ ଭିତରେ ପିତୃପିତା ଅମଳରୁ ମୋକଦ୍ଦମା ଚାଲିଆସିଛି ।

କିଛି ଦିନ ପରେ ଅଧରାତିରେ ମୁଖାଧାରୀ ଡକାୟତମାନେ ଘରେ ପଶି ମୋର ଅସହାୟ; କିନ୍ତୁ ଯୋଗ୍ୟ ପୁଅକୁ ଗୁଳି ମାରି ଶହିଦ କରି ପକେଇଲେ ।

ତା'ର କିଛି ଦିନ ପରେ ହାକିମ ପ୍ରଗଣା ଅଦାଲତ ସାମନାରେ ନବାବ ଶମ୍ସଆରା ବେଗମଙ୍କର ସୁପୁତ୍ର ମିର୍ୟାଁ ନୌରୋଜ୍ ବୟାନ୍ ଦେଲେ ଯେ ତାଙ୍କର ମୁସ୍ସମାତ୍ ବସନ୍ତୀ ବେଗମ ସାଙ୍ଗରେ ବିବାହ ହୋଇଯାଇଛି । ସେ ନିଜେ ସେଇ ଝିଅର ଅବିଭାବକ । ସେଇ କାରଣରୁ ମୋକଦ୍ଦମାଟି ରହିଯାଇଛି, ଅସୁବିଧା ଓ ଝଗଡ଼ା ହେତୁ ଅଧିକ ଜଟିଳ ହୋଇଯାଇଛି । ମିଷ୍ଟର ରାମସରନ ଭାର୍ଗବ, ହାକିମ ପରଗନାଙ୍କ ଆଦେଶରେ ମୁସ୍ସମାତ୍ ବସନ୍ତୀ ବେଗମକୁ ପୁଲିସ ସହାୟତାରେ ଦୁର୍ଗାକୁଣ୍ଡ ଗଡ଼ରୁ ମୁକ୍ତ କରି ମୋ ଜିମା ଦିଆ ହେଇଛି; ମାତ୍ର ଏଇ ବୁଢ଼ୀ ଓ ଅସମର୍ଥ ସ୍ତ୍ରୀଲୋକଟିର ମିର୍ୟାଁ ନୌରୋଜଙ୍କର ମିଛ ଦାବିର ଆଇନ ଅନୁସାରେ ବିରୋଧ କରିବାର ଶକ୍ତି ନାହିଁ । ତେଣୁ ଅତି ଅସହାୟ, ବାଧ୍ୟ ଓ ଦରିଦ୍ର ଏଇ ବୃଦ୍ଧା ମହାନ୍ ଭାଗ୍ୟଶାଳୀ ନୌଶୋରବା ଭଳି ସଜ୍ଜନ ନ୍ୟାୟମୂର୍ତ୍ତି ଓ ଉଚ୍ଚକୋଟୀର ଗୌରବାଧିକାରୀ କଲେକ୍ଟର ସାହବ ବାହାଦୁରଙ୍କ ନିକଟରେ ପ୍ରାର୍ଥନା କରୁଛି ଯେ ଏସବୁ ଝଗଡ଼ା, ଷଡ଼ଯନ୍ତ୍ର ଓ ଗଣ୍ଡଗୋଳ ଆପଣଙ୍କର ଖାସ ଆଦେଶ ବଳରେ ବନ୍ଦ କରନ୍ତୁ । କୌଣସି ଅସମର୍ଥ, ଅସହାୟ ଓ ଅତ୍ୟାଚାରିତ ପ୍ରାଣୀର ସହାୟତାଠୁଁ ବଳି ଆଉ କୌଣସି ପୁଣ୍ୟ କାର୍ଯ୍ୟ ନାହିଁ । ଆପଣଙ୍କର ଏ କାର୍ଯ୍ୟ ଆପଣଙ୍କର ଜୀବନର ମହତ୍ ପୁଣ୍ୟ କାର୍ଯ୍ୟକୁ ଅଭିବୃଦ୍ଧ କରିବ ଓ ଆପଣଙ୍କର ମାନମର୍ଯ୍ୟାଦାକୁ ଅଧିକରୁ ଅଧିକ ଗୌରବଶାଳୀ କରିବ ।

ଅନ୍ୟକଥା ହେଲା, ମୁଁ ମୋହମ୍ମଦଗଂଜ ନିବାସୀ ଚାଷୀ ସୈୟଦ ମଜହର ଅଲ୍ଲୀଙ୍କୁ ସାକ୍ଷୀ ଦେଇପାରିବି । ସେ ନବାବ ଶମସ୍ଆରା ବେଗମଙ୍କର ପ୍ରଜା, ଭଲ ଆଉ ଇମାନଦାର ଲୋକ । ତାଙ୍କର ହୃଦୟ ଖୋଲା ଆଉ ପବିତ୍ର ।

ଖରା ସେତେବେଳେ ଓହ୍ଲେଇ ଅଗଣାକୁ ଆସି ସାରିଥିଲା । ସୈୟଦ ମଜହର ଅଲ୍ଲୀ ଖେତ ଆଡ଼ୁ ବୁଲିବାକି ଆସି ପୁଣି ସେଇ ମୋଡ଼ା ଉପରେ ବସି ଯାଇଥିଲେ । ତାଙ୍କର ବଡ଼ଭାଇ ଶାହ ମୁନବ୍ବର ଅଲୀ 'ମଦୀନା' ଖବର କାଗଜରେ ମୁହଁ ଢାଙ୍କି ଖଟ ଉପରେ ଗଡ଼ି ଥାଆନ୍ତି । ସୈୟଦ ମଜହର ଅଲୀଙ୍କର ପତ୍ନୀ ସାରାଦିନ ଲାଲ ମରିଚ ଖରାରେ ଶୁଖେଇଥିଲେ, ତା'ରି ଧାସରେ ସୈୟଦ ମଜହର ଅଲୀ ଦୁଇ ଚାରିଥର ଛିଙ୍କି ସାରିଥିଲେ ।

ଝାଁଗାପାସୀର ପତ୍ନୀ ଏରୁଣ୍ଡିବନ୍ଧରେ ବସି ମଂଜୁରୁନିସା ମୁଣ୍ଡରୁ ଉକୁଣୀ ବାଛୁଥିଲା । ମଜୁରୁନିସାର ଲାଲ ଚିପା ପାଇଜାମା ତଳି କାଦୁଅ ସରସର ହୋଇଥାଏ— ଯେ ବାରଣ୍ଡାତଳେ ଚିକିଟା ମାଟିରେ ଘର ତିଆରି କରୁଥିଲା ।

ଶାହ ମୁନବ୍‌ଦର ଅଲୀ ବ୍ୟସ୍ତ ହୋଇ ଉଠି ପଡ଼ିଲେ । 'ଭଗବାନ୍ ବଡ଼ଲୋକ !' ସେ ବଡ଼ ପାଟିରେ କହିଲେ । କୁକୁଡ଼ାଗୁଡ଼ିକ କୁଟର କୁଟର୍ ହେଉଥା'ନ୍ତି । ଅଗଣା ଦରଜା ଖଟଖଟ ହେଲା, ଆଉ ସୈୟଦ ଅଖତର ଅଲୀ ଭିତରକୁ ଆସି ଗଲେ ।

"ଭାଇ, ଫେରିଲ ତହସିଲରୁ ?" ସୈୟଦ ମଜହର ଅଲୀଙ୍କର ସ୍ତ୍ରୀ ପଚ୍ରିଲେ ।

"ଅସ୍ସଲାମଲେ-କୁମ୍ !" ଆଗନ୍ତୁକ ତାଙ୍କର ଦୁଇ ବଡ଼ଭାଇଙ୍କୁ ସାମାନ୍ୟ ବଡ଼ ପାଟିରେ ସମ୍ବୋଧିତ କଲେ ।

"ବାଲେ-କୁମ-ସଲାମ !' 'ମଙ୍ଗଳ ହେଉ' ସୈୟଦ ମଜହର ଅଲୀ କହିଲେ । ସୈୟଦ ଅଖତର ଅଲୀ ଅଗଣା କୋଣକୁ ଥୁଆ ହୋଇଥିବା କୁକୁଡ଼ା ଟୋକେଇଟି ଉପରକୁ ଆଖି ପକେଇଲେ ।

"ବେଗମସାହିବା ତାଲା ଫେରେଇ ଦେଲେ !" ସୈୟଦ ମଜହର ଅଲୀ କହିଲେ ।

"ପୂରା ଦଶଟଙ୍କା ଅଶର୍ଫୀ ଲାଲଠଉଁ ଧାରନେଇ ଏ ତାଲା ନେଇଯାଇଥିଲି, ତମ ଲାଗି !" ଭାଉଜ ତାଟି ଉପରୁ ମରିଚ ସାଉଁଟି ସାଉଁଟି ଅଭିଯୋଗ କରୁଥିଲେ ।

"ମୋ କାମ କଥା କ'ଣ ହେଲା ?' ଟିକିଏ ରାଗିଲା ଭଳି ପଚ୍ରିଲେ ସୈୟଦ ଅଖତର ଅଲୀ ।

'ମୁଁ ଠାକୁର ସାହବଙ୍କର ସୁପାରିଶ କାଗଜ ନେଇ ତାରିଖ ପହିଲାରୁ ଯାଇ କଲେକଟର ସାହେବଙ୍କୁ ଭେଟିଥିଲି । ସେ କହିଲେ, ସୁପାରିଶର କୌଣସି ଦରକାର ନାହିଁ । ଦରଖାସ୍ତ ଲକ୍ଷ୍ନୌ ପଠେଇ ଦିଅନ୍ତୁ । ମୁଁ ଜନସନ ସାହେବଙ୍କ ସାଙ୍ଗରେ କଥା ହେବି ।"

"ଜନ୍‌ସନ ସାହେବ ସଂଧ୍ୟାରେ ପହଞ୍ଚିବେ ଆଉ କାଲି ସକାଳେ ଶିକାର ପାଇଁ ଚ୍ଲିଯିବେ । ମୁଁ କେମ୍ପରୁ ସବୁକଥା ବୁଝି ଆସିଛି । ଦି' ଟଙ୍କା ଲାଲା ହୁସୈନ ବଖ୍‌ଶଙ୍କୁ ଭେଟି ଦେଇ ଆସିଛି ।"

"ମେମ୍ ସାହେବ ଇଂରେଜ ନା ?" ସୈୟଦ ମଜହର ଅଲୀ ପଚ୍ରିଲେ ।

'ତାଙ୍କର ଜେଜେବାପା ଇଂରେଜ ଥିଲେ । ମିର୍ଜାପୁରରେ ନୀଳ ଗ୍ରଷ (ଗୋଟାଏ ଗଛ, ଯା'ର ଫଳରୁ ରଙ୍ଗ ବାହାରେ— କପଡ଼ା ରଙ୍ଗ କରାଯାଏ) କରୁଥିଲେ । ନବାବ ସାହବ ବିକ୍ରମପୁରର ଝିଅ ବାହା ହେଇଥିଲେ । କଲେକ୍ଟର ସାହବଙ୍କର ବିହାରର କୋଉ ଏକ ସଂବୃଦ୍ଧ ପରିବାର ସାଙ୍ଗରେ ସଂପର୍କ ଅଛି । ମେମ୍ ସାହେବଙ୍କୁ ମାଆଘରୁ ଜମିଦାରୀ ମିଳିଛି । ଏଲହାବାଦ ଓ ମସୁରୀରେ କୋଠି ଅଛି, ଦୁଇଟି ପୁଅ !" ସୈୟଦ ଅଖତର ଅଲୀ ଉତ୍ତରଦେଲେ ।

''ଈଶ୍ୱରଙ୍କର ଦୟା । ସେ ପବିତ୍ର ପାଳକ କେତେକଙ୍କୁ ସବୁପ୍ରକାର ସୁଖ ଦିଏ ।' ଭାଉଜ କୁଲାରେ ହରଡ଼ଡାଲି ପାଛୋଡ଼ି ଦେଉଁ ଦେଉଁ ବେଶ୍ ସନ୍ତୋଷରେ କହିଲେ । ତା'ପରେ ମୌନତା ଘେରିଗଲା ।

''ଅଲ୍ଲାହ ତାର ପ୍ରେମୀକୁ ବେଶ ଲମ୍ବା ଐଶ୍ୱର୍ଯ୍ୟ ଦେଇଥାଏ, ଧୈର୍ଯ୍ୟର ଐଶ୍ୱର୍ଯ୍ୟ ।'' ଶାହ ମୁନବ୍ବର ଅଲ୍ଲୀ ଅଗ୍ନେନଙ୍କ କହିଲେ, ଆଉ ଉଠି ବାହାରକୁ ଚାଲିଗଲେ । ନିର୍ଜନ ଗଳି ଦେଇ ଦରଗାହର ବାଡ଼ ଉପରେ ବସିଗଲେ ।

''ଭାଇ ସାହେବ ତମ ପାଇଁ ଏତେ ପରିଶ୍ରମ କଲେ, କିଛି ହେଲା ନାହିଁ !'' ସୈୟଦ ମଜହର ଅଲ୍ଲୀ ଧୀରେ ଧୀରେ କହିଲେ, ''ଗଲା ଛଅ ବର୍ଷଧରି ଗୋମତୀ କୂଳରେ କୁଡ଼ିଆ କରି ପଡ଼ି ରହିବାକୁ ହେଲା । ବେଶ ଥଣ୍ଡା, ନିମୋନିଆ ହୋଇଗଲା... ମଂଜୁରୀୟା, ହୁକ୍କା ନେଇ ଆସିଲୁ ଝିଅ !'' ସେ ଝିଅକୁ ଡାକି କହିଲେ । ସେ ହୁକ୍କା ସଜିଲ କରି ଆଣି ବାବା ଆଗରେ ଥୋଇଦେଲା । ସୈୟଦ ମଜହର ଅଲ୍ଲୀ, ଯେ ବଡ଼ଭାଇଙ୍କ ସାମନାରେ ହୁକ୍କା ଖାଆନ୍ତି ନାହିଁ, କଳେ ଟାଣି କହି ବସିଲେ— ''ମୁଁ ବହୁତ କିଛି ହାତ, ଗୋଡ଼ ଧରି ଆସିଛି । ଆଜିକାଲି 'ବେତାଳ'ଙ୍କୁ କାବୁ କରି ପାରିବାର ସୂତ୍ର ଉପରେ ଅମଳ କରୁଛି । ତୋ ଲାଗି ମୁଁ କଲେକ୍‌ଟର୍ ସାହେବଙ୍କୁ କହିଲି— ମୋର ଛୋଟଭାଇ ଓକିଲ, ହେଲେ କପାଳ ମନ୍ଦ । ଜିଲ୍ଲା କଚେରୀରେ ଓକିଲାତି କଲା, ତା'ର ସେଇଠି ଚଳିଲା ନାହିଁ । କାନପୁରରେ ପ୍ରାକଟିସ୍ ଆରମ୍ଭ କଲା, ଉପାସ ରହିବା ଅବସ୍ଥା ଆସିଗଲା । ତାର ପିଲାମାନଙ୍କୁ ଭଲ ପଢ଼େଇବାକୁ ଚାହୁଁଥିଲା । ଶୁଣିଲି ଲକ୍ଷ୍ନୌରେ ସିକତ୍ତର ସାହେବଙ୍କ ଦପ୍ତରରେ କ'ଣ ଗୋଟାଏ ଚାକରି ଖାଲି ଅଛି । ଯଦି ହଜୁର ଦୟାକରି ସୁପାରିଶ କରିଦିଅନ୍ତେ... । ଆଉ ସେ ଉତ୍ତର ଦେଲେ— ସୈୟଦ ସାହେବ, ମୁଁ କି ଲୋକରେ ଗଣା । ଆପଣ ଈଶ୍ୱରଙ୍କ ଉପରେ ଭରସା ରଖନ୍ତୁ, ସେ ବିଳମ୍ବରେ ହେଉ ପଛକେ ସବୁରି ଶୁଣନ୍ତି ।

''ଏଥର ମୁଁ ତେହରାତଜୀ (ଇସ୍ଲାମୀ ଦ୍ୱିତୀୟ ମାସ । ତେଜି ମଧ୍ୟ କହନ୍ତି) ସନ୍ଦୀଲା ଯିବି ଆଉ ଶାହ ମଦାରଙ୍କ ମଜାରରେ ଚାଦର ଚଢ଼େଇ ଆସିବି; ତେବେ ଯାଇଁ ତାକୁ ଚାକିରି ମିଳିବ ।'' ଭାଉଜ କୁଲାକୁ କାଚ କଣ୍ଟାରେ ଟାଙ୍ଗି ଦେଉ ଦେଉ କହିଲେ ।

ସୈୟଦ ଅଖତର ଅଲୀ ବିରକ୍ତ ହେଲା ଭଳି ଭାଉଜଙ୍କୁ ଅନେଇଲେ ଆଉ ସୁରେଇ ଉପରକୁ ଆଖି ଫେରାଇ ନେଲେ । ଭାଉଜ ଉଠିଆସି ଚକଚକିଆ ମୁରାଦାବାଦୀ ଗିନାରେ ସୁରେଇର ବରଫ ଭଳି ଥଣ୍ଡା ପାଣି ଢାଳି ଆଣି ଦିଅରକୁ ବଢ଼େଇ ଦେଲେ । ସେ ଦିଅରକୁ ପୁଅଭଳି ସ୍ନେହ କରୁଥିଲେ ।

ସୈୟଦ ମଜହର ଅଲୀ ଦି'ପରସ୍ତିଆ ଟୋପି ଲଗେଇ କଠଉ କୁଦି ଅସ୍ରନମାଜ ପାଇଁ ମସ୍‌ଜିଦକୁ ଚାଲିଗଲେ । ସୈୟଦ ଅଖତର ଅଲୀ ମଦୀନା ଖବର କାଗଜ ଉଠେଇ ହୁକ୍‌କାର ନଳ ନିଜ ପଟକୁ ବୁଲେଇ ନେଲେ, କାରଣ ସିଏ ବି ବଡ଼ଭାଇଙ୍କ ସାମନାରେ ହୁକ୍କା ଟାଣୁ ନଥିଲେ ।

ବାହାରେ କୂଅ ପାଖରେ ନିମଗଛ ତଳେ ବାଦ ପଡ଼ିଥିଲା, ଓକାୟତଙ୍କ ସାଙ୍ଗରେ ମିଶିଥିବା ନବାବ ଭୂରେର ପୁତୁରା ମୁନ୍ନା ଖାନ୍ ବସ୍ତିର କେତେଜଣ ବାଜେ ପିଲାଙ୍କ ସାଙ୍ଗରେ ପଶା ଖେଳୁଥିଲା ଓ କାଠି ପିଙ୍ଗିଲା ବେଳକୁ ବରାବର ଜମଶେଦକୁ ଚିଡ଼େଇ ଚିଡ଼େଇ କହୁଥାଏ ।

ମୁର୍ଗାନେ ଚମନ ଦେତେହେଁ ଜା ଝୀଲ ମେ ଅଣ୍ଡେ
ମୁଖିତାର ଲୋଗ ଦେତେ ହେଁ ତାତୀଲ ମେ ଅଣ୍ଡେ ।

(ଆଇନ ଅଦାଲତରେ କାମ କରୁଥିବା ଲୋକେ ଛୁଟି ଦିନରେ ଅଣ୍ଡା ଦିଅନ୍ତି, ଯେମିତି କୁକୁଡ଼ା ହ୍ରଦରେ ଦିଏ— ଏହା ପରିହାସବ୍ୟଞ୍ଜକ)

ଜମଶେଦ ଅଲୀ ଗୋଟାଏ ପଟେ ଖୁଟୁମୁଟୁ ହୋଇ ବସି ମନ ନ ଥାଇ ଖେଳୁଥିଲା । ଯେତେବେଳେ ମୁନ୍ନ ଖାନ୍ ତା ବାପର ଉପାର୍ଜନ ଅକ୍ଷମତା ନେଇ ତିନିଚାରିଥର କହି ତାକୁ ଆଘାତ କଲା, ସେ ଦୁଃଖେ ଓ କ୍ରୋଧରେ କଷିକରି ମୁନ୍ନନକୁ ଏକ ଚକଟଣା ଲଗେଇ ପଶାପାଲି ଓଲଟେଇ ଦେଲା ଆଉ କୂଅର ନାଳ ଡେଇଁ ଜୋର ଜୋର ଚାଲି ଖାନକାହ ପଟକୁ ଚାଲିଗଲା ।

ସେ ଭଙ୍ଗା ଉଜୁଡ଼ା ମାଟିଗଦା ପଛରେ ଲୁଚିଲା ଭଳି ରହି ଆଙ୍ଗୁଠିରେ ଝରି ଆସୁଥିବା ଲୁହ ପୋଛିନେଲା । ହେନ୍ତାଳ ବଣ ପଛକୁ କବରଖାନା ଥିଲା । ସେଇଠି ଅନେକ କପାଗଛ ଥିଲେ ଆଉ ଏଣେତେଣେ ଉଡ଼ି ଧଳା ଧଳା କପାଫୁଲ ବିଛେଇ ହୋଇ ପଡ଼ିଥିଲା । କବରଗୁଡ଼ିକର ଚାରିପଟେ ଉଚ୍ଚା ଉଚ୍ଚା ଘାସ, ଅନାବନା କଣ୍ଟାଗଛ, ନାଗଫେଣୀ, ଅରଖ, ଛୋଟ ଛୋଟ ଗହୀର ଭେଦିଲା ଗାତ, କଣ୍ଟାବାବୁଲି ଗଛ, ମାଟି ଗଦା, ସାପ ଗାତ, ଚୂନ ପୁତେଇ ହେଇଥିବା କବର, ମାଟି କବର, ଦୂରକୁ ଗୋଟାଏ କୋଣକୁ ଶିରୀଷ ଗଛତଳେ ଦରଗାହରେ ଝାଡୁ ଦେବା ଓ ଗୋରକନ (କବର ଖୋଳିବା)ଙ୍କର ମାଟି ଘର ଥିଲା । ଗୋରକନର ସ୍ତ୍ରୀ ରାତି ରୋଷେଇ ଲାଗି ଚୂଲି ଲଗେଇ ସାରିଥାଏ । କୁହୁଡ଼ି ସାଙ୍ଗରେ ଧୂଆଁ ଉପରକୁ ଉଠୁଥାଏ । ଗୋଟାଏ କୋଣକୁ ତିନି ଚାରିଟା ଭଙ୍ଗା ମାଠିଆ ପଡ଼ିଥାଏ । ଗୋଟାଏ କବର ଉପରେ କିଏ ଜଣେ ଦୀପଟିଏ ଜାଳି ଦେଇଥାଏ । ତା'ରି ପାସରେ କତଓ୍ୱା (ମୃତବ୍ୟକ୍ତିର ପରିଚୟ ଫଳକ) କଳା ପଡ଼ି ଯାଇଥାଏ । ସଡ଼କପଟକୁ ଆଡ଼ି ତଳେ ତଳେ ତା ମନକୁ ମନ ଉଠିଥିବା ଚମେଲୀ ବଣ ବେଶ ଲମ୍ବି ରହିଥିଲା । ଦୁଇଟି ଛେଳି ଚରାଳି ଝିଅ ସେଇବାଟରେ ଘରବାହୁଡ଼ା ଛେଳି ନେଇ ଯାଉଥିଲେ । ସେଥିରୁ ଗୋଟେ ଚମେଲୀ ବଣ ଭିତରେ ନୂଆ ନୂଆ କବର ଦେଖି କହିଲା— "ଏ କବର ସଧବାଙ୍କର । ସେଇଥିଲାଗି ନା ରାତି ହେଲେ ଚମେଲୀ ଭାରି ମହକୁଛି !" ସଂଧ୍ୟାର ନିର୍ଜନତାରେ ଥଣ୍ଡାପବନ କବର ଉପରକୁ ନଇଁ ଆସିଥିବା କୋଳି ଗଛର ଶାଖାକୁ ସରର୍ ସରର୍ କରି ଚାଲିଥିଲା ।

ଜମଶେଦକୁ ଡର ମାଡ଼ିଲା । ସେ ଚପଲ ଛିଆଡ଼ି ପାଦତଳୁ ଗୋଡ଼ିଟିଏ ବାହାର କରି ଢେଲା ଢେଲା ମାଟି ଇଟା ଡେଇଁ ଖେତପଟକୁ ଗ୍ଲିଗଲା । ବରଷା ହବ ହବ ଭଳି ଲାଗୁଥାଏ । ଆକାଶରେ ମେଘ ଘୋଟି ରହିଥାଏ । ଜମଶେଦ କାଖ ତଳେ ହାତ ଯାକି ସୀ-ସୀ କରିକରି ଆଡ଼ି ଆଡ଼ିରେ ଅନେକ ବେଳଯାଏଁ ବୁଲିଲା । ହାତୀ ପାର୍ବତୀପୁର ପଟୁ ଫେରି ଆସୁଥିଲା । ପୋଖରୀ ହୁଡ଼ାରେ ଡିମିରି ଗଛତଳେ ଠିଆ ହୋଇ ବେଶ ମଉଜରେ ହାତୀ କି ଅନେଇ ରହିଥାଏ ଜମଶେଦ । ଆଉ ସେ ପାଖେଇ ଆସିଲା ପରେ ତା' ପଛେ ପଛେ ଗ୍ଲିବା ଆରମ୍ଭ କରିଦେଲା ।

ଛୋଟ ଝିଅ ଆହୁଦାରେ ବସି ଦ୍ୱାରକା ପ୍ରସାଦଙ୍କଠୁଁ ନଳଦମୟନ୍ତୀ କଥା ଶୁଣି ଶୁଣି ଏତେ ଭୋଳ ହୋଇଯାଇଥିଲା ଯେ ତା'ର ଲାଲଛତା କେତେବେଳେ ଖସିଗଲା ଆଉ ହାତୀ ତା ବାଟରେ ଗ୍ଲିଗଲା ।

ଜମଶେଦ ରୂପା ମୁଠିଲଗା ରଙ୍ଗିନ ଫୁଲପକା ରେଶମୀ ଛତା ଗୋଟେଇ ନେଲା । ଆଉ ତାକୁ ଓଲଟ-ପାଲଟ କରି ଦେଖିବାକୁ ଲାଗିଲା । ସେ ମାହୁନ୍ତକୁ ଡାକିଲା, ସେତେବେଳ ଯାଏ ହାତୀ ବଡ଼ିଆଳ ବଣ ଆଗକୁ ବଢ଼ି ସାରିଥାଏ । ସେ ଛତା ସାଙ୍ଗରେ ନେଇ ଘରକୁ ଗ୍ଲି ଆସିଲା । ଅଗଣାର ଦରଜା ଭିତରପଟୁ ବନ୍ଦ ଥିଲା । ସେ ଛତାଟିକୁ ବୈଠକ ଘରର ଗୋଟାଏ କ'ଣକୁ ଡେରି ଦେଲା । ପଛପଟକୁ ବୁଲି ଆସି ଚପଲ ଖୋଲି, ଧୂଳି ଝାଡ଼ି କୁଣ୍ଡାକୁଣ୍ଡରେ ଚଢ଼ି ଗୋଟାଏ ପାଦ କାନ୍ଥ ଉପରେ ସମ୍ଭାଳି ଢେରା ଦେଇ ଅଗଣାକୁ କୁଦି ଆସିଲା ।

ତା'ର ତିନୋଟି ଯାକ ଉଦାସ ଚେହେରାର ଗୁରୁଜନ— ତା'ର ବଡ଼ବାପା, କାକା ଆଉ ବାପା ଓଳିତଳେ ପଟାଖଟ ଉପରେ ସେଇଭଳି ମୁଣ୍ଡ ନୁଏଇଁ ବସିଥିଲେ । ଖୁଡ଼ୀ ଡାଲି ବଘାରି ଦେଉଥିଲେ । କକେଇ ଝିଅ ମଂଜୁରୁନିସା ଅକାରଣ ନାଚିକୁଦି ବୁଲୁଥାଏ ଆଉ ଏଡ଼େ ପାଟିରେ ଗୀତ ବୋଲୁଥାଏ ।

ଡଣ୍ଡା ହିରାଇନ ଗୁଲ୍ଲୀ ରୋବତ ହୈ
ଡଣ୍ଡେ କୀ ମାଁ ରୋଟୀ ପୋବତ ହୈ ।

ସେତିକିବେଳକୁ ଖୁଡ଼ୀ ରୋଷେଇ ଘରୁ ବାହାରି ଆସିଲେ । ତା'ର ହାତ ଧରି ପାଖକୁ ଟାଣିନେଲେ ଆଉ ଟାଣ କରି ଚଟକଣାଟିଏ ବସେଇ ଦେଲେ, "ଯେତେବେଳେ ଦେଖ, ସେତେବେଳେ ଖେଳ । ଏଡ଼େଟେ ହେଲାଣି, ଡେଉଁଛି କେମିତି ଦେଖ । ଯା' ବାବାକୁ ପାଣି ଦେ !"

ମଂଜୁରନିସା ଭେଁ ଭେଁ ହେଇ କାନ୍ଦିବାକୁ ଲାଗିଲା । ଭରସା ପାଇବ ବୋଲି ବାହୁ ମେଲେଇ କକେଇ ପୁଅ ଭାଇ ପାଖକୁ ଦଉଡ଼ିଲା, ଯେ ସେଇଲାଗେ କାନ୍ଥଡେଇଁ ଅଗଣାକୁ ଆସିଥିଲା । ଜମଶେଦ ବେପରୁଆ ଭଙ୍ଗୀରେ କାନ୍ଥ ଉପରୁ ତା'ର ଚପଲହଳକ ନେଇ ଆସି ତାକୁ ଧରେଇ ଦେଲା ।

''ଯା, ଯାକୁ ନେଇ କୋଠରି ଭିତରେ ଥୋଇ ଆସିବୁ ।'' ସେ ଝିଅକୁ କହିଲା । ମଂଜୁରୁନ୍ନିସା ତୁରନ୍ତ କାନ୍ଦଣା ବନ୍ଦକରି ଚପଲହଲକ କୁଣ୍ଢେଇ ଧରି ଗ୍ଲିଲା, ଯେମିତି ତା'ର ସବୁଠୁଁ ସୁନ୍ଦର ଆଉ ଭଲ କଣ୍ଢେଇ । ଭିତରକୁ ଗ୍ଲିଗଲା । ଜମଶେଦ ମୋଡ଼ା ଟାଣି ସେଇ ବୁଢ଼ା ବୁଢ଼ାଙ୍କ ପାଖରେ ବସିଗଲା । ଝାଂଗାପାସୀର ପତ୍ନୀ ଗୁହାଳରୁ ଗାଈମାନଙ୍କୁ ଖୋଲି କୁଣ୍ଡା କୁଣ୍ଡ ପାଖକୁ ନେଇ ଯାଉଥାଏ । ବାହାରେ ଅନ୍ୟ ଘରମାନଙ୍କରେ ଆଲୁଅ ଜଳିବା ଆରମ୍ଭ ହୋଇଯାଇଥାଏ । ସୈୟଦ ମଜହର ଅଲୀଙ୍କର ପତ୍ନୀ ପରଛିକୁ ଆସି କନାପରଦା ପକେଇ ଦେଲେ । ସଂଧ୍ୟା ଅଜାନ ହେଲା ଓ ଧୀରେ ଧୀରେ ଅନ୍ଧାର ଘେରି ଆସିଲା ।

ଶବ୍‌ବର ମଶାଲଚୀ ସବୁ ତମ୍ବୁକୁ ଯାଇ ଗେସ ହାଣ୍ଡି, ଲେମ୍ପ ଆଉ ଲଣ୍ଠନସବୁ ଏକାଠି କରି ସବୁକୁ ଆଣି କିଚନ୍‌ର ଶେଡ଼ରେ ଧାଡ଼ିକରି ରଖିଲା । ମଦାର ବଖ୍‌ଶ ଆସି ସେଇ 'ଧାଡ଼ି' ଆଗରେ ଚକାପକେଇ ବସିଗଲେ । ସେ କନାରେ ଲଣ୍ଠନ ଉପର କନା ଆଉ କାଚ ସଫା କରି ବସିଲେ । ଛୋଟ ଝିଅ ସେପଟୁ ନାଚି ଖେଳି ଆସି ସେଇ ପାଖରେ ବସିପଡ଼ି ବେଶ୍‌ ଆଗ୍ରହରେ ସେ କାମ ନିରେଖି ବସିଲା, ତାମଶା ଭଳି । ତାଙ୍କୁ ରୋଜ ସନ୍ଧ୍ୟାରେ ଏ ତାମଶା ଦେଖିବାକୁ ଭଲଲାଗେ ।

ଉପର ଚିମନୀ ସବୁ ସଫା କରିନେବା ପରେ ମଦାର ବଖ୍‌ଶ ବତି ଜାଳିବା ଆରମ୍ଭ କରିଦେଲେ, ଆଉ ସବୁ ସମୟ ଭଳି ପ୍ରଥମ ଲେମ୍ପଟି ଜାଳିବା ପରେ ଧୀରେ ଧୀରେ କହିଲେ—

ଚିରାଗେ ରୋଶନ ମୁରାଦ ହାସିଲ ସଲାତୋ— ସଲାତୋ
ସଲାମ-ବାଲେ-କୁମ ୟା ମୁନକୀର ନକୀର
ଦିଲ ମେରା ଇମାନ୍ କର ମେରା ମକାନ ।

(ହେ ମନକୀର ନକୀର ଦୀପ ଜଳୁଥାଉ ଓ ମନ ବାଞ୍ଛିତ ମିଳୁ । ତୁମ ଉପରେ ଅଲ୍ଲାହଙ୍କର କୃପା ଥାଉ ଏବଂ ତୁମେ ତାଙ୍କର ଦୟାର ପାତ୍ର ହୋଇ ରହିଥାଅ ।)

'ମଦାରବଖ୍‌ଶ ତମ ଘର କବରରେ କାହିଁକି ହେବ ?' ଛୋଟ ଝିଅ ପୁଣି ସେଇ ପ୍ରଶ୍ନଟି ଆଶ୍ଚର୍ଯ୍ୟ ହୋଇ ପଗ୍ଚରିଲା ।

'ଶବ୍‌ବୀର, ବୁଲାକନ୍‌କୁ ପଠାଅ । ପୋଡ଼ାକପାଳୀ, ଏ ଯାଏଁ ଇସ୍ତ୍ରୀ ଗରମ କଲା ନାଇଁ ।' ଦୂରର ତମ୍ବୁରୁ ମେମ୍ ସାହେବଙ୍କ ପାଟି ଶୁଭିଲା । ଛୋଟି ଝିଅକୁ ଇସ୍ତ୍ରୀର ତାମଶା ବି ଭଲଲାଗେ । ସେ ତୀର ଭଳି ସେଠାକୁ ଛୁଟି ଗଲେ । 'ମାମା... ମାମା'... ମାମା.. ବୁଲାକନ୍ ପୋଡ଼ାମୁହିଁ କପାଳୀ କେମିତି ?' ସେ ପଗ୍ଚରିଲା—

'ଯା, ପଳା ଏଠୁ ।'

'ନା, କୁହ ନା ମାମା !'

'ହଁ ହଁ ସେ ପୋଡ଼ାକପାଳୀ !' ମେମ୍ ସାହେବ ବିରକ୍ତ ହୋଇ କହିଲେ । ସେ କିନ୍ତୁ

ସେତେବେଳେ ଦ୍ୱାରକା ପ୍ରସାଦଙ୍କୁ କହୁଥିଲେ— 'ମା ବାପକୁ ଖାଇଲା, ମିୟାଁ ତାର ଅନ୍ୟ ମାଇକିନା କଲା, ଘର ଭାଗ ଭାଗ ହୋଇଗଲା । ସିଏ ବି କରିବ କ'ଣ ? ସବୁ କର୍ମଫଳ ।'

'ମାମା, ମାମା କର୍ମଫଳ କ'ଣ ?'

'ଝିଅ ସ୍ୱାଲନ୍ତୁ, ଆପଣଙ୍କୁ କମିଶନର ସାହେବ ଖୋଜୁଛନ୍ତି ।' ଆଉଜଣେ ଚପରାସୀ ଭିତରକୁ ଆସି କହିଲା । ସେ ସେଇଭଳି ତୀର ଭଳି ବାହାରକୁ ଛୁଟିଗଲେ ।

କେମ୍ପରେ ସେଦିନ ରାତିରେ ବହୁତ ବଡ଼ ଆୟୋଜନ ହୋଇଥିଲା । ସ୍ୱରିପଟେ ଗେସ୍ ହାଣ୍ଡି ଜଳା ଯାଇଥିଲା । ଆଜି ଛୋଟଝିଅଙ୍କୁ ବି ବଡ଼ମାନଙ୍କ ସାଙ୍ଗରେ ଖାଇବାର ଅନୁମତି ମିଳିଥିଲା । ଖାଇବାବେଳେ ସେ ଟାଙ୍କର ଡେଙ୍ଗା ଚଉକିରେ ବସି 'ଅଙ୍କଲ ଜନ୍‌ସନ୍'ଙ୍କୁ ଜଙ୍ଘୋରେ ଚଢ଼ିବା, ପାର୍ବତୀପୁର ଗଡ଼ରେ ପୋଷାହରିଣ ଓ ସମ୍ବରମାନଙ୍କର କାହାଣୀ ଶୁଣଉଥିଲେ । ବୟସ ତୁଳନାରେ ତାଙ୍କର ଉଚ୍ଚତା ବେଶ୍ କମ୍ ଥିଲା । ତେଣୁ ସେ ଡେଙ୍ଗା ଚଉକି ଉପରେ ବସିଲେ । ମେଜର ଉଚ୍ଚତା ସାଙ୍ଗରେ ମେଳ ହେଉଥିଲା । ମେଜର ଗୋଟାଏ କୋଣକୁ ମେମ୍ ସାହେବ ସୂରତର ରୂପା ଜରି ତିଆରି ପାରସୀ ଧଡ଼ିର ଗହମ ରଙ୍ଗର ଶାଢ଼ୀ ଉପରେ 'ହ୍ୱାଇଟ୍‌ୱେଜ' କଲିକତାରୁ କିଣା ହୋଇଥିବା ଫର୍‌କୋଟ ପିନ୍ଧି ରୋଷ୍ଟ କଟାରେ ବ୍ୟସ୍ତ ଥିଲେ । ସୁନେଲୀ ଚମକ ଓ ଖଇର ରଙ୍ଗର ବବ୍ ବାଳ ସେତେବେଳର ଫେଶନ୍ ମୁତାବକ ତାଙ୍କର ମଥା ଓ କାନ ଉପରକୁ ଝୁଲି ଆସିଥିଲା । ସେ କାନରେ ଇଂରେଜୀ ଗଢ଼ଣର ଫୁଲ ଲଗେଇଥିଲେ, ଯୋଉଥିରୁ ସୁନା ଚେନ୍‌ର ଶେଷକୁ ଦୁଇଟି ବଡ଼ ବଡ଼ ମୋତି ଲାଗିଥିଲା । ଯେତେବେଳେ ମେମ୍ ସାହେବ କଥା ହେଉଥିଲେ, ସେତେବେଳେ ଘଡ଼ିର ପେଣ୍ଡୁଲମ ଭଳି ମୋତିଯୋଡ଼ିକ ଦୋହଲି ଯାଉଥିଲା । ମେମ୍ ସାହେବ ଯଦିଓ ଇଂରେଜ ଥିଲେ, ତାଙ୍କୁ କାମଚଳା ଇଂରେଜୀ ଜଣାଥିଲା । ବିବାହ ପୂର୍ବରୁ ସେ ମା'ଘରର ପର୍ଦ୍ଦା ଆଉ କଡ଼ା କଟକଣାରେ ବଢ଼ିଥିଲେ; ତେବେ ତାଙ୍କର ଗୋରା ରଙ୍ଗ ଓ ବିଲାତୀ ଗଢ଼ଣ ଲାଗି ସ୍ୱକରବାକର ତାଙ୍କୁ ବେଗମସାହିବା ନ କହି ମେମ୍ ସାହେବ କହୁଥିଲେ ।

ମେଜ ତଳେ ଉମ୍ଭେଇ ଥୁଆ ହୋଇଥିଲା । ପୁଆଳ ଉପରେ ବିଛା ହୋଇଥିବା ଦରି ଉପରେ ପ୍ଲେଟ ଉଠେଇ ସ୍ୱକରବାକର ପାଦ ଚିପି ଚିପି ଏଣେତେଣେ ଯିବାଆସିବା କରୁଥିଲେ । ମେମ୍ ସାହେବ ଜନ୍‌ସନ୍ ସାହେବଙ୍କୁ ବସନ୍ତୀ ବେଗମକୁ ଉଠେଇ ନିଆହୋଇଥିବା କାହାଣୀ ଶୁଣଉଥିଲେ । ଜନ୍‌ସନ୍ ସାହେବ ବେଶ୍ ସୁନ୍ଦର ଉର୍ଦ୍ଦୁ କହିପାରୁଥିଲେ ।

'ତେବେ ନବାବ ଭୂରେ ଜଣେ ଅତ୍ୟନ୍ତ ଧୂର୍ତ୍ତ, ପୁରୁଣା ଶୃଗାଳ । କାମୁଡ଼ିବ ଯଦି ମଣିଷ ପାଣି ମାଗିପାରିବ ନାହିଁ । ବିସ୍ୱରୀ ବୁଟା ବେଗମ ପ୍ରତି ଦୟା ଆସୁଛି ।' ମେମ୍ ସାହେବ ଜନ୍‌ସନ୍ ସାହେବଙ୍କୁ କହିଲେ ।

ଜାନୁଆରୀ ରାତିର ବରଫ ଭଳି ପବନ ଆହୁରି ତୀବ୍ର ହେଲା । ତମ୍ବୁର କାନ୍ଥଗୁଡ଼ିକ ଝୁଲିବାକୁ ଲାଗିଲେ । ସାଇଁ ସାଇଁ ହେଇ ଗେସ୍ ଲାଇଟ୍‌ର ଆଲୁଅ ମନ୍ଦ ହୋଇ ବସିଲାରୁ ଶବ୍‌ବରବି ଜଲଦି ଜଲଦି ପମ୍ପ ଦେଲା । ମଦାରବଖ୍‌ଶ ଚଞ୍ଚଳ ପାଦରେ ଶେଷ କୋର୍ସ

ଲାଗି ପ୍ଲେଟ ବଦଳେଇଲା । ସେ ଜନ୍‌ସନ୍ ସାହେବଙ୍କ ଆଗକୁ ପ୍ଲେଟ ନେଲାବେଳେ ମନାକଲେ । ମଦାରବଖଶ୍ ବେଶ ଶାଳୀନତାରେ କହିଲା— 'ଫିନିସ୍' ମାନେ ଶେଷ କୋର୍ସ । ମଦାରବଖଶ ଏମିତି ଆଭିଜାତ୍ୟପୂର୍ଣ୍ଣ ଆୟୋଜନ ବେଳେ ଇଂରେଜମାନଙ୍କୁ ଭାରି ଠାଣିରେ ଇଂରାଜୀ କହୁଥିଲା, ଯେମିତି ଇଷ୍ଟଇଣ୍ଡିଆ କମ୍ପାନୀ ଅମଳରେ ତାର ଜେଜେବାପା, ପଣି ଅଜା କହୁଥିଲେ ।

ଜନସନ୍ ସାହେବ ହୋଷ୍ଟେସଙ୍କ ଆଗରେ ଡିନର ସର୍ଭିସର ଖୁବ ପ୍ରଶଂସା କଲେ । ମେମ୍‌ସାହବ ସେସବୁ ଋଷୀୟ ପ୍ଲେଟ ପେଶାଓ୍ୱାରରୁ ମଗେଇଥିବା କଥା ଜନସନ୍ ସାହେବଙ୍କୁ କହିଲେ । ସେଇଠି ସନ୍ ୧୭ର କ୍ରାନ୍ତି ପୂର୍ବରୁ ପ୍ରସିଦ୍ଧ ଋଷୀୟ ବାସନକୁସନର ଗୋଟାଏ ଦୋକାନ ଥିଲା । ତା'ପରେ ଜନସନ୍ ସାହେବ କଲେକ୍‌ଟରଙ୍କ ସାଙ୍ଗରେ ପରଦିନ ସକାଳର ଶିକାର କାର୍ଯ୍ୟକ୍ରମ ସମ୍ବନ୍ଧରେ ବିସ୍ତୃତ ଆଲୋଚନା କରି ବସିଲେ ।

ତମ୍ବୁର ଗୋଟାଏ କାନ୍ଥ ଟିକିଏ ଅପେକ୍ଷାକୃତ ଜୋର୍‌ରେ ହଲିଲା । ଦୁଇଟି ଖୋଜିଲା ଖୋଜିଲା ବ୍ୟସ୍ତ ଆଖି ଭିତରକୁ ଅନେଇଲା ।

ଜମଶେଦ ଆଉଥରେ ସାହସ କଲା ଯେ ଭିତରକୁ ଯିବ ଆଉ ମେମ୍ ସାହେବଙ୍କୁ ଛତାଟି ଫେରେଇଦେବ; ମାତ୍ର ସେ ପୁଣିଥରେ କଳ୍ପନାଲୋକ ଭଳି ସେଇ ଦୃଶ୍ୟରେ ହଜିଗଲା । ସେତେବେଳେ ହାତଧୁଆ ପ୍ଲେଟ୍ ଆଣି ମେଜ ଉପରେ ଥୁଆହେଲା । ପାଣି ଉପରେ ଲାଲ ଲାଲ ଗୋଲାପ ପାଖୁଡ଼ା ଭାସୁଥାଆନ୍ତି, ହେଲେ ସେ ପାଣି ସେମାନେ ପିଇଲେ ନାହିଁ ଆଙ୍ଗୁଠି ବୁଡ଼େଇବାକୁ ଲାଗିଲେ ।

ଜମଶେଦ ସେଇ ସୁନେଲୀ କେଶବାଲୀ ଝିଅକୁ ଦେଖିଲା । ତା'ର ମୁଣ୍ଡରେ ବେଶ ଚଉଡ଼ା ଲାଲ ରିବନଟିଏ ବନ୍ଧା ହୋଇଥାଏ । ସେ ସେତେବେଳେ ତା'ର କାକାଝିଅ ଭଉଣୀ ମଂଜୁରୁନ୍ନିସାକୁ ମନେ ପକେଇଲା । ତା'କାନର ଅନେକ କଣାରେ ମଇଳା ମଇଳା ରୂପା ମୁଦି ଓ ମୋଟା ସୋଟା ମାର୍କିନ୍ କନାର ଲମ୍ବା ପଟି ଆଉ ଫୁଲପକା କପଡ଼ାରେ ଭଣଭଣ ହେଉଥିବ । ବଡ଼ ହେଲେ ତା'ରି ବେକରେ ବନ୍ଧା ହେବ ଆଉ ସେମାନେ କାନପୁରର ସଂକୀର୍ଣ୍ଣ ଅନ୍ଧାରୁଆ ଗଳୀରେ ସଫାଲୁଗା ପିନ୍ଧି ଏମିତି ଜୀବନ ଜୀଇଁବେ, ଯେମିତି ତା'ର ବାପ, କକା, ଅଜା ପଣିଅଜା ବିତେଇଥିଲେ । ସେତେବେଳେ ମେମ୍ ସାହବ, କଲେକରେ ଆଉ ତାଙ୍କର ସ୍ୱଜନମାନେ ଏଇଭଳି ସୁଗନ୍ଧୀ ପାଣିରେ କଅଁଳ ଆଙ୍ଗୁଠିମାନ ବୁଡ଼େଇ ଗ୍ଲଲିଥିବେ ।

କାନ୍ଥ ପରଦା ପୁଣି ହଲିବା ଦେଖି ମଦାରବଖଶ୍ ଅଗ୍ନିକ ସେପଟକୁ ନଜର କଲା । ଆଉ ଘାବ୍‌ରେଇ ପଛକୁ ହଟି ଆସିଲା ।

ଭିତରେ ଜନସନ ସାହେବ ସିଗାର ଲଗେଇଲେ । ହୋଷ୍ଟେସ୍‌ଙ୍କୁ ଗୁଡ୍‌ନାଇଟ୍ କହିଲେ, ଝିଅକୁ ଗେଲକଲେ ଆଉ ସଫା ତୋଫା ନେପକିନ୍ ମେଜ ଉପରେ ରଖି ଚଉକିରୁ ଉଠିଲେ । ଜନସନ୍ ସାହେବ ଭାରି ଉଚ୍ଚାପୂରା ମଣିଷ । ସାମାନ୍ୟ ମୁଣ୍ଡ ନୁଏଇଁ ସେ ଦରଜା ପାର

ହେଲେ, ଆଉ ଲମ୍ବ ଲମ୍ବ ପାଦ ପକେଇ ନିଜ ତମ୍ବୁଆଡ଼କୁ ଗ୍ଲିଗଲେ । ଦ୍ୱାରକାପ୍ରସାଦ ଲାଲ ମୋଟା ଗରମ କନାର ପୋଷାକ ପିନ୍ଧି ପୁଣି ଦରଜା ସାମନାରେ ଷ୍ଟୁଲରେ ବସିଗଲେ। ସେ ଜମଶେଦର ପାଦଶବ୍ଦ ଶୁଣି କାନ ଡେରିଲେ ଆଉ ପାଟିକଲେ— ''କିଏ ?'' ଜମଶେଦ ଦଉଡ଼ି ପଳେଇଲା । ପଳେଇଗଲାବେଳେ ସେ ତମ୍ବୁମାନଙ୍କର ଦଉଡ଼ିରେ ଛନ୍ଦି ହୋଇଗଲା। ଦ୍ୱାରକାପ୍ରସାଦ ଆଉ ଅନ୍ୟ ଗ୍ରକରମାନେ ତାକୁ ଧରିପକେଇଲେ । 'ଗ୍ରେର... ଗ୍ରେର... ।' ସେମାନେ ସମସ୍ତେ ପାଟିକଲେ ଆଉ ତା' ହାତରୁ ଛତା ଛଡ଼େଇ ନେଲେ ।

'ଗ୍ରେର... ବେଇମାନ... ଚୁତିଆ...।' ଆଉ ଦ୍ୱାରକା ପ୍ରସାଦ ଜମଶେଦ ଗାଲରେ ଜୋରକରି ଚଟକଣାଟିଏ ବସେଇ ଦେଲେ ।

''ମୁଁ ଗ୍ରେର ନୁହଁ ।'' ସେ ବିକଳରେ କହିଲା, ତାର ଆଖି ଲୁହରେ ଛଳଛଳ ହୋଇଗଲା । ମୁଁ ଝିଅର ଛତା ଫେରେଇବାକୁ ଆସିଥିଲି । ମୋତେ ପୋଖରୀ ହୁଡ଼ାରୁ ମିଳିଲା, ପଡ଼ିଥିଲା ।''

''ମତେ ପୁଣି ପାଠ ଶିଖଉଛୁ ବେଇମାନ ।'' ଦ୍ୱାରକାପ୍ରସାଦ ଗରଜି ଉଠି ପୁଣି ଦି' ଚଟକଣା ବସେଇ ଦେଲେ ।

'ମଦାରବକ୍ସ୍ଶ ।' ମେମ୍ ସାହେବ ଭିତରୁ ଡାକିଲେ । ସେତେବେଳକୁ ମଦାରବକ୍ସ୍ଶ ମଧ୍ୟ ଘଟଣାସ୍ଥଳରେ ପହଞ୍ଚି ସାରିଥିଲେ । ଝିଅ ମଧ୍ୟ ଦୁଆରମୁହଁରୁ ଅନେଇ ଡାକ ପକେଇଲେ— 'ମାମା, ମାମା... ଦ୍ୱାରକାପ୍ରସାଦ ଗ୍ରେର ଧରିଛନ୍ତି ।' ସେ ଭାରି ଖୁସିରେ କହୁଥିଲେ ।

''କ'ଣ ପାଟିତୁଣ୍ଡ ହେଉଛି ?'' ମେମ୍ ସାହେବ ଦରଜା ପାଖକୁ ପହଞ୍ଚିଲେ ଓ ପଗ୍ରରିଲେ । ତୁରନ୍ତ ଲୁହ ପୋଛି ନେଇ ଜମଶେଦ ମେମ୍ ସାହେବଙ୍କ ଆଗରେ ସଳଖି ଠିଆ ହୋଇଗଲା ।

'ମୁଁ ଗ୍ରେର ନୁହେଁ କି ବେଇମାନ ନୁହଁ । ମୁଁ ସୈୟଦ ଜମଶେଦ ଅଲୀ । ମୁଁ ଦରଗାହ ଶରୀଫର ଶାହ ମୁନବ୍ୱର ଅଲ୍ଲୀଙ୍କର ପୁତୁରା । ମୋର କାକା ସୈୟଦ ମଜହର ଅଲ୍ଲୀ ଆଜି ସକାଳେ ଆପଣଙ୍କୁ ସଲାମ...' ଆଉ ସେ ତୁରନ୍ତ ଶବ୍ଦ ବଦଳେଇ କହିଲା— ''ଆପଣଙ୍କୁ ଭେଟିବାକୁ ଆସିଥିଲେ ଆଉ ଆପଣ ତାଙ୍କୁ ଫେରେଇ ଦେଲେ ।'

'ଶାହ ମୁନବ୍ୱର ଅଲ୍ଲୀ ।' ମେମ୍ ସାହେବ କିଛିଟା ଆଗ୍ରହରେ କହିଲେ ।... 'ଶାହ ମୁନବ୍ୱର ଅଲ୍ଲୀ, ମୁଁ ତାଙ୍କର ଅନେକ ପ୍ରଶଂସା ଶୁଣିଛି । ସେ ପ୍ରେତମାନଙ୍କୁ ମଧ୍ୟ ବଶ କରି ନିଅନ୍ତି ନା !'

'ବଡ଼ବାପାଙ୍କ ଅଧୀନରେ କୋଉ ପ୍ରେତ କି ବେତାଳ ନାହିଁ । ବାରମ୍ବାର ବିପତ୍ତି ଆଉ ଅଭାବ ଲାଗି ତାଙ୍କର ମୁଣ୍ଡ ଗୋଳମାଳ ।' ଜମଶେଦ ମନର କଟୁତା ମନରେ ମାରି କହିଲା । ଥଣ୍ଡା ଲାଗି ତାର ଦାନ୍ତ ବାଜି ଯାଉଥିଲା । ମଝିରେ କୋହ ଉଠି ଆସିଥିଲା ବି ।

''ଭିତରକୁ ଆସ, ବାହାରେ କିଆଁ ଠିଆ ହୋଇଚ ?''

ମେମ୍ ସାହେବ କହିଲେ— "ମଦାରବଖ୍‌ଶ ପ୍ଲେଟ୍ ଲଗାଅ..."

"ନାଇଁ, ମୁଁ ଖାଇନେଇ ଆସିଛି ।"

ମେମ୍ ସାହେବ ତା'ର ଭାବ ପରିବର୍ତ୍ତନ ଲକ୍ଷ୍ୟ କଲେ । ତାଙ୍କର ନିଜ ପୁଅ ସଲମାନ କଥା ମନେପଡ଼ିଗଲା ତାଙ୍କର । ସେ ଠିକ୍ ଏଇଭଳି ଅଭିମାନୀ ଆଉ ଆତ୍ମସମ୍ମାନୀ ।

ସେ ତମ୍ବୁ ଭିତରକୁ ଆସି ଦରଜା ପାଖରେ ଠିଆହୋଇଗଲା ।

"ଝିଅ, ଆସି ଧନ୍ୟବାଦ ଦିଅ ଜମଶେଦ ଭାଇଙ୍କୁ, କେତେ ଥଣ୍ଡାରେ ସେ ତମର ଛତା ଫେରେଇଦେବେ ବୋଲି ଆସିଛନ୍ତି ।"

ସେ ଛତା ନେଇ ଅତି ମଧୁର କଣ୍ଠରେ "ଥେଁକ୍ୟୁ" କହିଲା ।

"ଗୁଡ୍ ନାଇଟ୍ କହ ।"

"ଗୁଡ୍ ନାଇଟ୍ !"

ତା'ପରେ ସେ ବୁଲାକନ୍ ସାଙ୍ଗରେ ବାହାରକୁ ଗ୍ଲିଗଲା ।

"ତମର ନବାବ ଶମସ୍ଆରା ବେଗମ ସାଙ୍ଗରେ ସଂପର୍କ ଅଛି ନା ?" ମେମ୍ ସାହେବ ପଗ୍ଚରିଲେ ।

"ନାଇଁ ଆଜ୍ଞା, ବାପା ଆଉ କାକା ତାଙ୍କର ଜମି ଚଷି ଦିଅନ୍ତି । ରାଜା ନବାବଙ୍କ ସାଙ୍ଗରେ ଆମର କି ସଂପର୍କ !"

ମେମ୍ ସାହେବ ଚମକି ପଡ଼ିଲେ । କହିବାର ଢଙ୍ଗ ଆଉ ଅନ୍ତର ଭିତରେ ଭରି ରହିଥିବା ତିକ୍ତ ଭାବ ତାଙ୍କୁ ଅତି ପରିଚିତ ମନେହେଲା । ତାଙ୍କର ଗେହ୍ଲାପୁଅ ୟୁନିଭରସିଟିରୁ ଘରକୁ ଆସି ତାର ସାଙ୍ଗମାନଙ୍କ ସାଙ୍ଗରେ କେତେକ'ଣ କଥାହୁଏ । ଜାଗିରଦାରୀ, ବିଲାତୀ, ଭିଡ଼ା ଓଟରା, କୃଷକ ଆନ୍ଦୋଳନ— କେତେକେତେ ବୁଝି ହେଉ ନଥିବା ଶବ୍ଦ ଓ ପାରିଭାଷିକ ଶବ୍ଦାବଳୀ ।

'ପଢୁଚ କୋଉଠି ?'

'କାନପୁରରେ, ସେକେଣ୍ଡ ଇଅର !'

'ସାବାସ'

'ଯାଉଛି... ।'

କଫି ହେଲେ ପିଇନିଅ ।'

'କଫି...' କଫି ସେ ଜୀବନରେ ପିଇ ନଥିଲା । 'ଆଜ୍ଞା... ନାଇଁ !' ସେ ଦୃଢ଼ତାରେ ଉତ୍ତର ଦେଲା, "ଆମର ଘର ଗାଆଁର ସେ ମୁଣ୍ଡ ଠେଇଁ । ପହଞ୍ଚୁ ପହଞ୍ଚୁ ମୋରେ ଡେରି ହେଇଯିବ । ଯାଉଛି... ନମସ୍କାର ।" କହି ସେ ତମ୍ବୁରୁ ବାହାରି ଆସିଲା ଓ ଅନ୍ଧାରରେ ଗ୍ଲିଗଲା ।

ଘରେ ପହଞ୍ଚି ସେ ପାଦଚିପି ଚିପି ପଶିଲା । ଛୋଟ ପରଛିଟିରେ ପାଖକୁ ପାଖ ଲଗାଲଗି ତିନୋଟି ଖଟିଆରେ ତିନି ଭାଇଯାକ ଶୋଇଥିଲେ । ଖୁଡ଼ୀ, ମାଆ ଆଉ ମଂଜୁରୁନିସା ଅନ୍ୟପଟେ ପଟାଖଟରେ ଫାରୁଖାବାଦୀ ଛପେଇର ମଇଳା ମଇଳା ଗ୍ଦରଟିମାନ ଘୋଡ଼େଇ

ହୋଇ ନିଘୋଡ଼ ନିଦରେ ଶୋଇଥିଲେ । ସେ ଧୀରେ ଧୀରେ ଯାଇ ତା ନିଜ ଖଟିଆରେ ଗଡ଼ିଗଲା । ଆଉ ପାତଳ ଗୁଦଡ଼ଟିଏରେ ମୁହଁ ଢାଙ୍କିନେଲା । ବେଶ୍ ଥଣ୍ଡା ଲାଗିଲାରୁ ଅଲଗୁଣୀରେ ଟଙ୍ଗା ହୋଇଥିବା କନ୍ଥା ବି ଗୁଦଡ଼ ଉପରେ ପକେଇ ନେଲା । ଆଣ୍ଠୁଭାଙ୍ଗି ଜାକିଜୁକି ହୋଇ ଶୋଇଗଲା ।

ଅଧରାତି ନମାଜବେଳକୁ ଶାହ ମୁନବ୍ୱର ଅଲୀ ଉଠିଲେ । ଅଂଧାରରେ ଦରାଣ୍ଡି ଦରାଣ୍ଡି ତା'ର ମୁଣ୍ଡ ପାଖକୁ ଆସିଲେ । କ'ଣ କିଛି ପଢ଼ି ତା'ର ମଥା ଉପରେ ଫୁଙ୍କିଲେ । ଆପଣା ତକିଆ ତଳୁ ତେଉଁରିଆଟିଏ ବାହାର କରି ତା' ହାତରେ ବାନ୍ଧିଦେଲେ ଆଉ ଆସି ନିଜ ଖଟରେ ଶୋଇଗଲେ । ତା'ର ନିଦ ନଥିଲା, ହେଲେ ସେ ଶୋଇବା ବାହାନାରେ ନିଶ୍ୱାସ ବନ୍ଦକରି ପଡ଼ିରହିଥିଲା । ତା'ର କାନ୍ଦିବାକୁ ମନ ହେଉଥାଏ । କିଛି ବେଳପରେ ଖୁଡ଼ୀ ଉଠିଲେ ଆଉ ଲଣ୍ଠନ ଜଳେଇଲେ । ମଂଜୁରୁନ୍ନିସା ବି ତୁରନ୍ତ ଉଠିବସିଲା । ଦୁଇ ମା-ଝିଅ ମୁଣ୍ଡପାଏଁ ଗୁଦଡ଼ ଘୋଡ଼ି ହୋଇ ରୋଷେଇ ଘରକୁ ଗଲେ । ଜମଶେଦ ଯିବ ବୋଲି ରାସ୍ତାପାଇଁ ଖାଇବା ତିଆରି କଲେ । ସେ ପୁଣି ଘୁମେଇବାକୁ ଲାଗିଲା । ମୁହଁ ଅନ୍ଧାରି ବେଳକୁ କୁକୁଡ଼ା କାନ୍ଥ ଉପରୁ ଡାକିଲା । ସେ ତରବର ହୋଇ ଉଠିବସିଲା । ତା' ପାଖରେ ଘଡ଼ି ନଥିଲା । ସେ ଶୀଘ୍ର ଶୀଘ୍ର ଯାଇ ଅନ୍ଧାର କୋଠରି ଭିତରେ ଟିଣ ବାକ୍ସ ଖୋଲିଲା । ଦରି ଦେହରେ ବିଛଣାପତ୍ର ଗୁଡ଼େଇଲା । ଆସି ଦରଜା ପାଖରେ ଠିଆହୋଇ ପଚାରିଲା— "ମଂଜୁରୁନ୍ନିସା ମୋ ଚପଲ କୋଉଠି ଅଛି ?"

ମଂଜୁରୁନ୍ନିସା ଦଉଡ଼ି ଗଲା । ପିରଛି କାନ୍ଥରେ ଟଙ୍ଗା ହେଉଥିବା ତେଲ ଡିବିରି ଜଳେଇଲା । ଭାଡ଼ି ଉପରୁ ଚପଲହଳକ କାଢ଼ିଦେଲା । ତା'ର କୋଟ୍ ଆଣିଦେଲା, ଖୁଣ୍ଟିରୁ ମଫଲର କାଢ଼ିଦେଲା । ମୁହଁ ଧୋଇବାକୁ ଗରମ ପାଣି, ଢାଳ ଆଉ ସାବୁନ ଆଣି ପିଣ୍ଡା ଦାଢ଼କୁ ରଖିଲା ।

ଖୁଡ଼ୀ ଟିଫିନ୍ କେରିୟର ଆଣି ମେଜ ଉପରେ ଥୋଇଦେଇ ଚ୍ୟା' ତିଆରି କରିବାକୁ ଚାଲିଗଲେ ।

"ଭାଇ, ତମ ଲାଗି ପୁରି ମୁଁ ନିଜେ ତିଆରି କରିଛି ।" ମଂଜୁରୁନ୍ନିସା କହିଲା ।

"ଆଚ୍ଛା !" ଜମଶେଦ ଯୋତାର ଫିତା ବାନ୍ଧୁ ବାନ୍ଧୁ ତାକୁ ସ୍ନେହପୂର୍ଣ୍ଣ ଆଖିରେ ଦେଖିଲା ଥରେ । ତା'ର ମନ କେମିତି ଯେ ଦୟାରେ ଭରିଗଲା— 'ବିଚାରୀ ମନ୍ଦକପାଳୀ' ମନେ ମନେ କହିଲା ସେ । ସେତିକିବେଳକୁ ବାହାର ବାରଣ୍ଡାରୁ ଗୋବିନ୍ଦ ଡାକ ପକେଇଲା । ତା'ର ବାପା ଓ କାକା ଉଠିବସିଲେ । କାକା ତା ବାହୁରେ ତେଉଁରିଆ ବାନ୍ଧିଦେଲା । ଆଉ ତା'ପରେ ସେ ଗୋବିନ୍ଦାର ଏକ୍କାଗାଡ଼ିରେ ରେଲୱେ ଷ୍ଟେସନକୁ ଚାଲିଗଲା ।

ଚଣା ଖେତକୁ କୁହୁଡ଼ି ଘୋଡ଼େଇ ରଖିଥିଲା, ଜହ୍ନ ଆଲୁଅ ମହଳ ପଡ଼ିସାରିଥିଲା ସେତେବେଳକୁ । ଅନେକ ଦୂରରେ କଲେକ୍ଟର ସାହେବଙ୍କ କ୍ୟାମ୍ପରେ ଦୁଇଚାରୋଟି ଆଲୁଅ ଜଳୁଥିବା ଦିଶୁଥାଏ । ନଦୀ ସେପାରିରୁ ରେଳର ସୁସୁରୀ ଶବ୍ଦ ଶୁଣାଗଲା ।

ଆମ୍ବତୋଟା, କବରଖାନା, ପୋଖରୀ, ହନୁମାନଙ୍କ ମନ୍ଦିର, ଝୀଙ୍ଗାପାସୀର କୁଡ଼ିଆ, ଗଛ, ବାପା, କାକା, ଖୁଡ଼ୀ, ମାଆ, ମଂଜୁରୁନ୍ନିସା— ଏମାନେ ସବୁ ଧୀରେ ଧୀରେ ପଛେଇ ପଛେଇ ସତରେ ଯେମିତି କୋଉ ଏକ ନିବିଡ଼ ଅନ୍ଧକାରରେ ହଜିଗଲେ । ସେଦିନ ସେ କେମ୍ପରୁ ଫେରି ମନେ ମନେ ଦୃଢ଼ନିଶ୍ଚୟ କରିନେଇଥିଲା ଯେ ଏଥର କାନପୁର ଫେରି ସେ କଠିଣରୁ କଠିଣ ପରିଶ୍ରମ କରିବ । ଫାଷ୍ଟ ଡିଭିଜନ୍ ନିଶ୍ଚୟ ହେବ, ପ୍ରତିଯୋଗିତା ପରୀକ୍ଷାରେ ପାଶ୍ ହେବ ଆଉ ଦିନେ ତା ନାଆଁ ଆଗରେ ବି ଲେଖାହେବ— ଏସ୍.ଜେ.ଅଲୀ, ଆଇ.ସି.ଏସ୍ ।

ତା'ପରେ ଯେତେବେଳେ ମୋହମ୍ମଦଗଂଜ ଆସିବି, ସେତେବେଳେ ଗ୍ରାମୀମାନେ କହିବେ ''ଏଜେଣ୍ଟ ସାହେବ' ଦୌରାରେ ଆସିଛନ୍ତି । ଏଜେଣ୍ଟ ସାହେବ, କଲେକ୍ଟର ସାହେବ, କମିଶନର ସାହେବ... ସେତିକିବେଳକୁ କଚ୍ଚାରାସ୍ତାରେ ଗାଡ଼ି କଗ୍ରଡ଼ି ହେଲା । ଆପେ ଆପେ ଗାଡ଼ି ବାଡ଼କୁ ଜୋରରେ ଧଇଲା ସେ ଆଉ କୋଟ ପାକିଟରେ ହାତ ପୂରେଇ ପାସିଙ୍ଗ ସୋ ଡବା ଆଉ ଦିଆସିଲି କାଢ଼ିଲା । ଦିଆସିଲି ଜଳେଇଲାରୁ ପଛକୁ ଲେଉଟି ଅନେଇଲା ଗୋବିନ୍ଦା ।

''ଆରେ, ଏ କ'ଣ କରୁଛୁ ?'' ଗୋବିନ୍ଦା ଦୁଃଖରେ ପଗ୍ଚରିଲା ।

''ଘରେ ଏକଥା କହିବ ନାଇଁ ଗୋବିନ୍ଦା ଗ୍ଚଗ୍ଚ''— ବେଶ୍ ବିନୟରେ କହିଲା ଜମଶେଦ । ଗୋବିନ୍ଦା କାକାର କପାଳରେ ଟାଣି ହୋଇ ଯାଇଥିବା ରେଖା ଦେଖି ଜମଶେଦର ସବୁ ଆଇ.ସି.ଏସ୍ ସ୍ୱପ୍ନ ପାଣିରେ ମିଳେଇ ଗଲା ଘଡ଼ିକେ ।

''ଆଚ୍ଛା କହିବି ନାଇଁ । ସହରରେ ରହି ଏସବୁ କଥା ଶିଖିନା ।'' ଗୋବିନ୍ଦା ଧୁତ୍ ଧୁତ୍ ଘୋଡ଼ାକୁ ଗ୍ଚବୁକ ବସେଇଲା । ବିଡ଼ି ବିଡ଼ି ହେଲା— ''ଗ୍ଚଲୁନି ସସୁରା... ଆରେ ତତେ ବି କ'ଣ ସିଗାରେଟ ଦରକାର !''

ଜମଶେଦ ଲମ୍ବା ଟାଣ ନେଇ ନାକ ବାଟେ ଧୂଆଁ ବାହାର କଲା । ସେତେବେଳେ ସାମନାରେ ଆସୁଥିବା ଗୋବର୍ଦ୍ଧନ କାକା ନଜରରେ ପଡ଼ିଲେ । କାନ୍ଧରେ ଲଙ୍ଗଳ, ଯୋଡ଼ି ବଳଦ ଆଡ଼େଇ ଖେତକୁ ଯାଉଥିଲେ । ଜମଶେଦ ଘାବରେଇ ସିଗାରେଟ୍ ପାପୁଲି ଆଡ଼ରେ ଲୁଚେଇ ନେଲା ।

ଗୋଦରା କକେଇ ନଜରରେ ପଡ଼ିଗଲେ ନା, ଏକ୍କାରୁ ଉତାରି ମାରିବେ ପଗ୍ଚଶ ଯୋତା ଆଉ ଗଣିବେ ଏକ୍ ।

ଗାଆଁଟି କେଉଁପରି ପୁରାତନପନ୍ଥୀ, ସେଇକଥା ଉପରେ ସେ ଭାବୁଥାଏ... ବେଶ୍ ବିରକ୍ତିରେ... ଭାରତବର୍ଷର ଗାଆଁ... ହାଃ ହାଃ... ଭାରତବର୍ଷର ଗାଆଁ !

ସେଦିନ ସକାଳେ ତାକୁ ଜଣା ନଥିଲା ଯେ ସେ ଶେଷଥର ପାଇଁ ଏ ଗାଆଁରୁ ଯାଉଛି । ଏହାପରେ ସେ ଏପରି ଭାବରେ କେତେବେଳେ ହେଲେ ମୋହମ୍ମଦଗଂଜକୁ ଆସିବ ନାଇଁ, ନା ଏମିତି ଗୋବିନ୍ଦା ଏକ୍କାରେ ବସିବ । ଗୋବିନ୍ଦ କାକାକୁ ଡରିବାର ଆବଶ୍ୟକତା ଅନୁଭବ ସେ କେତେବେଳେ ହେଲେ ଆଉ କରିବ ନାଇଁ ।

(୨)

କାନପୁର ପହୁଁଚି ସେ ନିଜ ଘର ବାରଣ୍ଡା ପାହୁଚ ଚଢ଼ିଲା । ସାମନାଗଳିର କାନ୍ଥରେ 'ଭାଭୀ' ଆଉ 'ପୁକାର' ଫିଲ୍ମର ପୋଷ୍ଟର ଆଉ କଂଗ୍ରେସ ଅଧିବେଶନର ଇସ୍ତାହାର ଲାଗିଥାଏ। ବୈଠକ ଦୁଆରମୁହଁରେ ଠିକ୍ ପଡ଼ିଥାଏ । ଭିତରେ ଇଟା ତିଆରି ଚଟାଣ, ମଝିରେ ମଝିରେ ଟେବୁଲଟିଏ ଆଉ ପକ୍ଷଙ୍କ ବସିବା ଲାଗି ତିନି ଚାରୋଟି ଚଉକି ପଡ଼ିଥାଏ । ଗୋଟାଏ କୋଣକୁ ମୋଟା ମୋଟା ଧୂଳି ପରସ୍ତ ଜମିଥିବା ଆଇନ ବହି ଆଲମିରା ପଟା ଉପରେ ସଜେଇ ହୋଇଥାଏ । ଗୋଟାଏ କାନ୍ଥରେ ସୈୟଦ୍ ଅଖତର ଅଲୀଙ୍କର ଫଟୋ ଟଙ୍ଗା ହୋଇଥାଏ । ସେଥିରେ ସେ ବି.ଏ.ଏଲ୍.ଏଲ୍.ବି ଗାଉନ ପିନ୍ଧି ବେଶ ନିରେଖି କେମରାକୁ ଅନେଇଥିଲେ । ଅନ୍ୟ କାନ୍ଥମାନଙ୍କରେ ସୈୟଦ ଅହମଦ ଖାଁଙ୍କ ଫଟୋ ଓ ତାଜମହଲର ଛବି ଲାଗିଥାଏ । ପବିତ୍ର ତୀର୍ଥକ୍ଷେତ୍ର ଓ ସନ୍ଥମାନଙ୍କର ନାମ ଓ ବାଣୀ ଫ୍ରେମମାନଙ୍କରେ ଟଙ୍ଗା ହୋଇଥାଏ । ମଦୀନା-ଏ-ମନବରାର କେଲେଣ୍ଡର ଝୁଲୁଥାଏ । ଗୋଟାଏ କୋଣକୁ ଧର୍ମଗ୍ରନ୍ଥ କେତୋଟି ଆଉ 'ଦୀନୋ ଦୁନିଆଁ' ଆଉ 'ମଦୀନା' ପତ୍ରିକାର ଫାଇଲ ଥାଏ । ସୁଲତାନୁଲ ହିନ୍ଦ ଖ୍ୱାଜା ଗରିବ ନବାଜଙ୍କର ଦରଗାହ ଅଜମେର ଶରୀଫର ଏକ ବଡ଼ ଛବି ଉପରେ ଥୁଆ ହୋଇ ରହିଥିଲା । ଅନେକ ବର୍ଷ ତଳେ ଅଖତର ଅଲୀ ନିଜ ଭାଗର ଜମି ବିକି କାନପୁରରେ ଏଇ ଘର କିଣିଥିଲେ ଆଉ ପ୍ରେକ୍‌ଟିସ୍ ଆରମ୍ଭ କରିଥିଲେ । ଜମଶେଦ ମଇଳା ସୂତା ଚାଦରଟି ଟେକି ଅନ୍ଦର ମହଲକୁ ଗଲା । ଭିତରେ ସଂକୀର୍ଣ୍ଣ ଓ ଲମ୍ବାଳିଆ କୋଠରିର ଚାରୋଟି ଦରଜା ବାରଣ୍ଡା ପଟକୁ ଖୋଲନ୍ତି । କୋଠରିରେ ତା'ର ତିନୋଟି ଯାକ ଛୋଟ ଭାଇ ଭଉଣୀଙ୍କର ବିଛଣା ପଡ଼ିଛି । ତା' ବିଛଣାର ମୁଣ୍ଡପଟକୁ ତାର ପଢ଼ା ମେଜ । ତା' ଉପରେ ତା'ର ବହିଗୁଡ଼ିକ ଥୁଆ ହୋଇଛି । ସେ ବହିଗୁଡ଼ିକରେ ଖବରକାଗଜ ବା ରଙ୍ଗିନ୍ ପତ୍ରିକାର ଖୋଳ ମଡ଼ା ହୋଇଛି । ସେଇ ମେଜ ଉପରେ ପଡ଼ିଥିବା ଫୁଲପକା ଟେବୁଲ କ୍ଲଥ୍ ଉପରେ ଏକ ବଡ଼ କାଳି ଦାଗ । ଗୋଟାଏ କୋଣକୁ ତା'ର ସାଇକେଲ ଥୁଆ ହେଇଛି । ତା'ର ମା ଯକ୍ଷ୍ମା ରୋଗିଣୀ, ବାରଣ୍ଡାରେ ଶୋଇଛି । ଛୋଟ ଭଉଣୀ ଆଲିଆ ରୋଷେଇ ଘରେ ଥାଏ । ଜମଶେଦ ଜିନିଷପତ୍ର ବିଛଣା ଉପରେ ଥୋଇଦେଇ ଅଗଣାର ତକ୍ତପୋଶରେ ବସି ଯୋତାର ଫିତା ଖୋଲି ବସିଲା ।

"ଭାଇ, ଗାଆଁରୁ ଟଙ୍କା ଆଣିଲ ?" ଆଲିୟା କଥାରେ ଚମକି ପଡ଼ିଲା ସେ ।

"ଟଙ୍କା !"

"ବାପା କହିଥିଲେ କାକାଙ୍କଠୁଁ ଟଙ୍କା ନେଇ ପଠେଇବେ । ତାଙ୍କର ଯିବା କେତେଦିନ ହେଲାଣି । ଛୁଟିରେ ତମେ ବି ଚାଲିଗଲ । ଏଠି ଆମ ଉପରେ ସାଇ-ପଡ଼ିଶାର ବି କରଜ ଚଢ଼ିଲାଣି ।"

"ନାଁ, ମୁଁ ତ ଟଙ୍କା ଆଣିନି । ତେବେ ବାପାଙ୍କର ଚାକିରି ଚଂଚଳ ହୋଇଯିବା ଭଳି

ଲାଗୁଛି । ନ ହେଲେ କଲେଜ ଛାଡ଼ି ମୁଁ ଚାକିରି କରିନେବି... । ଆରେ... କାନ୍ଦୁଛୁ କାହିଁକି... ପାଗଳୀ ।'' ଆଉ ସେ ଆଲିୟାର ମୁଣ୍ଡ ଆଉଁସି ଦେଲା । ମାଆ ଯେ ବର୍ଷ ବର୍ଷ ଧରି ଖଟରେ ପଡ଼ି ପଡ଼ି ସୀମା ବାହାର ଚିଡ଼ିଚିଡ଼ୀ ଆଉ କଥା କଥାରେ ରାଗୁଥିଲା । ସିଏ ବି ଆଗଭଳି ରଡ଼ିବା କାଶିବା ଆରମ୍ଭ କରି ଦେଇଥିଲା । ଜମଶେଦ ପଟାଖଟର ଗୋଟାଏ ପଟକୁ ଚୁପ୍‌ଚାପ୍ ବସିଥିଲା ।

ଏଲ୍ଲାବାଦ ସିଭିଲ ଲାଇନ୍ସର ଗୋଟାଏ ପୁରୁଣା ଢଙ୍ଗର ବଙ୍ଗଳାର ପୋର୍ଟିକୋରେ ପଇଁତିରିଶ ସାଲର ଗୋଟାଏ ଲମ୍ବା ଚଉଡ଼ା ସେଲୁନ୍ କାରଟିଏ ବେଶ୍ ଜୋର୍‌ରେ ଆସି ରହିଗଲା । ଗାଡ଼ିରୁ ସାବଳା ରଙ୍ଗର ଯୁବକଟିଏ ବେଶ୍ ଏକସାଇଟେଡ୍ ଢଙ୍ଗରେ ଓହ୍ଲେଇ ପଡ଼ି ନିଜ କୋଠରିକୁ ଚାଲିଗଲା । ଚଞ୍ଚଳ ଚଞ୍ଚଳ ଟେବୁଲ ଡ୍ରୟରରୁ କାଗଜପତ୍ର ଓଲଟେଇ ପର୍ସଟିଏ ବାହାର କଲା, ଲାଲ ରଙ୍ଗର ଛୋଟିଆ କାର୍ଡଟିଏ ବାହାର କଲା । ସେଥିରେ ଲେଖା ତା'ର ନାଆଁ ପଢ଼ି ବେଶ୍ ଯତ୍ନରେ ପର୍ସ ଭିତରେ ପୂରେଇ ଦେଲା ।

ଚାକର ଡାକ ନେଇ ଆସିଲା । ଲଫାପା ଉପରେ ମାମୁଁଙ୍କ ଅକ୍ଷର ଦେଖି ସେ ଆଦରରେ ହସିଲା, ଖୋଲି ପଢ଼ିବା ଆରମ୍ଭ କଲା— 'ମୁଁ ଟୁର ସରିବାମାତ୍ରକେ ସିଧାସଳଖ ଏଲ୍ଲାବାଦ ପହଞ୍ଚିବି । ଏଣିକି ତମକୁ ଆଇ.ସି.ଏସ୍ ପରୀକ୍ଷା ପାଇଁ ପ୍ରସ୍ତୁତ ହେବାକୁ ହେବ । ମୋର ଅନୁପସ୍ଥିତିରେ ନିୟାଜୀ ବେଗମ ତମର ଖାଇବା ପିଇବାର ଯତ୍ନ ନିଅନ୍ତି ନା'ଇଁ... ଈଶ୍ୱରଙ୍କ...' ଚିଠି ପଢ଼ି ଖାମ ଭିତରେ ରଖିଦେଇ ଉଦାସ ହସଟିଏ ହସିଲା । ତା'ପରେ ଝରକା ପାଖକୁ ଯାଇ ଠିଆ ହେଲା; ସିଗାରେଟ ଧରେଇଲା । ଭାବି ବସିଲା, ''ମୁଁ ବାବା ଆଉ ମାମୁଁଙ୍କୁ କୋଉ ଭାଷାରେ ଖବର ଦେବି ଯେ ମୁଁ ସେମାନଙ୍କର ସବୁକିଛି ଚକଚକ ଝଲମଲ ଆଶାକୁ ପାଣିରେ ପକେଇ ଦେବାକୁ ଯାଉଛି...''

ମୋହମ୍ମଦ ଗଂଜର ମଠ ବାଡ଼ରେ ବସି ସୈୟଦ ମଜହର ଅଲୀ ଟେଢ଼ାବଙ୍କା ଅକ୍ଷରରେ ପୋଷ୍ଟକାର୍ଡ ଲେଖା ଆରମ୍ଭ କଲା—

ବରଖୁରଦାର ସଆଦତ ଆସାର ରାହତେ ଜୋ ଅଜୀଜୀ ଜମଶେଦ ମିୟାଁ (ସୌଭାଗ୍ୟବାନ୍ କଲ୍ୟାଣୀୟ ସଦ୍‌ଗୁଣସମ୍ପନ୍ନ ସୁଖୀ ପ୍ରିୟତମ ଜମଶେଦ ମିୟାଁ) । ଦୀର୍ଘାୟୁ ହୁଅ । ଜାଣିବ ଯେ କେତେକ ଜରୁରୀ କାମରେ ତମର ବାପା ଏ ପର୍ଯ୍ୟନ୍ତ ମୋହମ୍ମଦ ଗଂଜରେ ଅଛନ୍ତି । କେମ୍ପ ଉଠି ସାରିଛି । ତମର ବାପା କେତେକ'ଣ ଦରଖାସ୍ତ ଲେଖି ଲକ୍ଷ୍ନୌର ସିକନ୍ଦର ସାହବଙ୍କର ସିରସ୍ତାକୁ ପଠେଇଛନ୍ତି । ଈଶ୍ୱର ମଙ୍ଗଳ କରିବେ । ଅନ୍ୟ ଖବର ହେଲା— ବୁଟା ବେଗମ୍‌ଙ୍କ ମୋକଦ୍ଦମାର ତାରିଖ କିଛିଦିନ ପାଇଁ ଘୁଞ୍ଚି ଯାଇଛି । କଲେକ୍ଟର ସାହେବ କୃପା କରି ତାଙ୍କୁ ତାଙ୍କର ତତ୍ତ୍ୱାବଧାନରେ ରଖିଛନ୍ତି । ଆଉ ମୋକଦ୍ଦମା ମଝିରେ ବୁଟାବେଗମ ତାଙ୍କର ଝିଅ ସାଙ୍ଗରେ ଏଲହାବାଦରେ ତାଙ୍କର ତତ୍ତ୍ୱାବଧାନରେ ରହିବେ । ନବାବ୍ ଶମ୍‌ସଆରା ବେଗମ କେତେ ଖରାପ ଖରାପ କଥା ଏ ବାବତରେ କହିଛନ୍ତି, ଆଉ ତମର ବାପା କହୁଛନ୍ତି ତମେ ତମର ସାଇକଲ ବିକିଦିଅ...

ଛ' ମାସ ପରେ ଜମଶେଦକୁ ଆଉ ଏକ ପୋଷ୍ଟକାର୍ଡ ମିଳିଲା—

ସୌଭାଗ୍ୟବାନ୍ ନୟନତାରା, ... ଏଇଆ ଜାଣି ସନ୍ତୋଷ ହେଲା ଯେ ତମେ ଟିଉସନ୍ ଆରମ୍ଭ କରିଦେଇଛ । ତମର ବାପାଙ୍କର କୌଣସି ପ୍ରକାର ରୋଜଗାରର ପନ୍ଥା ଏ ଯାଏଁ ଜୁଟିଲା ନାହିଁ । ଏବେ ସେ ସାରାଦିନ ମଠରେ ବସି ରହୁଛନ୍ତି । ଆମର ବିଶେଷ ଚିନ୍ତା ହେଲା, ଈଶ୍ୱର ନ କରନ୍ତୁ ତାଙ୍କର ମୁଣ୍ଡ ଖରାପ ହେଇ ନ ଯାଉ । କାଲି ରାତିରେ କହୁଥିଲେ ତାଙ୍କର ଆକାଶବାଣୀ ହେଉଛି । ଭାଇ ବି ତାଙ୍କର କଥା ନେଇ ଭାରି ବ୍ୟସ୍ତ । ଈଶ୍ୱରଙ୍କର ପ୍ରାର୍ଥନା କରୁଥିବ । ସେ ସବୁ କିଛି ଠିକ୍ କରିବେ ।

ଦୁଇବର୍ଷ ପରେ ପୁଣି ପୋଷ୍ଟକାର୍ଡ ଆସିଲା— 'ନୟନ ପିତୁଳୀ ମଂଜୁରୁନ୍ନିସା ତା' ଘରକୁ ଯିବା ଲାଏକ ହେଲାଣି । ସେଥିଲାଗି ଏଇ ଇଦ-ଗ୍ରନ୍ଦ ଦିନ ତାକୁ ବିଦା କରିନିଅ । ଏବେ ତମର ବାପା ନଈକୂଳରେ କୁଡ଼ିଆ କରି ରହୁଛନ୍ତି ।'

ଦୁଇଟଙ୍କା ଗଜବାଲା ଲାଲ ସାଟନ୍‌ର ଘାଘରା, ରେଶମୀ ମଲମଲର ଲାଲ ଓଢ଼ଣୀ କମିଜ ପିନ୍ଧି, ଗଳାରେ ରୂପା ପଦକଲଗା ହାର, ମହାରାଣୀ ଭିକ୍ଟୋରିଆ ଟଙ୍କାର ମାଳୀ ଆଉ କାନରେ ରୂପା ବାଲା ପିନ୍ଧି, ଲମ୍ବ ବେଣୀରେ ରୂପା ଫୁଲ ଲଗେଇ ଲମ୍ବା ଓଡଣୀ ଟାଣି ବୁର୍କା ଘୋଡ଼େଇ କନ୍ୟାବେଶରେ ମଂଜୁରୁନ୍ନିସା ଟାଙ୍ଗାରୁ ଓହ୍ଲେଇଲା । ତା ଓଢ଼ଣୀରେ ଚକ୍ ଚକ୍ ଜରି ଫୁଲ ଲାଗିଥାଏ । ହାତରେ ଫିରୋଜାବାଦୀ ଲାଲ ଲାଲ ଚୂଡ଼ି ଲଗେଇ ଥାଏ । ଆଙ୍ଗୁଠିମାନଙ୍କରେ ରୂପା ମୁଦି ଝୁଣ୍ଟିଆ ସାଙ୍ଗକୁ ହାତରେ ଲାଲ ମଂଜୁଆତି । ବାହୁରେ ରୂପାର ବାଜୁବନ୍ଧ । ଲାଲ ରେଶମୀ ମୋଜା ଆଉ ବିଲାତୀ ଯୋତା ଉପରେ ଗୋଡ଼ ବଳା ଆଉ ପାଂଜେବ ରୁଣୁଝୁଣୁ ହେଉଥିଲା । ତିନୋଟି ମୋତିଲଗା ନଥ, ଗୋଟିକ ହିଁ ଏକମାତ୍ର ସୁନା ଅଳଂକାର । ଏସବୁ ଗହଣା ତା'ର ମା ଆଣିଥିବା ଯୌତୁକ ଗହଣା । ତା' ଲାଗି କେବଳ ସାତଯୋଡ଼ା ପୋଷାକ, ବରପାଇଁ ରେଶମୀ ଅଚକନ, ତମ୍ବାର ଗ୍ୱରୋଟି ବାସନ ଆଉ ଗୋଟାଏ ମୁରାଦାବାଦୀ ପାନଦାନୀ ଅଶର୍ଫୀଲାଲ ମହାଜନଠୁଁ କରଜ କରି ସୈୟଦ ମଜହର ଅଲୀ ତିଆରି କରେଇ ପାରିଥିଲେ । ତମ୍ବାର ଆଉ ସାତୋଟି ବାସନରେ ଆଉଥରେ କଲେଇକରା ହେଇଥିଲା । ଏଇ ବାସନ ସବୁକୁ ତାଙ୍କର ପତ୍ନୀ ମଂଜୁରୁନ୍ନିସାର ଜନ୍ମ ବେଳଠୁଁ ଗୋଟିଏ ଗୋଟିଏ କରି ସାଇତି ଥିଲା । ନିମ ମୂଳରେ ବାହାଘର ଭୋଜି ହୋଇଥିଲା । ଆଳୁ ମାଂସ ଝୋଳ, ତନ୍ଦୁରୀ ରୋଟୀ, ମିଠା ଭାତ— ମାଟି ଗିନା, ପ୍ଲେଟମାନଙ୍କରେ ବଢ଼ା ହେଇ ଅତିଥିମାନଙ୍କୁ ପରସା ଯାଇଥିଲା । ଚିନାମାଟିର ଫୁଲପକା ପ୍ଲେଟରେ କେବଳ ବର, ମୌଲବୀ ଆଉ କେତେଜଣ ଖାସ୍ ଅତିଥିଙ୍କୁ ପରସା ଗଲା । ହିନ୍ଦୁମାନଙ୍କ ଲାଗି ଟିକିଏ ଦୂରକୁ ପଣ୍ଡିତ ଲକ୍ଷ୍ମୀନାରାୟଣ ବରଗଛ ମୂଳେ ଭୋଜନ ବ୍ୟବସ୍ଥା କରିଥିଲେ । ସେଠି କଦଳୀ ପତ୍ରରେ ବଢ଼ାହେଲା । ମହୁରୀ ବାଜିଲା । ଅତିଥିମାନଙ୍କର ମନୋରଂଜନ ଭାର ଚପାତୀ ଭାଣ୍ଡ ଉପରେ ନ୍ୟସ୍ତ ଥିଲା । ଏ ବାହାଘର ଖର୍ଚ୍ଚ ଲାଗି ସୈୟଦ ମଜହର ଅଲୀ ନାକ ପର୍ଯ୍ୟନ୍ତ କରଜରେ ବୁଡ଼ି ଯାଇଥିଲେ । ମଂଜୁରୁନ୍ନିସା ତାଙ୍କର ଗୋଟିଏ ବୋଲି ଝିଅ ।

ସେ ତା'ରି ମୁହଁ ଗ୍ୱହିଁ ବଂଚି ରହିଥିଲେ । ତାଙ୍କର ମନ ହେଉଥିଲା, ଅଶର୍ଫୀ ଲାଲର ସୁଦ ଉପରେ ସୁଦର ପରୁଆ ନ କରି ଝିଅର ବାହାଘରେ ମନର ସବୁ ଓରମାନ ପୂରା କରି ନିଅନ୍ତେ । ହେଲେ ପାଦେ ବଢ଼େଇଲେ ତାଙ୍କର ନିର୍ଦ୍ଧନତାର ଭୂତ ସାମନାରେ ଆସି ଠିଆ ହୋଇ ଯାଉଥିଲା । ଆଉ ସେ ମନମାରି ରହି ଯାଉଥିଲେ । ଯେତେବେଳେ ବିଦାବେଳ ଆସି ହେଲା, ସେତେବେଳେ ସେ ଘରୁ ଗ୍ୱଲିଆସି ଦରଘାର ବାଡ଼ଠେଇଁ ଚୁପ୍‌ଗ୍ୱପ୍ ବସି ଯାଇଥିଲେ । ଝିଅର ଲାଲ ପାଲକୀ ଆସି ନିମ ତଳେ ଥୁଆ ହେଲାରୁ ସେ କାନ୍ଦ କାନ୍ଦ ସ୍ୱରରେ ଜମଶେଦକୁ କହିଲେ— "ପୁଅ, ଇଏ ଭାରି ଗରିବ ଆଉ ଜିଭ ନଥିଲା ଝିଅ । ସେ ତମର ଗ୍ୱକରାଣୀ ଭଳି ରହିବ । ତାକୁ କେତେବେଳେ ବି ଦୁଃଖ ଦେବ ନାଇଁ ।"

ଅଭ୍ରକର ବଡ଼ ବଡ଼ ଫୁଲ ଛପା ଲାଲରଙ୍ଗର ସୂତା ଗ୍ୱଦର ଘୋଡ଼ି ହେଇ ମଂଜୁରୁନ୍ନିସା ପାଲକୀରେ ମୁଣ୍ଡପୋତି ବସିଥିଲା । ତା' ପାଲକୀ ଷ୍ଟେସନକୁ ମୁହେଁଇଲା । ଝାଂଗାପାସା ଆଉ ତା'ର ପିଲାମାନେ ଯୌତୁକ ବାକ୍ସ ସବୁ ମୁଣ୍ଡେଇ ଗ୍ୱଲିଥାଆନ୍ତି । ସବା ଆଗରେ ପାଗ ଭିଡ଼ି, ପୋଷାକ ପିନ୍ଧି ଲାଲ ରୁମାଲ ଧରି ଜମଶେଦ୍ ବର ସାଜି ଗୋବିନ୍ଦାର ଗାଡ଼ିରେ ବସିଥାଏ ।

ଟାଙ୍ଗା ଗାଡ଼ିରୁ ଓହ୍ଲେଇ ମଂଜୁରୁନ୍ନିସା ଘରେ ପହଞ୍ଚିଲା । ସହରରେ ବଢ଼ିଥିବା ଆଲିୟା ତାକୁ ପରଖିଲା ଆଖିରେ ଦେଖିଲା, ଆଉ ମୁହଁ ମୋଡ଼ି ଡାକ ପକେଇଲା— "ମାଆ, ଭାଉଜ ଆସି ପହଞ୍ଚିଲେ ।" ମଂଜୁରୁନ୍ନିସାକୁ ବାରଣ୍ଡା ପାଖକୁ ଲାଗି କୋଠରିରେ ବସେଇ ଦିଆଗଲା । ଯୋଉଠି ତା'ଲାଗି ମଶାରୀଲଗା ପଲଙ୍କ ପଡ଼ିଥିଲା । ସେଇଠି ସାହି ପଡ଼ିଶାବାଲୀ ଆସି ମୁହଁ ଗ୍ୱହାଣୀ ଲାଗି ସାମନାର ଲାଲ ରୁମାଲ ଉପରେ ଟଙ୍କେ ଦି'ଟଙ୍କା ଲେଖାଏଁ ରଖିଦେଇ ଗଲେ । ପ୍ରାୟ ସପ୍ତାହେ ପର୍ଯ୍ୟନ୍ତ ପ୍ରତିଦିନ ତାକୁ ହଲଚଲ ନ ହେଇ ସେଇ ପଲଙ୍କ ଉପରେ ମୁଣ୍ଡ ନୁଆଁଇ ବସିବାକୁ ହେଲା । ଆଉ ଯେତେବେଳେ କେହି ଆସି ତା'ର ଓଢଣା ଟେକିଲେ ସେ ରୀତି ଅନୁସାରେ ଆଖି ବନ୍ଦ କରି ନଉଥାଏ ।

ତା'ପରେ ଯାଇଁ ମଂଜୁରୁନ୍ନିସା ଆଖି ଖୋଲିଲା ଆଉ ନିଜଘରକୁ ଦେଖିଲା । ଏ ଛୋଟ ଘରଟି ତାକୁ ତା'ର ମହଲ ଭଳି ଲାଗିଲା । ବିଜୁଳି ଆଲୁଅ ଥିଲା ସେଇ ଘରେ । ଚଉକୀ ଟେବୁଲ ଥିଲା, ଚିନା ମାଟି ଥାଳି ଗିନା ଥିଲେ, କାଗଜୀ ଫୁଲ ସଜା ହୋଇ ନୀଳରଙ୍ଗର କାଚ ଫୁଲଦାନୀ ଥିଲେ ଆଉ ତା'ର ବିଜୁଳି ଭଳି ନଣନ୍ଦ ଆଲିୟା ସ୍କୁଲରେ ଇଂରେଜି ପଢୁଥିଲା ।

ଜମଶେଦର ସେତେବେଳେ ଏମ୍.ଏ.ଫାଇନାଲ । ରାତିରେ ବି ଟିଉସନ କରି ସେ ଘରଖର୍ଚ୍ଚ ଚଳଉଥିଲା । ଡ୍ରଇଂରୁମ୍‌କୁ ବି ଭଡ଼ା ଲଗେଇ ଦେଇଥିଲା ଆଉ ଖର୍ଚ୍ଚକାଟ ପାଇଁ ନିଜେ ସିଗାରେଟ୍ ଛାଡ଼ି ଦେଇଥାଏ । କୋଡ଼ିଏ ବାଇଶ ବର୍ଷ ବୟସରେ ତା'ଭଳି ପ୍ରଖର ସ୍ୱଭାବର ଯୁବକ ନିରାଶ ଏବଂ ଭାବନାତ୍ମକ ଦୃଷ୍ଟିରୁ ବୁଢ଼ା ହୋଇଯାଇଥିଲା ।

ମଂଜୁରୁନ୍ନିସା ଘରର ସବୁକାମ ମେସିନ ଭଳି ସଂଭାଳି ନେଲା । ସେ ଦୁଇଓଳି ରୋଷେଇ କରେ । ବେଶ ମନଦେଇ ଶାଶୁର କଥା ବୁଝେ, ତାଙ୍କର ଗାଳି ମନ୍ଦ ଆଉ ଟପା ଶୁଣେ । ଦିଅରମାନଙ୍କ କଥା ବୁଝେ ଆଉ ଆଲିୟା ତାକୁ ବେଶ୍ ପ୍ରଭାବିତ କରି ରଖିଥାଏ । ଜମଶେଦ ତା ସାଙ୍ଗରେ କେତେବେଳେ ବି ସିଧାସଳଖ କଥା ହୁଏ ନାହିଁ । ଆଉ ସେଥିରେ ବି ତା'ର କୌଣସି ଦୁଃଖ ନଥିଲା । ପତିର ସେବା କରିବା ତା'ର କର୍ତ୍ତବ୍ୟ । ସେ ଯେପରି ତା'ର ପତିର ପୂଜା କରୁଥାଏ ।

ଯେତେବେଳେ ସେ ପ୍ରଥମ ସନ୍ତାନର ଜନ୍ମ ଲାଗି ମୋହମ୍ମଦ ଗଂଜ ଗଲା, ତା'ପରେ ତାକୁ ଜମଶେଦ ଆଉ କାନପୁର ଡକେଇଲା ନାହିଁ । ସେ ସୈୟଦ ମଜହର ଅଲୀଙ୍କର ବ୍ୟସ୍ତ ଓ ଦୁଃଖପୂର୍ଣ୍ଣ ଚିଠିର ଉତ୍ତର ଦେବା ବି ଛାଡ଼ିଦେଲା ।

ଯୁଦ୍ଧ ଆରମ୍ଭ ହେବା ତିନି ବର୍ଷ ହୋଇଯାଇଥାଏ । ସେ ମିଲିଟାରୀ ଷ୍ଟୋର ବିଭାଗରେ ହାବିଲଦାର କ୍ଲାର୍କ ଚାକିରି କରୁଥାଏ । ବର୍ଷେ ଭିତରେ ତା'ର ଉନ୍ନତି ହେଲା ବି । ଆଉ ସେ ସହରର ଘରକୁ ଭଡ଼ାରେ ଲଗେଇ ଘର ପରିବାର ନେଇ ଛାଉଣୀରେ ଆସି ଖୋଲା ବଡ଼ କ୍ୱାଟରରେ ରହିବାକୁ ଲାଗିଲା । ସେତେବେଳେ ସେ ମାସକୁ ଚାରିଶହ ଟଙ୍କା ବେତନ ପାଉଥାଏ । ଘରକୁ ମିଲଟାରୀ କେଣ୍ଟିନ୍‌ର ବେଶ ଜିନିଷପତ୍ର ଆସୁଥାଏ । ଆଖି ଦୁର୍ବଳ ହୋଇଥିଲେ ବି ସେ ଇମରଜେନ୍ସୀ କମିଶନରେ ଦରଖାସ୍ତ ଦେଇ ପାରୁ ନଥାଏ ବୋଲି ଦୁଃଖ ଥାଏ । ସେକାଳରେ ସେ ରାତିସାରା ଗୋଟାଏ ପୂରା ଡବା ସିଗାରେଟ୍ ଟାଣି ମଂଜୁରୁନ୍ନିସାକୁ 'ତଲାକ' ଲେଖି ପଠେଇଲା ।

ଯେତେବେଳେ ମଂଜୁରୁନ୍ନିସାର ଝିଅ ହେଲା, ସେତେବେଳେ ସୈୟଦ୍ ଅଖତର ଅଲୀଙ୍କୁ ତାଙ୍କର କୁଡ଼ିଆରୁ ଧରି ଅଣାହେଲା । ସେ ନାତୁଣୀ କାନରେ ଅଜାନ୍ କହିଥିଲେ । ଶାହ ମୁନବ୍‌ବର ଅଲୀ କେତେ ନା କେତେ ପ୍ରାର୍ଥନା ପଢ଼ି ଝିଅକୁ ଫୁଙ୍କି ଦେଇଥିଲେ । ସାଇ ମାଇପିମାନେ ଚାଉଳ ଚୂନା କରି ଗୁଲୁଗୁଲା କରି 'ଖୁଦାଇ ରାତ' (ଷଠିଘର ପରି) ପାଳନ କରିଥିଲେ । ନିମ ମୂଳରେ ଚପାତୀ ଭାଣ୍ଡ ନାଚ କରି କେତେ ଲୋକଙ୍କର ନକଲ କରି ନେଇଥିଲା । ଗାଆଁର ଅଲବେଲୀ ଝୁମି ଝୁମି ନାଚି ନାଚି ଗାଇବା ଭଙ୍ଗୀରେ 'ଝଡ୍ଡୁ ଡବଲ... ମିଲୁ ଡବଲ' କହି କହି ସୈୟଦ ମଜହର ଅଲୀଙ୍କ ପାଖକୁ ପହଞ୍ଚିଲା ବେଳକୁ ସେ ସାଙ୍ଗମାନଙ୍କ ସାଙ୍ଗରେ ଖଟ ଉପରେ ବସି ହୁକ୍କା ଟାଣୁଥିଲେ । ନାତୁଣୀ ଜନ୍ମ ଲାଗି ସେ ଭାରି ଖୁସିରେ ରୁମାଲରୁ ଫିଟେଇ ତାକୁ ଦୁଇଟଙ୍କା ବଢ଼େଇ ଦେଇଥିଲେ । ଭିତରେ ଅଗଣାରେ ଓଢଣା ଟାଣି ଝିଂଗାପାସୀର ସ୍ତ୍ରୀ ଅଣ୍ଟାରେ ହାତ ରଖି ବହେ ନାଚୁ ଥାଏ । ହୈଦରୀ ଡମୁଣୀ ଆଉ ତା'ର ଭଉଣୀମାନେ 'ଜଚ୍ଚାଗରିଆ' (ଉତ୍ତରପ୍ରଦେଶ ମୁସଲମାନ ସଂପ୍ରଦାୟରେ ସନ୍ତାନ ଜନ୍ମ ଅବସରରେ ଲୋକପ୍ରଚଳିତ ଗାୟନ) ଗାଇଥିଲେ । ଆଉ ଯେହେତୁ ମଂଜୁରୁନ୍ନିସା

ଝିଅକୁ ଜନ୍ମଦେଲାବେଳେ ମରୁ ମରୁ ବଂଚି ଯାଇଥିଲା, ସେଥିଲାଗି କିଛିଦିନ ପରେ ହଜରତ ଫାତିମାଙ୍କର ପୂଜା ମଧ୍ୟ କରେଇଥିଲେ ।

ଯେତେବେଳେ ନାତୁଣୀର ମୁଣ୍ଡନ ହେଲା, ସେତେବେଳେ ଅଜା ତା'ର ନା ଫରହତୁନ୍ନିସା ବେଗମ ରଖିଲେ । ଶାହ ମୁନବ୍ବରଅଲୀ ତାକୁ ତାବିଜ ଡେଉଁରିଆରେ ଲଦି ପକେଇଥିଲେ । ଅଗଣାକୁ ଢୋଲକ ଅଣାହେଲା; ମଂଜୁରୁନ୍ନିସା ଚକଚକିଆ ରେଶମୀ ଯୋଡ଼ା ପିନ୍ଧି, ଝିଅକୁ କୋଳରେ ଧରି ଖଟ ଉପରେ ବସି ଆଗଭଳି ତା'ର ସାଙ୍ଗମାନଙ୍କୁ କାନପୁର ସହରର ଆଶ୍ଚର୍ଯ୍ୟଜନକ କାହାଣୀ ଶୁଣେଇ ଚାଲିଥାଏ— 'ସଡ଼କ ଉପରେ ଟଣ୍ ଟଣ୍ କରି ରେଳ ଚାଲେ । ଏତେ ବଡ଼ ବଡ଼ କାରଖାନା । ରାତିରେ ଅଗଣାରେ ଶୋଇଗଲେ ସକାଳ ବେଳକୁ ଧୂଆଁ... ଧୂଆଁ । ୟାଙ୍କ ସାଙ୍ଗରେ ମୁଁ ଥରେ ସିନେମା ଦେଖିବାକୁ ଯାଇଥିଲି ବି ।''

ସେତିକିବେଳକୁ ଶମ୍ଭୁ ଦାଦା, ଯିଏ ଗାଆଁର ଡାକବାଲା ବି, ଗୋଟାଏ ରେଜିଷ୍ଟ୍ରି ଚିଠି ନେଇ ଆସିଲେ ।

ସୈୟଦ ମଜହର ଅଲୀଙ୍କ ସ୍ତ୍ରୀ ଗୁମମାରି ବସି ଝୁଲଣା ଡୋରୀ ହଲଉଥିଲେ । ଗାଆଁଟା ସାରାର ମାଇପି ଅଗଣାରେ ରୁଣ୍ଡ ହୋଇ ଯାଇଥିଲେ । ଆଖି ପଡ଼ିବ ନାହିଁ ବୋଲି କଳାଟିକା ଆଉ ହାତରେ କଳାଡୋର ବନ୍ଧା ହୋଇଥିବା ଝିଅଟି ସେଇଭଳି ହାତ ଗୋଡ଼ ଛାଟି ଖେଳୁଥାଏ, ହସି କିର୍ କିର୍ ହେଉଥାଏ । ବାହାରେ ନିମ ମୂଳେ ଚୌକୀର ମିୟାଁ, ଗୋବର କାକା, ଲାଲା ମଜଲିସ ରାୟ, ଶେଖ ରମଜାନ, ମୌଲବି ମୋହମ୍ମଦ ହସନ୍, ପଣ୍ଡିତ ଲକ୍ଷ୍ମୀନାରାୟଣ, ଗୋସାଇଁ କାକା ଓ ଗୋବିନ୍ଦା ମୁଣ୍ଡ ନୁଆଁଇ ବସିଥାଆନ୍ତି । ଶାହ ମୁନବ୍ବର ଅଲୀ ମଠ ଭିତରେ ମଉନ ବସି ଥାଆନ୍ତି । ସେ କେବଳ ଥରଟିଏ ପାଟି ଖୋଲି କହିଲେ— ''ବେଶ ଭାରି ସମ୍ପତ୍ତି ଦେଇଛି ସେ... ଧନ୍ୟବାଦ...''

ସୈୟଦ ଅଖତର ଅଲୀ ଗୋମତୀ କୂଳରେ ଧ୍ୟାନମଗ୍ନ ରହିଥିଲେ । ତାଙ୍କୁ କେହି ହେଲେ ଏ ଖବର ଦେଇନି ।

କେତେ ବର୍ଷ ବିତିଗଲା । ଆଇ ଝିଅଟିକୁ ପାଳିଥାଏ । ମଂଜୁରୁନ୍ନିସା ରାନ୍ଧିବା ଓ ଘରକାମରୁ ଫୁରୁସତ ବେଳେ ଚୁପଚାପ ବସି ଆକାଶକୁ ଅନେଇ ରହେ । ସକାଳେ ଉଠି କ୍ଷୀରକୋଳି ଗଛମୂଳେ ବସି ବନ୍ଦନା ଗାଏ—

'ତୂ ଇ ସରବରୀ ତୂ ଇ ଆକବରୀ
ମେରୀ ବାର କୌଁ ଦେର ଇତନୀ କରୀ ।' (୧)

କେତେବେଳେ ସେ ମିଲାଦ ଶରୀଫ ବହି ଖୋଲି ବସିପଡ଼େ । ଆଉ ଧୀରେ ଧୀରେ ଓଠ ହଲାଏ—

---

୧. ତୋର ତୁଳନା ତୁ ନିଜେ, ତୁ ହିଁ ମହାନ୍ । ମୋ ବେଳକୁ ଏତେ ବିଳମ୍ବ କରୁଛୁ କାହିଁକି ?

ଜବ ବାଗେ ଜହାଁ କେ ମାଲୀ ନେ
କୀ ଦେଖାଭାଲୀ ଫୁଲୋଁ କୀ
ଇକ ଫୁଲ ଉସମେ ସେ ଛାଁଟ ଲିୟା
ଥା ଜିତନୀ ଡାଲୀ ଫୁଲୋଁକୀ...(୨)

ଖରାଦିନର ଲମ୍ବ ଦ୍ୱି'ପ୍ରହରର ମୌନତାରେ, ଶୀତରାତିର ଶୀତଳ ଅନ୍ଧକାରରେ, ବର୍ଷା ଦିନର ଭିଜାଭିଜା ଦ୍ୱି'ପ୍ରହରରେ ତା'ର ସ୍ୱର ସେଇ ଛୋଟ ଘରଟିରେ ଗୁଂଜରିତ ହୋଇ ଉଠୁଥାଏ—

ତେରୀ ଜାତ ପାକ୍ ହୈ ଏ ଖୁଦା, ତେରୀ ଶାନ୍ ଜଲ୍ଲେ ଜଲାଲହୂ
ତେରା ନାମ ଆଦିଲେ କିବ୍ରିୟା, ତେରୀ ଶାନ୍ ଜଲ୍ଲେ ଜଲା ଲହୂ ।
ଜିସେ ଗ୍ୱହେ ଜୈସା ବନା ଦିଆ, ତେରୀ ଶାନ ଜଲ୍ଲେ ଜଲା ଲହୂ ।(୩)

ପ୍ରାୟତଃ ସେ ରୁଟି ବେଲୁଥିବା ବେଳେ, ଫରହତୁନ୍ନିସାର ବେଣୀ ବାନ୍ଧି ଦେଉଥିବା ବେଳେ, ଧାନ ପାଛୋଡ଼ି ଦେବାବେଳେ ସେ ମୌଲବା ମୋହମ୍ମଦ ହସନଙ୍କର ପତ୍ନୀଠାରୁ ଶିଖିଥିବା ଗୀତଟି ଗୁଣୁଗୁଣୁ ଗାଉଥାଏ ।

ଦୋ ଫୁଲ ସାଥ ଖିଲେ, କିସ୍ମତ୍ ଜୁଦା-ଜୁଦା ହୈ
ଇକ କବ୍ର ପେ ଚଢ଼ାହୈ ଇକ ସେହରେ ପେ ଗୁଛା ହୈ ।

(ଦୁଇଟି ଫୁଲ ଏକା ସାଙ୍ଗରେ ଫୁଟିଲେ; ମାତ୍ର ସେମାନଙ୍କର ଅଲଗା ଅଲଗା ଭାଗ୍ୟ । ଗୋଟାଏ କବରରେ ଚଢ଼ାଗଲା ଆଉ ଗୋଟାଏ ବରର ପଗଡ଼ିରେ ବନ୍ଧା ହେଲା ।)

ତାହା ତା ଛାତିରେ ବର୍ଚ୍ଛାଭଳି ଗଳିଯାଏ ଆଉ ଭାବି ବସେ ତା ମୁକୁଟରେ କେଜାଣି କେତେବେଳେ କୋଉ ଫୁଲ ଗୁଛି ହେବ । ସେ ପ୍ରତିଦିନ ଅନେଇ ବସିଥାଏ । କେଜାଣି କେତେବେଳେ ତା' ଲାଗି ଖବର ଆସିବ ଯେ ଜମଶେଦ କୋଉ ବି.ଏ.ପାଶ ଝିଅକୁ ବାହା ହେଲା । ଦିନ କଟିଗଲା । ଆଉ କିଛି ବି ହେଲା ନାଇଁ । ସେତେବେଳେ ସେ ଆଶା କରି ବସିଲା ଯେ ହୁଏତ ଜମଶେଦ ତା' ନିକଟକୁ ଫେରିଆସିବ । କୋଡ଼ିଏ ବର୍ଷ ବୟସରେ ସେ ଚାଳିଶ ବର୍ଷର ଦୁଃଖିନୀ ବୁଢ଼ୀଟିଏ ଭଳି ଦିଶୁଥାଏ ।

ସଲମାନ ମିର୍ଜାର ବମ୍ବେ ଯିବା ଅନେକ ଦିନ ହୋଇଯାଇଥାଏ । କେବେ କେମିତି ସେ ଏଲ୍ଲାବାଦ ଆସେ ଆଉ ଅନ୍ତର୍ଦ୍ଧାନ ହୋଇଯାଏ । ସଲମାନ ଘରର ଗୋଟାଏ ସାଇଡ୍

୨. ଯେତେବେଳେ ଏହି ପୃଥିବୀରୂପକ ବଗିଚାର ମାଳୀ ଫୁଲଗୁଡ଼ିକର ଦେଖାରେଖ କଲା, ସେ ଯେତେ ଯେତେ ଫୁଲର ଶାଖା ଥିଲା, ସେଥିରୁ ଗୋଟିଏ ଫୁଲ ବାଛି ନେଲା ।

୩. ଭାବାର୍ଥ— ତୋର ମହିମା ଅପରଂପାର । ତୁ ମହାନ୍ । ପବିତ୍ର ତୋର ମହାନତା, ନ୍ୟାୟର ତୁଳନା ନାହିଁ । ତୁ ଯାହାକୁ ଯାହା ଇଚ୍ଛା କରିଦେଉ । ତୋର ମହିମା ଅପରଂପାର ।

ରୁମରେ ବୁଟା ବେଗମ ତା ଝିଅ ବସନ୍ତୀ ସାଙ୍ଗରେ ରହୁଥାଏ । ଅନେକ ବର୍ଷ ହେଲା ସେମାନଙ୍କର କେସ୍ ରିଟ୍ କୋର୍ଟ ପର୍ଯ୍ୟନ୍ତ ଯାଇଥିଲା ଓ ସେମାନେ ମୋକଦ୍ଦମା ଜିଣି ନବାବ୍ ଶମ୍‌ସଆରା ବେଗମ ଓ ନବାବ ଭୂରେ ଖାନଙ୍କ ମୁହଁ ତଳକୁ କରିସାରିଥାଆନ୍ତି । ବୁଟା ବେଗମ ଈଶ୍ୱରଙ୍କୁ କୌଣସି ଭଦ୍ର, ସାଧାରଣ ରୋଜଗାରିଆ ଯୁବକ ସାଙ୍ଗରେ ବାସନ୍ତୀ ବେଗମର ବାହା ହୋଇଯାଉ ବୋଲି ପ୍ରାର୍ଥନା କରୁଥିଲେ । ସଲମାନ ଘରେ ତାଙ୍କର ସ୍ଥାନ ହାଉସ୍‌କିପର ଭଳି ଥିଲା । ସେ ଗୁରୁବାର ଦିନ ମଜଲିସ ବି ପଢୁଥିଲେ । ଆଉ କନ୍‌ଭେଣ୍ଟ ଛୁଟି ହେଲେ ଯେତେବେଳେ ଛୋଟ ଝିଅ ମସୁରୀରୁ ଆସୁଥିଲା, ସେତେବେଳେ ତା'ର ପୋଷାକପତ୍ରର ଦେଖାରେଖା କରିବାର ଭାର ମଧ୍ୟ ବୁଟା ବେଗମ ଉପରେ ନ୍ୟସ୍ତ ହୋଇ ରହିଥିଲା । ସେ ଉଠୁଣୁ ବସୁଣୁ କଲେକ୍ଟର ସାହେବଙ୍କର ମଙ୍ଗଳ କାମନା କରୁଥିଲେ । କଲେକ୍ଟର ସାହେବ ରିଟାୟର୍ଡ ହୋଇ ସାରିଥିଲେ । ସେ ଆପଣା କୋଠରିରେ ଆରାମ ଚଉକିରେ ବସି ସୂଫୀ ଧର୍ମଗ୍ରନ୍ଥ ପଢୁଥିଲେ । ବସନ୍ତୀ ବେଗମ ସ୍କୁଲ ଯାଉଥାଏ । ଆଉ ଫେରିବା ପରେ ସାଇଡ୍ ରୁମ୍‌ରେ ବସି ଜଳରଙ୍ଗର ଛବି ଆଙ୍କୁଥାଏ । ଯୋଉଦିନ ସ୍କୁଲର ବାର୍ଷିକ ଉତ୍ସବର ପ୍ରଦର୍ଶନୀରେ 'ଆର୍ଟ'ର ପ୍ରଥମ ପୁରସ୍କାରସ୍ୱରୂପ ଶହେଟଙ୍କା ତାକୁ ମିଳିଲା, ସେଦିନ ବୁଟା ବେଗମ ଖୁସିରେ ଢେର କାନ୍ଦିଥିଲେ । ଅନେକ ଦିନ ପରେ ପହିଲା କରି ତାଙ୍କ ହାତକୁ ଏକା ସାଙ୍ଗରେ ଶହେଟଙ୍କା ଆସିଥିଲା । ତାଙ୍କର ଛୋଟ-ମୋଟ ଅଳଂକାର, ଗାଆଁର ତିନିମାଣ ଜମି, ମୋହମ୍ମଦ ଗଂଜର ପୈତୃକ ଘର ଆଉ ବାକି ସଂପତ୍ତି ମୋକଦ୍ଦମାରେ ସ୍ୱାହା ହୋଇ ଯାଇଥିଲା । ପାନ, ଗୁଣ୍ଡି ଖର୍ଚ୍ଚ, ବସନ୍ତୀ ବେଗମର ସ୍କୁଲ ଫିସ୍, ବହିପତ୍ର, ତା'ର ପୋଷାକ-ପତ୍ର ସବୁ କିଛିର ଦାୟିତ୍ୱ ନିଜେ ମେମ୍ ସାହେବ ବହନ କରିଥିଲେ । ଦି'ଓଳିର ଖାଇବା ବୁଟା ବେଗମ୍, ବସନ୍ତୀ ଓ ସଲମାନର ବୁଢ଼ୀ ଆୟା ନିୟାଜୀ ପିଇସୀ ଲାଗି ପଛ ବାରଣ୍ଡାର ଟେବୁଲରେ ବାଢ଼ି ଦିଆ ହେଉଥିଲା ।

ନମାଜ ପରେ ପରେ ବୁଟା ବେଗମ୍ ପ୍ରାୟତଃ ତାଙ୍କର ମୃତ ଯୁବାପୁତ୍ରକୁ ମନେପକେଇ କାନ୍ଦୁଥିଲେ ଆଉ ତାଙ୍କର ଲୁହରେ ପ୍ରାର୍ଥନା ଆସନ ତିନ୍ତି ଯାଉଥିଲା । ମୋହର୍ରମ ସମୟରେ ସେ ପତାକାମାନଙ୍କର ପରିକ୍ରମା କରି ଗମ୍ବୁଜ ଭଳି ତାଜିଆ ଓ ଅନ୍ୟ ତାଜିଆମାନଙ୍କର ଧୂଳି ଆଖିରେ ମାରି ଜନାବ ଅଲୀ ଅସଗରଙ୍କ ଦୋଳି ଆଉ ଇମାମ ହୁସୈନଙ୍କ ଘୋଡ଼ା ସାମନାରେ ଠିଆହୋଇ କାନ୍ଦି କାନ୍ଦି ଦୁଃଖ ଜଣାଏ, 'ହେ ପ୍ରଭୁ, ହେ ସଂକଟ ମୋଚନକାରୀ, ହେ ସର୍ବହିତକାରୀ ଅପବର୍ଗଦାତା ବସନ୍ତୀର ଭାଗ୍ୟ ଉଜ୍ଜ୍ୱଳ କରିଦେ । ବସନ୍ତୀକୁ ମାନ ମର୍ଯ୍ୟାଦା ଦେଇ ତା'ର ଠିକଣା କରିଦେ ।'

ଯୋଉ ସମୟରେ ବସନ୍ତୀ ଆଣି ତାଙ୍କୁ ଶହେଟଙ୍କିଆ ନୋଟଟି ବଢ଼େଇ ଦେଲା, ସେତେବେଳେ ସେ ରୋମାଞ୍ଚିତ ହୋଇ ଉଠିଲେ । ଏତେ ଟଙ୍କା ତାଙ୍କର ଦୁଃଖିନୀ ଝିଅର ଯୋଗ୍ୟତା ଓ ପରିଶ୍ରମର ପୁରସ୍କାର । "ହେ ଈଶ୍ୱର, ତା'ର କପାଳ ଖୋଲି ଦେ !"

ଆନନ୍ଦ ମୋହନ ଘୋଷ ସ୍କୁଲର ହେଡ୍‌ମିଷ୍ଟ୍ରେସ୍‌ଙ୍କ ସାନ ଭାଇ । ପ୍ରଦର୍ଶନୀରେ ବସନ୍ତୀ ବେଗମର ଚିତ୍ର ଦେଖିବା ପରେ ସେ ଏଲ୍.ଏମ୍.ସେନଙ୍କୁ ଲେଖିଥିଲେ— ''ଯଦି ମୁଁ କହେଁ ଯେ ମୁଁ ଗୋଟାଏ ଜିନୀୟସ୍‌କୁ ଡିସ୍କଭର କରିଛି, ତା'ହେଲେ ଆପଣଙ୍କର ବିଶ୍ୱାସ ହେବ ନାହିଁ ।''

ତା'ପରେ ଲକ୍ଷ୍ନୌ ଆର୍ଟ ସ୍କୁଲର ପ୍ରିନ୍ସିପାଲ ଏଲ୍.ଏମ୍. ସେନ ଯେତେବେଳେ ଏଲ୍ଲାବାଦ ଆସିଲେ, ସେତେବେଳେ ମିସ୍ ଗୀନା ଘୋଷ ତାଙ୍କର ସେଇ ପ୍ରତିଭାଶାଳୀ ଛାତ୍ରୀ ସାଙ୍ଗରେ ସାକ୍ଷାତ୍ କରେଇଲେ ।

ତା'ପରବର୍ଷ ମ୍ୟାଟ୍ରିକ୍ୟୁଲେସନ ପରେ ବସନ୍ତୀ ବେଗମ ସରକାରୀ ବୃତ୍ତି ପାଇ ସ୍କୁଲରେ ପଢ଼ିଲା । ସେ ଥାର୍ଡ ଇୟରରେ ପଢୁଥିବାବେଳେ ବୁଟା ବେଗମ ଅତି ଅସୁସ୍ଥ ହୋଇପଡ଼ିଲେ ଓ ତାକୁ ଏଲ୍ଲାବାଦ ଫେରି ଆସିବାକୁ ପଡ଼ିଲା । ଫେରି ସେ କଲେଜରେ ନାଆଁ ଲେଖେଇଲା ଆଉ ବସନ୍ତୀ ବେଗମ ବୋଲେଇବା ଛାଡ଼ିଦେଲା । କାରଣ ସେଇ ନାଆଁଟି ତା'ର ଅତ୍ୟନ୍ତ ଦୁଃଖୀ ପିଲାଦିନର ସ୍ମୃତି ବିଜଡ଼ିତ ଥିଲା । ଏଫ୍.ଏ. ପରେ ସେ ତା'ର ପୁରୁଣା ସ୍କୁଲର ଡ୍ରଇଁ ଟିଚର ଭାବରେ ଯୋଗଦେଲା । ସେ ବୁଟା ବେଗମକୁ କହିଲା—

''ମୁଁ ତେର ବର୍ଷ ବୟସରୁ ଧକ୍କା ଖାଇ ଆସୁଛି । ସାତବର୍ଷ ହେଲା ଆମେମାନେ ଏ ମହଲରେ ରହିଆସିଲଣି । ମୋତେ ମାଗଣା ମାଗଣା ଖିଆକୁ ଲାଜ ହେଲାଣି । ମୋତେ ଶହେ ପଚିଶ ଟଙ୍କାର ଗ୍ୱକିରିଟିଏ ମିଳିଛି । ସଂଜବେଳେ କିଛି ଟ୍ୟୁସନ୍ କରିବି ଆଉ ସହରରେ ଘର ନେଇ ରହିବି । ତମେ ଜିନିଷପତ୍ର ବନ୍ଧାବନ୍ଧି କର ।''

'ଏକୁଟିଆ ଝିଅଟିଏ ରହିବୁ କେମିତି ?' ବୁଟା ବେଗମ ଭାରି ବ୍ୟସ୍ତ ହୋଇ ପଗ୍ୱରିଲେ ।

'ମାଁ,' ସେ ଚିଡ଼ିଲା ଭଳି ଆଲୋଚନା ଶେଷ କରିବା ଢଙ୍ଗରେ ଉତ୍ତର ଦେଲା— ''ମା, ମୁଁ ସେଇ ବସନ୍ତୀ ବେଗମ ହୋଇ ରହିନାଇଁ ଯେ ନବାବ ଭୂରେଙ୍କର ସିପାହୀ ଉଠେଇନେଇ ଗ୍ୱଲିଯିବେ । ତା'ପରେ ମୁଁ ଏକାକୀ ହୋଇ ରହିନାଇଁ । ଦେଶର ସବୁ ଜନତା, ଶ୍ରମିକ ଶ୍ରେଣୀ ମୋ ସାଙ୍ଗରେ ଅଛନ୍ତି ।'' ସେ ଆନନ୍ଦ ଘୋଷଙ୍କର ଶବ୍ଦର ପୁନରାବୃତ୍ତି କରି କହିଲା, ''ଯାହା ସେ ଓଜସ୍ୱିନୀ କଣ୍ଠରେ କହିଥିଲେ— ସୂର୍ଯ୍ୟ ଦେଶର ସଂପୂର୍ଣ୍ଣ ଜନତା, ସାରା ଓ୍ୱର୍କିଂ କ୍ଲାସ ତମ ସାଙ୍ଗରେ ଅଛନ୍ତି ।''

ଏ ନୂଆ ବସନ୍ତୀ ଯାହା କହୁଛି, ତହିଁରୁ ବୁଟା ବେଗମ ମୁଣ୍ଡକୁ କିଛି ବୋଲି କିଛି ପଶିଲା ନାଇଁ । ସେ ଯାଇ ମେମ୍ ସାହେବଙ୍କୁ କହିଲାରୁ ସେ ଧୀରେ ଧୀରେ ଉତ୍ତର ଦେଲେ— ''ମୁଁ ସବୁ ବୁଝୁଛି । ମୋ ପୁଅ ସେମିତି ଘରର ସବୁ ସୁଖ-ସ୍ୱାଚ୍ଛନ୍ଦ୍ୟ ଛାଡ଼ି ଏଣେତେଣେ ଘୂରି ବସିଲାଣି । ଆଜିକାଲିର ପିଲା ଏମାନେ ସବୁ । ଏମାନଙ୍କୁ ବୁଝେଇ କିଛି ବୋଲି କିଛି ମିଳିବ ନାଇଁ । ଏମାନେ ସବୁବେଳେ ତାଙ୍କ ମନକୁ ଯାହା ଆସିବ, ତାହା କରିବେ । ଯିବ ଯଦି ସବୁ ଶୁକ୍ରବାରକୁ ଶୁକ୍ରବାର ଆସୁଥିବ ନା ! ମୁଁ ଗାଡ଼ି ପଠେଇବି ।''

ସଲମାନ ଥରେ ଏଲ୍ଲାବାଦ ଆସିଲାରୁ ଆନନ୍ଦ ମୋହନ ଘୋଷ, ବାସ୍ତବ ଅର୍ଥରେ ଜନବାଦୀ ଶିଳ୍ପୀ ଭାବରେ ପ୍ରତିଷ୍ଠିତ ହୋଇ ସାରିଥିବା ସୁରେୟା ହୁସେନ ସଂବନ୍ଧରେ ଆଲୋଚନା କରିଥିଲେ । କାରଣ ଶିଳ୍ପୀ ହେବା ସହିତ ସୁରେୟା ହୁସେନ ସ୍ୱୟଂ କୃଷକ ପରିବାରର । ସଂଧ୍ୟାରେ ଆନନ୍ଦ ମୋହନ ଘୋଷ ସଲମାନଙ୍କୁ ପୁରୁଣା କଟରାର ଗୋଟାଏ ଛୋଟ ଘରକୁ ନେଇଗଲେ । କବାଟରେ କରାଘାତ କଲେ । ଭିତରୁ ଥାଇଁ ଅନେଇଲେ ବୁଟା ବେଗମ୍ ।

'ମିସ୍ ହୁସେନ୍ !' ଆନନ୍ଦ ମୋହନ ପଚ୍ଚାରିଲେ ।

'କିଏ...!'

'ମିସ୍ ହୁସେନ !'

ବୁଟା ବେଗମ ବୁଝି ପାରିଲେ ନାଇଁ ! 'ବସନ୍ତୀ' ସେ ଡାକ ପକେଇଲେ । ସେ ଆସିଲା ।

'ଆରେ ବସନ୍ତୀ ବେଗମ୍ !' ସଲମାନ ଆଶ୍ଚର୍ଯ୍ୟ ଓ ଆନନ୍ଦରେ କହିଲା— ''ଏତେ ରହସ୍ୟମୟୀ ବନି ଗଲୁଣି ତୁ ବୋଲି ମୁଁ ଆଉ କୋଉଠି ଜାଣିଛି ? ମୁଁ ଯେ ଦୁଆର ମୁହଁରେ ମିସ୍ ହୁସେନଙ୍କୁ ଭେଟିବି ବୋଲି ଗୋଟାପଣେ କମ୍ପୁଛି !''

ସୁରେୟା ଖୁସିରେ ଖିଲ୍ ଖିଲ ହସିଲା— ''ଆସନ୍ତୁ ଆସନ୍ତୁ ! ବାହାରେ ଠିଆ ହେଲେ ଯେ !'' ବୁଟା ବେଗମ ମଥା ଉପରକୁ ଓଢଣା ଟାଣି ନେଇ ଭିତରକୁ ଚ୍ଚାଲିଗଲେ ।

ସୁରେୟା ସେ ଦୁହିଁଙ୍କୁ ଭିତର କୋଠରିକୁ ନେଇଗଲା । ସେଇଟା ତା'ର ଷ୍ଟୁଡ଼ିଓ ବି । ସଲମାନ ସାରା କୋଠରିକୁ ନିରେଖି ଚ୍ଚାହିଁଲା... 'ବାହ ! କମାଲ !' ସେ ତାଙ୍କର ବଙ୍ଗଳାରେ ସୁରେୟାକୁ କୋରାନ୍ ଶରୀଫ୍ ପଢୁଥିବା ଆତୋଜୀଙ୍କର ଝିଅ ବସନ୍ତୀ ବେଗମ ଭାବରେ ଦେଖିଥିଲା । ଯେତେବେଳେ ସେ ତାକୁ ପରଦା କରି ଏଣେତେଣେ ଜାକିଜୁକି ରହୁଥିଲା । ଆଉ ଏଇନେ ସେ ଆତ୍ମବିଶ୍ୱାସୀ ଆର୍ଟିଷ୍ଟ ସୁରୈୟା ହୁସେନ୍‌ର ଆର୍ଟ ଗେଲେରୀରେ ଠିଆ ହୋଇଥିଲା । ସେତେବେଳେ ସେ ସୁରୈୟାକୁ ନିରେଖି ଚ୍ଚାହିଁଲା ଆଉ ସେ ଆଶ୍ଚର୍ଯ୍ୟ ହେଲା, ଏଭଳି ଏକ ପ୍ରତିଭା କୋଉଠି ଲୁଚି ରହିଥିଲା ସତରେ !

ସଲମାନଙ୍କୁ ପୁଣି ଏଲ୍ଲାବାଦ ପଠାଯାଇଥାଏ । ସେ ସୁରୈୟାକୁ ସାଙ୍ଗରେ ନେଇ ଉତ୍ସବ ସମାରୋହ, ରାଜନୈତିକ ସାହିତ୍ୟିକ ସଭାକୁ ଯିବାକୁ ଲାଗିଲା । ଆଉ ସୁରୈୟା କ୍ରମଶଃ ସେମାନଙ୍କର ମିତ୍ରମଣ୍ଡଳୀର ଜଣେ ହୋଇଗଲା ।

ସୁରୈୟା ସେଇ ଶ୍ରେଣୀର ପ୍ରତିନିଧି, ଯାହା ଏଇ ଯୁବକମାନଙ୍କ ଲାଗି ପଥପ୍ରଦର୍ଶକ । ସେ ସ୍ୱୟଂ ମଧ୍ୟ ଭୟାନକ ଭାବରେ ଫ୍ୟୁଡଲ ଶାସନର ଶିକାର ହୋଇସାରିଛି । ସେମାନେ ସମସ୍ତେ ତା'ଠାରୁ ଦୁର୍ଗାକୁଣ୍ଡ ଗଡ଼ର ଘଟଣା ସବୁ ଶୁଣନ୍ତି । ତାକୁ କେମିତି ଛ' ମାସ କାଳ ସେଇଠି ବନ୍ଦକରି ରଖାହେଇଥିଲା । ସେ ସେଇ ଭୟଙ୍କର ରାତିର କଥା ବି କହେ, ଯୋଉ ରାତିରେ କନାରେ ମୁହଁ ବାନ୍ଧି ଗୁଣ୍ଡାଗୁଡ଼ିକ ତା'ର ଗୋଟାଏ ବୋଲି ଭାଇକୁ ଫାର୍ସୀ ମାରି

ମାରି ପକେଇଲେ । ସେ ଅନ୍ଧ ଆଉ ନିର୍ଦ୍ଧନ ବାପ କଥା ମନେପକାଏ, ଯେ ଅତି ବେଦନାର୍ଦ୍ର କଣ୍ଠରେ ଶୋକ ଗୀତ ପଢୁଥିଲେ ଯେ ଶୁଣିବା ଲୋକର ଛାତି ବିଦାରି ହୋଇଯାଏ । ସେ ସାଥୀମାନଙ୍କ ପାଇଁ ହିରୋଇନ ଆଉ ସଲମାନ ପାଇଁ ତା'ର ଆଦର୍ଶରେ ପରିଣତ ହୋଇଗଲା । ସେଇ ସମୟରେ ସେ ଘରୋଇ ଭାବରେ ପରୀକ୍ଷା ଦେଇ ବି.ଏ ପାଶ ହେଇଗଲା ବି ।

ଛୋଟ ଝିଅ (କୁନୀ) ସେତେବେଳେ କ୍ରସ ଓ୍ୱେଟ କଲେଜରେ ଥାଏ । ବୁଟା ବେଗମ ପ୍ରତି ଶୁକ୍ରବାର ଦିନ 'ସଲମାନ କୋଠୀ'କୁ ଯାଇ ମଜଲିସ ପଢୁଥିଲେ । ତେବେ ସୁରୈୟା ତାଙ୍କ ସାଙ୍ଗରେ ଅତି କମ୍ ଯାଉଥାଏ । ତା'ର ଆଉ ସଲମାନ କଥା ଭାବି ବେଳେବେଳେ ବୁଟା ବେଗମଙ୍କର ଛାତି ଥରି ଯାଏ । 'ସାହବ, ମେମ୍ ସାହେବ ମୋତେ କେତେ ନିମକ ହାରାମ ବୋଲି ଭାବିବେ ନାଇଁ ।' ସେ ପ୍ରାୟ ଏଇକଥା ଦୁଃଖରେ ସଢ଼ି ସଢ଼ି ଭାବନ୍ତି । ସୁରୈୟାକୁ କିଛି କହନ୍ତି ନାଇଁ ଓ ସଲମାନ କୋଠିକୁ ସଂକୋଚରେ ଆସନ୍ତି । ମେମ୍ ସାହେବ ଏ ବାବତରେ କେବେହେଲେ କୌଣସି କଥା ପକେଇ ନାହାନ୍ତି ।

ସନ୍ ୧୯୪୭ ଏପ୍ରିଲ୍‌ରେ କୁନୀ ଏଫ୍.ଏ. ପରୀକ୍ଷା ଦେଲା ଆଉ ସବୁ ବର୍ଷ ଭଳି ବାପା ମାଆଙ୍କ ସାଙ୍ଗରେ ମସୁରୀ ଗ୍ଲିଗଲା । ସଲମାନ ଏଲ୍ଲାବାଦରେ ଥାଏ । ସେତେବେଳେ ଭାରତର ବିଭାଜନ ଘୋଷଣା ହେଲା ।

ଯୁଦ୍ଧ ପରେ ଯୋଉ ବିଭାଗରେ ଜମଶେଦ କାମ କରୁଥିଲା, ତାହା ବନ୍ଦ ହୋଇଗଲା ଆଉ ତା'ର ବୟସ ହୋଇଯାଇଥିଲା ବୋଲି ଆଇ.ସି.ଏସ୍ କିମ୍ବା ପି.ସି.ଏସ୍ ପରୀକ୍ଷା ଦେଇ ପାରିଲା ନାହିଁ । ବିଭାଜନର ଠିକ୍ ପରେ ପରେ ସେ ଭାଗ୍ୟ ପରୀକ୍ଷା କରିବାକୁ କରାଚୀ ଗ୍ଲିଗଲା ।

ସାରାଦିନ ବର୍ଷା ଲାଗି ରହିଥାଏ । ବରସାତୀର କଲର ଟେକି, ସଲମାନ ଚଞ୍ଚଳ ପାଦରେ ଆସି ସୁରୈୟା ଘରେ ପହଞ୍ଚିଗଲା । ସଂଜ ହୋଇ ସାରିଥାଏ । ଗଳିରେ ବେଙ୍ଗ କେଁ କଟର ହେବା ଆରମ୍ଭ କରି ଦେଇଥା'ନ୍ତି । ପଡ଼ୋଶୀ ଘରୁ ରେଡ଼ିଓ ଶୁଭୁଥାଏ । ପଂଜାବ ଓ ଦିଲ୍ଲୀରୁ ଯାଉଥିବା ଆଶ୍ରୟପ୍ରାର୍ଥୀ ଓ ଶରଣାର୍ଥୀଙ୍କର ଠିକଣା ତାଙ୍କର ସ୍ୱଜନମାନଙ୍କୁ ଶୁଣେଇ ଦିଆହେଉଥାଏ । ବାତାବରଣରେ ବିଚିତ୍ର ଅପଶକୁନ ଓ ଶୂନ୍ୟତା ଭରି ରହିଥାଏ । ସଲମାନର ପାଦଶବ୍ଦ ଶୁଣି ସୁରୈୟା ଝରକା ରେଲିଂ ଦେଇ ବାହାରକୁ ଅନେଇଲା । ସେ ଭିତରକୁ ଗଲା । ସୁରୈୟା ତା'ପାଇଁ ଚଉକିଟି ଝରକା ପାଖକୁ ଆଣି ପକେଇଦେଲା । 'ପୂରା ଶ୍ୱାସ-ରୁଦ୍ଧ ଅବସ୍ଥା ଆସିଗଲା'' ସେ ଯେମିତି ଖାଲି ଖାଲି ସ୍ୱରରେ କହିଲା ।

ସଲମାନ୍ ଚଉକିରେ ବସିପଡ଼ି ଘଡ଼ିକୁ ଅନେଇଲା ଆଉ ସିଗାରେଟ ଧରେଇଲା ।

'ହାତରେ ସମୟ ନିହାତି କମ'— ସେ ଅତି ମାପିଚୁପି କହିଲା— ''ମୁଁ ଜାଣିଛି ଯେ କୌଣସି ବି କ୍ରାଇସିସ୍‌ରେ ତୋର ପାଦ ଟଳମଳ ହେବନାଇଁ ଆଉ ତୁ ବରାବର ସାଙ୍ଗରେ ଥିବୁ— ଠିକ୍ କହୁଛି ନା ସୁରୈୟା ?'' ହଠାତ୍ ତା'ର ସ୍ୱରରେ ପିଲାଟିଏ ଭଳି ଭାବ ଖେଳିଗଲା । ଛୋଟ ପିଲାଟିଏର ଢଙ୍ଗ ।

''ଭାଷଣ ଶୁଣାଅ ନାଇଁ ।'' ବ୍ୟସ୍ତ ହେଇ କହିଲା ସୁରୈୟା– 'ମୁଁ କେତେବର୍ଷ ହେଲା ଲଗାତାର ତମର ଭାଷଣ ଶୁଣୁଛି– କ୍ରାଇସିସ୍, ଆଦର୍ଶ ସିଦ୍ଧାନ୍ତ, ମୂଲ୍ୟ...'

'ତୁ ବି ମୋତେ ନିରାଶ କରୁଛୁ ଟୋକୀ, ନିରାଶ କରନା !' ଆଶ୍ଚର୍ଯ୍ୟ ଆଖିରେ ଅନେଇ ସତରେ ଯେମିତି ଅନେକ ବ୍ୟଥାରେ କହିଲା ସଲମାନ୍ ।

'ନିରାଶ, ତମେ ଯେମିତି ମଣିଷ ପାଇଁ ଏକ ଆନନ୍ଦମିଶା ଧାରଣାରେ ବୁଡ଼ି ରହିଛ ।'

ଗଳିରୁ ରେଡ଼ିଓ ଶୁଣାଗଲା– 'ଶ୍ରୀ ନବାବଚନ୍ଦ୍ର ଖନ୍ନାଙ୍କର ପରିବାର ଡେକୋଟା ଦ୍ୱାରା ପେଶବାରରୁ ଅମୃତସର ପହଞ୍ଚୁଛି । ଜନାବ ଫଜଲୁଦ୍ଦୀନ, ଏଡ୍‌ଭୋକେଟ୍‌ଙ୍କର ପରିବାର ନିରାପଦରେ ହୋଶିୟାର-ପୁରରୁ ଲାହୋର ପହଞ୍ଚି ସାରିଛି । ଚୌଧୁରୀ ଟୀକାରାମ ଆଉ ତାଙ୍କର ପରିବାର ପାଇଁ ଜାହାଜ ଜେହଲମ୍ ପଠା ଯାଉଛି... ଶୁଣନ୍ତୁ ପୁଣି ଥରେ... ।''

ସୁରୈୟା ଝରକା ବନ୍ଦ କରିଦେଲା ।

'ସୁରୈୟା ସଲମାନ୍ ସେହିଭଳି ବ୍ୟସ୍ତ ବିବ୍ରତ କଣ୍ଠରେ କହିଲା– 'ତୁ ଅବଷ୍ଟ୍ରେକ୍ଟ ଛବି ଆଙ୍କିକି ଯଥାର୍ଥତାରୁ ପୂରା ଦୂରେଇ ଗଲୁଣି ।'

''ସିଏବି ଆଉ ଏକ ଭ୍ରମ । ସଲମାନ୍ ମିୟାଁ, ମୁଁ ତମ ସାଙ୍ଗରେ ଆର୍ଟ ପ୍ରସଙ୍ଗରେ କୌଣସି ବିତର୍କ କରିବାକୁ ଚାହୁଁନି । ସେ ତମର ଇଲାକା ନୁହେଁ ।''

ପବନ ଆଘାତରେ ଝରକାର ଗୋଟିଏ କବାଟ ଜୋରରେ ଖୋଲିଗଲା ।

'ମୁଁ ଏଇଠି ବସି ପ୍ରତିଦିନ ସମାଚାର ଶୁଣୁଛି । ହେଲେ ତମ ପରିବାରର ନିରାପଦରେ ରହିଥିବା ଖବର ଏଯାଏଁ ଶୁଣିନାହିଁ ।'' ତାର କଣ୍ଠସ୍ୱରରେ କଠୋରତା ଭରି ରହିଥିଲା ।

''ଆଉଥରେ ଶୁଣନ୍ତୁ... ଜନାବ କମରୁଦ୍ଦୀନ ମିର୍ଜା, ବେଗମ ମିର୍ଜା ଆଉ ମିସ୍ ମିର୍ଜା...

ସଲମାନ ନିଃଶ୍ୱାସ ବନ୍ଦ କରି ଶୁଣିଲା ଆଉ ତା'ର ଚେହେରାର ରଙ୍ଗ ମଉଳି ଗଲା–

'ରବିବାର ଦିନ ସେନାବାହିନୀ ସାଙ୍ଗରେ ମସୁରୀରୁ ଲାହୋର ଯାତ୍ରା କରିଛନ୍ତି । ଡା.ହରିରାମ ମଲହୋତ୍ରା, ସରଦାର ଖୁଶହାଲ ସିଂହ ଆଉ ଲାଲା ଗୁଲାବଚନ୍ଦ...'

କିଛିକ୍ଷଣ ପାଇଁ କୋଠରିଟିରେ ସଂପୂର୍ଣ୍ଣ ନୀରବତା ଭରିଗଲା । ସଲମାନ ସେଇଭଳି ବସିରହିଥାଏ । ତାକୁ ଚିନ୍ତିତ ଦୃଷ୍ଟିରେ ଚାହିଁଲା ସୁରୈୟା । ତାକୁ ଆପଣାର ଛୋଟପଣ ପାଇଁ ଦୁଃଖ ହେଲା । ସେ ଚାଲିଯାଇ ସାଙ୍ଗେ ସାଙ୍ଗେ ତା' ପାଇଁ ଚା' ନେଇ ଆସିଲା ।

''ମମୀଙ୍କ ଚିଠି କିଛିଦିନ ତଳେ ଆସିଥିଲା '' ସଲମାନ ଚା'ରେ ଚିନି ମିଶେଇ ମିଶେଇ ପୁଣି କହିଲା– ''ଯୋଉଦିନ ତାଙ୍କର ମସୁରୀର କୋଠି ଜଳେଇ ଦିଆଗଲା, ତା'ର ପରଦିନ ସେ ଲେଖିଥିଲେ ଯେ ସେ କୁନୀ ପାଇଁ ଚିନ୍ତିତ ଥିଲେ । ଏ ପର୍ଯ୍ୟନ୍ତ ଶହ ଶହ ଯୁବତୀଙ୍କୁ ଅପହରଣ କରାସରିଛି ।''

''ବ୍ୟସ୍ତ ହୁଅନା' ସୁରୈୟା ତା'ର ବାହୁରେ ହାତ ଗ୍ରିପି କହିଲା— ''ସେମାନେ ନିରାପଦରେ ପହଞ୍ଚି ଯିବେ ।''

''ମୋ ଲାଗି ସିଗାରେଟ ଟିଏ ଜଳେଇ ଦେ'

ସୁରୈୟା ଦରାଣ୍ଡି ଦରାଣ୍ଡି ସିଗାରେଟ ଓ ଦିଆସିଲି ଖୋଜିନେଲା । ସଲମାନ ହାତକୁ ବଢ଼େଇ ଦେଲା । ସୁରୈୟା ମୋଢ଼ା ଉପରେ ବସି ରହିଥାଏ । କିଛି ସମୟ ପରେ ସଲମାନ ଧୀରେ ଧୀରେ କହିଲା— ''ବାବା ବିହାରର ଗୋଟାଏ ମରୁଡ଼ିଗ୍ରସ୍ତ ଇଲାକାର ଦରିଦ୍ର ଓ ସାଧାରଣ ସୂଫୀ ପରିବାରରେ ଜନ୍ମ ହେଇଥିଲେ । ତାଙ୍କୁ ପି.ସି.ଏସ୍‌ର ଉପାଧି ମିଳିଲା । ଆଉ ସେ ସମ୍ମାନନୀୟ ମଧ୍ୟମ ବର୍ଗରେ ସମ୍ମିଳିତ ହୋଇଗଲେ । ତେବେ ମାନସିକ ସ୍ତରରେ ସେ ସଚ୍ଛ ସ୍ୱଭାବର ଥିଲେ । ମୋର ସବୁବେଳେ ମମୀ ଆଉ କୁନୀ ପାଇଁ ଚିନ୍ତା । ସେମାନଙ୍କୁ ଅତି କଠିଣ ଭାବନାତ୍ମକ ଦୁଃଖର ସମ୍ମୁଖୀନ ହେବାକୁ ପଡ଼ିବ ।''

'ତମର ମସୂରୀ କୋଠି ଜଳେଇ ଦିଆଯାଇଛି ?'' ସୁରେୟା ପଗ୍ରରିଲା ।

'ହଁ' ଅନ୍ଧାରରେ ସଲମାନର କଥା ଶୁଭୁଥାଏ— ''ଯେଉଁ ଶାସନ ଏଇ ଧାର୍ମିକ ପକ୍ଷପାତକୁ ଜନ୍ମ ଦେଇଛି, ସେଇ ପକ୍ଷପାତିତାର ହାତରେ ସମାଜର ଘର ଜଳୁଛି । ତେବେ ସୁରୈୟା, କେବଳ ଏଇ କାରଣରୁ ଆଜି ଏଇ ବୁନିଆଦି ଭେଦଭାବକୁ ବଳ ମିଳିଛି । ଅତୀତକାଳର ପ୍ରାସାଦର ଅନ୍ତଃପୁର ଜଳି ପାଉଁଶ ହେଇଗଲା । ଆଉ ଏଇନେ ସେଇ ଧ୍ୱଂସାବଶେଷକୁ ନିହ କରି ତା' ଉପରେ ଦୁଇ ଦେଶର ସଂପନ୍ନତାର ନୂଆ ମହଲ ଠିଆ ହେବ । କାଲିର ଜମିଦାରଙ୍କ ଜାଗାରେ ଆଜି ସଂଭ୍ରାନ୍ତ ବୋଲାଉଥିବା ଧନୀ ପ୍ରତିଷ୍ଠା ପାଇବ । ଆମର ବାସ୍ତବିକ ସଂଘର୍ଷ ଆଜିଠାରୁ ଆରମ୍ଭ ହେବାକୁ ଯାଉଛି ।'' ସେ ଦିଆସିଲି ଜାଳି ଘଡ଼ି ଦେଖିଲା ଆଉ ହଠାତ୍ ଠିଆହେଲା— ''ସୁରୈୟା ମୋତେ ସୀମା ସେପାରି ପଠାଯାଉଛି... ମୋର ସାଥୀ ହେବୁ ?''

ସୁରୈୟା କିଛି କହିଲା ନାହିଁ ।

'ମୋ ସାଙ୍ଗରେ ତୋତେ ସାରା ଜୀବନ କଷ୍ଟ ସହିବାକୁ ପଡ଼ିବ । ଈଶ୍ୱର ଜାଣନ୍ତି ଯେ ତୋର ଜୀବନରେ ସାମାନ୍ୟ ଟିକିଏ ଆରାମ, ଟିକିଏ ନିଶ୍ଚିନ୍ତତାର ହକ୍ ଅଛି; ମାତ୍ର ମୋ ସାଙ୍ଗରେ ତୋତେ ସବୁକିଛି ମାନସିକ ସ୍ତରରେ ମିଳିବ ଶାନ୍ତି ଓ ମୋର ଅମାପ ସ୍ନେହ !''

''ତମେ ସେଠିକି ଯାଇ କେଜାଣି କୋଉଠି କୋଉଠି ଘୂରିବୁଲିବ... ମୁଁ ରହିବି କୋଉଠି ?''

''ତୁ ସୈନିକ ସୁରୈୟା । ଯୁଦ୍ଧ ସରିନାହିଁ । ଖାଲି ଯୁଦ୍ଧକ୍ଷେତ୍ର ସିନା ବଦଳି ଯିବ ।''

ସେ ସେଇଭଳି ମୌନ ଥିଲା ।

ସେ କାନ୍ଧରେ ଭରା ଦେଇ ଠିଆହେଲା । 'ସୁରୈୟା !' ଯେମିତି ଶେଷଥର ଲାଗି ପଗ୍ରରୁଥିଲା ।

ସେ ତଥାପି ବି ମୌନ ରହିଥାଏ ।

କେହି ଜଣେ ସାମନା ଘରେ ଲଣ୍ଠନ ଜଳେଇଲା । ତାର ଧିମା ଫେନାଏ ଆଲୁଅ ଝରକା ଦେଇ ଆସି କିଛି ଆଲୁଅ କରୁଥାଏ । ସଲମାନ୍ ସୁରେୟାକୁ ନିରେଖି ଚାହିଁଲା । ଆଉ ଗୋଟାଏ ମୁହୂର୍ତ୍ତ ଲାଗି ଆଖି ବୁଜିଦେଲା, ସତେଯେମିତି ଶେଷଥର ପାଇଁ ସେ ତାର ଛବି ହୃଦୟ ଭିତରେ ସୁରକ୍ଷିତ କରି ରଖିନେବାକୁ ଚାହୁଁଛି । ତା'ପରେ ସେ ସଳଖି ଠିଆହେଲା ଓ ବେଶ ନର୍ମାଲ ସ୍ୱରରେ କହିଲା— "ଠିକ୍ ଅଛି ସୁରୈୟା । ମୁଁ ଯାଉଛି । କାଲି ସକାଳୁ ସକାଳୁ ବାହାରି ଯିବାକୁ ହେବ ।... ଜୀବନ ପ୍ରତୀକ୍ଷାଟିଏ... ଆଦି ଆଦି...' ଆଉ ସେ ତୁରନ୍ତ ହସିଦେଇ କଥାର ମୋଡ଼ ବଦଳେଇ କହିଲା— ଗୁଡ଼ବାୟ୍... ଆଉ ହାତ ବଢ଼େଇ ଦେଲା ।

'କମ୍ ଅନ୍ ଶେକ୍ ହେଣ୍ଡ ଲାଇକ ଏ ମେନ୍ !'

ସେ ଚୁପ୍‌ଚାପ୍ ସେଭଳି ବସିରହିଥାଏ । ତା'ପରେ ସେ ବସିଲା ଠାଆରୁ ଉଠି ଠିଆହେଲା ଆଉ ଅକସ୍ମାତ୍ ସଲମାନ ଛାତିରେ ଜଡ଼େଇଗଲା— ସଲମାନ୍... ସଲମାନ୍... ସଲମାନ୍... ଆଉ ତା'ର କାନ୍ଧରେ ଗାଲ ଥାପି କହିଚାଲିଲା, "ମୁଁ କିଛି ସମୟ ପାଇଁ ଭାଗ୍ୟବାଦୀ ଓ ଭୀରୁ ପାଲଟି ଯାଇଥିଲି । ମୁଁ ଜୀବନର ପ୍ରତିଟି ମୁହୂର୍ତ୍ତରେ ତମର ସାଥୀ । ମୋତେ ବିଶ୍ୱାସ କର । ମୁଁ ତମକୁ କେବେହେଲେ ନିରାଶ କିରବି ନାଇଁ— ମୁଁ କେବେହେଲେ ତମ ସାଙ୍ଗରେ ବିଶ୍ୱାସଘାତ କରିପାରିବି ନାଇଁ ।"

ସଲମାନ୍ ତାକୁ ତା'ର ବାହୁରେ ଭିଡ଼ି ଧରି ତାର କୁଞ୍ଚିତ କେଶ ଆଉଁସି ଦେଇ ବେଶ କଅଁଳ କଣ୍ଠରେ ପଚାରିଲା— 'ପ୍ରମିଜ୍'

'ପ୍ରମିଜ !' ଲୋତକାର୍ଦ୍ର କଣ୍ଠରେ ଉତ୍ତର ଦେଲା ସୁରୈୟା ।

'ହାତ ମିଳାଅ ।' ସଲମାନ କହିଲା ।

'ବଟ୍ ନଟ୍ ଲାଇକ ଏ ମେନ୍ ।' ସୁରୈୟା କାନ୍ଦ କାନ୍ଦ ହୋଇ ହସିବା ଭିତରେ କହିଲା । ତା ଭିତରେ ଏକ ମାତୃସ୍ନେହ ଉଛୁଳି ଆସିଲା, ଯାହା ପ୍ରତ୍ୟେକ ନାରୀ ତା'ର ପ୍ରେମୀ ପାଇଁ ଅନୁଭବ କରେ ।

'ସନ୍ଧି ?' ସଲମାନ ପଚାରିଲା ପୁଣିଥରେ ।

'ସନ୍ଧି !... ସଲମାନ୍ କ୍ରେକ୍‌ଡାସ୍ କଣ ତମେ ମୋର ସାମାନ୍ୟ ଡିପ୍ରେଶନ୍ ଲାଗି ଏତେ ଡରିଗଲ ? ତମକୁ ଜଣାନାଇଁ ମୁଁ କେତେ ମୁଡ଼ି !'

'ବାଃ ତମର ତୁଳନା ନାଇଁ— ପିକାସୋର ମା ତ ନୋହୁଁ ତୁ ! ହେଲା ଏବେ... କହ ହେଲେ କେବେଯାଏଁ ଆସିପାରିବୁ ?'

'ସ୍କୁଲବାଲା ମୋର ଇସ୍ତଫା ମଞ୍ଜୁର କରିନେବା ମାତ୍ରକେ ! ତମେ କିନ୍ତୁ ପହଞ୍ଚିବା ମାତ୍ରକେ ଖବର ଦେବ ।'

ସେ ଦରଜା ପାଖକୁ ଆସି କିଛିକ୍ଷଣ ଲାଗି ଅନ୍ଧାରରେ ଠିଆହୋଇଥିବା ସେଇ ଏକାକିନୀ ସାହସୀ ଝିଅକୁ ଅନେଇ ରହିଲା ଆଉ ଧୀରେ ଧୀରେ ଗଳି ଉପରକୁ ଓହ୍ଲେଇ ଆସିଲା ।

ଗଳି ମୋଡ଼ଠେଇଁ ପହଞ୍ଚି ସେ ରହିଗଲା । ବୁଲିପଡ଼ି ଶେଷଥର ଲାଗି ସେଇ ଘରକୁ ଅନେଇ ଦେଖିଲା, ଯାହାକୁ ସେ ତା'ର ସଂଘର୍ଷର ସିମ୍ବଲ ଆଉ ଅଭିଳାଷର କେନ୍ଦ୍ର ଭାବରେ ଗ୍ରହଣ କରିନେଇଥିଲା । ସେଇଠି ସେ ଅଗଣିତ ସନ୍ଧ୍ୟା ବନ୍ଧୁମାନଙ୍କ ସାଙ୍ଗରେ ବସି ଭୌତିକ ଜୀବନ ସଂଘର୍ଷ ଆଉ କ୍ରାନ୍ତି ଉପରେ ଆଳାପ ଆଲୋଚନାରେ ବିତେଇଛନ୍ତି । ସୁରୈୟାକୁ ଆପଣା ପସନ୍ଦର ବହିପତ୍ର ଆଣିଦେଇଛି । ଟଲଷ୍ଟୟ, ଗୋର୍କୀ, ରୋମାଁରୋଲାଁ, ଜବାହରଲାଲ, କ୍ରିଷ୍ଟୋଫର, କଡ଼ୱେଲ; ହାୱାର୍ଡ ଫାଷ୍ଟ, ଯାହା ଭିତରୁ ହୁଏତ ଅଧିକାଂଶ ବହିର ପ୍ରଥମ ପୃଷ୍ଠାରୁ ଆଗକୁ ଡେଇଁନାଇଁ ସୁରୈୟା । ସେ ତାକୁ ମଝିରେ ମଝିରେ ଅନେକ ମହତ୍ତ୍ୱପୂର୍ଣ୍ଣ ଲେଖା ଆଉ ସ୍ପେନ୍‌ର ଗୃହଯୁଦ୍ଧର ଘଟଣା ସବୁ ପଢ଼ି ଶୁଣେଇଛି । ସେ ପଢ଼ି ଶୁଣେଇ ଯାଉଥିବ ଆଉ ଇଜଲ ସାମନାରେ ଠିଆହୋଇ ତା'ର ତାର ଛବି ଆଙ୍କୁଥିବ ସୁରୈୟା । ବେଳେ ବେଳେ ବିରକ୍ତିରେ କହିବ.. 'ସୁରୈୟା, ଯେମିତି ଅଭଦ୍ରପଣର ଘୋଡ଼ା ଚଢ଼ି ବୁଲୁଛୁ... ଆରେ ଶୁଣ ଆର୍ଟ ସମ୍ପର୍କରେ ଲେନିନ କ'ଣ କହନ୍ତି !'

'ସୁରୈୟା, ମୂର୍ଖାମି କର୍‌ନା, ବାଲଜାକ୍ ପଢ଼୍ । ଏଥର ୟୁନିଭରସିଟି ଜଏନ୍ କରି ପଢ଼ାପଢ଼ି କର !'

'ସାରାଦୁନିଆଁ ମୋର ୟୁନିଭରସିଟି' ସେ ଆଖି ନଚେଇ ବେଶ ନାଟକୀୟ ଢଙ୍ଗରେ ଗୋର୍କୀଙ୍କର ବାକ୍ୟଟି ଉଦ୍ଧାର କରେ ଆଉ ଦୁହେଁ ଖିଲିଖିଲ ହସନ୍ତି । ଦିନେ ରାତିରେ ସେ ସୁରୈୟାକୁ ଜୁଲିୟସ୍ ଫୁଜିକ୍ ପଢ଼ି ଶୁଣେଇଲା । ଆଉ ବହିଟି ସରିଲା ପରେ କାନ୍ଦିଥିଲା ଢେର !

ପୂର୍ଣ୍ଣତଃ ମାନସିକ ଏକତା, ସମ୍ପୂର୍ଣ୍ଣ ଭାବନାତ୍ମକ ସାମଞ୍ଜସ୍ୟ— କେଉଁ ଭଳି ସୁନ୍ଦର ଓ ପରିପୂର୍ଣ୍ଣ ମିତ୍ରତା ଥିଲା ସେମାନଙ୍କର । ସୁରୈୟା ହୁସୈନ ଆଉ ସଲମାନ୍ ମିର୍ଜା; ମିତ୍ରମଣ୍ଡଳୀରେ ଏ ଦୁଇ ନାଆଁ ବେଶ୍ ସମ୍ମାନ ସହିତ ଉଚ୍ଚାରିତ ହେଉଥିଲା । ସେଇ କୋମଳ ଓ କମନୀୟ ପ୍ରତିଭାସମ୍ପନ୍ନ, ଆକର୍ଷକ ବୀର ଗ୍ରୀଷା ଝିଅଟି ଭିତରେ ନିଜ କଳ୍ପନାର ସାକାର ରୂପ ଦେଖିଥିଲା ସଲମାନ । ଭବିଷ୍ୟତର ସ୍ତ୍ରୀ, ଆଗାମୀ ସମାଜର ନାୟିକା, ଯେ ପ୍ରେମିକା, ଭଗିନୀ ପତ୍ନୀ, ମାତା, ପ୍ରତ୍ୟେକ ରୂପରେ ପୂର୍ଣ୍ଣସିଦ୍ଧ ହୋଇପାରିବ । ତାର ପାରିବାରିକ ସମ୍ମାନ ଓ ସତ୍ତା ଲୁଣ୍ଠିତ ହେଲେ, କୌଣସି ମହଲ ପ୍ରାସାଦ ଜଳିଗଲେ ତାକୁ ଅବଚେତନ ରୂପରେ ବି ଦୁଃଖ ହେବ ନାଇଁ, କାରଣ ସେ ସେଇ ବର୍ଗର, ଯା'ର ବେଡ଼ୀ ଛଡ଼ା ହରେଇବାକୁ ଆଉ କିଛି ବୋଲି କିଛି ନାଇଁ ।

ତା' ପାଖରେ ଗୋଟିଏ ବି ପାଟଶାଢ଼ୀ ନଥିଲା । ପାଉଡ଼ର ଲିପଷ୍ଟିକ୍‌କୁ ସେ ଘୃଣା କରୁଥିଲା । ଫେସନେବୁଲ ସୋସାଇଟିର ଡିନର ପାର୍ଟି ନାଆଁ ଶୁଣିଲେ ସେ ଡରି ଯାଉଥିଲା । କୁନୀ ପାଇଁ ତାର ଦୟାଭାବ ଆସେ । ସେ ଅଶେଷ ସହାନୁଭୂତିରେ ଭାବେ— 'ହେ ଈଶ୍ୱର, ଏ ବିଗ୍ରୀ ସତରେ କ'ଣ ସାରାଜୀବନ ମୋଟର ଚଢ଼ି ଗୋଟାଏ ପାର୍ଟିରୁ ଆଉ ଗୋଟାଏରେ ପହଞ୍ଚି ସ୍ୱିମିଂପୁଲ ଓ ରୋଲର ସ୍କେଟିଂରେ ବିତେଇଦେବ !'

ସଲମାନ୍ ପ୍ରାୟ ତାକୁ କହେ— 'ଚାଲ, ଆଜି ତତେ ସୁରୈୟା ପାଖକୁ ନେଇଯିବି । କିଛି ନ ହେଲେ ବି ଭଲ କଥା ଦି' ପଦ ହେଲେ କାନରେ ପଡ଼ିବ !'

'ଆଦୌ ନୁହେଁ' କୁନୀ ଉପେକ୍ଷାରେ ଉତ୍ତର ଦିଏ, 'କଥା ହେଲା ଆଜି ଆମ କଲେଜର ଫେନ୍ସୀ ଡ୍ରେସ୍ ! ତା ବାହାରେ ଏତେ ଉଚ୍ଚ ସ୍ତରରୁ ସୁରୈୟା ଦିଦୀ କଥା ହୁଅନ୍ତି ଯେ ମୋତେ କାନ୍ଦମାଡ଼େ, ରାଣ ଅଛି ।'

'ସୁରୈୟାକୁ ତୁ ବୁଝିବାକୁ ଚାହୁଁନା । ତୁ ହେଲେ କରିବୁ କ'ଣ, ତୁ ବି ତ ତୋ କ୍ଲାସରେ ଫାଷ୍ଟ ।' ସେ ହସି ହସି କହେ ।

ସେ ବର୍ଷ ସୁରୈୟାର ଛବି ଅଲ ଇଣ୍ଡିଆ ପ୍ରଦର୍ଶନୀ ପଇଁ ଦିଲ୍ଲୀ ଗଲା । ଷ୍ଟୁଡ଼େଣ୍ଟ ଫେଡ଼େରେଶନ ପକ୍ଷରୁ ଏଲହାବାଦରେ ତା'ର ଓ୍ୱାନ୍‌ମେନ୍ ସୋ'ର ଆୟୋଜନ ହୋଇଥିଲା । ଲକ୍ଷ୍ନୌରୁ ଏଲ.ଏମ୍.ସେନ୍ ଆସି ଏ ସୋ'ର ଉଦ୍‌ଘାଟନ କରିଥିଲେ । ସେ ସମୟରେ ଅନେକ ସାହିତ୍ୟିକ ବୁଦ୍ଧିଜୀବୀ ତାକୁ ଭେଟିବାକୁ ଏଇ ଭଙ୍ଗାରୁଜା ଘରକୁ ଆସୁଥିଲେ, ଯୋଉ ଘରେ ତିନି ଚାରୋଟି ଚଉକି ଆଉ ବେତର ମୋଡ଼ାଟିଏ ଛଡ଼ା ଆଉ କିଛି ନଥିଲା ।

ସଲମାନ ମନରେ ଏଇ ସୁରୈୟା ପାଇଁ କେତେ ଗର୍ବ ଥିଲା, କେବଳ ସେ ଜାଣେ ତାର ମନ ଜାଣେ । ଆଜି ସେ ସେଇ ସୁରୈୟାକୁ କେଜାଣି କେତେ ସମୟ ପାଇଁ ଏକାକୀ ଛାଡ଼ି ଦୂରକୁ ଯାଉଛି ।

ସୁରୈୟା କୋଠରିର ଝରକା ବନ୍ଦ ହେଲା । ସେ ଆଉ ଗୋଟିଏ ସିଗାରେଟ୍ ଧରେଇ ଗହଳ ଅନ୍ଧାର ରାତିରେ ଲମ୍ବ ଲମ୍ବ ପାହୁଣ୍ଡ ପକେଇ ଚାଲିଗଲା ।

ନୂଆ ଦେଶରେ ପହଞ୍ଚି ପ୍ରାୟ ଗୋଟାଏ ବର୍ଷ ସଲମାନ ଲୁଚିଲା ଭଳି ରହିଥିବ । ସେ ତା'ର ଘର ଲୋକେ କୋଉଁଠି ଅଛନ୍ତି, ସେତକ ବି ଜାଣି ପାରିଲା ନାହିଁ । ଅସମ୍ଭବ ନୁହଁ, ବ୍ୟାସ ନଦୀ ପାରି ହୋଇ ଆସିଲା ବେଳକୁ ହାଣ ଖାଇଥିବେ । ତେବେ ସେଇଦିନ ତାକୁ ଖବର ମିଳିଲା ଯେ ତା'ର ବାପ-ମା ଆଉ ଭଉଣୀ ଲରକାନାରେ ଆସି ରହିଛନ୍ତି । ପରିସ୍ଥିତି ସୁଧୁରିବା ମାତ୍ରକେ ସେ ଲରକାନା ପହଞ୍ଚିଲା । କୋଳାହଳ ଆଉ ଧୂଳିଧୂସର ଗଳି ବଜାର ଦେଇ ସିନ୍ଧୀମାନଙ୍କର ଘରୁ, ଯୋଉ ଘରମାନଙ୍କରେ ଏଇନେ ଉତ୍ତର ପ୍ରଦେଶର ଶରଣାର୍ଥୀ ଅଛନ୍ତି, ଦେଖି ଦେଖି ସେ ଅନ୍ତତଃ ପାଇଥିବା ସେଇ ଠିକଣାରେ ପହଞ୍ଚିଲା ।

ସେ କୌଣସି ଏକ ହିନ୍ଦୁ ବଣିଆର ଘର ଥିଲା । ଦୁଆର ମୁହଁରେ ହନୁମାନ, ଲକ୍ଷ୍ମୀ ଆଉ ଗଣେଶଙ୍କର ମୂର୍ତ୍ତି ଥିଲା । ପାହାଚରେ ନାନା ରଙ୍ଗରେ ଲତାପତ୍ର ଚିତ୍ରିତ ହୋଇଥିଲା । ସେ ଡରି ଡରି ଭିତରକୁ ଅନେଇଲା । ମମି ଅଗଣାରେ ଚୂଲି ଧରେଇ ରୋଷେଇ କାମରେ ବ୍ୟସ୍ତ ଥିଲେ । ବାବା ପଲଙ୍କ ଉପରେ ଶୋଇ କ'ଣ ପଢୁଥିଲେ । ସେ ପାଦ ଚିପି ଚିପି ଭିତରକୁ ଆସିଲା ।

'ବାବା'... ବାପା ଗୋଟାଏ ପଟକୁ 'ଦୀବାନେ ହାପିଜ' ପୁସ୍ତକ ରଖିଦେଇ ତକିଆ

ଉପରେ ଭରାଦେଇ ଉଠି ବସିଲେ, କହିଲେ— ତମକୁ ପାଛୋଟି ଆଣିବାକୁ ମୋର ବଳ ନାହିଁ, ଗୋଟାଏ ଗୋଡ଼ ପୂରା ପାରାଲିସିସ୍... ।

'ବାବା !' କିଛି ବେଳ ପରେ ତାକୁ ଖାଇବା ପରସି ଦେଲାବେଳେ ମମି କହିଲେ— 'ହେଉଛି ଯଦି ସେଠି କରାଚୀରେ ଘର ନେଇ ଆମକୁ ଡକେଇ ନେ । ଏଠି ଚିକିତ୍ସାର ଭାରି ଅସୁବିଧା । ଦୁନିଆ ସାରାର ରୋଗ ଯାଙ୍କ ଠେଇଁ ।'

'ପ୍ରଭିନ୍‌ସିଏଲ ସର୍ଭିସ୍ ବାଲାଙ୍କର ପେନଶନ କାଗଜ ଏବେବି ସରକାରୀ ଅଫିସମାନଙ୍କରେ ପଡ଼ି ରହିଛି । ଯେତେବେଳେ ଯାଏଁ ଉଭୟ ଦେଶ ଭିତରେ ଚଳନ୍ତି ସମ୍ପତ୍ତି ନେଇ ଫଇସଲା ହୋଇନାଇଁ, ସେପର୍ଯ୍ୟନ୍ତ ଏକାଉଣ୍ଟସ୍ ବନ୍ଦ କରାଯାଇଛି ବୋଲି ଏଲହାବାଦ ବ୍ୟାଙ୍କ ସୂଚନା ଦେଇଛି । ତୋର ମାମୁଙ୍କ ଜମି, ଜାଗିରଦାରୀ ସମାପ୍ତି ସାଙ୍ଗରେ ଚାଲିଯାଇଛି... ଆଦି ଆଦି...' ବାପା ବେଶ ସନ୍ତୁଷ୍ଟ ସ୍ୱରରେ କହିଲେ ଓ କହିଲେ—

'ନ ଐଶ ନ ଦୁଃଖ ଦର୍ଦ ନ ଆରାମ ରହେଗା ।'
ଆଖିର ବହୀ ଅଲ୍ଲାହ କା ଏକ ନାମ ରହେଗା ।'

କୁନୀ ସ୍କୁଲରୁ ଫେରିଲା । ସେ ଆଶ୍ଚର୍ଯ୍ୟ ଆଖିରେ ସଲମାନକୁ ଅନେଇ ରହିଲା । ସେ ବେଶ ଦୁର୍ବଳ ଓ କଳା ପଡ଼ିଯାଇଥିଲା । କୁନୀର ଦେହର ରଙ୍ଗ ବି ମରୁଭୂମି ଖରାରେ ମଉଳି ଯାଇଥିଲା । ଦୁଇ ଭାଇ ଭଉଣୀ ଦୁହେଁ ଦୁହିଁଙ୍କୁ କୁଣେଇ ଧରି ପିଲାଙ୍କ ଭଳି କଇଁ କଇଁ ହୋଇ କାନ୍ଦିବାକୁ ଲାଗିଲେ ।

ତା'ପରଦିନ କୁନୀ ବି ସଲମାନକୁ କହିଲା— 'ହେଇପାରିବ ଯଦି ମୋତେ ବି କରାଚୀ ନେଇଚାଲ । ମୋର ପଢ଼ାପଢ଼ିରେ ତିନିବର୍ଷ ପୂରା ବରବାଦ ହେଲାଣି ।'

'ଶୁଣିଛି ସେଠାରେ ଇଲାହୀବଖ୍‌ଶ କଲୋନୀ ନାଆଁରେ ଜାଗାଟିଏ ଅଛି । ସେଇଠି କ୍ୱାର୍ଟରଗୁଡ଼ିକର ଭଡ଼ା ଶସ୍ତା । ସେଇଠି ହେଲେ ବ୍ୟବସ୍ଥା କରିବ । ମୋ'ଠୁ ପଇଁଯା ନେଇଯା ।' ମମି କହିଲେ ।

'ପଇସା ଅଛି ତମ ପାଖରେ !' ସଲମାନ ପଚାରିଲା ।

'ମସୌରୀରୁ ଆସିବାବେଳେ ଯୋଉ ଗହଣା ସାଙ୍ଗରେ ଆଣିଥିଲି, ସବୁ ଧୀରେ ଧୀରେ ବିକ୍ରି ଚାଲିଛି । କୁନୀ ଗ୍ରେଜୁଏଟ୍ ନୁହେଁ, ସେଇଥିଲାଗି ତାର ଦରମା କମ୍ ।' ମମି ଉତ୍ତର ଦେଲେ ।'

'ତା'ର ବି.ଏ.ବି.ଟୀ କରିନେବା କଥା' ବାପା କହିଲେ

'ବାବା, ଗଲାମାତ୍ରେକେ ଘର ତଲାସ କରିବ ।' ମମି କହିଲେ

'ଆଜ୍ଞା, ହଁ ।'

'ଚା' ଖାଇନିଅ ।'

'ହଁ'

'କରାଚୀରେ ତମର ଖିଆପିଆର ଯତ୍ନ ନବ ।'

'ହଁ'

ସେ ଅନେକ ଦିନ ହେଲା ଏମିତି ଅନିଶ୍ଚିତ ଜୀବନ ବଞ୍ଚିଥିଲା । ମେମ୍‌ସାହବ ପ୍ରତ୍ୟକ୍ଷ ଭାବରେ ତାର ଅଭ୍ୟସ୍ତ ହୋଇସାରିଥିଲେ; ମାତ୍ର ମନେମନେ ଘାରି ହେଉଥିଲେ । ତାଙ୍କର ରଜାପୁଅ ଭଳି ପିଲା ଏମିତି କେମିତି ଦରିଦ୍ର ରୂପରେ ରହିଛି । ସେଇଆ ଦେଖି ଛାତି ତାଙ୍କର ରକ୍ତର ଲୁହ ଗଡ଼ାଉଥିଲା । ତାଙ୍କର କେତେକେତେ ଓରମାନ ମାଟିରେ ମିଶିଗଲା । ଆପଣା ରାଇଜରେ ଥିବାବେଳେ ନିଜର ସମକକ୍ଷ ଲୋକେ ଦୂର ଦୂର କଥାକୁ ଗୁଡୁଥିଲେ । ଖାନଦାନୀ ବୋହୂମାନେ ଉଲଗୁଣା ଦିଅନ୍ତି— ଅଞ୍ଜୁମନ ଆରାର ଗୋଟିଏ ବୋଲି ପୁଅ ଛତରା ବାହାରିଲା । ରୋଜ ଧାଉଡ଼ି ଆସୁଛି । ତିନିଥର ଛଅ ଛଅ ମାସ ସଜା କାଟିଆସିଛି । ଏମିତି ପିଲାକୁ କିଏ ଝିଅ ଦବ ?

ସେ ନିଜେ ସୁରୈୟାକୁ ବାହା ହବାକୁ ଗ୍ୱହୁଁଥିଲା । ବିଗ୍ୱରୀ ବୁଟାବେଗମ୍, ଭାରି ସିଧା ସିଧା ମଣିଷ । ଝିଅ ବଡ଼ ହେଇ ଏମିତି ହେଲା—

'ପୁଅ ପାଇଁ ଏମିତି ଝିଅ ଦରକାର, ଯା'ର ଇଣ୍ଟଲେକ୍‌ଚୁଏଲ, ସୋସିଏଲିଷ୍ଟ, ଆର୍ଟିଷ୍ଟ ବାଟିଷ୍ଟ କିଛି ହେବା ଲୋଡ଼ାନାଇଁ ବରଂ ଏମିତି ହେବା କଥା, ଯିଏ ତାର ଖିଆପିଆ ବୁଝିବ ।' ଥରେ ମେମସାହେବ ତାଙ୍କର ଫଇସଲା ଆଉ ଇଛା ଶୁଣେଇଥିଲେ ।

'ସେ ଯାହାହେଉ ସୁରୈୟା ଦିଦୀ ଏତେ କୋଉ ଇଣ୍ଟଲେକ୍‌ଚୁଏଲ ଯେ !' କୁନୀ ପରିହାସରେ ଉତ୍ତର ଦେଇଥିଲା ।

'ବିଗ୍ୱରୀ ସୁରୈୟା ପାଇଁ ତୁ ଖାସ ନଣନ୍ଦ ଭଳି କଟା ଜଳା କଥା କହିବୁ ନାଇଁ ତ କିଏ କହିବ ?' ଖିଲଖିଲ ହସି କହିଥିଲା ସଲମାନ ।

'ସୁରୈୟା ଦିଦୀ ଆସିଗଲେଣି କି ?' କୁନୀ ହଠାତ୍ ପଗ୍ୱରିଲା ।

'ନା ମୁଁ ଜାଣିନି ।' ସଲମାନ୍ ଉତ୍ତର ଦେଲା । ଆଉ ଚମକିଲା ଭଳି ଠିଆହେଲା— 'ମୁଁ ଦି'ପହର ବେଳା ଟ୍ରେନ ଧରିବା ଉଚିତ ହେବ । ପଅରିନ ସକାଳୁ ସକାଳୁ ଗୋଟାଏ ଖବରକାଗଜର ଇଣ୍ଟରଭ୍ୟୁ ଏତେ ନିରାଶ ହେବାର ନୁହଁ କୁନୀ । ଅବସ୍ଥା ସେତେ ଖରାପ ବି ହୋଇନି ତ ?' ସେ ଭଉଣୀର ମଥା ଆଦରରେ ଆଉଁସି ଦେଲା । ଆଉ ବାପା ମାଆଙ୍କଠୁ ବିଦାନେଇ ଗ୍ୱଲିଆସିଲା ।

ବାହାରେ ଝାଞ୍ଜି ପବନ ପିଟୁଥାଏ । ହଳଦିଆ ଗରମ ବାଲି ଆଖିରେ ପଶିଯାଉଥାଏ । ଦେଶ ଛାଡ଼ିଯାଇଥିବା ହିନ୍ଦୁମାନଙ୍କର ରଙ୍ଗରଙ୍ଗିଆ ଟାଇଲବାଲା ଘର ଉପର ସାହାଲାରେ ଅନେକ ଝରକା ଆଉ ସେଇ ଝରକାମାନଙ୍କର କଣା ଦେଇ ପବନ ସୁସୁରୀ ବଜେଇ ଗ୍ୱଲିଆସୁଥାଏ । ଗଳିମାନଙ୍କରେ ଯେତେସବୁ ଶରଣାର୍ଥୀ ଏଣେତେଣେ ବୁଲୁଥା'ନ୍ତି । ପ୍ରତିଦିନ ଖୋଖରାପାରରୁ ରାଜସ୍ଥାନ, ଦିଲ୍ଲୀ ଆଉ ଉତ୍ତର ପ୍ରଦେଶର ଗୋଟାଏ ନିପୀଡ଼ିତ ଦଳ ଏଇ ଗଳିମାନଙ୍କରେ ଛାଉଣୀ ପକେଇଥା'ନ୍ତି । କେତେ କେତେ କଷ୍ଟ ସହି ଲୋକେ ଭାରତରୁ ବାହାରି ଆସିଛନ୍ତି ଆଉ କେତେ ଯେ କଷ୍ଟ ସହିବାକୁ ନାଇଁ ସେମାନଙ୍କର । ସଲମାନ୍

ଷ୍ଟେସନ ରାସ୍ତାରେ ଆଗେଇବା ଆରମ୍ଭ କଲା । ଲାଲ ଲାଲ ଲମ୍ବ ଲମ୍ବ ପୋଷାକ ପିନ୍ଧିସିନ୍ଧୀ ମାଇକିନାମାନେ ଗଧ ଉପରେ ବସି ସାମନା ଦେଇ ଆଗେଇ ଗଲେ । ସାମନା ଗ୍ରାମୋ' ଦୋକାନରେ ରହି ରହି କୋଳାହଳ କଲାଭଳି ସୁରୈୟା ଆଉ ସମ୍‌ଶାଦ ବେଗମର ରେକର୍ଡ ବାଜୁଥାଏ । ନିହାତି ଅପରିଷ୍କାର ଗ୍ରାମୋ ଦୋକାନଟି ଆଗରେ 'କେଫେ ଡ଼ି ପେରିସ୍' ବୋର୍ଡ଼ଟିଏ ଲାଗିଥାଏ । ସେଇଠି ରାମପୁରରୁ ଆସିଥିବା କେତେଜଣ ଶରଣାର୍ଥୀ ଚଉକିମାନଙ୍କରେ ବସି ଏଡ଼େ ପାଟିରେ କଥା ହେଉଥା'ନ୍ତି ।

''ଆବେ ଚୁନ୍ନନ ଖାଁ, ମୁଁ କହୁଛି— ଏକାକୀ ନିଜ ଲାଗି ଘର ଏଲଟ୍ କରେଇ ନେଲୁ । ସାଙ୍ଗମାନଙ୍କୁ ତାର ପବନ ବି ବାଜିଲା ନାହିଁ । ମିଆଁ, ତମେ ଡାଳେ ଡାଳେ ଗଲେ ଆମେ ବି ପତରେ ପତରେ ଯିବା ଲୋକ । ଆମକୁ ଉଲ୍ଲୁ ବନଉଛୁ... ଚୁମ୍ମନ ମିୟାଁକୁ ନ କହିଛୁ ଯଦି... ।'

'ଆରେ ଯା' ମିଆଁ ରିୟାଜତ ହୁସୈନ ଖାଁ ବି କିଛି ଥଙ୍ଗା ପଡ଼ିନି । ତମ କଥା କହ ତମର !'

'ଅନେଇ ଥା... ମୁଁ କହୁଛି ଅନେଇ ଥା... ।'

ସେ ଆଗକୁ ବଢ଼ିଗଲା । ଗ୍ରାମିପଟୁ କୋଳାହଳ, ହୋ ହଲ୍ଲା ପୂରି ରହିଥାଏ । ନାନା ରକମି ଭାଷା, ବେଶ ରଙ୍ଗିନ କଥାବାର୍ତ୍ତାର ଢଙ୍ଗ, ରଙ୍ଗ ବେରଙ୍ଗ ପୋଷାକ, ଖୋମଗ୍ରା ଫେରିବାଲାଙ୍କ ରଡ଼ି । ସମସ୍ତେ ନୂଆ ମାଟିରେ ଜୀଇଁ ରହିବା ଲାଗି, ନୂଆ ଜୀବନ ଗଢ଼ିବା ଲାଗି ଆପ୍ରାଣ ଲାଗିଥାଆନ୍ତି । ସଲମାନ୍ ସାମନାର ଦୃଶ୍ୟ ଦେଖିଲା ଆଉ ମୁଣ୍ଡଟେକି ଲମ୍ବ ଲମ୍ବ କଦମ ବଢ଼େଇ ଗ୍ରାଲିବାକୁ ଲାଗିଲା ।

ଷ୍ଟେସନରେ ବି ଶରଣାର୍ଥୀଙ୍କ ଭିଡ଼ ଥିଲା । ସଲମାନ୍ ସେମାନଙ୍କୁ ଦେଖି ଭାବିଲା, ଏମାନେ କେଜାଣି କିଏ କିଏ ହୋଇଥିବେ । କୋଉ କୋଉଠୁ ଆସିଥିବେ । ପୂର୍ବ ଓ ବିହାରର ଲୋକଙ୍କ ମୁହଁଟି ମାନ ବେଶ ଉଦାସ ଦିଶୁଥାଏ । ଗୋଲ ଗୋଲ ମଖମଲ ଟୋପି ଆଉ ମଖମଲୀ ୱେଷ୍ଟ କୋଟ୍ ପିନ୍ଧି ରାମପୁର ଆଉ ବରେଲୀର ରସିକ, ମୁରାଦାବାଦର ବାସନ ବିକାଳୀ, ଅଲିଗଡ଼ର ତାଲାବାଲା, ଫିରୋଜାବାଦର ଚୁଡ଼ିବାଲା, ଫର୍ରୁଖାବାଦର ନାଚୁଆ, ଲକ୍ଷ୍ନୌର ଜରି କାମ ବାଲା ଦର୍ଜୀ ଆଉ ଶାୟର(କବି) ଦିଲ୍ଲୀର କାରିଗର, ଆଜମଗଡ଼ ଆଉ ବନାରସ ଲୁଗା ବୁଣାଳୀ, ମିର୍ଜାପୁରର ଗାଲିଗ୍ରା କାରିଗର ଆଉ ବୁର୍କା ପିନ୍ଧି ସେଇ ସେଇ ମାନଙ୍କର ସ୍ତ୍ରୀ ପିଲାପିଲି, ଜମି ରହିଥିଲେ ।

ଟ୍ରେନ ଆସିବାକୁ ଡେରିଥିଲା । ସେ ପ୍ଲେଟଫର୍ମ ଉପରର ଏହି କୋଳାହଳ ଓ ଭିଡ଼କୁ ଦେଖୁଥାଏ । ସମୟ କାଟିବା ଲାଗି (ବୁକଷ୍ଟଲରୁ କୌଣସି ପତ୍ରିକା କିଣିବାକୁ ପଇସା ନଥିଲା) ସେ ସିନ୍ଧୀର ତୃତୀୟ ଶ୍ରେଣୀର ବହିଟିଏ ବାହାର କଲା ।

ପୀର ଇଲାହୀବଖ୍‌ଶ କଲୋନୀର ଏଇ ଦୁଇ କୋଠରିବାଲା ଘରର ଦି'ପଟକୁ ଗାତ ଆଉ କାଦୁଅ । ଅଗଣା ପଛପଟକୁ ପାହାଡ଼ ଭଳି ଅଳିଆ ଗଦା । କୋଠରିଗୁଡ଼ିକର

କାନ୍ଥ ଭାରି ମଇଳା; କବାଟ ଝରକାଗୁଡ଼ିକରେ ପ୍ରାୟ କୋଉଠି କାଚ ନଥାଏ, ନହେଲେ ଖବରକାଗଜ ବା ବୁଡ଼ାପଟା । ପାଖପଡ଼ିଶାରେ ବି ଅଧିକାଂଶ ଶରଣାର୍ଥୀ ରହିଥିଲେ । ସେମାନଙ୍କ ଭିତରେ ଅଧିକାଂଶ ସରକାରୀ ଚାକିରିଆ । ସେମାନଙ୍କର ଜୀବନ ଅତି ଆରାମହୀନ ଥିଲା । ହେଲେ ସେମାନଙ୍କ ଭିତରେ ଦେଶପ୍ରେମ ଓ ଏକ ବିଚିତ୍ର ଉତ୍ସାହ ଭରି ରହିଥିଲା ।

କୁନୀର ବି.ଏ. ପାଇଁ ଆଡ଼ମିଶନ୍ ହୋଇଗଲା । ସଲମାନ୍ ସେ ନେଇ ବେଶ ଚିନ୍ତିତ ଥିଲା । ତା'ର ଡି କ୍ଲାସ ବୋଲି କୁଣ୍ଠାରେ ସେ ତା'ର ସ୍ୱାସ୍ଥ୍ୟ ହରେଇ ବସିଥିଲା ।

ଦିନେ କଲେଜରୁ ଫେରି କହିଲା, 'ମମି ମୋ ପାଇଁ କଳା ବୁର୍କାଟିଏ ତିଆରି କରେଇ ଦିଅ ।'

'କାହିଁକି ?' ସଲମାନ୍ ଚମକିଲା ଭଳି ପଚାରିଲା ।

'ବସ୍‌ରେ ଲୋକେ ମୋତେ ଅନେଇ ଅନେଇ ଦେଖୁଛନ୍ତି । ମୋତେ ଲାଜ ମାଡୁଛି ଭୀଷଣ । ବସ ଷ୍ଟପ୍‌ରେ ଠିଆ ହେଲେ ମନ କରୁଛି— ଭୂଇଁ ଚିରିହେଇ ଯାଆନ୍ତା କି ଆଉ ମୁଁ ଚାଲିଯାଆନ୍ତି । ସମସ୍ତଙ୍କର ଆଖି ମୋ ଦେହରେ ତୀର ଭଳି ଗଳିଯାଉଛି । ବୁର୍କାରେ କିଏ ଯାଉଛି ବୋଲି କାହାକୁ ବି ଜଣାପଡ଼ିବ ନାଇଁ ।' କହୁଁ କହୁଁ ତାର କଣ୍ଠ ବାଷ୍ପରୁଦ୍ଧ ହୋଇଉଠିଲା ।

ସଲମାନ ଉଠିବସିଲା ।

'ଆଉ ଏମିତି ସବୁ ବସ୍, ଯାହାକୁ ଦେଖି ଛାତି ଦୋହଲି ଯିବ ।' କୁନୀ ଆଖି ପୋଛି କହିଲା ।

'ସେଇ ବସ୍‌ରେ ତମ ଭଳି ମଣିଷ ଯାଆନ୍ତି । ତମେ ଆଉ କୋଉ ମଣିଷ ଠାରୁ ଅଲଗା ନୁହଁ ।' ସଲମାନ କହିଲା ।

'ଝିଅ ।' ବିଛଣା ଉପରୁ ବାପା କହିଲେ— 'ସେ ତମର ଧାରଣା । ତମକୁ କୁନୀ ବୋଲି କେହି ଦେଖୁନାଇଁ । ଲୋକଙ୍କୁ ଏତେ ପରୁଆ ନାଇଁ ତୋର । ତାଙ୍କ ପାଖରେ ତାଙ୍କର କାମ ଅନେକ !'

'ତେବେ ବାପା ପୁରୁଣା ଜଣାଶୁଣା ଲୋକଙ୍କ ଆଗରେ କେତେ ବେଇଜ୍ଜତ ହେବାକୁ ପଡୁଛି । ରଜିୟା ଦିଦୀ ଆଦି ପ୍ରତିଦିନ ମୋତେ ବସ୍ ଷ୍ଟପରେ ଠିଆ ହୋଇଥିବା ଦେଖନ୍ତି, ଆଉ ସାୟଁକିନା କାର ନେଇ ଚାଲିଯାଆନ୍ତି... ଆଉ ଆଜି...'

'ଆଜି... ?' ସଲମାନ ପଚାରିଲା ।

'ମୁଁ ଆଜି ଘଣ୍ଟାଏ କାଳ ଅପେକ୍ଷା କଲାପରେ ଚାଲି ଚାଲି ସଦରପଟକୁ ଯାଉଥିଲି, ସେତେବେଳେ ସେ ଟେବୁଲ ଟେନିସ ଚମ୍ପିୟନ ଆଲିଦା ସୈୟଦ କାର୍ ଅଟକେଇନେଲା । କହିଲା— 'ବେଶ୍ ଖରା ଆସନ୍ତୁ, ମୁଁ ଆପଣଙ୍କୁ ନେଇଯିବି । ଭାଗ୍ୟ ଯେ ସେ ମୋତେ ଜାଣିନାଇଁ ।...' ଏତିକି କହି ସେ ସୁଁ ସୁଁ କରି କାନ୍ଦିବାକୁ ଲାଗିଲା ଆଉ ମୁହଁ ଧୋଇନବାକୁ ବାଥ୍‌ରୁମକୁ ଚାଲିଗଲା ।

କରାଚୀ ପହଞ୍ଚି ଜମଶେଦ କେତେ ଦିନର ଧାଁଦଉଡ଼ ପରେ ଜଣେ ବନ୍ଧୁ ସାଙ୍ଗରେ ଏକ୍ସପୋର୍ଟ ଇମ୍ପୋର୍ଟ କାମ ଆରମ୍ଭ କରିଦେଲା । ତାକୁ ମୈକଲୋଡ଼ର ରୋଡ଼ରେ ଗୋଟାଏ ଖାଲି ଅଫିସ ଘର ବି ମିଳିଗଲା । ସେତେବେଳେ ହିନ୍ଦୁ ବ୍ୟବସାୟୀମାନଙ୍କର ସହର ଛାଡ଼ି ଚ୍ଳିଯିବାର ବେଳ । ତେଣୁ ତାକୁ କାରବାର ବଢ଼େଇବାର ସୁବିଧା ବି ମିଳିଗଲା । ଜାନୁଆରୀ ଦଙ୍ଗା ପରେ ଆମିଲ କଲୋନୀ ନ-ଦୁଇରେ ଗୋଟାଏ ଦି'ତାଲା କୋଠି ଖାଲି ହେଲାରୁ ସେ ତାକୁ ନିଜ ନାଆଁରେ ଆଲଟ କରାଇନେଲା । ବେଶ ପରିଶ୍ରମ ଆଉ ନିଷ୍ଠାରେ ସେ ତା'ର ବ୍ୟବସାୟ ବିସ୍ତାର କରିବା ଫଳରେ ମାତ୍ର ଦେଢ଼ ବର୍ଷରେ ସେ କରାଚୀର ବ୍ୟବସାୟ କ୍ଷେତ୍ରରେ ବେଶ ପ୍ରତିଷ୍ଠିତ ହୋଇଗଲା ।

ତା'ପରବର୍ଷ ସେ କାନପୁର ଯାଇ କହିଲା— 'ଅସଗର ଆଉ ଅନବରର ପରୀକ୍ଷା ସରିବା ପରେ ସେମାନଙ୍କୁ ସାଙ୍ଗରେ ନେଇ ଚ୍ଳିଆସିବ । ନହେଲେ ଆଲିଆ ଆଉ ତମେ ମୋ ସାଙ୍ଗରେ ଆସ ଏମାନେ ପରେ ଆସିବେ । ମୁଁ ଭାରି ଭଲ ଗୋଟାଏ ସେନିଟୋରିୟମରେ ତମ ଚିକିତ୍ସାର ବ୍ୟବସ୍ଥା କରିଆସିଛି ।'

'ଆଉ ଫରତକୁ ଦେଖିବାକୁ ମୋହମ୍ମଦ ଗଂଜ ଯିବୁନାଇଁ ?'

'ଏଇନେ ମୋର ସମୟ ନାହିଁ । ମୁଁ ଭାରି ବ୍ୟସ୍ତ । ଆସିବ ଯଦି ମୋ ସାଙ୍ଗରେ ତୁରନ୍ତ ଆସ, ନହେଲେ ପରେ ଆସିବ ।'

ପରଦିନ ସକାଳେ ସେ ମା ଓ ଭଉଣୀକୁ ନେଇ କରାଚୀ ଆସିଲା । ଆଲିଆ କାନପୁରରେ ବି.ଏ. କରି ସାରିଥିଲା । କାରାଚୀରେ ଏମ୍.ଏ.ରେ ଆଡ଼ମିଶନ ନେଲା । ସେ କାନପୁର କଲେଜରେ ବି ଟେବୁଲ ଟେନିସର ଅନେକ ପ୍ରତିଯୋଗିତା ଜିଣିଥାଏ । ଏଇଠି ସେ ଚଞ୍ଚଳ ବିଶ୍ୱବିଦ୍ୟାଳୟ ଚମ୍ପିୟନ ହୋଇଗଲା ।

ଯୁବାବସ୍ଥାରେ ଆଇ.ସି.ଏସ୍. ହେବାର ଯେଉଁ ସ୍ୱପ୍ନ ଜମଶେଦ ଦେଖୁଥିଲା, ତାହା ସେ ସେପର୍ଯ୍ୟନ୍ତ ଭୁଲି ନଥିଲା । ସେ ଲକ୍ଷ ଲକ୍ଷ ଟଙ୍କାର ଖେଳ ଖେଳୁଥିଲା ସତ, ତେବେ ବଡ଼ ଅଫିସରର ମର୍ଯ୍ୟାଦା ଭିନେ ବୋଲି ଜାଣିଥିଲା । ସେ ମନେ ମନେ ଠିକ୍ କରିଥାଏ ଯେ ସାନଭାଇମାନଙ୍କୁ ସି.ଏସ.ପି ପରୀକ୍ଷା ଦିଏଇବ । ବିଜନେସ ମେନ୍‌ର ଭାଇଟିଏ କୌଣସି ଉଚ୍ଚପଦବୀରେ ଅଛି, ତା'ଠାରୁ ମହତ୍ତ୍ୱପୂର୍ଣ୍ଣ କଥା କ'ଣ ହେଇପାରେ ?

ସେ ତା'ର ଝିଅ ଫରହତୁନିସାକୁ ଆଜିପର୍ଯ୍ୟନ୍ତ ଦେଖି ନଥିଲା । କିଛିଦିନ ହେଲା ତାର କଥା ମନେପକେଇ ସେ ବ୍ୟସ୍ତ ହୋଇପଡୁଥିଲା । ତା'ର ଝିଅ ଅନେକ ଦୂରରେ କୋଉ ଏକ ଭିନ୍ନ ଜଗତରେ ଝାଟିମାଟି ଘରେ ବଢୁଛି । ସେ ଡରି ଡରି କାକାଙ୍କ ପାଖକୁ ଚିଠି ଦେଲା । ଭିସା କରି ଭାରତ ଆସିଲା ।

ଏଗାର ବର୍ଷର ଦୀର୍ଘକାଳ ପରେ ଜମଶେଦ ମୋହମ୍ମଦ ଗଞ୍ଜ ପହଞ୍ଚିଲା । ସେ ୧୯୪୧ରେ ମଞ୍ଜୁରୁନିସାକୁ ବାହା ହୋଇ ନେଇଯିବା ପାଇଁ ଶେଷଥର ଲାଗି ସେଠିକି

ଆସିଥିଲା । ଷ୍ଟେସନରେ ଓହ୍ଲେଇ ତା'ର ଆଶ୍ଚର୍ଯ୍ୟର ସୀମା ରହିଲା ନାହିଁ । ଗୋବିନ୍ଦ କାକା ସେଇଭଳି ଇକ୍କା ଗାଡ଼ି ନେଇ ଅପେକ୍ଷା କରି ରହିଥାଏ, ଯେମିତି ସେ ସ୍କୁଲରୁ ଦଶହରା ଛୁଟିରେ ଆସୁଛି ।

'ଆରେ ପୁଅ ଆସିଗଲା... ।' ସେ ଦଉଡ଼ିଲା ଭଳି ଆଗକୁ ବଢ଼ିଯାଇ କହିଲା ।

'ଗୋବିନ୍ଦ କାକା !' କାକା ଶବ୍ଦଟି ଉଚ୍ଚାରଣ କଲାବେଳେ କେମିତି ଟିକିଏ ସଂକୋଚବୋଧ କରିଥିଲା ସେ । 'ତମେ କେମିତି ଆସିଲ ?'

'ସାନ 'ଶାହ' କହିଲେ ନା, ତମେ ଆଜି ଗାଡ଼ିରେ ପହଞ୍ଚିବ !'

ଜମଶେଦ ଇକ୍କା ଉପରକୁ ଚଢ଼ିବାବେଳେ ଅସୁବିଧାବୋଧ କଲା । କିଛି ଦ୍ୱିଧାରେ ସେ ତା'ର ଦାମୀ ପେଣ୍ଟର କ୍ରୀଜ୍‌କୁ ଦେଖିଲା ।

ସୈୟଦ ମଜହର ଅଲ୍ଲୀଙ୍କ ଘରେ ସେତେବେଳେ ପ୍ରାୟ ଗାଆଁଟା ସାରା ରୁଣ୍ଡ ହୋଇଥିଲେ । ଶମ୍ଭୁଦାଦା, ଶେଖ ରମଜାନ, ମୌଲବୀ ମୁହମ୍ମଦ ହୁସୈନ୍, ତୌକୀର ମିୟାଁ, ପଣ୍ଡିତ ଲକ୍ଷ୍ମୀନାରାୟଣ, ଗୋବର୍ଦ୍ଧନ କାକା, ରହମତ ଭୈୟା, ଗୋସାଇ କାକା ଆଉ କେଜାଣି କିଏ କିଏ । ପିଲାମନେ ଯୁବକ ପାଲଟି ଯାଇଥିଲେ । ଯୁବକମାନେ ପ୍ରୌଢ଼ ଆଉ ବୁଢ଼ାଗୁଡ଼ିକ କବରକୁ ପାଦ ବଢ଼େଇ ବସିଥିଲେ । ଗୋବର କାକା ତାକୁ କୁଣ୍ଢେଇ ଧରି କଇଁ କଇଁ ହୋଇ କାନ୍ଦିଲେ । ଝିଂଘାପାସୀ ଖୁସିରେ କୁରୁଳି ଉଠୁଥାଏ ଆଉ ସେ ଆଁ କରି 'ଭଇଆ'କୁ ଅନେଇ ରହିଥାଏ । ବସ୍ତି ସାରା କୁରୁଳି ଉଠୁଥାଏ— ଜମଶେଦ ଭାଇ ପାକିସ୍ଥାନରୁ ଆସିଛନ୍ତି । ବେଶ ଧନୀ ହୋଇଯାଇଛନ୍ତି । ଏଡ଼େ ବଡ଼ ସୁନା ଘଡ଼ି ଲଗେଇଛନ୍ତି । ବିଲକୁଲ୍ ଜଣ୍ଟଲ ସାହବ ଭଳି ଦିଶୁଛନ୍ତି ।

ଜମଶେଦର ଆଖି ଅନେକଙ୍କୁ ଖୋଜି ବୁଲିଲା, ଯୋଉମାନେ ଉପସ୍ଥିତ ନଥିଲେ । ଚପାତି ଭାଣ୍ଡ ମରିସାରିଥିଲା, ସଲାମୁ ହୁଡ଼ବନ ମରିସାରିଥାଏ, ସେ ମାଇକିନା ଛକ ପାଖରେ ପାନ ଦୋକାନ କରିଥିଲା । ନବାବ ମୁନ୍ନନ ଖାନ୍ ଏଇନେ ବି ଡକାୟତି କରୁଥିଲେ ଆଉ ସେତେବେଳେ ଜେଲ ଯାଇଥିଲେ ।

ମଂଜୁରୁନ୍ନିସା ଯେତେବେଳଠାରୁ ଜାଣିଲା ଯେ ଜମଶେଦର ଆସିବା ଅଛି, ସେତେବେଳଠୁଁ ପାଦ ପୋଡ଼ିହେଲା ବିରାଡ଼ି ଭଳି ଘରସାରା ଘୂରିବୁଲୁଥାଏ । ସେ ଅଗଣା ବାରଣ୍ଡା ଆଉ କୋଠରିସବୁକୁ ବେଶ ଲାଗିମନ୍ଦି ସଫା କରିଥାଏ । ଘରର ସବୁ ବାସନ କୁସନ ଘଷି ମାଜି ଚମକେଇ ଦେଇଥାଏ । ଝିଂଗାପାସୀର ସ୍ତ୍ରୀ ସାଙ୍ଗରେ ମିଶି ସାରା ଅଗଣା ଲିପାପୋଛା କରିଥାଏ । ପଲାଉ ଆଉ କ୍ଷୀରୀ ପାଇଁ ଗୋଟି ଗୋଟି ଚାଉଳ ବାଛିଥାଏ । ଅଧ ରାତିରୁ ଉଠି ସକାଳ ପାଇଁ ଜଳଖିଆ ତିଆରି କରିଥାଏ । ତାର ମା-ବାପ ତା'ର ଏ ଉତ୍ସାହ ଓ ବ୍ୟସ୍ତତା ଦେଖି ଶୋକରେ ମଥା ନୁଆଁଇ ନେଉଥିଲେ । ଫରହତୁନ୍ନିସା ପାଇଁ ସେ ତିନିଦିନ ସଂଜ ହେବାଯାଏଁ ଅଗଣାରେ ବସି ପୋଷାକ ସିଲେଇ କରୁଥିଲା ।

ଗାଡ଼ି ଆସିବା ସମୟ ହେଲାରୁ ମଂଜୁରୁନିସା ଝିଅକୁ ଗାଧୋଇ ଦେଇ ସେଇ ବୁଟା-ବୁନ୍ଦିବାଲା ପୋଷାକ ପିନ୍ଧେଇ ଦେଲା । ତେଲ ଲଗେଇ ଦେଇ ବେଣୀ ଗୁନ୍ଥି ଦେଲା । ଜଳଖିଆ ନେଇ ତକ୍ତା ଉପରେ ସଜାଡ଼ି ରଖିଲା । ଆଉ ସେ ନିଜେ ସେଇଭଳି ଅଲରା ମୁଣ୍ଡ ଉପରକୁ ମଇଳା ଓଢଣୀ ଟାଣି ନେଇ, ମୁହଁରୁ ଝାଳ ପୋଛି ପୋଛି ଛାତ ଉପରକୁ ଚ୍ଲିଗଲା । ସେଇଠି ଛାତ ବାଡ଼କୁ ଲାଗି ବସିଗଲା; ପାହାଚ ଉପର ଗୁମୁଟି ଝରକାରୁ ଷ୍ଟେସନ ପଟୁ ଆସୁଥିବା ରାସ୍ତାକୁ ଅନେଇ ରହିଲା । ଯେତେବେଳେ ଜମଶେଦ ଇକ୍‌କା ଗାଡ଼ିରୁ ଓହ୍ଲେଇଲା, ମଂଜୁରୁନିସା ଗୋଟାପଣେ ଶୀତେଇ ଗଲା ଆଉ ଅପଲକ ଆଖିରେ ଅନେଇ ରହିଲା । ଜମଶେଦ ନଇଁଯାଇ ସୈୟଦ ମଜହର ଅଲୀଙ୍କୁ ସଲାମ କଲା । ଗାଆଁବାଲାଙ୍କ ସାଙ୍ଗରେ ଛାତି ମିଳେଇ ଭିତରକୁ ଯାଇ ଝିଅକୁ କୁଣ୍ଢେଇ ଧଇଲା ।

ଶାହ ମୁନବ୍‌ବର ଅଲୀ ମଠ କୋଠରିରୁ ବାହାରି ଆସିଲେ । ତା'ର ମୁଣ୍ଡ ଆଉଁସି ଦେଲେ, ହେଲେ ପଦେବି କିଛି କହିଲେ ନାହିଁ ଆଉ ମଠକୁ ଫେରିଗଲେ । ସୈୟଦ ଅଖତ୍‌ର ଅଲୀଙ୍କୁ ଡାକିବା ପାଇଁ ଅନେକେ ଗଲେ; ମାତ୍ର ଗୋମତୀ କୂଳର ତାଙ୍କର ସେଇ କୁଡ଼ିଆଟି ଖାଲି ପଡ଼ିଥିଲା, କେହି ନଥିଲେ । ସେ ଯେମିତି କୁଆଡ଼େ ଅନ୍ତର୍ଦ୍ଧାନ ହୋଇଯାଇଥିଲେ ।

ଜମଶେଦ ସପ୍ତାହେ ଖଣ୍ଡେ ସେଇଠି ରହିଲା । ସାରାଦିନ ସେ ସୈୟଦ ଅଲୀ ଆଉ ତାଙ୍କର ବନ୍ଧୁମାନଙ୍କୁ କରାଚୀର ଏଭଳି ବିସ୍ମୟକର କଥା ସବୁ ଶୁଣେଇଲା ଯେ ଲୋକେ ଆଁ କରି ରହିଗଲେ । ଭାରି କଷ୍ଟରେ ସେ ସେଇ ବୁଢ଼ାଙ୍କୁ ଏକ୍‌ସପୋର୍ଟ-ଇମ୍ପୋର୍ଟ୍, ବ୍ଲେକ୍ ମାର୍କେଟ୍ ପଗଡ଼ୀ, ଲୟସନ୍ସ ପରମିଟ୍, ଆଲଟମେଣ୍ଟ ଆଦି ଆଦି ଶବ୍ଦର ଅର୍ଥ ବୁଝେଇଲା ।

'ବୁଝିଗଲୁଁ, ପଗଡ଼ୀ, ବୋଇଲେ ଧର ଯେମିତି ପଞ୍ଚରୁ ସାହେବ ଲୋକଙ୍କ ପାଖକୁ 'ଡାଲା' ଯାଉଥିଲା ।' ଶମ୍ଭୁଦାଦା ମୁଣ୍ଡ ହଲେଇ କହିଲେ...' ଆରେ ଆମେ ଭେଟି କହୁଁ, ତମେ ସବୁ ପଗଡ଼ୀ କହୁଛ ।''

''ସେ ସବୁତ ମୁଁ ବି ଜାଣିଛି ।' ପଣ୍ଡିତ ଲକ୍ଷ୍ମୀନାରାୟଣ ନିଶ ଉପରେ ହାତମାରି କହିଲେ, ଏଇ ସଭାଟା ଯାକରେ ସିଏ ଜଣେ ବୋଲିଥିଲେ, ଯେ ଜାଣିଥିଲେ । କାରଣ ତାଙ୍କର ଇଂରାଜୀ ଜାଣିଥିବା ଭଣଜା କେତେ ବର୍ଷ ହେଲା ଦିଲ୍ଲୀରେ ଠିକାକାମ କରୁଥିଲା ଆଉ ବମ୍ବେଇରେ ବି ବେପାର, ଏକସପୋର୍ଟ ଇମ୍ପୋର୍ଟ୍ ଆରମ୍ଭ କରିଦେଇଥିଲା । ଥରେ ମୋହମ୍ମଦଗଂଜ ଆସି ମାମୁଁକୁ ଦିଲ୍ଲୀ ଆଉ ବମ୍ବେଇର ଆଶ୍ଚର୍ଯ୍ୟଜନକ କାହାଣୀ ସବୁ ଶୁଣେଇ ଥିଲା ।

''ଆମ ଗାଆଁରୁ ଦୁଇଜଣ ସାମରଥା ବାହାରିଲେ ।'' ତୌକୀର ମିୟାଁ ଭାରି ଗର୍ବରେ କହିଲେ... ''ଜଣେ ତମର ଫିଗୁ ଆଉ ଆମର ଏଇ ଜମଶେଦିଆ !''

''ଇସ୍ଲାମୀ ରାଜଧାନୀ । କରାଚୀରେ ତ ବଢ଼ିଆ ବଢ଼ିଆ ମସଜିଦ ହବଣି ?'' ମୌଲବୀ ମୋହମ୍ମଦ ହୁସୈନ କହିଲେ ।

'ହଁ' ସଂକ୍ଷେପରେ ଉତ୍ତରଦେଲା ଜମଶେଦ ।

"ଇଂରେଜମାନଙ୍କର ଭାରି ଅସୁବିଧା ହଉଥିବ ତମ ସେଇଠି ?" ମୌଲବୀ ସାହେବ ତାଙ୍କର ଅନୁମାନ କହିଲେ ।

"କାହିଁକି ?" ଜମଶେଦ ପଗ୍ଚରିଲା

"ମଦ ମନା ହୋଇ ଯାଇଥିବ ତ ? ଈଶ୍ୱରଙ୍କ କରୁଣାରୁ ତାହା ଇସ୍ଲାମୀ ମୁଲକ ତ !"

ଜମଶେଦ ମନେମନେ ଭାବିଲା— ଯଦି ଏ ବିଗ୍ରରାଙ୍କୁ ଜଣାପଡ଼ିବ ଯେ ତାଙ୍କର ପ୍ରିୟ ପୁତୁରା କରାଚୀରେ ବାରକ୍ଲବରେ ଗରା ଗରା ହ୍ୱିସ୍କୀ ଉଡ଼ଉଛି, ତା'ହେଲେ...। ତେବେ ସେ କହିଲା "ଏ ଯାଏଁ ତ ମନା ହେଇନି ?" ବେପରୁଆ ଢଙ୍ଗରେ ସେ ଏତକ କହିଥିଲା ।

"ଆମ ଏଇଠି ମନା ହେଇଗଲାଣି !" ମୌଲବୀ ସାହେବ ଜଣେଇ ଦେଲେ ।

"ମନା ହେଲା ଯେ କ'ଣ ହେଲା ?" ସବୁ ରହସ୍ୟର ଜ୍ଞାତା ରାମନାରାୟଣ କହିଲେ । "ଫିଙ୍ଗୁ କହୁଥିଲା ଲୋକେ ଏଇନେ ଲୁଚିଛପି ବେଶି ବେଶି ପିଉଛନ୍ତି ।"

'ନିଷେଧ କ'ଣ ବାଧାଟିଏ !' ଜମଶେଦ ଦାର୍ଶନିକ ଢଙ୍ଗରେ ଭାବିଲା, ନୈତିକ, ରାଜନୈତିକ, ଧାର୍ମିକ ବାରଣ—

ଗୁଜର ଗୟା ଅବ ବହ ଦୌର ସାକୀ
କି ଛୁପକେ ପୀତେ ଥେ ପୀନେବାଲେ
ବନେଗା ସାରା ଜହାଁ ମୟଖାନା
ହରକୋଈ ବାଦାଖ୍ୱାର ହୋଗା ।

(ମୟଖାନା— ମଦଦୋକାନ । ବାଦାଖ୍ୱାର— ମଦ୍ୟପ)

ସେ ମନେ ମନେ ଗାଇଲା, ହେଲେ ମନ ତା'ର କେଜାଣି କାହିଁ ଥିଲା । ତା'ପରେ ସେ ମୋହମ୍ମଦ ଗଂଜ ଦରଘାର ନିମ ତଳକୁ ଫେରିଆସିଲା ।

"ଭାଇ ଟିକିଏ କହ ହେଲେ, ତମ ସେଠାକାର ରାଷ୍ଟ୍ରୀୟ ପୋଷାକ କ'ଣ ?" ତୌକୀର ମିୟାଁ ପଗ୍ଚରିଲେ— "ଆମ ଏଇଠି ତ ଅଫିସରମାନଙ୍କୁ ହୁକୁମ ମିଳିଗଲାଣି ଯେ ବିଲାତ ଗଲେ ବି ଦେଶୀ ପୋଷାକ ପିନ୍ଧି ଯିବାକୁ ହେବ ।" ସେ ବରାବର ଲକ୍ଷ୍ନୌରୁ ବାହାରୁଥିବା ଖବରକାଗଜ 'ମଦୀନା' ଆଉ କୌମୀ 'ଆୱାଜ' ପଢୁଥିଲେ ।

'ପାକିସ୍ଥାନରେ ତ ମାଇକିନାମାନେ ପରଦା କରୁଥିବେ ! ଇସ୍ଲାମୀ ଦେଶ ନା ?" ମୌଲବୀ ସାହେବ କହିଲେ— "ଆମର ଏଇଠି ସ୍ୱାଧୀନତାର ହାଉଆ ବେଶ୍ ବହିଲାଣି ।"

'ଫରହତୁନ୍ନିସା କ'ଣ ପଢୁଛି ?' ସେ କଥାର ମୋଡ଼ ବଦଳେଇବା ଲାଗି ପଗ୍ଚରି ଦେଲା ।

କାକା କହିଲେ— 'ମୁଁ ନିଜେ ଉର୍ଦ୍ଦୁ ପଢ଼ଉଚି ଆଉ କୋରାନ୍-ଶରୀଫ୍ ବି । ଶମ୍ଭୁ ଭାଇ ଇଂରେଜୀ ପଢ଼େଇ ଦଉଛନ୍ତି— ଏ.ବି. ସି.ଡ଼ି., ଗୋସାଇ ଭାଇ ହିନ୍ଦୀ ପଢ଼େଇ

ଦଉଛନ୍ତି— ସୈୟଦ ମଜହର ଅଲୀ ଗର୍ବରେ ଜଣେଇଲେ । ଜମଶେଦକୁ ଲାଗିଲା ଯେମିତି ତା' ଝିଅକୁ ସବୁ ଗାଆଁବାଲା ସେମାନଙ୍କର ଦାୟିତ୍ୱ ବୋଲି ଭାବୁଛନ୍ତି । ସେ ଫରହତୁନିସାକୁ ପାକିସ୍ଥାନ ନେଇଯିବାକୁ ଭାବିଛି ବୋଲି ଆଉ ପଢ଼ାପଢ଼ି ପାଇଁ ସ୍ୱିଜରଲାଣ୍ଡ ପଠେଇବ ବୋଲି ମନସ୍ଥ କରିଥିବା କଥା କହିବ କହିବ ହେଲା । ହେଲେ କାକା, ଶମ୍ଭୁଦାଦା, ଗୋସାଇ କାକା ଆଗରେ କହିପାରିଲା ନାଇଁ । କହିଲେ ଏମିତି ହେବ, ଯେମିତି ସେମାନଙ୍କର ଦୀନତା ଓ ସରଳତାର ପରିହାସ କରୁଛି । ନିଜର ନୀଚପଣ ଆଉ ଏଇ ସରଳ ଲୋକଙ୍କର ମହାନତାର ଅନୁଭୂତି ଜାଗିଲା ତା ମନରେ । ସେ ଚୁପ୍ ହେଇ ପାଖରେ ପଡ଼ିଥିବା ନିମକାଠିରେ ମାଟିରେ ଗାର ଟାଣିବାକୁ ଲାଗିଲା ।

ମଂଜୁରୁନିସା ତାକୁ ଲୁଚୁଥିଲା ।. ତେବେ ସେ ଯେତେଦିନ ସେଠାରେ ଥିଲା, ତା'ର ଉଠିଲା ବସିଲା ଜାଗାକୁ ଅନେଇ ରହୁଥିଲା । ଥରେ ତା'ର ମା' ତାକୁ ସେଭଳି ଅନଉଥିବା ଦେଖି ତା ଉପରକୁ ଧସେଇ ଆସିଲା— "ଆଲୋ ପୋଡ଼ାକପାଳୀ ବାବୁ ଏଇନେ ତୋ ଲାଗି ପରଦା କରିବା ଯୋଗ୍ୟ । ମୁହାଁମୁହିଁ ହେଲେ ପାପୀ ହବୁ ।"

'ପରାଦ କରିବା କଥା । ହେଲେ ମୋର କକା ପୁଅ ବି ତ ?' ମଂଜୁରୁନିସା ଦୁଃଖ ଆଉ ରାଗରେ ଜଳିଯାଇ ଜବାବ ଦେଲା

"ବେହିଆ, ବଜାରୀ, ବେସରଂମ !" ସୈୟଦ ମଜହର ଅଲ୍ଲୀଙ୍କର ପତ୍ନୀ ବକି ବକି ପଲାଉ ଆଉ ଆଳୁଦମ କରିବାକୁ ରୋଷଘରକୁ ଚ୍ଚାଲିଗଲା । ମଂଜୁରୁନିସା ସେଇଠି କବାଟ ପାଖରେ ଲଥକିନା ବସି ପଡ଼ିଲା । ଆଉ କଇଁ କଇଁ ହେଇ କାନ୍ଦିବାକୁ ଲାଗିଲା ।

ଜମଶେଦ ଫରହତୁନିସାକୁ ସାଙ୍ଗରେ ନେଇ କରାଚୀ ଆସି ତା'ର ଦେଖାଶୁଣା କରିବାକୁ ଆଂଗ୍ଲୋଇଣ୍ଡିୟନ ଆୟାଟିଏ ରଖିନେଲା । ତାକୁ ଗୋଟାଏ ଉଚ୍ଚସ୍ତରର ପ୍ରାଇଭେଟ୍ ସ୍କୁଲରେ ଦିଆହେଲା । ଆଲିୟା ବି ଝିଆରୀର ପଢ଼ାପଢ଼ି ନେଇ ବେଶ୍ ତତ୍‌ପର । ଏଇନେ ସେ ଘରେ ବାହାରେ ସବୁଠେଇଁ ଫେୟରୀ ନାଆଁରେ ପରିଚିତ ଆଉ ଅଳ୍ପ ସମୟ ଭିତରେ ସେ ବେଶ୍ ସ୍ମାର୍ଟ ଆଉ କୁଶାଗ୍ର ବୁଦ୍ଧିର ଟିନ୍‌ଏଜର ଭିତରେ ଗଣାହେବାକୁ ଲାଗିଲା । ଚିପା ଗୋଡ଼ର ଶଲୱାର, ବିନା ହାତର ଚିପା କମିଜ, ଓଢଣୀ ଜାଗାରେ କାନ୍ଧରେ ପଟିଭଳି କ'ଣ ପିନ୍ଧେ 'ରକ. ଏଣ୍ଡ. ରୋଲ'ରେ ବେଶ ନିପୁଣ । ଆଉ ସେ ଅଜାଘର ଅଗଣାକୁ ଭୁଲ୍‌ରେ ବି ମନେପକେଇଲା ନାଇଁ ।

ଅଲିୟା କେବେ କେମିତି ସୈୟଦ ମଜହର ଅଲ୍ଲୀଙ୍କୁ ସେଠାକାର ଖବର ଲେଖି ଚିଠି ଦେଉଥାଏ— "ଆଜି ଭାଇ ନୂଆ ଗାଡ଼ିଟିଏ କିଣିଲେ । ଚ୍ଚାଳିଶ ହଜାର । କାଲି ଭାଇ ତାଙ୍କର ବ୍ୟବସାୟ ପାଇଁ ୟୁରୋପ ଗଲେ । ଏଇଟା ଭାଇଙ୍କର ୟୁରୋପ ଯିବା ଚ୍ଚରିଥର

ହେଲା । ମୁଁ ଆସନ୍ତା ମାସରେ ନ୍ୟୁୟର୍କ ଯିବି । ନ୍ୟୁୟର୍କ ଆମେରିକାର ଗୋଟାଏ ବଡ଼ ସହର ।''

'ଫେୟରୀ ତା' ସ୍କୁଲ ଝିଅଙ୍କ ସାଙ୍ଗରେ 'ଭରୀ' ଯାଇଛି ।' (ଭରୀ ପଶ୍ଚିମ ପାକିସ୍ଥାନର ଗୋଟାଏ ପର୍ବତୀୟ ଦର୍ଶନୀୟ ସ୍ଥଳ) ।

ମୁଁ ଏ ଚିଠି ଶ୍ୟାମଳ ସୁନ୍ଦର ଶାନ୍ତ ସିଲହଟ ରେଷ୍ଟହାଉସରୁ ଲେଖୁଛି । ସାମନାରେ ଢାଲୁ ଅଞ୍ଚଳରେ ସୁରମା ନଦୀ ପ୍ରବାହିତ । ପଛପଟେ ବୃକ୍ଷଘେରା ଏକ ବିରାଟ ହ୍ରଦ । ନଦୀର ଭବ୍ୟ ଆଉ ଲାଲ ରଙ୍ଗର ପୋଲ ଉପର ଦେଇ ପାଦଚଲା ଲୋକେ, ସାଇକଲ ରିକ୍ସା, ମୋଟରର ଶୋଭାଯାତ୍ରା । ମୁଁ ଝରକା ପାଖରେ ପଲଙ୍କ ଉପରେ ବସି ଆଜି ଦିନସାରା ତମକୁ ଏ ଚିଠି ଲେଖିବି । ଆଉ ତା'ପରେ ମୋର ସୁଟକେଶରେ ଲୁଚେଇ ଦେବି । ଗତ ବର୍ଷମାନଙ୍କରେ ମୁଁ ଏମିତି କେତେକେତେ ଲମ୍ବ ଲମ୍ବ ଚିଠି ଲେଖି ବାକ୍ସରେ ରଖିଛି ବା ନଷ୍ଟ କରିଦେଇଛି । ଏଇ ସଂକ୍ଷିପ୍ତ ଗୋଟାଏ ଦୁଇଟି ପଂକ୍ତିରେ ଯାହା ଆମେ ଦୁହେଁ କଳ୍ପିତ ନାଆଁରେ ପରସ୍ପର ନିକଟକୁ ପଠେଇଥାଉ; ସେମାନଙ୍କର ସଂକେତ ଓ ପ୍ରତୀକ, ଅସ୍ପଷ୍ଟ ଅନ୍ତର୍କଥା ଓ ରୂପକରେ ତମ ସାଙ୍ଗରେ କଥା ହେବାର ପ୍ରୟାସ ପରେ ଯେତେବେଳେ ମୋର ଶ୍ୱାସରୁଦ୍ଧ ହୋଇଆସେ, ସେତେବେଳେ ମୁଁ ବେଶ୍ ଲମ୍ବା ଚିଠି ଲେଖେଁ । ଯେତେବେଳେ ବି ତମ ସାଙ୍ଗରେ ଗପସପ କରିବାକୁ ବିସ୍ତୃତ ଆଲୋଚନା କରିବାକୁ ମନହୁଏ, ସେତେବେଳେ କାଗଜ କଲମ ନେଇ ବସିଯାଏଁ ଆଉ ଭାବେ, ଏ କାଗଜ ବିଡ଼ାଟି ତମ ପାଖରେ ପହଞ୍ଚନ୍ତା କି ? ତେବେ ମୋର ବିଶ୍ୱାସ ଦିନେ ସେଭଳି ବି ହେବ, ଯେଉଁଦିନ ଏସବୁ ବିସ୍ତୃତ ପତ୍ର ତମକୁ ଦେବି ଆଉ ତମ ସାଙ୍ଗରେ 'ରେଟ୍ରୋସ୍ପେକ୍ଟ'ରେ କଥା ହୋଇପାରିବି ।

'ଏଇନେ ସର୍କିଟ ହାଉସର ଆଲୁରୁବାଲୁରୁ ଦାଢ଼ୀ ଆଉ ଲମ୍ବ ଦାନ୍ତବାଲା ବୁଢ଼ା ବୈରା ମୋ'ଲାଗି ଟ୍ର' ନେଇ ଆସିଛି । ସେ ମୋତେ ତା'ର ଗାଆଁ ଆଉ ସିଲହଟର ପୀରମାନଙ୍କର ରୋଚକ କାହାଣୀ ସବୁ ଶୁଣାଏ ।

ରାତିରେ ସିଲହଟ୍ ବଜାରରେ ବେଶ୍ ଦୂର ଦୂର ଯାଏଁ ଆଲୁଅ ଜଳେ । ମନେହୁଏ ଯେମିତି ଏକ ବିସ୍ମୟକର କାଳ୍ପନିକ ପରୀ ରାଇଜ । ସର୍କିଟ୍ ହାଉସ ପଛକୁ ବିଦ୍ରୋହ ସମୟରେ ସହିଦ ହୋଇଥିବା କେହି ଜଣେ ଇଂରେଜ ସାମରିକ ଅଫିସରଙ୍କର କବର ଅଛି । ତାକୁ ଘେରି ରହିଥିବା ସବୁଜ ଘାସ, ଗାଈଟିଏ ସାରାଦିନ ଚରୁଥାଏ । ଏଇଠି ଅନେକ ଶାନ୍ତି ଓ ତୃପ୍ତି ପାଇଛି । କାଲି ମୁଁ ସାରାଦିନ ଟ୍ର' ବଗିଚ୍ଛରେ ବୁଲି ଗୁଡ଼ିଏ ସ୍କେଚ୍ କରିଛି ।

ଆଜି ମୋର ପୂର୍ବ ପାକିସ୍ଥାନରେ ପହଞ୍ଚିବା ଛଅ ବର୍ଷ ହେଲା । ହେଲେ କାଲିକା କଥା ଭଳି ଲାଗୁଛି । ୧୯୪୯ ଶେଷ ଆଡ଼କୁ ଖବର ପାଇଲି ଯେ ତମେ ପୂର୍ବ ପାକିସ୍ଥାନରେ ଅଛ । ସେଇ ଅଧାପନ୍ତରିଆ ଖବର ପାଇ ମୁଁ ସ୍କୁଲରୁ ଇସ୍ତଫା ଦେଇ ଢାକା ଗ୍ଲିଆସିଲି ।

ଏଠି ଆସି ସେ ଖବର ଭୁଲ୍ ବୋଲି ଜାଣିଲି । ଏଠାରେ ବି ମୁଁ ସେହି ପରିଶ୍ରମ ଓ ସଂଘର୍ଷମୟ ଜୀବନ ଜୀଇଁବା ଆରମ୍ଭ କିରଦେଇଛି, ଯେଉଥିପାଇଁ ତମର ମୋ ଉପରେ ଏତେ ଗର୍ବ । ତେବେ ଏଇନେ ମୁଁ ପୂରାପୂରି ଥକି ଯାଇଛି । ମୋ କାନରେ ତମର ସ୍ୱର ବାରଂବାର ପଡ଼େ— 'ଈଶ୍ୱର ଜାଣନ୍ତି ସୁରେୈୟା, ତମେ ଜୀବନରେ କିଛି ନା କିଛି ବିଳାସର ଅଧିକାରିଣୀ ।' କେବେ କେମିତି ଏମିତି ବି ହେଇଛି; ପଦ୍ମାର ଗଭୀର ପାଣିକୁ ମୋର ନାଆ ଆସି ପହଞ୍ଚିଲେ କେଜାଣି କୋଉ ବିବଶତାରେ ମୁଁ ଭାବେ, ମଝି ନଈକୁ କୁଦି ଯାଇ ଜୀବନ ସମାପ୍ତ କିରଦିଅନ୍ତି କି; ଆଉ ସେତେବେଳେ  ତମ କଥା ମୋ ଛାତିର କାନରେ ବାଜି ଉଠେ— 'ତୁ ବି ମୋତେ ନିରାଶ କରୁଛୁ ଟୋକୀ... ବାହାଦୁର ଝିଅ... ସିପାହୀ ଝିଅ... ।'

କେତେବେଳେ କେମିତି ଏସବୁ ପ୍ରଳାପ ଭଳି ଲାଗେ । ତମର ମୁଣ୍ଡ ଖରାପ, ତେଣୁ ତମେ ପାଗଳ ଭଳି ଘୂରୁଛ । ମୋର ବି ସେଇଆ । ତେବେ ବି ଭିବଷ୍ୟତର ଭ ରସା ସାମନାରେ ଆସି ଠିଆ ହୁଏ । ଈଶ୍ୱରଙ୍କୁ ବିଶ୍ୱାସ ଦେଉଛି ଯେ ଦିନେ ନା ଦିନେ ମୋତେ ଜୀବନର ଆନନ୍ଦ ଅବଶ୍ୟ ମିଳିବ । 'ଆଶା' ବି କେମିତି ଜିନିଷଟିଏ ! ତାହା ନ ଥିଲେ ହୁଏତ ମଣିଷ ମରି ସାରନ୍ତାଣି ।

ଆଜିକାଲି ସ୍କୁଲ ଛୁଟି । ମୁଁ ଏଇଠି ବି ଆର୍ଟ ଟିଚର । ମୁଁ ମୋର ଗୋଟାଏ ସାଙ୍ଗ ସାଙ୍ଗରେ ସିଲହଟ୍ ଆସିଛି । ତା'ର ସ୍ୱାମୀ ଏଠାକୁ ଟୁରରେ ଆସିଛନ୍ତି । ସେମାନେ ଦୁହେଁ କାଲିଠାରୁ ମୌଲଵୀ ବଜାର ଯାଇଛନ୍ତି । ଆଜି ମୁଁ ସାରାଦିନ ତମ ସାଙ୍ଗରେ କଥା ହେବି ।

ପୂର୍ବ ବଙ୍ଗ କେତେ ସୁନ୍ଦର । ଏଠାକାର ଲୋକେ ଭାରି ସ୍ନେହୀ । ସତରେ କେବେ କ'ଣ ଏମିତି ବି ହେବ ଯେ ତମେ ମୋ ସାଙ୍ଗରେ ଥିବ ଆଉ ମୁଁ ଏ ଜଙ୍ଗଲ ଓ ନଦୀର ଛବି ଆଙ୍କୁଥିବି ।

ତମେ ଖବରକାଗଜରୁ ଜାଣିଥିବ ମୋ କଳାର 'ବଙ୍ଗାଳୀ ସ୍କୁଲ' ଆରମ୍ଭ ହୋଇ-ଯାଇଛି । ବାଜେ, ନିହାତି ବାଜେ ! ମୁଁ ତ ମୋ ଜୀବନର ସବୁଠାରୁ ସୁନ୍ଦର ସ୍କୁଲ ଆରମ୍ଭ କରିବାକୁ ଗ୍ରହୁଁଚି । ଆଉ ତମେ ଭଲ କରି ଜାଣିଛ, ସେ ସ୍କୁଲର ନାଆଁ କ'ଣ ହେବ  । ଢାକାରେ ମୋର ଦୁଇଟି ପ୍ରଦର୍ଶନୀ ହେଲାଣି, ତେବେ ତମେ ନାହଁ ବୋଲି ମୋତେ  ସବୁକଥା ଗୋଲକ ଧନ୍ଦା ଭଳି ଲାଗୁଛି ।

ଆଜି ମୋର ଏକୋଇଶତମ ଜନ୍ମଦିନ । ଅର୍ଥାତ୍ ଏକୋଇଶ ବର୍ଷ ତଳେ' ଲୁହଭରା ଏ ଧରଣୀରେ କାନ୍ଦି ଚିହ୍ନାର କରି ମୁଁ ପହଞ୍ଚିଥିଲି । ଯୋଉ ପରିବେଶରେ ମୁଁ ଜନ୍ମିଥିଲି, ସେଇଠି ରୂପାର ଦୀପଦାନୀ ଜାଗାରେ ଭଙ୍ଗା ଲଣ୍ଠନ ଥିଲା ।  'ହେପୀ ବର୍ଥ ଡେ'ର ସ୍ୱରବଦ୍ଧ ଝଙ୍କାର ବଦଳରେ ଗାଈ ଗୋରୁଙ୍କ ଘଣ୍ଟି ଶୁଭୁଥିଲା । କେକ୍ ବଦଳରେ ଗୋବର ଘସି ଥିଲା । ମୋର ସେ ଦୁନିଆଁରେ ଜନ୍ମଦିନକୁ କେହି ଉତ୍ସବ ବୋଲି ଭାବୁନଥିଲେ । ତମେ ଯୋଉ ଐନ୍ଦ୍ରଜାଲିକ ଦୁନିଆଁରେ ଜନ୍ମ ହୋଇଥିଲ, ସେଠି ତମର 'ବର୍ଥ ଡେ'ରେ ସଲମାନ୍ କୋଠିରେ ବେଶ୍ ଜାକ-ଜମକରେ ଫେନ୍ସୀ ଡ୍ରେସର ପାର୍ଟି ହେଉଥିଲା । ସେ

ଯାହାହେଉ, ମୁଁ ଆଜି ଏଇଠି ମୋର ଜନ୍ମଦିନ ପାଳନର ଧାରାଭାବରେ ଭାବିଛି ତମ ପାଖକୁ ଏକୋଇଶ ପୃଷ୍ଠାର ଚିଠି ଲେଖିବି । ଆଉ ତା' ସାଙ୍ଗରେ ଆହୁରି ଅଠତିରିଶ ପୃଷ୍ଠା ଯୋଡ଼ିଦେବି । ତମର ବୟସ ଅଠତିରିଶ । ଏଇ ହିସାବରେ ଆମର ବୟସ ମୋଟ ଅଣସତୁରୀ ବର୍ଷ, ମାନେ ମୁଁ ଆଉ ତମେ ଅଣସତୁରୀ ବର୍ଷର ବୃଦ୍ଧ । ମୁଁ ଏଇନେ ଆଖି ବନ୍ଦ କରି କଳ୍ପନା କରୁଛି ଯେ— ଆମେଦୁହେଁ ଏକା ସାଙ୍ଗରେ ଏଇ ଅଣସତୁରୀ ବର୍ଷ ଅତିବାହିତ କରିଛୁଁ । ଯୌବନର ସ୍ୱପ୍ନ, ଉତ୍ସାହ ଓ ପାଗଳାମି, ପ୍ରୌଢ଼ତାର ଭାବନାତ୍ମକ ଭାରସାମ୍ୟ, ବୃଦ୍ଧାବସ୍ଥାର ଶାନ୍ତି, ଆରାମ ସାନ୍ନିଧ୍ୟ, ପୀଡ଼ାକୁ ଭାଗକରି ନେବାର ଇଚ୍ଛା—

'କାମ୍ ଅଫ୍ ମାଇଣ୍ଡ ଅଲ ପେଶେନ୍ସ ସ୍ପେଣ୍ଟ !'

ଗତ ସପ୍ତାହରେ ମୁଁ ଏଇଠି ପହଞ୍ଚି 'କରମ ଜହାଁ' ବେଗମ ପାଖକୁ ଛୋଟିଆ ଚିଠିଟିଏ ପୋଷ୍ଟ କରିବାକୁ ଗଲାବେଳକୁ ମୋତେ ଡାକଘରର ରାସ୍ତା ଜଣା ନଥିଲା । ମୁଁ ଯାଉଁ ଯାଉଁ ଗୋଟାଏ ସରକାରୀ ବଙ୍ଗଳାରେ ପଶିଗଲି, ଯାହାକୁ ମୁଁ ଡାକଘର ବୋଲି ଦୂରରୁ ମନେ କରିଥିଲି । ମୁଁ ସିଧାସଳଖ କୋଠରି ଭିତରକୁ ଗ୍ଭଲିଗଲି । ସେଇଠି ଗୋଟାଏ ଚିରା ଗାଉନ ପିନ୍ଧା ବଙ୍ଗାଳୀ ଓକିଲ ମାଜିଷ୍ଟ୍ରେଟ୍ ସାମନାରେ ଜେରା କରୁଥିଲେ । ସେଇଟା ଜିଲ୍ଲା ଅଦାଲତ । ସେତେବେଳେ ମୋର ଅକସ୍ମାତ୍ ସ୍ମରଣ ହେଲା— ତମର ଓ ମୋର, ଆମ ଦୁହିଁଙ୍କର ଅଦାଲତ ସାଙ୍ଗରେ ସଂବନ୍ଧ କେତେ ଥିଲା ।

ତମର ଶେଷ ଚିଠି ମୋତେ ଛ' ମାସ ତଳେ ମିଳିଥିଲା । ଲେଖିଥିଲ— 'ବାପାଙ୍କର ଦେହାନ୍ତ ହୋଇଯାଇଛି ।' ତମେ ସେତେବେଳେ ମୋ ପାଖରେ ଥିଲେ ମୁଁ ହୁଏତ ମୋର ଆଖି ତମରି ହାତରେ ଲୁଚେଇ ନେଇଥାନ୍ତି, ଆଉ ବେଶ ମନଭରି କାନ୍ଦିଥା'ନ୍ତି । ପୁଅ କୋଉଠି ଅଫିସର ହୋଇଥିଲେ ତାଙ୍କୁ ଏଭଳି କଷ୍ଟ ସହିବାକୁ ପଡ଼ି ନଥା'ନ୍ତା ବୋଲି ବାପା କେବେହେଲେ ଅଭିଯୋଗ କରିନାହାନ୍ତି ।

ତା'ପରଠାରୁ ତମେ ପୂରା ନୀରବ । ନଜରବନ୍ଦ ଥିବାବେଳେ ତମେ ମୋତେ ବରାବର ଚିଠି ଦେଇଛ । ଭାବି ଭାବି ମୋତେ ପାଗଳ ଭଳି ଲାଗୁଛି । ଏଇନେ ସୁରମା ନଦୀ ଉପରେ ସଂଧ୍ୟାର ପାଟଳିମା ଖେଳେଇ ହେଲଣି, ଆଉ ବଜାରରେ ମହମବତୀ ସବୁ ଜଳିଲାଣି— ଆଉ...

ଜମଶେଦ ତା'ର ଡ୍ରଇଂରୁମ୍‌ରେ କେତେଜଣ ଅତିଥିଙ୍କ ପାଇଁ କକ୍‌ଟେଲ ତିଆରି କରୁଥାଏ, ସେତେବେଳେ ଗ୍ଭକର ଆସି ଖବର ଦେଲା— "ସାହବେ କେହି ଜଣେ ବଡ଼ମିୟାଁ ଆସିଛନ୍ତି । କହୁଛନ୍ତି, ଆପଣଙ୍କର ବାପା ।"

"ମୋର ବାପା ?" ଜମଶେଦ ଚଂଚଳ ପାଦରେ ବାହାରକୁ ବାହାରିଗଲା ।

ନାରଙ୍ଗୀ ରଙ୍ଗର କଫନୀ ପିନ୍ଧି (ସିଲେଇ ହୋଇ ନଥିବା ପୋଷାକ) ସୈୟଦ

ଅଖତର ଅଲୀ ମୋଟର ରିକ୍ସାରେ ବସିଥିଲେ । ଛୋଟ ଟିଣ ବାକ୍ସ ଦଉଡ଼ି ଗୁଡ଼େଇ ହୋଇଥିବା ବେଡ଼ିଙ୍ଗ ଆଉ ଲୋଟା ତାଙ୍କ ଗୋଡ଼ ପାଖରେ ଥୁଆ ହୋଇଥାଏ । ସେ ଆଖିଟେକି ଜମଶେଦକୁ ଅନେଇଲେ ଆଉ ମୁରୁକି ହସିଲେ । "ଆମକୁ ପୂର୍ବ-ଦୃଷ୍ଟି ମିଳିଥିଲା... ପାକିସ୍ତାନ ଚାଲିଆସ ।" ସେ ବେଶ୍ ଆରାମରେ କହିଦେଲେ ।

"ମୁଁ ଏ ଖାସ ଖବର ତମକୁ ଦେବାର୍ କାରଣ ହେଲା— ମୁଁ ଖୁବ୍ ଶୀଘ୍ର କରାଚୀରେ ପହଞ୍ଚିବି । ଏ କେଇ ଧାଡ଼ି ମୁଁ ନାରାୟଣ ଗଂଜ ଗଲା ବାଟରେ ଲାଉଂଜରେ ଲେଖୁଛି । ମୁଁ ଯଥେଷ୍ଟ ପଇସା ସଞ୍ଚି ସାରିଛି, ଯେମିତି କରାଚୀରେ ପହଞ୍ଚିପାରିବି ଆଉ ଯେତେଦିନ କାମ ମିଳିନାଇଁ... ।"

ଦିନେ କୁନୀ ସ୍କୁଲରୁ ପଢ଼େଇ ଫେରିବା ପରେ ସବୁଦିନ ସକାଳ ଭଳି ଚା ପିଉ ପିଉ ଖବରକାଗଜର ୱାନ୍‌ଟେଡ୍ କଲମ ପଢ଼ି ବସିଲା । ଗୋଟାଏ ବଡ଼ ଫାର୍ମରେ ରିସେପ୍‌ସନିଷ୍ଟ ପୋଷ୍ଟ ଖାଲି ଥାଏ । ତା'ପରଦିନ ସକାଳେ ଛୁଟି ନେଇ ସେ ୱେଷ୍ଟ ହାଫ୍‌ର ଗୋଟାଏ ନୂଆ କୋଠାରେ ପହଞ୍ଚିଲା । ସେଇଠି ତିନିତାଲାରେ ଗୋଟାଏ ଆଙ୍ଗ୍ଲୋ ପାକିସ୍ତାନୀ ଝିଅ ପଚାରିଲା— 'ୟସ ପ୍ଲିଜ୍ !'

କୁନୀ ବେଶ ଅପ୍ରତିଭ ହୋଇ ବେଗରୁ ଖବର କାଗଜର ସେଇ ଟୁକୁରାଟି ବାହାର କଲା ।

'ଇଣ୍ଟରଭ୍ୟୁ କିଏ ନେବେ ?'

'ମେନେଜିଂ ଡାଇରେକଟର ନିଜେ । ଆପଣଙ୍କର ତାଙ୍କ ସାଙ୍ଗରେ ଏପଏଣ୍ଟମେଣ୍ଟ ଅଛି ?'

'ନା'

'ଆପଣ ଆପଣଙ୍କର ଦରଖାସ୍ତ ଦେଇଦିଅନ୍ତୁ ମୋତେ ।'

'ଦରଖାସ୍ତ ତ ମୁଁ ଲେଖିନାଇଁ !'

ସେ ଝିଅଟିକୁ କୁନୀର ଅପ୍ରତିଭ ବିବ୍ରତ ହେବା ଦେଖି ଦୟା ଆସିଗଲା ଯେମିତି ।

'ଆପଣ ରହନ୍ତୁ ଏଇଠି ମୁଁ ବସ୍‌ଙ୍କୁ ବୁଝୁଛି ।'

କିଛି ସମୟ ପରେ ସେ ଫେରିଆସିଲା ଆଉ କୁନୀ ତା' ସାଙ୍ଗରେ ଆଉ ଏକ ଥଣ୍ଡା ଓ ତା'ଠାରୁ ଆପାତତଃ କମ ଆଲୁଅର କରିଡର ଦେଇ ଗୋଟାଏ ବଡ଼ ଏଆରକଣ୍ଡିସନ୍‌ଡ଼ କୋଠରିରେ ପହଞ୍ଚିଲା । କୋଠରିଟିର ବେଶ୍ ଅତ୍ୟାଧୁନିକ ସାଜସଜ୍ଜା । ସବୁଜ ରଙ୍ଗର କାର୍ପେଟ ଗାଲିଚା ଆଉ ଫିକା ସବୁଜ ରଙ୍ଗର ପରଦା ପାଖକୁ ଗୋଟାଏ ବିରାଟ ମେଜ । ସେଇଠି ମେନେଜିଂ ଡାଇରେକ୍ଟର ତାଙ୍କର ରିଭଲଭିଂ ଚେୟାରରେ ବସି କେତୋଟି କାଗଜରେ ଦସ୍ତଖତ କରୁଥିବା ଓ ବ୍ୟସ୍ତଥିବା ଭଳି ମନେହେଉଥାଆନ୍ତି । ସେ ସାବନା ଆଉ ସୁଠାମ ଚେହେରାର ମଣିଷଟିଏ । ବୟସ ପାଖାପାଖି ଚାଳିଶ ହେବ । ଆଖିରେ ଗାମ୍ଭୀର୍ଯ୍ୟ ଓ

ବିଗ୍ରହଣୀଳତା ଉକୁଟି ଆସୁଥାଏ । ସ୍ୱାକ୍ଷର କରିସାରି ସେ ଟେଲ୍ଲିଫୋନରେ କ'ଣ କହିଲେ ଆଉ ପୁଣି କାଗଜପତ୍ରରେ ବ୍ୟସ୍ତ ହୋଇଗଲେ । ଆଙ୍ଗ୍ଲୋ-ପାକିସ୍ଥାନୀ ଝିଅଟି କୁନୀକୁ ସେଠାରେ ପହଞ୍ଚେଇ ଦେଇ ଗ୍ଳଲିଯାଇଥାଏ । ସେ ମେଜ ପାଖରେ ଠିଆ ହୋଇ ରହିଥାଏ; ମାତ୍ର ମେନେଜିଂ ଡାଇରେକ୍ଟର ସେଇଭଳି କାଗଜପତ୍ରରେ ବୁଡ଼ି ରହିଥା'ନ୍ତି । (ସେ ତାଙ୍କର ହୁଏତ ଖାସ୍ ଟେକନିକ୍, ଯେମିତି ତା'ଫଳରେ ଆଗନ୍ତୁକ ବେଶ ବୁଝିଯିବ ତାଙ୍କର ପ୍ରତ୍ୟେକ ମୁହୂର୍ତ୍ତ କେତେ ମୂଲ୍ୟବାନ)

ଫାଇଲ ବନ୍ଦ କରି ସେ ମୁଣ୍ଡ ଟେକିଲେ ।

'ସଲାମ-ଅଲେକୁମ୍ !' କୁନୀ ଅଭିବାଦନ କଲା ।

'ସଲାମ-ଅଲେକୁମ୍ ! କହନ୍ତୁ, ମୁଁ ଆପଣଙ୍କର କ'ଣ ସେବା କରିପାରିବି ?'

'ଆପଣଙ୍କ ଏଇଠି ଗ୍ଳକିରି ଖାଲି ଅଛି !'

'ଆଜ୍ଞା, ବସନ୍ତୁ ।' ଆଉ ସେ ପ୍ରାର୍ଥୀକୁ ଯେମିତି ଏକ ବିଶେଷଜ୍ଞର ଆଖିରେ ଅନେଇଲା । ଝିଅଟିର ମାରାତ୍ମକ ସେକ୍ସ ଏପିଲ । ଛୋଟ । ସୁନ୍ଦର ଗୋରା । ଛୋଟ ଛୋଟ ମାଦକ ଆଖି । ସୁନେଲୀ କେଶ । ପୂରାପୂରି ଯେମିତି ଜାପାନୀ କଣ୍ଢେଇଟିଏ । ସେ ଏକ ମୋଟା ବେଣୀ ଗୁନ୍ଥିଥିଲା, ଯାହା ସାଧାରଣ ଫେଶନର ତୁଳନାରେ ଅପୂର୍ବ ଓ ଆକର୍ଷକ ମନେହେଉଥିଲା ।

'ଆପଣଙ୍କ ନାଆଁ ପଗ୍ଳରିପାରେ ?' ସେ ମନେ ମନେ ଏକ ତୁରନ୍ତ ନିର୍ଣ୍ଣୟ ନେଇ ପଗ୍ଳରିଲା ।'

'ସଲମା ମିର୍ଜା !' ସେ କାଗଜରେ ନାଆଁଟି ଲେଖିଦେଲା ।

'କ୍ୱାଲିଫିକେଶନ୍ ?'

'ବିଏ ବିଟି ।'

'ଏ ପୂର୍ବରୁ କୋଉଠି କାମ କରିଛନ୍ତି ?'

''ଆଜ୍ଞା ନା... ଆଜ୍ଞା ହଁ... ମାନେ ମୁଁ... କୋଉ ଅଫିସରେ କାମ କରିନି.. ମୁଁ ସ୍କୁଲ ଟିଚର । (ପ୍ରାୟ ସବୁ କ୍ଷେତ୍ରରେ ଏକ ବଚନରେ 'ହମ' ବୋଲି ପ୍ରୟୋଗ ହୋଇଛି । ଏହା ସମ୍ମାନସୂଚକ । ଉର୍ଦ୍ଦୁର ଏ ରଚନା ଓ କଥନ ଶୈଳୀର ଏହା ଏକ ମୌଳିକତା । ଏହାକୁ ଇସ୍ଲାମୀ ଆଭିଜାତ୍ୟର ଏକ ଉଦାହରଣ ବୋଲି କୁହାଯାଇପାରିବ— ଅନୁ)

ମେନେଜର ଝିଅଟିଏ ଏଇ 'ହମ' କହିବାର ଢଙ୍ଗ ଲାଗି ମୁରୁକି ହସିଲା । ଟିକିଏ ପରେ କହିଲା— 'ବେଶ୍ ଖୁବ ଭଲ । ଦେଖନ୍ତୁ ଆମର ଅଫିସରେ ଏଇନେ କେବଳ ଏଇ କାମ ଦରକାର ଯେ ଆପଣଙ୍କୁ ଆମର ଫରେନ୍ କ୍ଳାଏଣ୍ଟସ୍‌ମାନଙ୍କୁ ରିସିଭ୍ କରିବାକୁ ହେବ । ତା ବାହାରେ ମୁଁ କୌଣସି ବ୍ୟବସାୟୀ, ପଦସ୍ଥ, ଅଫିସର ଆଦି ଆଦିଙ୍କୁ ମେଟ୍ରୋପୋଲ ବା କ୍ଳବକୁ କେବେ ଯଦି ନିମନ୍ତ୍ରିତ କରେ, ତେବେ ତାଙ୍କୁ ଏନ୍‌ଟରଟେନ୍ କରିବାରେ ଆପଣ ମୋତେ ସାହାଯ୍ୟ କରିବେ ।'

'କିନ୍ତୁ... ।' କୁନୀ କହିବାକୁ ଚାହୁଁଥିଲା...

ମାତ୍ର ମେନେଜିଙ୍ଗ ଡାଇରେକ୍ଟର ନ ଶୁଣିଲା ଭଳି ହୋଇ କହି ଚାଲିଥାଏ ''ଆପଣ ନିଶ୍ଚୟ ଆଜିକାଲିର ପଶ୍ଚିମୀ କାଇଦା ସହିତ ପରିଚିତ ଥିବେ ଆଉ ବୋଧହୁଏ ଡାନ୍ସ ବି ଜାଣିଛନ୍ତି । କ୍ଷମା କରିବେ, ମୁଁ ଏ କଥା ଏଇଥିଲାଗି ପଚାରୁଛି ଯେ ମୁଁ ଏହା ପୂର୍ବରୁ ଜଣେ ପାକିସ୍ତାନୀ ଝିଅକୁ ଏଇ କାମରେ ଏପଏଣ୍ଟ କରିଥିଲି, ତେବେ ସେ ପାର୍ଟିରେ କଥା କହିବାକୁ ବି ଘାବରେଇ ଯାଉଥିଲା । ଆଉ ତାକୁ ଠିକ୍ ଠିକ୍ ଟେବୁଲମେନର୍ସ ବି ଜଣା ନଥିଲା । ମୋର କହିବାର ଅର୍ଥ ହେଲା— ଆଜିକାଲିର ବଡ଼ ବଡ଼ କାରବାରମାନଙ୍କରେ ପବ୍ଲିକ ରିଲେଶନ୍ସ ବହୁତ ଅଧିକ ଦରକାର । ମୁଁ ଯେକୌଣସି ୟୁରୋପିୟନ ଝିଅକୁ ଏ କାମ ଲାଗି ସହଜରେ ରଖିନେଇ ପାରିବି । ତେବେ ଆପଣ ଅବଶ୍ୟ ଜାଣିଥିବେ ଆଜିକାଲି ଆମେରିକନ୍ ଓ ୟୁରୋପୀୟ ଲୋକେ ପୂର୍ବୀୟ ଝିଅଙ୍କ ଦ୍ୱାରା ବିଶେଷ ଭାବରେ ପ୍ରଭାବିତ ହେଉଛନ୍ତି ।''

...'ହଁ... ତେବେ... ମୁଁ...'

'ମେନେଜର ତୁରନ୍ତ ଅନୁମାନ କରିନେଲା ଯେ ଝିଅଟି ସେ କଥା ସ୍ୱୀକାର କରିବାକୁ ଦ୍ୱିଧାବୋଧ କରୁଛି । ସେ କିନ୍ତୁ ଜାଣିଥିଲା ଯେ ସେଭଳି ଏକ ଅସାଧାରଣ, ଆକର୍ଷକ ଓ ସେକ୍ସ ଅପିଲ ଥିବା ଝିଅ ତାକୁ ସହଜରେ ମିଳିବ ନାହିଁ । ତାକୁ ତା'ର 'ଆଇଡ଼ିଆ' ସେଲ କରିବା ବି ବେଶ ଜଣା । ସେ ତାକୁ ବୁଝେଇବା ଆରମ୍ଭ କଲା; କିଛି ସମୟ ଏଣୁତେଣୁ କଥା ହେବା ପରେ ସେ ପୁଣି ତା'ର ପ୍ରସଙ୍ଗକୁ ଫେରି ଆସିଲା । ଉଦାହରଣସ୍ୱରୂପ ଧରନ୍ତୁ, ପଶ୍ଚିମ ଦେଶର ପ୍ରସିଦ୍ଧ ଏଆରଲାଇନ୍ସଗୁଡ଼ିକ ତାଙ୍କର ଏଆର ହୋଷ୍ଟେସମାନଙ୍କୁ ଶାଢ଼ୀ, କିମୋନୋ ପିନ୍ଧଉଛନ୍ତି, କେବଳ ଏଇଥିପାଇଁ ଯେ ଯାତ୍ରୀ...'

'ତେବେ... କିନ୍ତୁ... ।'

'ନ୍ୟୁୟର୍କ ୟୁ.ଏନ୍.ଓ ରେ ମୁଁ ନିଜେ ଦେଖିଆସିଛି, ଯୋଉ ଗାଇଡ଼ଗୁଡ଼ିକ ଏ ଦେଶର, ସେଇମାନଙ୍କ ପଛରେ ଟୁରିଷ୍ଟଙ୍କର ଭିଡ଼ । ସେ ସେମିତି କିଛି ବିବ୍ରତ ହେବାର କଥା ନୁହେଁ— ତା'ହେଲେ ହେଲା ଠିକ୍ ? ମାର୍ଚ୍ଚ ପହିଲାରୁ ମୁଁ ଆପଣଙ୍କୁ ଏପଏଣ୍ଟ କରିନେଉଛି । ଆପଣଙ୍କ ସେଲେରୀ ମାସିକ ସାତଶହ ପଚାଶ ହେବ । ସେ କଣେଇ ଦେଖି ଝିଅଟିର ପ୍ରତିକ୍ରିୟା ଅନୁମାନ କଲା ଓ ଘଣ୍ଟି ବଜେଇଲା । ମୋଟା ପର୍ଦ୍ଦା ଭିତରୁ ଯେମିତି ଗୋଟାଏ କଳା ଘୋଡ଼ା ଗୋଆନିଜ୍ କ୍ଲର୍କ ବାହାରି ଆସିଲା, ବେତାଳ ଭଳି ।

'ମିଷ୍ଟର ପେଟ୍ରିକ... ଆପଣ ମିସ୍ ମିର୍ଜା । ତାଙ୍କୁ ମୁଁ ମୋର ସ୍ପେଶିଏଲ ସେକ୍ରେଟେରୀ ମୁକରର୍ କରୁଛି । ତାଙ୍କର ପର୍ସନାଲ ଫାଇଲ ତିଆରି କରିନିଅ ।'

'ୟେସ୍ ସର୍ !'

ପନ୍ଦର ମିନିଟ୍ ଭିତରେ ମାସିକ ସାଢ଼େସାତଶହ ଟଙ୍କାର ଚାକିରିରେ ତା'ର ନିଯୁକ୍ତି ହେଇଗଲା । ଏକଥା କୁନୀକୁ ବେଶ ବିଚିତ୍ର ମନେହେଲା ।

'ତେବେ ମୁଁ ଭାବୁଥିଲି ଇସ୍ତାହାର ଅନୁସାରେ ଚାକିରି ଥିଲା ଅଫିସ ରିସେପସନିଷ୍ଟ ।' ସେ ସାମାନ୍ୟ ବିରୋଧ କଲା ।

'ହଁ, ତେବେ ଆପଣଙ୍କୁ ଦେଖିବା ପରେ ମୁଁ ମୋର ମତ ବଦଳେଇଛି ।' ମେନେଜିଙ୍ଗ ଡାଇରେକ୍ଟର ତା'ର ଚଉକିର ବାଗ ବଦଳେଇଲା । ଆଉ ଝିଅଟିର ପ୍ରାୟ ଡରକୁଳା ଭାବଟି ଦେଖି ସେ ଭାବିନେଲା ଝିଅଟି ବେଶ ସରଳ ଆଉ ଟିକିଏ ବୋକୀ ବି । ତେବେ ତା'ର ଚାକିରି ନିହାତି ଆବଶ୍ୟକ ଆଉ ତା'ର କୌଣସି ଅଭିଜ୍ଞତା ବି ନାହିଁ ।

'ତେବେ ଆଉ ଏକ କଥା' ସେ ସାମାନ୍ୟ ସ୍ପଷ୍ଟ ଗଳାରେ କହିଲା— ''ଆପଣ ରହନ୍ତି କୋଉଠି ?''

କୁନୀ ଠିକଣା ଦେଲା ।

''ଓଃ !'' ମେନେଜିଙ୍ଗ ଡାଇରେକ୍‌ଟରଙ୍କ ମୁହଁରୁ ବାହାରିଆସିଲା ।

କୁନୀ ପଣତକାନି ସଜାଡ଼ି ଉଠି ଠିଆ ହେଲା ।

''ଆପଣ ରାଜି ନା ?''

କୁନୀ ଘଡ଼ିକ ଲାଗି ଆଖି ବୁଜିନେଲା ।

ବାପାଙ୍କର ମୃତ୍ୟୁ ଓ ଭାଇଙ୍କର ଜେଲ ଯିବା ପରେ ସେ ସେଇଭଳି ଛୋଟ ମୋଟ ଗୋଟାଏ ପ୍ରାଇଭେଟ୍ ସ୍କୁଲରେ ମାସିକ ଶହେପଞ୍ଚସ୍ତରୀ ଟଙ୍କାରେ ପଢ଼ଉଥାଏ । ସେ ପ୍ରତି ରବିବାର ଦିନ ଭାଇ ଲାଗି ଭଲ କିଛି ଫଳ, ତାଙ୍କର ମନଲାଖି ସିଗାରେଟ୍, ନୂଆ ନୂଆ ବହି ଓ ପତ୍ରିକା କିଣିବ ବୋଲି ଇଚ୍ଛା କରେ । ତେବେ ତାହା ସେଭଳି ଏକ ବେତନରେ ଆଦୌ ସଂଭବ ହୁଏନାହିଁ । ତା'ପରେ ଭାଇଙ୍କୁ ଦୂରକୁ ପଠେଇ ଦିଆହେଲା । ଆଉ ତାକୁ ବହାବଲପୁରର ଗୋଟାଏ ସ୍କୁଲରେ ସେକେଣ୍ଡ ମିଷ୍ଟ୍ରେସ୍ ଭାବରେ ନିଯୁକ୍ତ ମିଳିଥାଏ । କଲୋନୀ ଘରଟି ସେମାନେ ବିହାରରୁ ଆସିଥିବା ଜଣେ ସଂପର୍କୀୟଙ୍କୁ ଜିମାଦେଇ ମାମୁଙ୍କୁ ସାଙ୍ଗରେ ନେଇ ସେ ବହାବଲପୁର ଚାଲିଆସିଥାଏ । ସେଇଠି ସେ ଜୀବନରେ ବେଶ କଷ୍ଟପ୍ରଦ ପାଞ୍ଚୋଟି ବର୍ଷ ଉତ୍ତପ୍ତ ମରୁଭୂମିରେ ଝିଅଙ୍କୁ ପଢ଼େଇବାରେ ବିତେଇଛି । ସେଇଠି ମାମୁଙ୍କର ହାର୍ଟ ଆର୍ଟେକ ଆରମ୍ଭ ହେଲା ! ସେଇ ତହସିଲରେ ଉଚିତ ଚିକିତ୍ସା ହେବ ଆଦୌ ସଂଭବ ନୁହେଁ । ତେଣୁ ସେ ମାମୁଙ୍କୁ ନେଇ ପୁଣି କରାଚୀ ଫେରିଆସିଲା । ଗତ ବର୍ଷରୁ ସେ ପୁଣି କଲୋନୀର ସେଇଘରର ଗୋଟିଏ କୋଠରିରେ ରହୁଛି । ସେଇ ସଂପର୍କୀୟ ଜଣଙ୍କ ଏ ଭିତରେ ଘରଟି ଦଖଲ କରି ନେଇଥା'ନ୍ତି ଆଉ ଗୋଟାଏ ବର୍ଷ ହେଲା କ୍ଲେମ୍ ଅଫିସକୁ ଧାଁଦଉଡ଼ କରି ଥକି ସାରିଲାଣି । ଜୀବନର ଆବଶ୍ୟକତା ପୂରା କରିବା ଲାଗି ଆଉ ଡାକ୍ତରଖାନାକୁ ବସ୍, ସାଇକଲ ରିକ୍ସା, କେତେବେଳେ ଖାଲି ପାଦରେ ଦଉଡ଼ି ଦଉଡ଼ି ଏଇନେ ଯେମିତି ତା'ର କିଛି ଶକ୍ତି ହିଁ ବାକି ରହିଯାଇନି । ତେବେ ଭାଇଙ୍କର କେବେ କେମିତି ଆସୁଥିବା ଚିଠି, ସେଥିରେ ସାହସ ଦେଉଥିବା ସ୍ନେହପୂର୍ଣ୍ଣ ଶବ୍ଦ; ସେସବୁ ହେତୁ ସେ ପୁଣିଥରେ ମଥା ଟେକି ବଂଚି ରହିବାର ସଂଘର୍ଷରେ ବ୍ୟସ୍ତ ହୋଇଯାଏ । କେତେ

ଚଂଚଳ ଦିନଗୁଡ଼ା ସରିଯାଉଥାଏ । ସନ ୬୧ ଆସି ଯାଇଥିଲା । ଗତ ପନ୍ଦର ବର୍ଷ ଭିତରେ ଏଭଳି ଗୋଟାଏ ବି ମୁହୂର୍ତ୍ତ ଆସିନାହିଁ, ଯେତେବେଳେ ସେ ଚିନ୍ତା, ବ୍ୟସ୍ତତା, ଦୁଃଖର କବଳରୁ ମୁକ୍ତ ହୋଇଛି । ଆଉ ତାକୁ ଜୀବିକା ନିର୍ବାହ ଲାଗି ଅଧିକ ପରିଶ୍ରମ ଓ ଧାଁଦଉଡ଼ କରିବାକୁ ପଡ଼ିନାହିଁ । ମାସିକ ସାଢ଼େସାତ ଶ... ସାତଶହ ପଚାଶ ଟଙ୍କା ମାସିକ... ଅବିଶ୍ୱସନୀୟ । ଆଉ ବି ତ ଝିଅମାନେ କୋଉଠି କାମ କରୁଥିବେ ! କୋଉ ଝିଅର ସେକ୍ରେଟେରୀ କାମ କରିବା ସେଭଳି କିଛି ଅସମ୍ମାନଜନକ କାମ ବି ନୁହେଁ। ଆଦୌ ନୁହେଁ। ଭାଇ ତାକୁ କେତେଥର ବୁଝେଇଛନ୍ତି... 'କୁନୀ, ତୁ ଅନ୍ୟମାନଙ୍କଠାରୁ ଆଦୌ ଭିନ୍ନ ନୋହୁ।'' ଆଉ ସେ ଏଇ ପନ୍ଦର ବର୍ଷ ଭିତରେ ଭାଇ ଆଗରେ ପ୍ରମାଣିତ କରିଦେଇଛି ଯେ ସେ ଦୁନିଆର ସାଧାରଣ ମଣିଷଙ୍କଠାରୁ ଆଦୌ ଭିନ୍ନ ନୁହେଁ । ଆଉ ସେଥିପାଇଁ ଭାଇଙ୍କର ତା' ଲାଗି ଅନେକ ଗର୍ବ । ମୋର ବାହାଦୁର ଭଉଣୀ, ସିପାହୀ ଭଉଣୀ !

ସେ ମନେ ମନେ ଫଇସଲା କରିନେଲା ।

''ଆଜ୍ଞା ହଁ !''

ଗୁଡ୍ ! ପହିଲା ତାରିଖ ସକାଳ ଆଠଟାରେ ଆମର ମାଇକ୍ରୋ ବସ୍ ଆପଣଙ୍କୁ ପିକ ଅପ୍ କରିବାକୁ ପହଞ୍ଚିଯିବ ।'

ତେବେ ହଠାତ୍ ପୁଣିଥରେ ଘାବରେଇ ଗଲା କୁନୀ । କହି ପକାଇଲା— ''ତେବେ ମୋତେ ସର୍ଟହେଣ୍ଡ ଟାଇପିଂ ଆଦୌ ଆସେନାହିଁ !''

''ନେଭର୍ ମାଇଣ୍ଡ ! ଆମ ଏଇଠି ଅଧଡଜନ ଟାଇପ କରିବାକୁ ଝିଅ ଅଛନ୍ତି । ପହିଲା ତାରିଖ ଆଠଟା ସକାଳେ... ବାଇ ମିସ୍ ମିର୍ଜା ।''

ଘରକୁ ଆସି କୁନୀ ଧଇଁସଇଁ ହେଲା ଭଳି ଡାକ ପକେଇଲା... ''ମମ୍ମା... ମମ୍ମା... ମୋତେ ସାଢ଼ସାତ ଶହ ଟଙ୍କାର ଚାକିରି, ଆଉ ଯିବାଆସିବା ମୋଟର ମିଳିଗଲା ।''

''ଆଚ୍ଛା !'' ମମ୍ମା ସଂକ୍ଷିପ୍ତ ଉତ୍ତର ଦେଲେ । ସେ କଲେକ୍ଟର ସାହେବଙ୍କର ମୃତ୍ୟୁର ପୀଡା ସହିନେଇଥିଲେ; ମାତ୍ର ସଲମାନ ଯିବା ପରେ ସେ ଯେପରି ମୂକ ପାଲଟି ଯାଇଥିଲେ।

ଏରୁଣ୍ଡିବନ୍ଧରେ ବସିପଡ଼ି, ମୁହଁ ଉପରକୁ ପାଣି ସିଂଚି ପୋଛି ନେଇ ଖାଇ ବସିଲା ଭିତରେ କୁନୀ ଭାବୁଥାଏ— ''ମେନେଜିଙ୍ଗ ଡାଇରେକ୍ଟର ମଣିଷଟି ତ ଭାରି ଭଲ ମନେହେଉଛି । ତା'ପରେ ତା' ମୁଣ୍ଡରେ ବସ୍ ଆଉ ସେକ୍ରେଟେରୀଙ୍କୁ ନେଇ ଅନେକ ପ୍ରଚଳିତ ଜୋକ୍ସ ଓ କାହାଣୀ ଖେଳିଗଲା । ଲୋକେ କ'ଣ ଭାବିବେ ମୋତେ, ଛୋଟ, ଶସ୍ତା ସେକ୍ରେଟେରୀ । ଲୋକେ କ'ଣ କହିବେ । ସେ ତା'ର ମନକୁ ମନ କହିଲା— 'କୁନୀ ଏ ତୋ'ର ନିଜର ଭ୍ରମ...ଧାରଣା । ଲୋକଙ୍କର ତୋ ଲାଗି ଏତେ ଚିନ୍ତା ଆସିଲା କୁଆଡୁ ଆରେ ତାଙ୍କ ପାଖରେ ତାଙ୍କର ଦୁଃଖ ବେଶ ଅଧିକ ଅଛି ।'' ସେ ବାବାଙ୍କର ଏଇକଥା ମନେପକେଇଲା, ତେବେ ମାର୍ଚ୍ଚ ପହିଲାରୁ ସେ ଏଇ ସନ୍ଦେହାସ୍ପଦ ଚାକିରିରେ ଯୋଗଦେବାକୁ ଯାଉଛି । ସେ ସାଢ଼େ ସାତଶହ ଟଙ୍କାର କଳ୍ପନା କରି ବସିଲା । ଏକାଠି ପ୍ରତିମାସ ସାଢ଼େ

ସାତଶହ ଟଙ୍କା... ଫେଣ୍ଟାଷ୍ଟିକ୍ ! ଏତେ ଟଙ୍କା ଏକାସାଙ୍ଗରେ ସେ ଅନେକ ଦିନ ହେଲା ଦେଖିନାଇଁ । ସେ ତା'ର ପ୍ରଥମ ଦରମାର ମନେ ମନେ ବଜେଟ୍ ତିଆରି କଲା । ସବା ଆଗ ତ ଭାଇଙ୍କ ଲାଗି ଅନେକ କିଛି କିଣାକିଣି କରିବ— ଗୋଟାଏ ବଢ଼ିଆ ସେଭିଙ୍ଗ ସେଟ୍ । ତାଙ୍କର ସେଭିଙ୍ଗ ସେଟ୍‌ଟି ଏବକୁ ଆହୁରି ଖରାପ ହୋଇ ସାରିଥିବ । ନୂଆ ପାଇଜାମା ଓ କାମିଜ ତିଆରି ହେବ । ବେଶ୍ କିଛି ଚକଲେଟ ଆଉ ସିଗାରେଟ ଟିଣ କିଣା ହେବ । ଭାଇ ଗଲାଥର ଗୋଟାଏ ବହି ପାଇଁ ଲେଖିଥିଲେ । ତାକୁ ସେ ଖାସ କରି ପଢ଼ିବାକୁ ଚାହୁଁଥିଲେ । ସେ ଟମାସ୍ ଏଣ୍ଡ ଟମାସ୍‌ରେ ଯାଇ ଦେଖିଥିଲା । ବହିଟିର ଦାମ ପଚିଶ ଟଙ୍କା । ଏଇନେ ପଚିଶ ଟଙ୍କା ଦେଇ ବହିଟି କିଣିବା ତା ପକ୍ଷରେ କଠିଣ ନୁହଁ । ପାଖରେ ଶାଢ଼ୀ ନାହିଁ କହିଲେ ଚଳେ । ଏ ମାସ କେବଳ ଶହେ ଟଙ୍କାର ଶାଢ଼ୀ କିଣା ହେବ । ତା ସାଙ୍ଗକୁ ହଲେ କଳା ସେଣ୍ଡଲ; ସେ ସବୁ ଶାଢ଼ୀରେ ଚଳିବ । ମେନେଜିଙ୍ଗ ଡାଇରେକ୍ଟର କହୁଥିଲା— ତାକୁ ତା ସାଙ୍ଗରେ ସବୁ ପାର୍ଟିରେ ରହିବାକୁ ହେବ । ସେଥିଲାଗି କ'ଣ କରିବାକୁ ହେବ; ଭଲ ଭଲ ଶାଢ଼ୀ ତ ନିହାତି ଦରକାର । ତା' ସାଙ୍ଗକୁ ମେକ୍‌ଅପ ଜିନିଷ ବି । ଛାଡ଼, ମୁଁ ମେକ୍‌ଅପ ତ କରିବି ନାଇଁ, କାରଣ ଭାଇ ଲିପ୍‌ଷ୍ଟିକ ପାଉଡ଼ର ବାଳୀ ଝିଅ ଆଦୌ ପସନ୍ଦ କରନ୍ତି ନାଇଁ ।

ଏକଥା ନିଆରା ଯେ ସେ ଲୋକଟି ଟିକିଏ ବି ଅଶାଳୀନ ବ୍ୟବହାର କରିବ ଯଦି ସେ ଇସ୍ତଫା ଦେଇଦେବ । ଏଇଆ ଭାବି ମନ ତା'ର ଶାନ୍ତ ହେଲା । ଆଉ ସେ ବାସନ ଉଠେଇ କିଚେନ ପଟକୁ ଚାଲିଆସିଲା ।

ସୈୟଦ ଅଖତର ଅଲୀଙ୍କ କୋଠରିଟି ଦି' ମହଲା ଉପରେ ଥାଏ । ସେଇଠି ସିଏ ପଲଙ୍କ ଉପରେ ସାରାଦିନ ଶୋଇ ରହୁଥିଲେ । ପତ୍ନୀ ତାଙ୍କର ସୁସ୍ଥ ହୋଇ ସାନିଟାରିୟମରୁ ଫେରିଆସିଥା'ନ୍ତି । ତେବେ ପତି ସାଙ୍ଗରେ ତାଙ୍କର ଭେଟାଭେଟି ନାହିଁ ଭଳି । ସୈୟଦ ଅଖତର ଅଲୀଙ୍କୁ ଜୀବନରେ ପ୍ରଥମଥର ପାଇଁ ଆରାମ, ବିଳାସ ଓ ଶାନ୍ତି ମିଳିଥିଲା । ସେ ପେଟପୂରା ଭଲରୁ ଭଲ ଖାଉଥିଲେ, ଆଉ ଶୋଇ ଯାଉଥିଲେ । ତାଙ୍କ ଲାଗି ଚାକରଟିଏ ଅନବରତ ମୁକରିର ହୋଇ ରହିଥାଏ । ସଂପୂର୍ଣ୍ଣ ବିଶ୍ରାମ ଓ ସୁଖ-ଶାନ୍ତି ଲାଗି ମାନସିକ ଅବସ୍ଥା ତାଙ୍କର ଧୀରେ ଧୀରେ ସୁଧୁରୁଥାଏ। ଆଉ ତାଙ୍କର ମୁଣ୍ଡ କାମ କରିବା ଆରମ୍ଭ କଲାରୁ ସେ ବେକାରିର ନିରନ୍ତରତା ପାଇଁ ବିରକ୍ତ ହୋଇ ବସୁଥିଲେ । 'ଅବବା' ଦିନେ ଜମଶେଦ କହିଲା— "ଆପଣ ଲ.ବହି ପଢ଼ାପଢ଼ି କରନ୍ତୁ । ଆପଣଙ୍କର ଅଭିଜ୍ଞତା ମୋର ଫର୍ମ ପାଇଁ ବିଶେଷ ଉପଯୋଗୀ ହେବ ।" ତା'ର ଅନେକ ନର୍ମଲ, ଆବନର୍ମଲ ମଣିଷ ସାଙ୍ଗରେ ବାରଂବାର ସଂପର୍କ । ସେ ସତରେ ଯେମିତି ଗୋଟାଏ ବିଶେଷଜ୍ଞ ପାଲଟି ଯାଇଥିଲା । ତା'ରି କଥାରେ ସୈୟଦ ଅଖତର ଅଲି ଲ ବହି ଦେଖାଦେଖିରେ ମନ ଦେବାକୁ ଆଗ୍ରହୀ ହେଲେ । ଦୀର୍ଘ ଅଠର ବର୍ଷ ପରେ ସେ ପୁଣିଥରେ ଏଲ୍.ଏଲ୍.ବିର

ଅଭିଜ୍ଞତାକୁ କାମରେ ଲଗାଉଥିଲେ । କେତେବେଳେ କେମିତି ସେ ଜମଶେଦର ଅଫିସକୁ ବି ପହଞ୍ଚି ଯାଉଥିଲେ । ଆଉ ଧୀରେ ଧୀରେ ପୁଅର ବ୍ୟବସାୟ ସଂବନ୍ଧରେ ବି ଦେଖାଚାହାଁ କରି ବସିଲେ ।

ସୁରେୟା କରାଚୀ ପହଞ୍ଚି, କିଛି ବର୍ଷ ତଳେ ତା ସାଙ୍ଗରେ କାମ କରୁଥିବା ତାର ଜଣେ ସାଙ୍ଗ ସାଙ୍ଗରେ ରହିଗଲା । ସେ ପରୋକ୍ଷ ଭାବରେ ସଲମାନ୍ ବାବତରେ ଖବର ନେବା ଆରମ୍ଭ କରିଦେଲା । ମାତ୍ର ଯୋଉମାନଙ୍କଠାରୁ ସେ ଜାଣିବାକୁ ଚାହିଁଲା, ସେମାନେ ତାକୁ କିଭଳି ଏକ ସନ୍ଦେହୀ ଆଖିରେ ଦେଖିଲେ । କିଛିଦିନ ପରେ ସେ ଜାଣିବାକୁ ପାଇଲା ଯେ ସଲମାନକୁ କରାଚୀଠାରୁ ଦୂରକୁ କେଉଁ ଏକ ଅଜ୍ଞାତ ସ୍ଥାନକୁ ଅନିର୍ଦ୍ଧିଷ୍ଟ ସମୟ ଲାଗି ପଠେଇ ଦିଆଯାଇଛି । ତା'ପରେ ସେ କୁନୀକୁ ଖୋଜିବା ଆରମ୍ଭ କଲା । ସଲମାନ ତା'ର ଚିଠିଗୁଡ଼ିକରେ ଅତି ସାବଧାନ ରହି କେବେହେଲେ ତା' କଥା ଉଲ୍ଲେଖ କରି ନଥିଲା କିମ୍ବା ତାକୁ ତାର ଠିକଣା ବି ଜଣେଇ ନଥିଲା । କୁନୀ ଭଳି ଏକ ସାଧାରଣ ବ୍ୟକ୍ତିତ୍ୱକୁ ଖୋଜି ବାହାର କରିବା ସହଜ ନୁହଁ । ତେବେ ଦିନେ ସେ କରାଚୀରେ ହିଁ ଅଛି ବୋଲି ଖବର ପାଇଲା । କୋଉ ଏକ ମାମୁଲି ସ୍କୁଲରେ କାମ କରୁଛି । ସେ ସ୍କୁଲର ଠିକଣା ବି କାହାକୁ ହେଲେ ଜଣା ନଥିଲା । ସୁରୈୟା ଜଣେ ବେଶ ଜଣାଶୁଣା ଆଉ ପ୍ରସିଦ୍ଧ ଚିତ୍ରଶିଳ୍ପୀ । ତାକୁ ଗୋଟାଏ ମହିଳା କଲେଜରେ ଆର୍ଟ ଲେକଚରସିପ୍ ମିଳିଗଲା ।

ଷ୍ଟାଫ୍‌ର ଚାରିପାଞ୍ଚଜଣ ଝିଅ ନାଜିମାବାଦ ଆଉ ପି.ଇ.ସି.ଏଚ୍.ଏସ୍ ତିନି ତିନି ଚାରି ଚାରି ଶହ ଗଜର ପ୍ଲଟ୍ କିଣି ନିଜ ନିଜର ଘର ତିଆରି କରିଥା'ନ୍ତି । ସେମାନେ ସୁରୈୟାକୁ 'କରାଚୀରେ ଭଡ଼ା ଘର ନେଇ ରହିଲେ ଦେବାଳିଆ ହେଇଯିବୁ, ଆଉ ତୁ ବି ଋଣ ନେଇ ଆପଣାର କରି ଘରଟିଏ ତିଆରି କରି ନେ' ବୋଲି ପରାମର୍ଶ ଦେଲେ । ସୁରୈୟା ଚାରିଶହ ଗଜ ଜାଗା ସୋସାଇଟିଠାରୁ ଇଷ୍ଟଲମେଣ୍ଟରେ କିଣିନେଲା । ଘର ତିଆରି ଋଣ ନେଇ ଛ' ମାସ ଭିତରେ କୋଡ଼ିଏ ହଜାର ଖର୍ଚ୍ଚକରି ସୁନ୍ଦର କଟେଜଟିଏ ତିଆରି କରିନେଲା । ବୁଟା ବେଗମ ସେ ଘରର ରନ୍ଧାଘରଟି ନିଜ ପସନ୍ଦମୁତାବକ ତିଆରି କରେଇଥିଲେ । କାରଣ ମା'ଝିଅ ଦୁହେଁ ପୂର୍ବ ପାକିସ୍ଥାନରୁ ଜଳପଥରେ ଆସିଥିଲେ ଆଉ ବୁଟା ବେଗମ ଢାକାର ରନ୍ଧାଘରର ଗୋଟି ଗୋଟି ଜିନିଷ— ଡେଗଚୀ, କଡ଼େଇ, ପିଠାପାତିଆ, ଚଟୁ, ଡଙ୍କି, ତାଓ୍ୱା, ଚିମୁଟା, ଶିଳଶିଳପୁଆ, ହେମଦସ୍ତା ଆଦି ଆଦି ଅଖାରେ ପୂରେଇ ନେଇ ଆସିଥିଲେ । ତେବେ ଫର୍ଣ୍ଣିଚର କିଣିବାକୁ ସୁରୈୟା ପାଖରେ ପଇସା ବଳି ନଥିଲା । ସେ ତା'ର ସବୁ ଛବି ଢାକାରୁ ଆଣିଥିଲା । ତେବେ ସେ ସେଠାରେ ତ ସେମିତି ଆର୍ଟିଷ୍ଟଟିଏ ନୁହଁ ଯେ ସେ ସବୁ ଚଟାପଟ ବିକ୍ରି ହୋଇଯିବ ! ଭାବିଲେ କରାଚୀରେ ସେ ଭଳି କିଣିବା ଲୋକ ବି ନଥିଲେ । ସେ ତା'ର ନଜିମାବାଦ ବାଲୀ ସାଙ୍ଗଠାରୁ ଧାର ନେଇ କେତୋଟି ସେକେଣ୍ଡହେଣ୍ଡ ଚଉକି, ମେଜ, ଦୁଇଟି ପଲଙ୍କ କିଣିଥିଲା । ବାଥରୁମ ପାଇଁ ଚଉକି, ଗୋଟାଏ ଷ୍ଟୁଲ, ବୁଟା ବେଗମଙ୍କ ପାଇଁ ନମାଜ ପିଢ଼ା ଆଉ ଅଲଗା କରି ପିଢ଼ାଟିଏ ତା'ର ସାଙ୍ଗ ତାକୁ କିଛି ଦିନ ପାଇଁ ଦେଇଥିଲା ।

ବୁଟାବେଗମ ଅତୀତରେ ମୋହମ୍ମଦଗଂଜରେ ରହୁଥିବାବେଳେ ପାଲିଙ୍କିରେ ବାହାରକୁ ବାହାରୁଥିଲେ । ସଲମାନ୍ କୋଠିରେ ବି ସେ ପରଦା କରି ରହୁଥିଲେ । ପୁରୁଣା କଟରା ଘରେ ସେ ସୁରୈୟାର ଗ୍ରିପାଞ୍ଚଜଣ ଯୁବକ ସାଙ୍ଗଙ୍କ ସାମନାକୁ ଆସିଲେ; ଯେହେତୁ ସେମାନେ ତାଙ୍କୁ ଆଦରରେ ମାଆ ମାଆ ଡାକୁଥିଲେ । ସେମାନେ ତାଙ୍କଠାରୁ ଖୋଳିତାଡ଼ି ଗାଆଁ ଆଉ ଗଡ଼ର କଥା ଶୁଣୁଥିଲେ । ଢାକାକୁ ଆସି ବୁଟାବେଗମ୍ କେବେ କେମିତି ଶାଢ଼ୀ ପିନ୍ଧିବା ଆରମ୍ଭ କଲେ । ତେବେ କରାଚୀ ତାଙ୍କ ପାଇଁ ଯୁଦ୍ଧଭୂମି ପାଲଟି ଯାଇଥିଲା । ସେଠି ପରଦା କରିବା ବେଶୀ ଦିନ ଚଳି ପାରିବ ନାଇଁ । ସେ ନିଜେ ନିଜର ଦେଖାରେଖାରେ କଟେଜ୍‌ଟି ତିଆରି କରେଇବା ଫଳରେ ଠିକାଦାର ମିସ୍ତ୍ରୀକୁଲୀଙ୍କ ସାମନାକୁ ଆସିବାକୁ ହେଲା । ତା'ପରେ ଘରକରଣାର ବ୍ୟବସ୍ଥା କରିବାକୁ ତାଙ୍କୁ ହିଁ ଏଣେତେଣେ ଧାଁଦଉଡ଼ କରିବାକୁ ହେଲା । ସେ ବୁର୍କା ଉତାରି ଦେଲେ । ବସ୍ ରିକ୍ସାରେ ବସି ଅନ୍ୟ ସବୁ କାମ ପାଇଁ ସାରା ସହରରେ ଘୂରିବା ଆରମ୍ଭ କରିଦେଲେ । ଫଳରେ ପଡ଼ୋଶୀ କୋଠିମାନଙ୍କରେ ୟୁ.ପି ର ମହିଳାମାନଙ୍କ ସାଙ୍ଗରେ ବି ଦେଖାହେଲା । ଏଇନେ ସେ ବେଗମ୍ ହୁସେନ୍ ବୋଲାନ୍ତି । ଶାଢ଼ୀ ପିନ୍ଧନ୍ତି, ବେଶ ଶାଳୀନତାରେ ଓଢଣା ପକେଇ ବ୍ରାଉନ୍ ଭେନିଟୀ ବେଗ ଓ ପ୍ଲାଷ୍ଟିକ ମୁଣି ଧରି ରିକ୍ସାରେ ବୋଗୀ ବଜାର ଯାଆନ୍ତି ।

ସୁରୈୟା ସାରାଦିନ ଆପଣା କାମରେ ବ୍ୟସ୍ତ ଥାଏ ଆଉ ସଲମାନଙ୍କୁ ଭୁଲିବାର ଚେଷ୍ଟା କରୁଥାଏ । ରାତିର ନିର୍ଜନତାରେ ତାକୁ ସଲମାନର ସ୍ମୃତି ଅତିଷ୍ଠ କରି ପକାଏ । ସେ କୋଉକଥାକୁ ବାଦ ଦେବ ? ବହିପତ୍ର, ପତ୍ର-ପତ୍ରିକା, ରାଜନୀତି ଦୁନିଆଁର ପ୍ରତ୍ୟେକ କଥା ସାଙ୍ଗରେ ତାର ଚିତ୍ରକଳା ସହିତ ସଲମାନର ସ୍ମୃତି ଅଧିକ ଜଡ଼ିତ ହୋଇ ରହିଥିଲା ।

ସେତେବେଳେ ତା'ର ପଇସାପତ୍ରର ବିଶେଷ ଅଭାବ ଥିଲା । ବେତନର ଅଧିକାଂଶ ଘର ଆଉ ଜମିର କିସ୍ତି ବାବତକୁ କଟି ଯାଉଥିଲା । ବୁଟା ବେଗମଙ୍କର ଶ୍ୱାସ ରୋଗ ପୁଣି ବାହାରିଥାଏ, ତାଙ୍କର ଚିକିତ୍ସା ଚାଲିଥାଏ । ତା'ପାଖରେ ସେଭଳି କିଛି ଲୁଗାପଟା ବି ନଥାଏ । ସେଇ ଢାକାରେ କିଣିଥିବା ଲୁଗାପଟାରେ ସେ ଚଳେଇ ନଉଥାଏ । ଚିତ୍ର ଆଙ୍କୁଥିଲା ବେଳେ ବି ତା'ର ସେଇ ଅର୍ଥ ଚିନ୍ତାଟି ରହିଥାଏ ।

ଦିନେ ସେ ଏକାକୀ ତା'ର ଏକାନ୍ତ କୋଠରିଟିରେ ଇଜେଲ ସାମନାରେ ଠିଆହୋଇ ତା'ର ନୂଆ ଛବିଟି ପୂରା କରୁଥାଏ, ବାହାରେ ଚକ୍ ଚକ୍ ଚେଭ୍ରୋଲେଟ୍ ଗାଡ଼ିଟିଏ ଆସି ଠିଆ ହେଲା ଆଉ ଚିପା ସ୍ଲେକ୍ସ ପିନ୍ଧିଥିବା ସ୍ମାର୍ଟ ଝିଅଟିଏ ଭିତରକୁ ଆସିଲା । ତା' ସାଙ୍ଗରେ ଦି'ଜଣ ଆମେରିକନ୍ ମହିଳା ଥିଲେ ।

'ମୁଁ ଆଲିୟା ସୈୟଦ' ଝିଅଟି ତା'ର ପରିଚୟ ଦେଲା । 'ଆପଣଙ୍କ ଠିକଣା ଆପଣଙ୍କ କଲେଜରୁ ବୁଝି ଆସିଛି । ମୋର ଏଇ ଆମେରିକାନ୍ ବାନ୍ଧବୀ ଦୁଇଜଣ କିଛି ପାକିସ୍ତାନୀ ପେଣ୍ଟିଙ୍ଗ କିଣିବେ ବୋଲି ଇଚ୍ଛା କରି ଆସିଛନ୍ତି ।''

ଆଗନ୍ତୁକମାନେ ଘ୍ୱରିପଟେ ଅନେଇ ଦେଖିଲେ କୋଉଠି ହେଲେ ବସିବାକୁ ଆସନଟିଏ ନପାଇ ଆଣ୍ଠୁମାଡ଼ି ବସି ଛବି ଦେଖିବାକୁ ଲାଗିଲେ । ଦୁଇଟିଯାକ ପୁରୁଣା ଚଉକି ଭିତର ବାରଣ୍ଡାକୁ ନେଇ ବୁଟା ବେଗମ ତା' ଉପରେ ସେଦିନର କଗ୍ୱଲୁଗା ଖେଳେଇ ଦେଇଥିଲେ । ଟୁଲଟି ବି ରନ୍ଧା ଘରେ ଥାଏ । ସୁରୈୟାର ବେଶ ଗ୍ଲାନିବୋଧ ହେଲା ସେତେବେଳେ । ଅନ୍ତତଃ ଛବି କିଣିବା ଦେଖିବାକୁ ଆସୁଥିବା ମଣିଷଙ୍କର ବସିବା ଲାଗି ହେଲେ ସୋଫା ସେଟ୍‌ଟିଏ ସେ ଘରକୁ ନିହାତି ଲୋଡ଼ା !

ସେହି ଆମେରିକାନ ଝିଅମାନେ ତିନିଶ ଲେଖାଏଁ ଦେଇ ଦୁଇଟି ସିଲହଟ ଛବି କିଣିଲେ । ସୁରୈୟା ଆଲିୟା ସୈୟଦୀ ଆଉ ସେମାନଙ୍କୁ ଧନ୍ୟବାଦ ଦେଲା । ଆଲିୟା ସୈୟଦ ସୁରୈୟାକୁ ତା'ର ଟେଲିଫୋନ ନମ୍ବର ଦେବାବେଳେ ସେ ତା ଭଳି ଏକ ପ୍ରସିଦ୍ଧ ଚିତ୍ରଶିଳ୍ପୀକୁ ଭେଟିବାକୁ ଅନେକ ଦିନରୁ ଆଗ୍ରହ କରୁଥିବା ପ୍ରକାଶ କଲା । ସୁରୈୟାକୁ ତା ଘରକୁ ନିମନ୍ତ୍ରଣ କଲା । ସେଇଦିନ ସହରକୁ ଯାଇ ସେ ଗୋଟାଏ ସୋଫାସେଟ୍, ଛୋଟ ଏକ ବୁକ ସେଲ୍‌ଫ ଆଉ ଟେବୁଲ ଲେମ୍ପଟିଏ ଆଣି ସଜେଇ ଦେଇ ଭାବିଲା— ଭଲ ଗାଲିଗ୍ୱଟିଏ ଆଉ ପର୍ଦ୍ଦା କେତୋଟି ହେଲେ ଏ ଘର ଚମକି ଉଠିବ ।

ତେବେ ସେ ଫର୍ଣ୍ଣିଚର ଲାଗି ଘର ଖର୍ଚ୍ଚରୁ ବି ପଗ୍ୱଶଟଙ୍କା ଲଗେଇ ଦେଇଥିଲା ଆଉ ପ୍ରତି ମାସ କିଛି କିଛି କରଜ ବଢ଼ି ବଢ଼ି ଗ୍ୱଲିଥିଲା ।

କିଛିଦିନ ପରେ ଜାଣିଲା ଯେ ବିଜ୍ଞାପନ ଏଜେନ୍ସିଗୁଡ଼ିକରେ ଆର୍ଟିଷ୍ଟମାନଙ୍କୁ ବେଶ ଭଲ ଦରମା ମିଳେ । ସେତେବେଳେ ଆଲିୟା ସୈୟଦକୁ ମନେପକେଇଲା । ବେଶ ପ୍ରଭାବଶାଳୀ ମନେହେଉଥିଲା ସେଦିନ । ସେ ସେଦିନ ତାର କଲେଜରୁ ଫୋନ କଲା ।

ଅନ୍ୟପଟେ ଆଲିୟାର ଭାଇ ଜମଶେଦ ଅଲୀ ସୈୟଦ ଫୋନ ଉଠେଇଲା ଆଉ ଯେତେବେଳେ ଜାଣିଲା ଯେ ପ୍ରସିଦ୍ଧ ଚିତ୍ରଶିଳ୍ପୀ ସୁରୈୟା ହୁସୈନ କଥା ହେଉଛନ୍ତି, ସେ ଖୁସିରେ କହିଲା— "ଆଶ୍ଚର୍ଯ୍ୟ କଥା, ଗଲାକାଲି ଅଲିୟା ଆପଣଙ୍କ କଥା ପକେଇଥିଲା । ମୋର କେତେଜଣ ଆମେରିକାନ୍ ବନ୍ଧୁ ବି ଛବି କିଣିବାକୁ ଆଗ୍ରହୀ । କୋଉଦିନ ମୋ ସାଙ୍ଗରେ ଲଞ୍ଚ ପାଇଁ ସମୟ ଦେବାକୁ ଆପଣ ପସନ୍ଦ କରିବେ କି ?"

ତା'ପରେ ରବିବାର ଦିନ ସୁରୈୟା ହୁସୈନ୍ ମୋଟର ରିକ୍ସାରେ 'କରାଚୀ ଜିମଖାନା'ରେ ପହଞ୍ଚିଲା । ଜମଶେଦ୍ ଟେନିସ-କୋଟ ପଟର ବଡ଼ ରୁମରେ ତା'ର ଅପେକ୍ଷା କରୁଥିଲା । କିଛି ସମୟ ପରେ ଟେନିସ ଖେଳି ଆଲିୟା ବି ପହଞ୍ଚିଗଲା ।

କଥାପ୍ରସଙ୍ଗରେ ଆଲିୟା ବେଶ ଅନୌପଗ୍ୱରିକ ଓ ବନ୍ଧୁତ୍ୱପୂର୍ଣ୍ଣ ଢଙ୍ଗରେ ପଗ୍ୱରିଦେଲା—

'ସୁରୈୟା, ତମେ 'ରେଡ୍' ନା ?'

'ରେଡ଼ ?' ସୁରୈୟା ଚମକି ପଡ଼ିଲା । ଘାବରେଇଲା ଭଳି କହିଲା— "ନା ତ... କାହିଁ କ'ଣ ହେଲା ?"

'ଆରେ କିଛି ନୁହଁ । ମୁଁ ସେମିତି ଶୁଣିଥିଲି ।' ବେଶ୍ ବେପରୁଆ ଭଙ୍ଗୀରେ ଉତ୍ତର ଦେଲା ଆଲିୟା ।

ଜମଶେଦ ଖିଲଖିଲ ହୋଇ ହସିଲା 'କଲେଜ ଜମାନାରେ ଥିବେ ହୁଏତ !' ତେବେ ସୁରୈୟାର ଅପ୍ରତିଭ ହେବା ଦେଖି ଗମ୍ଭୀର ହୋଇ କହିଲା— 'ମିସ୍ ହୁସେନ୍, ଆପଣଙ୍କ ପାଇଁ ଯେ କୌଣସି ଏଡ଼ଭର୍ଟାଇଜିଙ୍ଗ ଏଜେନ୍ସିରେ ଜାଗା ଖାଲି ହୋଇଯିବ । ସେଥିପାଇଁ ଆଦୌ ଚିନ୍ତା କରନ୍ତୁ ନାହିଁ । ଯଦି ଆପଣ ସେଇଆ ଭାବୁଛନ୍ତି, ତେବେ ସେମାନଙ୍କ ପାଖରେ ଆପଣ ଆପଣଙ୍କର ଧାରଣା ପ୍ରକଟିତ କରିବେ ନାହିଁ । ତା'ପରେ ମୋର ଅନେକ ଆମେରିକାନ୍ ଟୁରିଷ୍ଟ ବନ୍ଧୁ ଆମର ଶିଳ୍ପୀମାନଙ୍କର ଛବି କିଣୁଛନ୍ତି । ବେଶ୍ ଭଲ ଦାମ ବି ଦେଉଛନ୍ତି । ମୋର କହିବା କଥା ହେଲା— ଆମେ ଅନେକ କିଛି ସେମାନଙ୍କୁ ବିକିପାରିବା । ସେମାନଙ୍କର ଧାରଣା ନହେବା କଥା ଯେ... ଆପଣ...'

ସେ ନିଷ୍ପ୍ରାଣ ହସଟିଏ ହସିଦେଲା । ଆଲିୟାର କୋଉଠି କାମ ଥିଲା । ସେ ସେମାନଙ୍କୁ ଲଞ୍ଚ ପାଇଁ ସେଇଠି ଛାଡ଼ି ଚାଲିଗଲା ।

କିଛି ମାସ ଭିତରେ ସୁରୈୟାର ଅନେକ ଛବି ଆଲିୟା ଆଉ ଜମଶେଦ ଜରିଆରେ ବିକ୍ରି ହେଇଗଲା । ସେ ଡ୍ରଇଂରୁମ୍ ପାଇଁ ସୁନ୍ଦର ପର୍ଦ୍ଦା, ଯା' ଉପରେ ମହେଞ୍ଜୋଦାରର ଛବି ଥିଲା; ରଙ୍ଗିନ ଜୁଟ୍‌ର କଳାତ୍ମକ କାର୍ପେଟ କିଣିଲା । ଟେଲିଫୋନ ପାଇଁ ଆବେଦନ କଲା । ତା' ପର ମାସରେ ନିଜ ଅଫିସ ପାଇଁ ତା'ର ବଡ଼ ଛବିଟିଏ ନିଜେ ଜମଶେଦ ସାତଶହ ଟଙ୍କାରେ କିଣିନେଲା । ଆଉ ଗୋଟାଏ ଛବି ପୂରା ହଜାରେ ଟଙ୍କା ଦେଇ ତା'ର ଜଣେ ପର୍ଯ୍ୟଟକ ବନ୍ଧୁ କିଣିନେଲେ । ଏଥର ସୁରୈୟା ଛୋଟ ଫ୍ରିଜଟିଏ ବି କିଣି ଆଣିଲା । ଡାଇନିଂର ଆବଶ୍ୟକ ଫର୍ଣ୍ଣିଚର ଆଉ ଡ୍ରେସିଂ ଟେବୁଲଟିଏ ବି ସେଣ୍ଟ୍ରାଲ ଜେଲରେ ତିଆରି କରେଇଲା । ଘରେ ଟେଲିଫୋନ ଲାଗିଗଲା । ଏଣିକି ତା'ର କଟେଜ କଥା କହିବା ଆରମ୍ଭ କଲା । ବଡ଼ରୁ ବଡ଼ ଲୋକ ବି ତାକୁ ସାକ୍ଷାତ କରିବାକୁ ଆସିଲେ । ତା'ର ଆଉ ହୀନମନ୍ୟତାର ଅନୁଭୂତି ଆସିଲା ନାହିଁ ।

ତେବେ ତ'ର ଖର୍ଚ୍ଚ ବଢ଼ି ଚାଲିଥିଲା । ଟେଲିଫୋନ୍ ବିଲ, ବୁଟା ବେଗମଙ୍କର ଔଷଧ, ଦୋକାନର ଅନ୍ୟାନ୍ୟ ବିଲ, କେତେ କଥା । କଲେଜ ଯିବା ପାଇଁ ରୋଜ ଶାଢ଼ୀଟିଏ ଦରକାର । ଗୋଟାଏ ଶାଢ଼ୀ ତ ଆଉ ଲଗାତାର ଦି'ଦିନ ପିନ୍ଧି ଯାଇପାରିବ ନାହିଁ ! ତାର ଛାତ୍ରୀଗୁଡ଼ିକ ଏକୁ ଆରେକ ଫେଶନେବୁଲ । ତା'ର ମିତ୍ରମଣ୍ଡଳୀ ବି ବଢ଼ି ଚାଲିଥିଲା । ରୋଜ ସନ୍ଧ୍ୟାରେ କୋଉଠିକି ନା କୋଉଠିକି ଯିବାକୁ ହେଉଥିଲା ଆଉ ସେଠାକାର ଫେଶନେବୁଲ ବାତାବରଣ ଲାଗି ଭଲ ଶାଢ଼ୀଟିଏ ଦରକାର ହେଉଥିଲା । ଢାକାରେ ତ ଛଅ ସାତଖଣ୍ଡ ସୂତା ଶାଢ଼ୀରେ ବରଷଟିଏ ଚଳି ଯାଉଥିଲା । ସେ ବି ଭାବିଲେ ଏକ ପ୍ରତିପତ୍ତିଶୀଳତାକୁ ପହଞ୍ଚି ସାରିଥିଲା । ଏଇନେ ଆଉ ସାଧାରଣ ପୋଷାକରେ ବାହାରିବା

ତା ପକ୍ଷରେ ସମ୍ଭବ ନୁହେଁ । ତା'ର ଜୀବନ ସ୍ତର ଦିନୁଦିନ ଉନ୍ନତତର ଓ ଦାମୀ ହେଲା । ମାତ୍ର ସୌଭାଗ୍ୟକ୍ରମେ ଗୋଟାଏ ଏଡ଼ଭର୍ଟାଇଜିଙ୍ଗ୍ ଫାର୍ମରେ ତାକୁ ମାସିକ ନଅଶହ ଟଙ୍କାର ଚାକିରି ମିଳିଗଲା । ସେ ଫାର୍ମ ଉପରେ ଜମଶେଦର ବ୍ୟବସାୟର ସବୁ ଦାୟିତ୍ୱ ଥିଲା । ଏହି ଭଲ ଦରମା ଲାଗି ସୁରୈୟାର ଅଧିକାଂଶ ଆର୍ଥିକ ସମସ୍ୟା ସମାଧାନ ହୋଇଗଲା ।

ଏଇ ଫାର୍ମରେ ହୁଏତ ସେ ଗୋଟାଏ ବର୍ଷ କାମ କରିଥିବ; ସେତେବେଳେ ତାକୁ ଭାରି ଭଲ ସ୍କଲରସିପ୍ ମିଳିଲା । ସେ ବୁଢା ବେଗମଙ୍କୁ ତାର ସାଙ୍ଗ ପାଖକୁ ନାଜିମାବାଦ ପଠେଇ ନିଜ କଟେଜକୁ ମାସିକ ଚାରିଶହ ଟଙ୍କାରେ ଭଡ଼ା ଲଗେଇ ଦୁଇବର୍ଷ ପାଇଁ ପେରିସ୍ ଚାଲିଗଲା । ସନ ୧୯୬୧ରେ ସେ କରାଚୀ ଫେରିଲା । ଫେରିବା ବାଟରେ ଜର୍ମାନୀରୁ ଫୋକ୍ସ ୱାଗନ ଗାଡ଼ିଟିଏ ବି କିଣିଲା ।

କୁନୀର ନିଯୁକ୍ତିକୁ ମାସେ ହୋଇଥିବ 'ବସ୍' ଲଗଜୁରୀ ବୀଚରେ ବହୁତ ବଡ଼ ପାର୍ଟିଟିଏ ଦେଲେ । ସ୍ପେଶିୟଲ ସେକ୍ରେଟେରୀଙ୍କୁ ଡେକ୍ସା ଫୋନରେ ଜଣେଇ ଦେଲେ ଯେ, ସେ ସନ୍ଧ୍ୟା ସାତଟା ପୂର୍ବରୁ ପ୍ରସ୍ତୁତ ଥିଲେ ସେ ନିଜେ ଆସି ପିକ୍ଅପ୍ କରିନେବେ ।

କୁନୀ ତା'ର, ବେତନ ପାଇବା ପରେ ଏଲଫିନ୍ସ୍ଟନ୍ ଷ୍ଟ୍ରୀଟ୍‌ରୁ ଗୋଟାଏ 'ଇଣ୍ଡିୟନ ଶାଢ଼ୀ' ଅସଲର ଦୁଇଗୁଣ ଦାମ ଦେଇ କିଣି ନେଇଥିଲା । ଅଫିସରେ ବସିଥିଲାବେଳେ ମିସ ଡିସୁଜା ବାଧ୍ୟ କଲାଭଳି ଅନ୍ତତଃ ସନ୍ଧ୍ୟାରେ ମେକଅପ୍ ଜରୁରୀ ବୋଲି କହିଲେ । ନହେଲେ ଚେହେରା କେମିତି ଫିକା ଫିକା ଆଉ ଜୀବନ ହୀନ ମନେହେବ । ସେଇଥିଲାଗି ସେ ଗୋଟାଏ ହାଲୁକା ରଙ୍ଗର ଲିପ୍‌ଷ୍ଟିକ୍ ମଧ୍ୟ କିଣି ନେଇଥିଲା ।

ଅନ୍ଧାର ହୋଇ ସାରିଥାଏ, ସେ ଝରକା ପାଖରେ ବସି ମେକଅପ୍ କରୁଥାଏ । ସେ ପ୍ରାୟ ସବୁବେଳେ, ଘରକୁ ଆମନା ସାମନା ହୁଏ ବୋଲି ଝରକା ବନ୍ଦ ରଖେ । ସେତେବେଳେ ସେ ଫାଳେ ଖୋଲି ନେଇଥିଲା । ଦର୍ପଣକୁ ଝରକାର ଧୂଳିମୟ ରେଲିଙ୍ଗରେ ଝୁଲେଇ ଦେଇଥିଲା । ଆଉ ପଲଙ୍କ ଦାଢ଼ରେ ବସି ନେଲପଲିଶ୍ ଲଗଉଥିଲା ।

ମୁହଁ ଉପରେ ଫାଉଣ୍ଡେସନ୍ କ୍ରିମ ଲଗେଇଲାବେଳେ ତାକୁ ମନେହେଲା ଯେମିତି ହାତ ପାଦ ଥଣ୍ଡା ପଡ଼ିଯାଉଛି । ଅକସ୍ମାତ୍ ତାକୁ ଲାଗିଲା ଯେମିତି ସେ ଆଜି ପହିଲା କରି ଡ୍ୟୁଟିକୁ ଯିବ, ଯୋଉଥିପାଇଁ ତାକୁ ନିଯୁକ୍ତି ମିଳିଛି । ତାକୁ 'ବସ୍'ର ବନ୍ଧୁମାନଙ୍କୁ 'ଏଣ୍ଟରଟେନ୍' କରିବାକୁ ହେବ । ସେ ସେଇ ପାର୍ଟିର ହୋଷ୍ଟେସ୍ ଆଉ କେହି କେହି ନିଶ୍ଚିତ ଭାବରେ 'ବସ୍'ର 'ମିଷ୍ଟ୍ରେସ' ବୋଲି ମନେ କରିବେ ବି । 'ହେ ଈଶ୍ୱର... ! ହେ ଈଶ୍ୱର ମୁଁ ମରିଯାଉନି କାହିଁକି ?...' ସେ ଆପଣାକୁ ଶକ୍ତିହୀନ ମନେକଲା ଆଉ କାନ୍ଥକୁ ଆଉଜି ପଡ଼ିଲା ।.... 'ୟା ଅଲ୍ଲାହ, ମୋତେ ମରଣ ଆସୁନି କାହିଁକି ?'

ବାହାରେ ଆସି ଲାଲ ରଙ୍ଗର କ୍ରାଇସଲର ଗାଡ଼ିଟିଏ ଠିଆହେଲା । ଆଉ ବେଶ ଜୋର୍‌ରେ ହର୍ଣ୍ଣ ବାଜିଲା । ସେ ଚଞ୍ଚଳ ଝରକା ବନ୍ଦ କଲା, ଲିପଷ୍ଟିକ ଲଗେଇ ନେଲା ।

ବେଗ୍ ଉଠେଇ ପାଖ କୋଠରିକୁ ଗଲା । 'ମମି, ମୁଁ ପାର୍ଟିକୁ ଯାଉଛି । ଫେରୁ ଫେରୁ ରାତି ଦଶଟା-ଏଗାରଟା ହେବ ।'

'ହଉ'

ବାରଣ୍ଡାକୁ ଲାଗି ଗାଡ଼ିଟି ଠିଆହୋଇଥିଲା । ଜମଶେଦ ଷ୍ଟିୟରିଂ ହ୍ୱିଲରେ ହାତରଖି ଇଲାହୀବଖ୍ଶ କଲୋନୀର ଉଦାସ ବାତାବରଣକୁ ଦେଖୁଥାଏ । ସେଇ ବାତାବରଣକୁ ମଧ୍ୟମ ଅନ୍ଧକାର କିଛି ଅଧିକ କରୁଣ କରିଦେଇଥିଲା । ଦୁନିଆଁରେ ଅଧିକାଂଶ ମଣିଷ କେଉଁଭଳି ରଙ୍ଗହୀନ ଜୀବନ ଅତିବାହିତ କରୁଛନ୍ତି, ସେଇଆ ଭାବୁଥିଲା ସେ । ସେତେବେଳେ ମିସ୍ ମିର୍ଜା ବାହାରି ଆସିଲେ। ସେ ଦରଜା ଖୋଲିଦେଲା ଆଉ ସେ ଆସି ତା'ରି ପାଖରେ ବସିଗଲା ।

କ୍ରାଇସଲରର ଗଳିର ଧୂଳି କାଦୁଅ ଖାଲ ଢିପ ଉପର ଦେଇ ଠାଣିରେ ମୁଖ୍ୟ ରାସ୍ତାକୁ ଆସିଗଲା । ଜମଶେଦ ମୁହଁ ବୁଲେଇ ତା'ର ଆକର୍ଷଣୀୟ ସେକ୍ରେଟେରୀକୁ ଦେଖି ମୁରୁକି ହସି ଔପଚାରିକତାରେ ପଚାରିଲା— 'ସୋ ହାଓ ଆରୟୁ ଦିସ ଇଭିନିଂ ମିସ୍ ମିର୍ଜା !'

'ଫାଇନ୍... ଥେଁକ୍ୟୁ !'

କାର ସେତେବେଳେ ଛକର ଗହଳି ଭିତର ଦେଇ ଆଗେଇଯାଉଥାଏ । ଘର୍ ଘର୍ କରୁଥିବା ବସ୍, ଧୂଆଁ ଛାଡ଼ି ଗୋଟାଏ ପରେ ଗୋଟାଏ ଆଗେଇ ପାଖ ପଡ଼ିଆରେ ଠିଆ ହେଉଥାଆନ୍ତି । ଲୋକ ଗହଳି ଅଫିସମାନଙ୍କରୁ ଫେରୁଥାଏ । ଗ୍ୱ'ବାଲାଙ୍କର ଦୋକାନ ସବୁ ଉଜ୍ଜ୍ୱଳ ଆଲୁଅରେ ଚମକୁଥାଏ । ଛୋଟ ଛୋଟ ଘରମାନଙ୍କର ବାରଣ୍ଡାମାନଙ୍କରେ ଜାଫ୍ରି ଲାଗିଥାଏ ଆଉ ଛୋଟ ଛୋଟ ନେମ୍‌ପ୍ଲେଟ ସବୁ ଟଙ୍ଗା ହୋଇଥାଏ । ଏସବୁ ନାଆଁଗୁଡ଼ିକ ପଛରେ ବି କେତେ କେତେ କାହାଣୀ ଲୁଚି ରହିଥିବ । କାନ୍ଥଗୁଡ଼ିକରେ ବେଶ ଆକର୍ଷକ ଭାବେ ହୋମିଓପେଥି ଡାକ୍ତରଙ୍କର ପାଣି, କରେଣ୍ଟ ଆଉ ବାମ୍ଫର ଅସଲି ଜର୍ମାନୀ ଚିକିତ୍ସା, ତା'ଛଡ଼ା ପ୍ରାଇଭେଟ କଲେଜମାନଙ୍କର ଇସ୍ତାହାର ଲେଖା ହୋଇଥାଏ ।

ଜମଶେଦ୍ ଦୀର୍ଘଶ୍ୱାସ ନେଲା । କିଛି ବେଳ ପରେ ପାଖରେ ବସିଥିବା ଝିଅକୁ ଦେଖିଲା । ସେ ତା'ର ଷ୍ଟାଫ୍‌ର ସୁଖ-ଦୁଃଖରେ ବ୍ୟକ୍ତିଗତ ରୁଚି ନିଏ । ଆଉ ବେଶ ଉଦାରତା ପ୍ରଦର୍ଶନ କରେ ।

'ଆପଣଙ୍କୁ ଅଫିସ କାମ କେମିତି ଲାଗୁଛି ମିସ୍ ମିର୍ଜା !'

'ଇଟସ୍ ଅଲ ରାଇଟ୍ !' ସେ ଉତ୍ତର ଦେଲା ।

ସେତେବେଳେ କ୍ରାଇସଲରର ସେଣ୍ଟ୍ରାଲ ଜେଲର କାନ୍ଥ କଡ଼ ରାସ୍ତାଦେଇ ଯାଉଥିଲା। ଅକସ୍ମାତ୍ ଜମଶେଦ ଦେଖିଲା, ଯେମିତି କି ତା'ର ସେକ୍ରେଟେରୀର ମୁହଁ ମଉଳିଯାଇଛି । ଆଉ ସେ ତାର ନୀଳ ନୀଳ ଆଖି ବୁଜିନେଇ ସତରେ ଯେମିତି ଲୁହ ଅଟକେଇ ନବାର ଚେଷ୍ଟା କରୁଛି ।

"ମିସ୍ ମିର୍ଜା... ମିସ୍ ମିର୍ଜା, କ'ଣ ହୋଇଛି ଆପଣଙ୍କର !" ବ୍ୟସ୍ତ ହେଇ ପଚାରିଲା ଜମଶେଦ ।

'କିଛି ନାହିଁ !' କୁନୀ ମୁହଁ ଲୁଚେଇ ନେଲା ।

'ଆରେ, କୁହନ୍ତୁ ନା' କଣ ହେଲା ?'

'ନା, କିଛି ହେଇନି !'

'ଆପଣ ଆଜି ପାର୍ଟିରେ ବି ଚୁପ୍ ହେଲେ, ହେଲା ମୋ ବେପାର !' କିଛି ସମୟ ପରେ ତାକୁ ଖୁସି କରିବା ଅଭିପ୍ରାୟରେ ଜମଶେଦ ଏକଥା କହିଲାରୁ ଖିଲଖିଲ ହସି ଦେଲା କୁନୀ । ଜମଶେଦ ସିଗାରେଟ ଜଳେଇଲା ।

'ଆପଣ ସ୍ମୋକ କରନ୍ତି ?'

'ନା !'

ସେ ଝିଅର ବିବଶ - ଶାଳୀନତା ହେତୁ ଜମଶେଦ ଏତେ ପ୍ରଭାବିତ ହେଲା ଯେ ସେ ଆଉ ଅଧିକ ବ୍ୟକ୍ତିଗତ ପ୍ରଶ୍ନ କରିବାକୁ ସାହସ କଲା ନାହିଁ । ତାପରେ ସେ ଏଣୁତେଣୁ ଅସଂଲଗ୍ନ ପ୍ରସଙ୍ଗରେ କଥା ଆରମ୍ଭ କରିଦେଲା ।

ପାର୍ଟି ସରିବା ପରେ ଜମଶେଦ ତା'ର ସେକ୍ରେଟେରୀ ପାଖକୁ ଆସି ସନ୍ତୋଷ ଓ ଉତ୍ସାହରେ ତାର କଅଁଳ ହାତ ଆପଣା ମୁଠାରେ ମୁଠେଇ ନେଲା ।

'ମିସ ମିର୍ଜା, ଆପଣ ଫ୍ରେଞ୍ଚ ବି ଜାଣନ୍ତି । ସବୁ ଲୁଚେଇ ରଖିଛନ୍ତି ନା ? ଆପଣ ଏତେ ଚମତ୍କାର ଢଙ୍ଗରେ ଆପଣଙ୍କର ଦାୟିତ୍ୱ ତୁଲେଇଲେ; କହନ୍ତୁ ନାହିଁ । ସେମାନେ କହୁଥିଲେ— ଯଦି ଏ ଦେଶରେ ଏତେ ଗ୍ରମିଂ ଆଉ ପରଫେକ୍ଟ ସେକ୍ରେଟେରୀ ଅଛନ୍ତି, ଆମେ ଆମର ସାରା ବ୍ୟବସାୟ ଏଠିକି ଟ୍ରାନ୍ସଫର କରି ନେବାକୁ ପ୍ରସ୍ତୁତ ।

'ଗ୍ଲିଜ୍, ମୋତେ ଘରେ ଛାଡ଼ିଦେବେ !'

'ନିଶ୍ଚୟ, ତେବେ ମିସ୍ ମିର୍ଜା ଆପଣ ସାଧାରଣତଃ ଏତେ ରିଜର୍ଭଡ୍ ରହନ୍ତି, ଆଉ ଆଜି ସଂଧ୍ୟାରେ ଆପଣ ଏତେ ଡିପ୍ରେସଡ ମନେ ହେଉଥିଲେ ଯେ ଆପଣ ଆଜି ପାର୍ଟି ଏନଜୟ କରିଛନ୍ତି ଜାଣିବା ପରେ ମୋତେ ବିଶେଷ ଖୁସି ଲାଗିଲା । ଆଜି ମୁଁ ପହିଲା କରି ଆପଣଙ୍କୁ ହସିବା ଦେଖିଛି । ଆପଣ ଶେରୀ ଚାଖିବା ଲାଗି ଏତେ ନାହିଁ ନାହିଁ ହେଲେ; ଶିକ୍ଷିତା ହୋଇ ବି ଓଲ୍ଡ ଫେଶନ୍ଡ । ଆନନ୍ଦ କର ଆଉ ମନଭରି ଜୀବନକୁ ଉପଭୋଗ କର । ଆମେମାନେ ଏ ଦୁନିଆରେ ବାରଂବାର ଜନ୍ମ ହେବା ନାହିଁ । ହସନ୍ତୁ ... ହସନ୍ତୁ ମ... ଡେମ ଇଟ୍.... ମୁଁ ଆପଣଙ୍କୁ ବେଶ୍ ଆପଣ ଆପଣ କଲିଣି । ତମେ ମୋର ସେକ୍ରେଟେରୀ, ମୁଁ ଏଣିକି କେବଳ ସଲମା କହିବି । ଏଣିକି ସେ ସ୍କୁଲ ମିଷ୍ଟ୍ରେସ ଢଙ୍ଗ ଛାଡ଼ । ଯଦି ଏ ଓଲ୍ଡ ମେଡ୍ ମେଣ୍ଟାଲିଟିକୁ ଆଦରି ନବ, ତାହେଲେ ସାରାଜୀବନ ସେଇ ଓଲ୍ଡମେଡ୍ ହୋଇ ରଖିଥିବ । ଆଉ ସେଇଆ ସବୁଠାରୁ ବଡ଼ ଟ୍ରାଜେଡ଼ି ହେବ । ଯୌବନର ଖୁସିର ସବୁ ଅଧିକାର ତମରି ଉପରେ ରହିଛି ।'

ଜମଶେଦର ଆଖିରେ କଅଁଳ ଲାଳିମା ଛାଇ ରହିଥିଲା ।

ରାତିରେ ଘରକୁ ଫେରି ଜମଶେଦ ଅଲୀ ମଦିରାର ଧୀମା ମାଦକତାର ଢେଉରେ ପହଁରି ପହଁରି ଭାବୁଥାଏ-- ଏ ଝିଅଟିର କୁଳ ସଂସ୍କାରର ପରିଚୟ ମିଳିନାଇଁ, ତେବେ ବେଶ ସୁନ୍ଦର, ଲୋଭନୀୟ । ଇଂରାଜୀ ଏମିତି କହୁଛି, ଯେମିତି ବିଲାତୀ ଝିଅ । ହୁଏତ ତା'ର ମା' ଇଂରେଜ ହୋଇଥିବ । ବେଶ୍ ସୁନ୍ଦର ପତ୍ନୀ ହେବ । ଶାନ୍ତ, ପରିଶ୍ରମୀ । ତା ଛଡ଼ା ସୁନ୍ଦର ମନ, ଭଲ ସ୍ୱଭାବ; କିନ୍ତୁ ରହୁଛି କଲୋନୀରେ । ଷ୍ଟେଟସ୍‌ର ପ୍ରୋବ୍ଲେମ ରହିଛି । ସେ ବରଯାତ୍ରୀ ନେଇ ଗୋଟାଏ କଲୋନୀ ଭିତରକୁ ଯିବ କେମିତି ?

ଡ୍ରେସ ବଦଳେଇ ବିଛଣାକୁ ଗଲାବେଳେ ଯେତେବେଳେ ନିଶା କିଛିଟା ଉତୁରି ଗଲା, ସେ ଭାବିଲା— 'ଲା ହୌଲ ବିଲା କୁବ୍‌ବତ... ମୁଁ ବି କେମିତି ପାଗଳଙ୍କ ଭଳି ଭାବୁଛି । କି ବାହା, କା'ର ବାହା ? ମୁଁ ତ ଏ ଝିଅକୁ ଗ୍ରୁମ୍ କରିବା କଥା, ବଢ଼ିଆ କଣ୍ଟାକ୍ଟ ଓମେନ୍ ହେବ । ଏକରୁ ଏକ ଖେଳୁଆଡ଼ ବେପାରୀ ତା'ର ପ୍ରଭାବରେ ଗୁମର କଥା ଖୋଲି ପକେଇବ, ତା'ର ସରଳ ସୁନ୍ଦର ଚେହେରା ଲାଗି । ଲକ୍ଷ ଟଙ୍କାର ବେପାର ସଉଦା ନିମିଷକରେ ଛିଡ଼ିଯିବ ।'

ସେ ପଲଙ୍କ ଉପରେ ଶୋଇ ରହି ଟେବୁଲ ଲେମ୍ପ ଲିଭେଇ ଦେଲା । ସିଗାରେଟ ଜଳେଇଲା । 'ହ୍ୱାଟ ଏ ଲକୀ ଡଗ ଆଇ ଏମ୍ ... ହ୍ୱାଟ ଏ ଲକୀ ଡଗ୍ ।' ମନେମନେ କହିଲା ସେ ।

ପାଖ କୋଠରିରେ ସୈୟଦ ଅଖତର ଅଲୀ, ତାଙ୍କୁ ଭେଟିବାକୁ ଆସିଥିବା କେତେ ଜଣକ ସାଙ୍ଗରେ କ୍ଲେମ ସଂବନ୍ଧରେ ବିଗ୍ୱରବିମର୍ଷ କରୁଥିଲେ ।

'ଓକିଲ ସାହେବ, ଆପଣ କେତେର କ୍ଲେମ କରିଛନ୍ତି ?'

'କେବଳ ତିନିଲକ୍ଷ ।' ସୈୟଦ ଅଖତର ଅଲୀଙ୍କର କଥା ଶୁଣାଗଲା ।

'ତେବେ ଜମିବାଡ଼ି ତ ନିଶ୍ଚୟ ଥିବ ?'

'ହଁ, ତେବେ ଏବେବି ଭାଇ ଭାରତରେ ଅଛନ୍ତି ।' ସୈୟଦ ଅଖତର ଅଲୀ ଉତ୍ତର ଦେଲେ । 'ଏ ପର୍ଯ୍ୟନ୍ତ ସେ ସେଇଠି ଛନ୍ଦି ହୋଇ ରହିଛନ୍ତି । ମୁଁ ଅନେକଥର ଲେଖିଲିଣି ଗ୍ଚଲିଆସନ୍ତୁ, ହେଲେ ସେ ମାନିଲେ ସିନା ! ମୁଁ କେବଳ ମୋର କାନ୍‌ପୁର କୋଠା ପାଇଁ କ୍ଲେମ ଦେଇଛି । ମଂଜୁର ହେଲେ ଭାବୁଛି ଗ୍ଚଳିଶ ପରସେଣ୍ଟ ପର୍ଯ୍ୟନ୍ତ ମିଳିବ । ଯାହା ବି ମିଳୁ ନେଇନବା କଥା । ତା'ଛଡ଼ା ଅନ୍ୟ ବାଟ ନାହିଁ । ଏଠି ତ ଗ୍ଚରିପଟେ ଲୁଟ୍ ଗ୍ଚଲିଛି । ସେଟଲମେଣ୍ଟ ମହକୁମାରେ ଭିତରେ ମୋଟେ ନ୍ୟାୟ ନାଇଁ । ଏ ଦେଶଟା ତ ପୂରାପୂରି ଅନ୍ଧାରୀ ମୂଲକ ।'

'ଆପଣ ନିହାତି ଠିକ୍ କହିଛନ୍ତି ଓକିଲ ସାହେବ !'

ଜମଶେଦ୍‌ର ଶୋଷ ହେଲା । ଆଲୁଅ ଜଳେଇଲା । ଉଠି ଆଲମାରୀରୁ ହ୍ୱିସ୍କି ଓ ସୋଡ଼ା ବାହାର କରି ଗିଲାସ ଭରିନେଇ ଚଉକିରେ ବସିଲା ।

ତା'ର ବାପାଙ୍କର କଥା ତାକୁ ଶୁଣାଯାଉଥାଏ । ସେ ସେତେବେଳେ କହୁଥାନ୍ତି— 'ଆରେ, ଦେଖୁନାହାନ୍ତି ଜମଶେଦ ମିଆଁ, ସୋସାଇଟିରୁ ଦି'ହଜାର ଗଜ ଜାଗା ନେଇ ପକେଇ ରଖିଥିଲେ । ତା' ଉପରେ କୋଠା ତିଆରି ଆରମ୍ଭ କରେଇଲି । ହେଲେ ସବୁ ଲୁହା ଆଉ ସିମେଣ୍ଟ ବ୍ଲେକରେ ଗ୍ରାଲିଗଲା । ଏ ଯାଏଁ ସାଢ଼େ ତିନିଲକ୍ଷ ଖର୍ଚ୍ଚ ହୋଇସାରିଛି ଆଉ କାମ ପୂରା ହେଇନି ।'

ଜମଶେଦ ଗିଲାସ ଖାଲି କଲା ଆଉ ଆଖି ବୁଜି ଶୋଇଗଲା । ଅଗ୍ରନକ ଏକ ରହସ୍ୟୋଦ୍‌ଘଟନା ହୋଇ ତାର ମୁଣ୍ଡରେ ଖେଳିଗଲା— ସେ ତା'ର ଈଶ୍ୱରବିଶ୍ୱାସୀ, ଫକୀର ଭଳି ମନର, ଶାନ୍ତିପ୍ରିୟ ବାପକୁ, ଯିଏ ଏକଦା ସୈୟଦ ମଜହର ଅଲୀ, ଗୋସାଇଁ କାକା, ମୌଲବୀ ମୋହମ୍ମଦ ହୁସୈନ୍‌ଙ୍କଠାରୁ ସାଧାରଣ, ନିରୀହ ସ୍ତରର ଛୋଟ ମଣିଷଟିଏ ଥିଲା, ସେଇ ସରଳ ବୁଢ଼ାକୁ ମିଛୁଆ, ବେଇମାନ, ଶଠ, ଜାଲିଆତି ନିଜେ କରିଦେଇଛି । ଓ ହ୍ୱାଟ, ଏ ଡଗ ଆଇ ଏମ୍ .. ହ୍ୱାଟ୍ ଏ ଡଗ୍ .. ହ୍ୱାଟ ଏ ଡଗ୍ .. ।' ସେ ଜୋର ଜୋର ତକିଆରେ ମୁଥ ମାରିଲା ଆଉ କମ୍ବଳରେ ମୁହଁ ଲୁଚେଇ ଶୋଇଗଲା ।

ମଂସୂର ଅହମ୍ମଦ ପେରିସ୍‌ରେ ସୁରୈୟାକୁ ଭେଟିଥିଲା । ସେ ବେଶ୍ ଉତ୍ସାହୀ, ପରିଶ୍ରମୀ ଆଉ ପ୍ରତିଭାଶାଳୀ ସାମ୍ବାଦିକ । କେତେ ବର୍ଷ ଲାଗି ଆମେରିକାରେ ପବ୍ଲିକ ରିଲେସନ୍ସର ଟ୍ରେନିଂ ନେବା ପରେ ଏଇ ନିକଟରେ କରାଚ଼ୀ ଫେରି ଆସିଥିଲା, ଆଉ ଏଇନେ ଗୋଟାଏ ଇଂରେଜୀ ଦୈନିକ ଖବରକାଗଜ ପାଇଁ କାମ କରୁଥିଲା । ସହରର ସଫଳ ଓ ପ୍ରଭାବଶାଳୀ ସାମ୍ବାଦିକ ଭିତରେ ସିଏ ବି ଗଣା ଯାଉଥିଲା ।

ସେତେବେଳେ ସେ ପ୍ରେସ କ୍ଲବରେ ବସି ସୁରୈୟାର ଆଗାମୀ ପ୍ରଦର୍ଶନୀର ଗୋଟାଏ ରାଇଟ୍ ଅପ୍ ଲେଖୁଥିଲା । ସୁରୈୟା ପ୍ରେସ କ୍ଲବକୁ ତାର ବଡ଼ ପେଣ୍ଟିଂଟିଏ ଉପହାର ଦେଇଥିଲା । ସୁରୈୟା ଆପଣା ହାତରେ ଇଚ୍ଛାନୁସାରେ ଟାଙ୍ଗି ଦେବାକୁ ଆସିବା ଲାଗି ଅନୁରୋଧ କରି ଫୋନ୍ କରିଥିଲା । ଲଂଚ ବ୍ୟବସ୍ଥା ମଧ୍ୟ ସେଇଠି ହୋଇଥାଏ । ତିନି ଗ୍ୱରି ଜଣ ସାଥୀ ସାଂବାଦିକ ଗୋଟାଏ କୋଣକୁ ବେଶ ଗଂଭୀର ମୁଦ୍ରାରେ ଚେସ ଖେଳରେ ମାତିଥାନ୍ତି । ରବିବାର ଦି' ପହର । ମଂସୂର ଲେଖା ଆରମ୍ଭ କରିବାକୁ ଟାଇପ ରାଇଟରରେ କାଗଜ ଲଗେଇଲା । ହଠାତ୍ ମନେପକେଇଲା, ତାକୁ ତାର ଖବରକାଗଜ ପାଇଁ ଭାରତର ଗୋଟାଏ ପ୍ରସଙ୍ଗ ଉପରେ ଏକ ବିଶେଷ ଲେଖା ଲେଖି ଯଥାସଂଭବ ଶୀଘ୍ର କପି ଫାଇଲ କରିବାକୁ ହେବ । ସେ ଖବରକାଗଜ ଖେଳେଇ ହୋଇ ରହିଥିବା ଲମ୍ବ ମେଜ ପାଖକୁ ସାଙ୍ଗେ ସାଙ୍ଗେ ଉଠିଆସିଲା । ସେ ଭାରତବର୍ଷର କେତୋଟି ଇଂଲିଶ ଓ ଉର୍ଦ୍ଦୁ ଖବର କାଗଜ ପଢ଼ିବା ଆରମ୍ଭ କଲା । ଉତ୍ତର ଭାରତର ରାଜନୈତିକ ସ୍ଥିତିର ସୂଚନା ପାଇଁ ସେ ଉତ୍ତର ପ୍ରଦେଶରୁ ପ୍ରକାଶିତ ହେଉଥିବା ଏକ ସାଧାରଣ ଉର୍ଦ୍ଦୁ ଖବର କାଗଜ ଉଠେଇ ନେଲା । ସେଥିରେ ବିଶେଷତଃ ଦେଶର ବିଭିନ୍ନ ଅଂଚଳରେ ପାଳିତ 'ଉର୍ସ' ଆଉ ପ୍ରଦେଶର

ଇସ୍ଲାମୀ ଆରବୀ ବିଦ୍ୟାଳୟଗୁଡ଼ିକର କାର୍ଯ୍ୟକ୍ରମମାନଙ୍କର ଆୟୋଜନ ସଂବନ୍ଧୀ ଖବର ଛାପା ହୋଇଥିଲା । ଜିଲ୍ଲା ସମାଚାର ସ୍ତମ୍ଭରେ ଗୋଟାଏ ଶିରୋନାମା ଥିଲା— 'ପରଲୋକରେ ଶାହ ମୁନବ୍ବର ଅଲୀ' ।

ଗ୍ରାମ— ମୋହମ୍ମଦ ଗଂଜ, ଜିଲ୍ଲା— ମଲିକପୁରର ଦରଗାହ ଶରୀଫର ପୀଠାଧୀଶ, ମହାନ୍ ପ୍ରତିଷ୍ଠାତା ଫକୀର, ଆରାଧକ ଶାହ ମୁନବ୍ବର ଅଲୀ; ଈଶ୍ୱର ତାଙ୍କର କବର ଆଲୋକିତ କରି ରଖିଥାନ୍ତୁ । ଭାରତର ପବିତ୍ର ଭୂମିରେ ସେ ସମାଧି ରହିଛି (ମଂସୁର ଅହମଦ ମନେ ମନେ କହିଲା— 'ପାକ ସରଜମୀନ' ତ କେବଳମାତ୍ର ପାକିସ୍ଥାନରେ ଅଛି) ସେ ଅତ୍ୟନ୍ତ ଈଶ୍ୱରବିଶ୍ୱାସୀ ଓ ଉଚ୍ଚକୋଟୀର ଅଧ୍ୟାତ୍ମିକ ବ୍ୟକ୍ତିମାନଙ୍କ ମଧ୍ୟରେ ଜଣେ ଥିଲେ... ।

ମଂସୂର ବିରକ୍ତିରେ ଆଗକୁ ଆଖି ପକେଇଲା । ସେଇ ସ୍ତମ୍ଭରେ ଆଉ ଗୋଟାଏ ବିରକ୍ତିକର ଖବର ଥିଲା— ବିଧାନ ସଭାରେ ସ୍ୱତନ୍ତ୍ର ପାର୍ଟିର ସଦସ୍ୟ ଜନାବ ନୌରୋଜ ହୁସେନ ଖାନ୍ ଅଫ୍ ପାର୍ବତୀପୁର (ଜିଲ୍ଲା ସୁଲତାନ ପୁର) ଗତକାଲି...

ମଂସୂର ଅହମଦ ଆଗକୁ ବଢ଼ିଗଲା, ଯୋଉଠି ମନ୍ତ୍ରୀମାନଙ୍କ ଉପରେ ସମାଲୋଚନା, ବ୍ଲେକ ମାର୍କେଟ, ଲାଞ୍ଚ, ଜାତିଆଣ ବିଚାର, ପ୍ରାଦେଶିକତା ଓ ସାଂପ୍ରଦାୟିକତା ଦୂର କରିବାକୁ ଦାବି ଆଉ ସେହି ସଂପର୍କରେ ଅନ୍ୟାନ୍ୟ ସମାଚାର ପ୍ରକାଶିତ ହୋଇଥିଲା । ଗୋଟାଏ ଟାଇଟିଲ ଉପରେ ଆଖି ତାର ଅଟକି ଗଲା । ହୁଏତ ତାହା ମହତ୍ତ୍ୱପୂର୍ଣ୍ଣ ହେବ— କମରେଡ଼ ଆନନ୍ଦ ମୋହନ ଘୋଷଙ୍କର ଲୋକସଭାରେ ପ୍ରଶ୍ନ— ନୂଆଦିଲ୍ଲୀ, ୧୨ ମଇ— ଲୋକସଭାରେ ପ୍ରଶ୍ନୋତ୍ତର କାଳରେ କମ୍ୟୁନିଷ୍ଟ ସଦସ୍ୟ ଶ୍ରୀ ଆନନ୍ଦ ମୋହନ ଘୋଷ...

'ହଲ୍ଲୋ... ।' ପଛରୁ ଆସି ସୁରେୟା ଡାକିଲା ।

'ହେଲୋ ସୁରେୟା ।' ମଂସୂର ଖବର କାଗଜ ମୋଡ଼ି ରଖି ଦେଉ ଦେଉ ବୁଲି ଚାହିଁ କହିଲା ।

'କ୍ଷମା କରିବେ ମୋର ଡେରି ହୋଇଗଲା ।' ହସି ହସି କହୁଥିଲା ସୁରୈୟା । ତା' ସାଙ୍ଗରେ ଆବିଦ ଅନସାରୀ ବି ଥିଲା । ଆବିଦ ମଂସୂରର ବିରୋଧୀ ଖବର କାଗଜର ଚିଫ୍ ରିପୋର୍ଟର । ସେମାନେ ଘନିଷ୍ଠ ବନ୍ଧୁ, ତେବେ ସମାଚାର ସ୍କୁପ କରିବା ନେଇ ଦୁହେଁ ବାଜିମାତ କରିବା ମତଲବରେ ରହନ୍ତି ... 'ମୁଁ ଆବିଦକୁ ମୋର ମ୍ୟୁରଲ ଦେଖାଇବାକୁ ନେଇଯାଇଥିଲି । ସେଇଥିରେ ଘଣ୍ଟାଏ ରହିଗଲୁଁ ।' ସୁରୈୟା କହିଲା ।

'ଯୋଉଟା ଏୟାରପୋର୍ଟରେ କରୁଛ ?' ମଂସୂର ପଚାରିଲା ।

'ନା, ଜମଶେଦ ହାଉସର ଲାଉଞ୍ଜରେ ।' ସୁରୈୟା କହିଲା ।

'ଜମଶେଦ ହାଉସ ? ଓହୋ... ଜମଶେଦ ସୈୟଦର ନୂଆ କୋଠି !'

'ସେଥିଲାଗି ଅନେକ ଆର୍ଟିଷ୍ଟ ଅନେଇ ବସିଥିଲେ, କାରଣ ଜମଶେଦ ଅଲୀର ହାତ ଖୋଲା ।' ଆବିଦ ଅଂସାରୀ କହିଲା ।

'ମୁଁ ସାଙ୍ଗରେ ଫଟୋଗ୍ରାଫରକୁ ନେଇଯିବି କି ? ମ୍ୟୁରଲର ଫଟୋଟି ବି ଲେଖା ସାଙ୍ଗରେ ବାହାରି ଯାଆନ୍ତା !' ମଂସୂର ଅହମଦ କହିଲା ।

'ନାଇଁ, ଏବେ ଥାଉ । ସେଥିରେ ହାତୀର ଶୁଣ୍ଢ ବାକି ଅଛି ।' ସୁରୈୟା ଉତ୍ତର ଦେଲା ।

'ହାଉସ ୱର୍ମିଙ୍ଗ ଦିନ ଦେଖିବା ।'

'ଆଚ୍ଛା ତମେ ତାହେଲେ ସେଥିରେ ବି ପୂର୍ବ ପାକିସ୍ଥାନର ମୋଟିଫ୍ ରଖିଛ ?' ମଂସୂର ଅହମଦ ମେଜ ଉପରକୁ ନଇଁଆସି କାଗଜରେ କଣ ଧାଡ଼ିଏ ଯୋଡ଼ିଲା ଆଉ କହିଲା— 'ସୁରୈୟା, ତମକୁ ମାନିବାକୁ ପଡ଼ିବ ଯେ ତମର ପ୍ରଦର୍ଶନୀ ପାଇଁ ଯା'ଠୁ ବଳି ଏତଭାନ୍ସ ପବ୍ଲିସିଟି ହୋଇପାରିବ ନାଇଁ । ଗୋଟାଏ ଲେଖା ମୁଁ ମୋ ନାଆଁରେ ଲେଖୁଛି । ଆସନ୍ତା ସପ୍ତାହ ବେଳକୁ ଆହୁରି ଦୁଇ ତ୍ରୟରୋଟି ଲେଖା ବି ଭିନ୍ନ ଭିନ୍ନ ନାଆଁରେ ଅନ୍ୟ ଖବର କାଗଜକୁ ଆସିବ ।.. ତମର ପ୍ରଦର୍ଶନୀର ଫୋଲଡ଼ର କିନ୍ତୁ ବେଶ ବଢ଼ିଆ ହୋଇଛି ।'

'ଥେଙ୍କ୍ସ, ହାଓ ସ୍ୱିଟ ଅଫ୍ ୟୁ ।'

'ତମେ ଦିହେଁ ଖାଇବା ଅର୍ଡର ଦଉଥାଅ, ମୁଁ ଏକ ଜରୁରୀ ନୋଟ୍ ଲେଖିଦେଇ ସାଙ୍ଗେ ସାଙ୍ଗେ ଆସୁଛି ।'

'ଦେଖି ବିଳମ୍ବ କରିବ ନାଇଁ ।' ସୁରୈୟା ଡାଇନିଂ ଆଡକୁ ଯାଉ ଯାଉ କହିଲା ।

ମଂସୂର ଅହମଦ ଚଟାପଟ୍ ଭାରତ ଉପରେ ନୋଟସ୍ ପୂରା କରିନେଇ ଟାଇପ ରାଇଟରରେ ନୂଆ କାଗଜ ଲଗେଇଲା । ଚଂଚଳ ଚଂଚଳ ଟାଇପ କରିବା ଆରମ୍ଭ କରିଦେଲା—

'କରାଚ୍ଚୀର କଳାକ୍ଷେତ୍ର ମିସ୍ ସୁରୈୟା ହୁସୈନଙ୍କର ପରିଚ୍ୟର ଆବଶ୍ୟକତା ନାହିଁ । ମିସ୍ ହୁସୈନ୍ ଉତ୍ତର ପ୍ରଦେଶ (ଭାରତ)ର ଜଣେ ତାଲୁକଦାରଙ୍କ ଝିଅ । ମସୌରୀ କନଭେଣ୍ଟରେ ଶିକ୍ଷା ସମାପ୍ତି ପରେ ଶାନ୍ତି ନିକେତନ ଆଉ ...

୩

ପି.ଇ.ସି.ଏଚ୍.ଏସ୍‌ର ଏକ ପଥୁରିଆ ଉଚ୍ଚାନୀଚ୍ଚ ସଡ଼କ ଉପରେ ଅଗଣିତ ଗାଡ଼ି ଠିଆ ହୋଇ ରହିଥିଲେ । ଅତିଥିମାନେ ଜଣଜଣ କରି ଭିତରକୁ ଯାଉଥିଲେ । ପ୍ରସିଦ୍ଧ ବ୍ୟବସାୟୀ ଜମଶେଦ ଅଲୀ ସୈୟଦ ତାଙ୍କର 'ନୂଆକୋଠି'ର 'ହାଉସ ୱାର୍ମିଙ୍ଗ' ଅବସରରେ କରାଚ୍ଚୀର ପ୍ରାୟ ସବୁ ମହତ୍ତ୍ୱପୂର୍ଣ୍ଣ ଲୋକଙ୍କୁ ନିମନ୍ତ୍ରିତ କରିଥିଲେ । କୋଠିର ଲାଉଞ୍ଜରୁ ବିଶାଳ ଶ୍ୟାମଳ ଲନ୍‌ଟି ଗୋଟାଏ ଟେକ୍‌ନିକାଲର ସିନେମାସ୍କୋପ ପର୍ଦ୍ଦାଭଳି ମନେହେଉଥିଲା । ଗଛଗୁଡ଼ିକରେ ଝଲମଲ କରୁଥିବା ବହୁରଙ୍ଗୀ ବଲ୍‌ବ, ବିରାଟ ବିରାଟ ଭିନ୍ନ ଭିନ୍ନ ଆକାରର ଡ୍ରମ୍, କିଆରୀମାନଙ୍କର ସୁନ୍ଦର ସୁନ୍ଦର ଫୁଲ, ନରମ ଘାସ ଉପରେ ବିଛେଇ ହୋଇଥିବା ସୋଫା, ବହୁବିଧ ଖାଦ୍ୟ ସାମଗ୍ରୀରେ ଭରି ରହିଥିବା ସୁସଜ୍ଜିତ ଟେବୁଲ, ଧଳା ପୋଷାକୀ

ବୈରା, ଟୁଲଗୁଡ଼ିକରେ ଜାଗା ଜାଗା ସଜା ହୋଇଥିବା ଦାମୀ ସିଗାରେଟ, ଦୂତାବାସଗୁଡ଼ିକର ଅଧିକାରୀ, ସୁନ୍ଦର ସୁନ୍ଦର ହିନ୍ଦୁସ୍ଥାନୀ ଶାଢ଼ୀରେ ସଜେଇ ହୋଇ ରହିଥିବା ଆକର୍ଷକ ପାକିସ୍ଥାନୀ ବେଗମଗୁଡ଼ିକ, ସରସର ଲହଡ଼ା ଭାଙ୍ଗୁଥିବା ଇଭିନିଙ୍ଗ ଗାଉନ୍ ଆଉ କକ୍‌ଟେଲ ଡ୍ରେସ୍, ଅତର, ବରଫ ବାଲଟିମାନଙ୍କରେ ବୁଡ଼ି ରହିଲା ଅସଂଖ୍ୟ ମଦବୋତଲ, ଏଣେତେଣେ ଦଳଦଳ ହୋଇରହିଥିବା ପ୍ରେସ ପ୍ରତିନିଧି, କେମରା ନେଇ ଗ୍ରିପଟେ ଘୂରିବୁଲୁଥିବା ଫଟୋଗ୍ରାଫର୍, ମଝିରେ ମଝିରେ ଝଲସି ଯାଉଥିବା ଫ୍ଲେସ୍ ବଲ୍‌ବ, ବଡ଼ ବଡ଼ ବେପାରୀ, ପ୍ରତିଷ୍ଠିତ ଶିଳ୍ପପତି, ପଦସ୍ଥ ପ୍ରଶାସନ ଅଧିକାରୀ, କେନ୍ଦ୍ରମନ୍ତ୍ରୀ, ରାଜଦୂତ, ପ୍ରଥମ ସଚିବ, ପ୍ରେସ୍ ଆଟେଚ୍ରୀ, କମର୍ଶିୟଲ ଆଟେଚ୍ରୀ... । ଫ୍ଲୋରରେ ଡାନ୍ସ ବେଣ୍ଡ ବାଜୁଥାଏ ଆଉ କେତେ ଯୋଡ଼ି ନାଚିବା ମଧ୍ୟ ଆରମ୍ଭ କରିଦେଇଥାନ୍ତି । ମଦ ପାଣିଭଳି ବହି ଯାଉଥାଏ । କୋଠିର ଦି' ତାଲାରେ ରକ୍ - ଏଣ୍ଡ - ରୋଲର କୋଳାହଳ ଶୁଭୁଥାଏ । ଫେୟରୀ ତାର ସମବୟସ୍କ ପୁଅ ଝିଅଙ୍କ ସାଙ୍ଗରେ ସ୍ୱଚ୍ଛନ୍ଦ ଆମୋଦରେ ବୁଡ଼ି ରହିଥାଏ । ତଳେ ଲନ୍‌ରେ ବେଶ ଦାମୀ ଧଳାରଙ୍ଗର ବନାରସୀ ଶାଢ଼ୀ ଆଉ ଶୁଦ୍ଧ ମୋତିର ମାଳା ପିନ୍ଧି ଆଲିୟା ସୈୟଦ ଅତିଥି ସତ୍‌କାରରେ ବ୍ୟସ୍ତ ଥାଏ । ସୈୟଦ ଅଖତର ଅଲୀ ଦାମୀ ସୁଟ୍ ପିନ୍ଧି ଗୋଟାଏ କୋଣକୁ ବସି ସିଗାର ଟାଣୁ ଥାଆନ୍ତି । ଜମଶେଦର ଆମେରିକାରୁ ଆସିଥିବା ଦୁଇଟି ଭାଇ ଦଳେ ଚଂଚଳ କଶୋରୀଙ୍କ ସାଙ୍ଗରେ ଖିଲ ଖିଲ ହସୁଥାନ୍ତି । ଲାଉଞ୍ଜ ଭିତରେ କେତେଜଣ ଅତିଥି କାନ୍ଥରେ ଚିତ୍ରିତ ଫ୍ରେସକୋ ଉପରେ ଆଲୋଚ୍ଚନା କରୁଥା'ନ୍ତି । ଫ୍ରେଞ୍ଚ ଶିଫନ୍‌ର ବଡ଼ବଡ଼ ଲାଲ ଫୁଲପକା ଶାଢ଼ୀ ପିନ୍ଧି ଚିତ୍ରଟି ପାଖରେ ଠିଆ ହୋଇ ସୁରୈୟା ପ୍ରଶଂସକଙ୍କ ସାଙ୍ଗରେ କଥାହେଉଥାଏ । ଲେଟେଷ୍ଟ ବିହାଇପି ଷ୍ଟାଇଲର କେଶ । ସେ ଶୈନୀଲ୍ ଫାଇବ ଅତର ଲଗେଇଥାଏ ଆଉ ବ୍ଲାଉଜ ତଳକୁ ଅଣ୍ଟାଯାଏଁ ଫୁଙ୍ଗୁଳା ଦେଖାଯାଉଥାଏ ।

'ମିସ୍ ହୁସୈନ, ମୁଁ ଏକଥା ବିଶ୍ୱାସ ସହକାରେ କହିପାରିବି ଯେ ଆପଣ ଜାମିନୀ ରାୟଙ୍କର ପ୍ରଭାବରୁ ମୁକ୍ତ ହୋଇ ସାରିଛନ୍ତି। ଆପଣଙ୍କ ଚିତ୍ରିତ ଲତାପତ୍ର ଆଉ ରଙ୍ଗରେ ଏଇନେ ଆପଣା ଦେଶର ରଙ୍ଗ ଆଉ କେରେକ୍‌ଟରର ଝଲକ ଦିଶୁଛି ।' ପାକିସ୍ଥାନୀ ଆର୍ଟର ଜଣେ ପ୍ରସିଦ୍ଧ ସମୀକ୍ଷକ ମତ ଦେଲେ ।

'ପାକିସ୍ଥାନୀ ଆର୍ଟର ଭବିଷ୍ୟତ ଏଇନେ କେବଳ ନୂତନ ଯୁବା କଳାକାରଙ୍କ ଉପରେ ନିର୍ଭର କରୁଛି । ଆପଣଙ୍କର ପେରିସ୍ ପେରେଡ଼ ଚିତ୍ରରୁ ଆପଣ ଆପଣଙ୍କର ପରମ୍ପରାକୁ ଫେରି ଆସୁଥିବା ପ୍ରମାଣିତ ହୋଇଯାଉଛି ।' ଆଉ ଜଣେ ଆଲୋଚକ କହିଲେ ।

'ମୋସ୍ୟୋ ବେଜିଓ ଆପଣ ଏଇ ହାତୀର ଶୁଣ୍ଢକୁ ଦେଖନ୍ତୁ ।' ଫ୍ରେସ୍କୋ ସାମନାରେ ଆଉ ଜଣେ ବୁଦ୍ଧିଜୀବୀ ଜଣେ ମୋଟା ଫ୍ରେଞ୍ଚକୁ ସଂବୋଧିତ କରି କହୁଥିଲେ— 'ହାତୀ', ସେ ଗଳା ସଫାକରି ଭାଷଣ ଶୈଳୀରେ କହୁଥିଲେ ... 'ପୂର୍ବ ପାକିସ୍ଥାନର ସଂସ୍କୃତିର ପ୍ରତୀକ । ସେଠାକାର ନଦୀ, ବୋଟମେନ୍, ହାତୀ ଆଉ ମାଛ ।'

'ମାଛ, ନାଆ ଆଉ ଝୋଟ' ଆଉ ଜଣେ ବୁଦ୍ଧିଜୀବୀ କହିଲେ ।

ମୋଟା ଫ୍ରେଞ୍ଚ ଭଦ୍ରଲୋକ, ଯେ ଓଲୁ ଭଳି ଦେଖାଯାଉଥିଲେ; ଚଷମା କାଢ଼ ପୋଛିଲେ ଆଉ ତାକୁ ଭଲକରି ନାକ ଉପରେ ରଖି ଏଡ଼େ ଆଖିରେ ଚିତ୍ରଟିକୁ ଦେଖିବାକୁ ଲାଗିଲେ– 'ଏମିତି ହାତୀ ତ ଇଣ୍ଡିଆରେ ବି ଅଛନ୍ତି ।' ସେ ଆଶ୍ଚର୍ଯ୍ୟ ହୋଇ ପଗ୍ଚରିଲେ ।

'ମିସ୍ ହୁସେନ' ପ୍ରଥମ ବୁଦ୍ଧିଜୀବୀ କହିଲେ "ଆପଣ ମୋସ୍ୟୋ ବେଜିଓଙ୍କୁ ଏ ଚିତ୍ରର ପ୍ରତୀକ ଟିକିଏ ବୁଝେଇ ଦିଅନ୍ତୁ । ପାକିସ୍ଥାନୀ ପରମ୍ପରାର ମୂଳର ଅନୁସନ୍ଧାନ ମୁସଲମାନମାନଙ୍କର ସାମୂହିକ, ରଚନାତ୍ମକ ଅବଚେତନର ବିଭିନ୍ନ ସ୍ୱରୂପର ଅଭିବ୍ୟକ୍ତି ଆଉ..."

ବୈରା ମଦବୋତଲ ଆଉ ପିଆଲା ଟ୍ରେରେ ନେଇ ପହଞ୍ଚିଲା ଆଉ ସମସ୍ତେ ପିଆଲା ଉଠେଇ ନେଇ ଫ୍ରେସ୍‌କୋ ସାମନାରେ ଠିଆ ହୋଇ ଆର୍ଟ ଉପରେ ଆପଣା ଆପଣାର ସ୍ୱକୀୟ ବିଗ୍ଚରରେ ବୁଡ଼ିଗଲେ ।

କାନ୍ଥର ସବୁଜ ପୃଷ୍ଠଭୂମିରେ କେତୋଟି ଆମ୍ବଗଛ ବଙ୍କା ଟେଢ଼ା ହୋଇ ରହିଥିଲେ । ପଛରେ ଏକ ଗଭୀର ନୀଳ ନଦୀ ବହିଯାଉଥିଲା । ସାମନାରୁ ହାତୀଟିଏ ଆସୁଥିଲା । ତା' ଉପରୁ ହଳଦିଆ ଝାଲର ଆଉ ଗ୍ଚରିକୋଣିଆ ଆହୁଦା ପଡ଼ିଥିଲା । ତା'ଉପରେ ଝିଅଟିଏ ବସିଥିଲା । ଚିତ୍ରଟି ପୂରାପୂରି ବଙ୍ଗାଳୀ ଶୈଳୀରେ ଚିତ୍ରିତ ହୋଇଥିଲା ।

'ସୁରୈୟା !' ଅନ୍ୟପଟୁ କେହିଜଣେ ଡାକ ଦେଲେ– "ତମକୁ ଜମଶେଦ ଖୋଜି ବୁଲୁଛି ।"

ସେ ଲାଉଞ୍ଜରେ ରହିଥିବା ଅତିଥିମାନଙ୍କୁ କ୍ଷମା ମାଗି ବାହାରକୁ ବାହାରି ଆସିଲା ।

ସାମନା ବଗିଗ୍ଚର ଗୋଟାଏ ସଂକୀର୍ଣ୍ଣ ରାସ୍ତାରେ ସୁନେଲୀ କେଶର ସୁନ୍ଦର ବାଙ୍ଗର ଝିଅଟିଏକୁ ଆସୁଥିବାର ଦେଖିଲା । ସେ ଝିଅଟି ଝଲମଲ ତାରକାଖଚିତ ଗାଢ଼ ଗୋଲାପୀ ରଙ୍ଗର ଶାଢ଼ୀଟିଏ ପିନ୍ଧିଥିଲା । ଆଉ ବାଳକୁ ବେଶ୍ ଉଚ୍ଚାକରି ମୁକୁଟ କିମ୍ବା ପଂଖାଭଳି ଜୁଡ଼ା କରି ସଜେଇ ଥିଲା । ସେଇ ଉଚ୍ଚତା ଫଳରେ ସେ ସାମାନ୍ୟ ଡେଙ୍ଗା ଜଣାପଡୁଥାଏ । ପଲକ ଉପରେ ଫିକା ନୀଳ କ୍ରିମ ଆଉ ଓଠରେ ଗାଢ଼ ଗୋଲାପୀ ରଙ୍ଗର ଲିପ୍‌ଷ୍ଟିକ୍ ପାଇଁ ତା'ର ମେକ୍‌ଅପ୍ ସୁନ୍ଦର ଓ ପୂର୍ଣ୍ଣ ମନେହେଉଥିଲା । ସେ ଝିଅଟି ଆସି ପାଖରେ ପହଞ୍ଚିଲା ।

ସେମାନେ ଦୁହେଁ ସାମନାସାମନି ହୋଇ ନିଜ ନିଜ ଜାଗାରେ ରହିଗଲେ । କେତେବେଳ ସେମିତି ଗ୍ଚଲିଗଲା । ସେମାନେ ଦୁହେଁ ଦୁହିଁଙ୍କୁ ଅନେଇ ରହିଥା'ନ୍ତି ।

'କୁନୀ' ସୁରୈୟା କିଛି ବେଳପରେ କହିଲା ।

ସଲମା ଚୁପ୍‌ଗ୍ଚପ୍ ଘାସକୁ ଅନେଇ ରହିଥାଏ ।

'କୁନୀ'

ସେ ସେଇଭଳି ନୀରବ ଥାଏ ।

'କୁନୀ... ଆପଣ... ମୁଁ... ।' ସେ କୌଣସି ଉତ୍ତର ଦେଲାନାହିଁ ।

'ଓ ! ହେଲ୍ଲୋ ସୁରୈୟା !' କେହି ଜଣେ ଅତିଥି ପାଖକୁ ଆସି ବେଶ ଉତ୍ସାହରେ କହିଲେ— "ଲଙ୍ଗ ଟାଇମ୍ ନୋ ସି ତମକୁ ଫୋନ୍ କରି କରି ହଇରାଣ ହୋଇଗଲି । ତେବେ ତମେ ରହୁଛ କୋଉଠି ?"

'ହାଉସିଂ ସୋସାଇଟି' ସୁରୈୟା ଏତେ ଧୀର ଗଳାରେ କହିଲା ଯେ ହୁଏତ ତାହା ନିଜେ ବି ଶୁଣି ପାରି ନଥିବ । ସେ ପୁଣିଥରେ କହିଲା— "ହାଉସିଂ ସୋସାଇଟି ।"

'ଠିକ୍ ଅଛି, ମୁଁ କାଲି ସଂଧ୍ୟାରେ ଆଲିୟା ସାଙ୍ଗରେ ଆସିବି ।' ଆଉ ସେ ଗହଳି ଭିତରେ କୁଆଡ଼େ ହଜିଗଲା ।

ପଛରୁ ଜମଶେଦ ଆସି ସୁରୈୟା କାନ୍ଧରେ ହାତ ଦେଲା । ଆର ହାତରେ କକ୍‌ଟେଲ ଗିଲାସ ଥିଲା ।

'ଡାର୍ଲିଂ ସେ ଟିକିଏ ଲହରେଇ କହିଲା— 'ଖୋଜି ଖୋଜି ଥକିଗଲି... ଜଙ୍ଗଲ ଜଙ୍ଗଲ... ଗଳି ଗଳି ହଇରାଣ୍ଡି ହେଲି । କୋଉଠି ଥିଲ ତମେ ? ଆରେ, ତମେଦୁହେଁ ଏମିତି ଚୁପ୍‌ଚାପ୍ ଠିଆ ହୋଇଛ କ'ଣ ? ଦୁହେଁ ଦୁହିଁଙ୍କୁ ଜାଣିନ ବୋଧହୁଏ ! ସୁରୈୟା, ଦିସ୍ ଇଜ୍ ସଲମା ମିର୍ଜା, ମାଇଁ ମୋଷ୍ଟ ଏଫିସିଏଣ୍ଟ ପର୍ସନାଲ ଏଣ୍ଡ କନ୍‌ଫିଡ଼େନ୍‌ସିଏଲ ସେକ୍ରେଟେରୀ । ଚାଲ ଡାର୍ଲିଂ, ନଚ୍ଚାଯାଉ ।' ସେ ଗିଲାସଟି ଟୁଲ୍ ଉପରେ ରଖିଦେଇ ସୁରୈୟାକୁ ଟାଣିଲା ଭଳି ଫ୍ଲୋର ଉପରକୁ ନେଇଗଲା । ସେମାନେ ସେଠାରେ ନାଚୁଥିବା ଯୋଡ଼ିମାନଙ୍କର ଭଉଁରି ଭିତରେ କୁଆଡ଼େ ହଜିଗଲେ ।

ଡାନ୍ସ ବେଣ୍ଡର ଧୂନ ଦ୍ରୁତତର ହେଲା । ସଲମା ପାଖ ସୋଫା ଉପରେ ବସି ଯାଇଥାଏ । ମନ ତା'ର ବେଶ୍ ଅତଳ ଅନ୍ଧକାରର ସାଗର ଭିତରେ ବୁଡ଼ି ସାରିଥାଏ । ସୋଫାରେ ବସି ସେ ନାଚୁଥିବା ସୁରୈୟା ଓ ଜମଶେଦକୁ ଅନେଇ ରହିଲା ।

"ସୁରୈୟା ଦିଦୀ, ଭାଇ ଆପଣଙ୍କ ନାଆଁର ମାଳା ଗଡ଼େଇ ଗଡ଼େଇ ବରଷ ବରଷର ସଜା ଭୋଗିବାକୁ ଚାଲିଗଲେ । ଯେତେବେଳେ ସେ ଏକାକୀ ଜେଲରୁ ସଜାକାଟି ସାରି ବାହାରିବେ, ସେତେବେଳେ ସେ ବୁଢ଼ା ହୋଇ ସାରିଥିବେ ଓ ବାଳ ପାଚିସାରିଥିବ । ତେବେ ମୋର ଭାଇ କେବେହେଲେ ବୁଢ଼ା ହେବେ ନାହିଁ, କେବେ ନିରାଶ ହେବେ ନାହିଁ କି କେବେହେଲେ ହାରିଯିବେ ନାହିଁ । ଯିଦଓ ତମେ ସୁରେୟା ଦିଦୀ, କେତେ ସହଜରେ ହାର ମାନିନେଲ । ଆପଣ, ଯେ ଭାଇଙ୍କୁ ଆଲୁଅ ଦେଖେଇଥିଲ, ହୃଦୟ ଦେଇଥିଲ, ସାହସ ଦେଇଥିଲେ !"... ସେ ଆଖି ବୁଜିନେଲା, ଯେମିତି କି ଏ ପାର୍ଟିର କୌଣସି ଦୃଶ୍ୟ ଦେଖିପାରିବ ନାହିଁ ।

'ହେଲୋ !' କେହି ଜଣେ ପଛରୁ ଆସି ତା କାନ୍ଧରେ ହାତ ପକେଇଲାରୁ ସେ ଚମକି ପଡ଼ିଲା । ଷାଠିଏ ସତୁରୀ ବର୍ଷର ଅତି ବଡ଼ କପା ବ୍ୟବସାୟୀ ମିଷ୍ଟର ଜାବେରୀ

ନକଲି ଦାନ୍ତ ନେଫଡେଇ ତା' ସାମନାରେ ଠିଆ ହୋଇଥିଲେ । ସେ ସମୟରେ ତାଙ୍କୁ ଏଣ୍ଟରଟେନ କରିବା ସଲମାର ଡ୍ୟୁଟି ଥିଲା । 'ତମେ ଏଠି କିଆଁ ପାଗଳଙ୍କ ଭଳି ବସିଛ, ଡାନ୍ସ କରିବ ନାଇଁ ?' ମିଷ୍ଟର ଜାବେରୀ କହିଲେ ।

'ନା, ମୁଁ ଏଇନେ ଡାନ୍ସ କରିବି ନାଇଁ ।' ସଲମା ଥରିଲା କଣ୍ଠରେ କହିଲା, 'ମୋତେ କ୍ଷମା କରନ୍ତୁ ।'

'ଆରେ, ମତେ କହ... କଥା କ'ଣ ? ତମ ଦେହ ଭଲନାଇଁ ନା କ'ଣ ?'... ମିଷ୍ଟର ଜାବେରୀଙ୍କ କଥା ଅଶିଷ୍ଟ ମନେହେଲା ସଲମାକୁ । ସେଭଳି ଭାବରେ ହୁଏତ ଜଣେ ତା'ର ପତ୍ନୀ ସାଙ୍ଗରେ କଥା ହୁଏ । ସଲମା ଶିହରି ଉଠିଲା ।

''ଆଚ୍ଛା ଚାଲ, ସେଠି ତମର ବନ୍ଧୁମାନେ ଟେବୁଲରେ ଅପେକ୍ଷା କରିଥିବେ.... ।'' ସେ ଉଠିଲାବେଳକୁ ତା'ର ଗୋଡ଼ ଥରୁଥାଏ... 'ସୁରୈୟା ଦିଦୀ ମୁଁ ତମ ଆଗରେ କ'ଣ ଅଭିଯୋଗ କରିପାରିବି ? ମୁଁ ନିଜେ ହାର ମାନି ନେଇ ସାରିଛି ।'

ସେ ମିଷ୍ଟର ଜାବେରୀଙ୍କ ସାଙ୍ଗରେ ବଫେ ଆରମ୍ଭ ହୋଇ ସାରିଥିବା ଟେବୁଲ ପାଖକୁ ଚାଲିଗଲା ।

ନାଚପରେ ଫ୍ଲୋରରୁ ଓହ୍ଲେଇ ଆସି ସୁରୈୟା ଲନରେ ସଲମାକୁ ଜାବେରୀ ସାଙ୍ଗରେ ବସିଥିବା ଦେଖିଲା । ସେ ଯେଉଁ ଭଙ୍ଗୀରେ ସଲମାକୁ ନିରେଖି ଦେଖୁଥିଲେ; ତାଙ୍କ ଚେହେରାରେ ସୁରୈୟାକୁ ନବାବ ସିକନ୍ଦର କୁଲୀ ଖାନ୍, ଓରଫ ନବାବ ଭୂରେଙ୍କର କ୍ରୂର ଆଖିଟି ଦିଶିଲା ।

ଅକସ୍ମାତ୍ ଏକ ପ୍ରଚଣ୍ଡ ବିସ୍ଫୋରଣ ହେଲା ଆଉ ସାମନାର ସେଇ, ରଙ୍ଗିନ ସିନେମାସ୍କୋପର ଦୃଶ୍ୟ ବିଧ୍ୱସ୍ତ ହୋଇଗଲା । କଳାଧୂଆଁ ଆଉ ଲାଲ୍ ନିଆଁ ଝୁଲ ସାରା ପରିବେଶରେ ବିଛେଇ ହୋଇ ପଡ଼ିଲା । ଅନେକ ଦୂରଯାଏଁ ଜ୍ୱାଳାମୁଖୀ ଅଗ୍ନି ଉଦ୍‌ଗୀରଣ କରିବାକୁ ଲାଗିଲା । ଗରମ ହୁତହୁତ୍ ଜଳୁଥିବା ଲାଭା ବୋହି ସବୁଠେଇଁ ପ୍ରସରିଗଲା । ଜ୍ୱାଳାମୁଖୀର ଘର୍ଘର ଶବ୍ଦ, ଭୂକମ୍ପର ବିସ୍ଫୋଟନ, ଅର୍କେଷ୍ଟାର ମିଳିତ ନାଦ, ରକ୍, ଏଣ୍ଡ, ରୋଲ୍‌ର କୋଳାହଳ, ଖିଲଖିଲ ହସ, ଗିଲାସର ଟୁଂଟାଂ ଶବ୍ଦ ଭିତରେ ଦେଇ ଗୋଟାଏ ଧୀର, ଉଦାସ, ସୁନ୍ଦର ସ୍ୱର କାନରେ ବାଜିଲା ସୁରୈୟାର । 'ଅତୀତର ମହଲ—ସରାଇ' ପୋଡ଼ି ପାଉଁଶ ହେଲେ । ଏଇନେ ସେମାନଙ୍କର ଧ୍ୱଂସ ସ୍ତୂପର ନିହ ଉପରେ ଦୁଇ ଦେଶର ନବ୍ୟ ପୁଂଜିପତିଙ୍କର ନୂଆ ନୂଆ ପ୍ରାସାଦ ଠିଆହେବ । କାଲିର ଜାଗିରଦାରଙ୍କ ସ୍ଥାନ ନେବେ ଆଜିର କେପିଟେଲିଷ୍ଟ... କାଲିର ଜାଗିରଦାରଙ୍କ ସ୍ଥାନ ଅଧିକାର କରିବେ ଆଜିର ପୁଂଜିପତି... ।

ସୁରୈୟା ଆତଙ୍କରେ ଆଖି ବନ୍ଦ କରିନେଲା । ଏହା ବେଲଜିୟମ୍ କଟ୍‌ଗ୍ଲାସର ଝଲମଲ ଝାଲର, ଆଉ ଇଟାବଲୀ ରାଜର ତିଆରି ଅଲ୍ଟ୍ରାମର୍ଡନ୍ ଜମଶେଦ ହାଉସ ନୁହଁ;

ଏହା ମାଲିକପୁର ଜିଲ୍ଲାର ବୁର୍ଗୀପୁର ତାଲୁକର ଅନ୍ଧାରୀ ଗଡ଼ କୋଠି, ଯୋଉଠି ନିଜେ ବସନ୍ତୀ ବେଗମ ବନ୍ଦୀ ରହିଥିଲା । ସେଇ ଦୁର୍ଗାକୁଣ୍ଡ ଗଡ଼ ଜମଶେଦ ହାଉସ ପାଲଟି ଯାଇଛି । ସେଇଠି କୁନୀ ବନ୍ଦିନୀ ହୋଇଥିଲା । ସେ ଆଖି ଖୋଲି ଅପଲକ ଗ୍ରହି ଚିହ୍ନିବାର ଚେଷ୍ଟାକଲା । ସାମନାରେ କଅଁଳ ସବୁଜ ଘାସରେ ଜାପାନୀ ଡ୍ରମ୍ ଲାଇଟ୍ ତଳେ କିଏ କିଏ ପଦଗ୍ଚରଣ କରୁଥିଲେ । ମିଷ୍ଟର ଜାବେରୀ, ମିଷ୍ଟର ଘାସଲେଟ୍‌ବାଲା, ମିଷ୍ଟର ବର୍ଟିନ୍ । ସେ ଆଖି ବନ୍ଦ କରିନେଲା, ନବାବ ଭୂରେ, ମିଆଁ ନୌରୋଜ, ମୁନ୍ନନ ଖାନ୍ ପୁଣିଥରେ ମିଷ୍ଟର ଜାବେରୀ, ମିଷ୍ଟର ଗାସଲେଟ୍‌ବାଲା ମିଷ୍ଟର ବର୍ଟନ ପାଲଟି ଗଲେ । ସେ ଆଖିଟେକି ଅନେଇଲା । ସାମନାରେ ଜମଶେଦ ଠିଆ ହୋଇଥିଲା ।

'ଡାର୍ଲିଙ୍ଗ' ସେ ଝୁମନ୍ତ ନିଶାରେ କହିଲା— 'ଏ ଜାମେ-ଜମଶେଦର ମଧୁପାନ କର ତ ଟିକିଏ, ଯା'ର ନା ଜମଶେଦ ହାଉସ୍... ଏ ମୋର 'ଜାମେ-ଜହାଁନୁମା' (ସେ ପ୍ରସିଦ୍ଧ ପିଆଲା, ଯେଉଁଥିରେ ଇରାନର ବାଦଶାହ ଜମଶେଦ ସାରା ଦୁନିଆଁକୁ ଦେଖିପାରୁଥିଲା !) ଆଉ ସେ ହାତର ଇଙ୍ଗିତରେ ଗ୍ରିପଟକୁ ଦେଖେଇ କହିଲା— 'ଇଏ ମୋର ମଧୁସାଗର !' ସେ ଗିଲାସ ଉଠେଇ ସୁରୈୟାକୁ ବଢେଇଦେଲା ।

'ଚିୟର୍ସ'

'ଚିୟର୍ସ'

ତା'ପରେ ସେ ସୁରୈୟାର ଅଣ୍ଟାରେ ହାତ ପକେଇ ତାକୁ ଡ୍ରଇଁରୁମ୍ ପଟକୁ ନେଇଗଲା । ତା'ର ଗୋଟାଏ କୋଣରେ ବାରଷ୍ଟୁଲମାନଙ୍କରେ ତିନି ଗ୍ରିଜଣ ଦେଶୀ ବିଦେଶୀ ବେପାରୀ ବସିଥିଲେ ଆଉ ମିଷ୍ଟର ପେଟ୍ରିକ କଳା ପେଣ୍ଟ, ସଫେଦ କୋଟ୍ ପିନ୍ଧି, କଳା ବୋ ଟାଇ ଲଗେଇ ବାରମେନ୍‌ର ଡ୍ୟୁଟି କରୁଥିଲେ । ଜମଶେଦ ଆଉ ଗୋଟାଏ ଷ୍ଟୁଲ ଉପରେ ବ◌ିଗଲା ଆଉ ପାଖ ଷ୍ଟୁଲରେ ସୁରୈୟାକୁ ବସେଇ ନେଲା ।

ଗିଲାସମାନଙ୍କରେ କଡ଼ା ମଦ ଢାଳିବା ଭିତରେ ସେ ସେଇ ଲୋକଙ୍କ ସାଙ୍ଗରେ ତା'ର ବ୍ୟବସାୟିକ କଥା ଆରମ୍ଭ କରିଦେଲା ।

"ଜମଶେଦ ଭାଇ, ତମେ ଆମକୁ ବତାଅ, ଲଣ୍ଡନ ଅଫିସରୁ କେବୁଲ ଆଇଲା ନା ନାଇଁ ?" ଏଇମାତ୍ର ବାରକୁ ଆସି ପହଞ୍ଚିଥିବା ସେଠ୍ ଛକ୍ଷାଭାଇ ମୂସାଭାଇ ଘାସଲେଟୱାଲା ଗର୍‌ଗର୍ ହେଲା ଭଳି ପଗ୍ଚରିଲେ ।

'ଏ ଯାଏଁ ଆସିନାଇଁ ସେଠ୍ ସାହବ !' ଜମଶେଦ ବେପରୁଆ ଢଙ୍ଗରେ ଉତ୍ତରଦେଲା ଆଉ ଜଣେ ବିଦେଶୀ ବେପାରୀ ପଟକୁ ମୁହେଁଇଲା । — 'ହଁ ତା'ହେଲେ ଜର୍ଜ, ମୁଁ ତମକୁ କ'ଣ କହୁଥିଲି ! ହଁ, କହୁଥିଲି ମୁଁ ଲଣ୍ଡନରୁ ଟେଣ୍ଡର ମଗେଇଥିଲି । ଜଣେ ମିଷ୍ଟର ଏସ୍.ଡି.ଜନସନ୍‌କୁ ମୁଁ ସେଇଠି ମାନ୍‌ଚେଷ୍ଟର ଅଫିସରେ ଆପଏଣ୍ଟ କରିନେଇଛି । ମିଷ୍ଟର ଜନସନ୍ ତାଙ୍କର ଦରଖାସ୍ତରେ ଲେଖିଛନ୍ତି, ସେ ଇଣ୍ଡିଏନ୍ କନ୍‌ଟିନାଣ୍ଟରେ କଲେକ୍ଟର କମିଶନର ଆଦି ପଦପଦବୀରେ ରହିଥିଲେ, ଆଉ ଏ କଣ୍ଟିନାଣ୍ଟକୁ ସେ ବେଶ୍ ଭଲଭାବରେ

ଜାଣନ୍ତି । ସେ ମାନ୍‌ଚେଷ୍ଟରର କାମ ଅତି ଭଲ ଭାବରେ ସମ୍ଭାଳି ନେବେ । ମୁଁ ମୋର ବିଦେଶୀ ବ୍ରାଞ୍ଚଗୁଡ଼ିକରେ ସବୁବେଳେ ଏମିତି ଲୋକଙ୍କୁ ନୌକରି ଦେଇଛି, ଯୋଉମାନେ ସେଠାକାର ସ୍ଥିତି ସଂବନ୍ଧରେ ଭଲଭାବରେ ଜାଣିଥା'ନ୍ତି ।''

''ମୋ କଥାର ଜବାବ ଦିଅ ଜମଶେଦ ଭାଇ ।'' ସେଠ୍ ଈଷାଭାଇ ମୂସାଭାଇ ଦୋସରା ଗିଲାସ ଚଢ଼େଇ ଅଗ୍ନେକ ବାର ଟେବୁଲର ଚକଚକ ଚଟାଣରେ ଜୋରରେ ମୁଥ ମାରିଲା... 'ହାମର ଡୀଲ ସେଟଲ କଲ ନା ନାହିଁ ?'

ସେତେବେଳେ ମିଷ୍ଟର ଜାବେରୀ ବି ଆସି କଥାରେ ସାମିଲ ହେଇଗଲେ । ସୁରୈୟା ଏଇ କାରବାରୀ କଥାବାର୍ତ୍ତାରୁ ଚିଡେଇ ଯାଇ ଷ୍ଟୁଲରୁ ଓହ୍ଲେଇ ପଡ଼ି ଗୋଟାଏ କୋଣକୁ ପଡ଼ିଥିବା ସୋଫାରେ ବସିଗଲା । ଅଗ୍ନେକ ବାର୍‌ରେ ସେଇ ଲୋକଙ୍କ ଭିତରେ ଝଗଡ଼ା ଆରମ୍ଭ ହୋଇଗଲା । ସେଠ୍ ଈଷାଭାଇ ମୂସାଭାଇ ଚଟାଣ ଉପରେ ଗିଲାସ କଚ୍ଡ଼ି ଜମଶେଦର ଗଳା ଧରିନେଲା... ''ତୁ ଶଳା ମୋତେ ପାଞ୍ଚଲକ୍ଷର ଧୂଳେଇ କରିଛୁ । ମୁଁ କେଶ୍ ଚଳେଇବି ।''

'ସଟ-ଅପ୍ ଈଷାଭାଇ, ୟୁ ଓଲ୍ଡଫୁଲ୍ ।' ଗଳା ଛଡ଼େଇ ଜମଶେଦ ଉତ୍ତର ଦେଲା ।

'ୟୁ ସଟ୍ ଅପ, ୟୁ ଡର୍ଟୀ ବ୍ଲେକ ମାର୍କେଟିୟର ।' ସେଠ୍ ଘାସଲେଟ୍‌ବାଲା ଗର୍ଜି ଉଠିଲେ ।

'ଓଃ! ଫର ଗଡ଼ ସେକ୍ !' ଜର୍ଜ ଆଙ୍ଗୁଠି ଉଠେଇ ବିରକ୍ତ ହେଲା ଭଳି କହିଲା ।

'ଶଳା ତୁ ଖାନ ବ୍ରଦର୍ସ ସାଙ୍ଗରେ ଏଗ୍ରିମେଣ୍ଟ କରୁଛୁ ଆଉ ମୋ ସାଙ୍ଗରେ ଡ୍ରବି'ଶ ବିସ୍ କରି ଖେଳୁଛୁ ! ମୋ ସାଙ୍ଗରେ ପାଞ୍ଚ ଲକ୍ଷର ଫ୍ରଡ୍ ! ମୋ ବିଜନେସ୍‌ରେ ଝାମେଲା ଭିଆଉଚୁ ! ... ମୋ ରେକର୍ଡ ଗୋଳମାଳ କରୁଛୁ... ମୋ ସାଙ୍ଗରେ ଖେଳିଲେ ଶଳା ସୁଟ୍ କରିବି ମୁଁ । ମୋ ପାଞ୍ଚଲକ୍ଷ ନୋକସାନ୍ କରିବୁ ବୋଲି ଭାବିଛୁ ! ଶଳା... କବାଡ଼ୀ... ଗ୍ରେର... ବଇମାନ... ।' ସେଠ୍ ଈଷାଭାଇ ଧୂତ୍ ନିଶାନରେ ଜମଶେଦର ନାକ ଉପରକୁ ଜୋର୍ ମୁଥଟିଏ ବସେଇ ଦେଲା । ଆଉ ହାତ ଚଳେଇବା ଆରମ୍ଭ କରିଦେଲା । ବାକି ବାରରେ ବସିଥିବା ବନ୍ଧୁମାନେ ବି ସେଇ ମାଡ଼ପିଟରେ ମିଶିଗଲେ ।

ପାଟିତୁଣ୍ଡ ଶୁଣି ସଲମା ବି ଭିତରେ ଆସି ପହଞ୍ଚିଗଲା । ମିଷ୍ଟର ପେଟ୍ରିକ ଚଂଚଳ ଡ୍ରଇଂରୁମ୍‌ର ସବୁ ଦରଜା ବନ୍ଦ କରିଦେଲା ।

ସୁରୈୟା ଡ୍ରାଇ ମାର୍ଟିନୀର ପିଆଲା ଟିପୟ ଉପରେ ରଖି ନିମୀଳିତ ଆଖିରେ ସଲମାକୁ ଦେଖିଲା— 'ହେଭ୍ ଏ ଡ୍ରିଙ୍କ୍ ସଲମା ଡିୟର !'

ମିଷ୍ଟର ପେଟ୍ରିକ ସଲମା ପାଇଁ ଶେରୀ ପିଆଲା ଭରିଦେଲେ । ସେ ଆସି ସୁରୈୟା ପାଖରେ ସୋଫାରେ ବସିଗଲେ ।

ପିଟାମରା କରୁଥିବା ଅତିଥିମାନେ ମଝିରେ ମଝିରେ ଖୁସିରେ ପାଟି କରୁଥିଲେ ବି । ତେବେ ସେଠ୍ ଈଷାଭାଇ ମୂସାଭାଇ ଉପରେ ପ୍ରତିହିଂସାର ଭୂତ ସବାର ହୋଇ ରହିଥିଲା ।

ସେ ଜମଶେଦର ପେଟକୁ ମୁଥ ମାରିବା ଆରମ୍ଭ କରିଦେଲା । ଜମଶେଦ ଗାଲିଚା ଉପରେ ଗଡ଼ିଗଲା । ଅନେକଗୁଡ଼ିଏ ଗିଲାସ ଭାଙ୍ଗିରୁଜି ଚୁର୍‌ମାର ହୋଇଗଲା । ଜମଶେଦର ମୁହଁ ଓ ପାପୁଲିରେ କାଚ ବାଜି ରକ୍ତ ବାହାରି ବସିଲା । ସୁରୈୟା ଓ ସଲମା ଆରାମରେ ବସି ତାମସା ଦେଖୁଥାଆନ୍ତି ।

ବାହାରେ ଫ୍ଲୋରରେ ଅତିଥିମାନେ କିଛି ଏକ ନୂଆ ଦକ୍ଷିଣ ଆମେରିକାନ୍ ଧୂନ ଉପରେ ନାଚିବାରେ ହଜି ଯାଇଥିଲେ । ଓାନ୍ସ ବେଣ୍ଡର ଡ୍ରମ ବେଶ୍ ଜୋର ଜୋର ବାଜୁଥାଏ । କିଛି ବେଳ ପରେ ଧୂନ ବଦଳିଲା ଆଉ ଡାନ୍ସ ବେଣ୍ଡରୁ ଆଫ୍ରିକାର ଅନ୍ଧାରି ଜଙ୍ଗଲର ବେଶ୍ ଦ୍ରୁତ ଓ ପ୍ରମତ୍ତ ତାଳ ଡ୍ରମରେ ବାଜିବା ଆରମ୍ଭ ହେଲା । ନାଚୁଥିବା ଯୋଡ଼ିମାନେ ତାଳି ମାରି ମାରି ପାଦ ଉପରେ ପାଦ କଚ୍ରଡ଼ି କଚ୍ରଡ଼ି ଆଫ୍ରିକୀୟ ତାଳରେ ତୀବ୍ରତର ଗତିରେ ଘୂରିବା ଓ ଡେଇଁବା ଆରମ୍ଭ କରିଦେଲେ ।

ଭିତରେ ଡ୍ରଇଁରୁମ୍‌ରେ ସେଠ ଈଷାଭାଇ ଚିତ୍କାର କଲେ— ''ମିଛୁଆ, ବେଇମାନ, ଶଳା ଗ୍ରେର !'' ମିଷ୍ଟର ପେଟ୍ରିକ ତା'ର ନିଶା ଉତାରିବ ବୋଲି ପୂରା ପାଣି ଜଗ୍‌ଟି ତା ମୁଣ୍ଡରେ ଢାଳିଦେଲା । ସେଠ ଈଷାଭାଇ ମୂସାଭାଇ ଚଟାଣ ଉପରେ ଚିତ୍ ଶୋଇ ଯାଇ ଏକାନିଶ୍ୱାସରେ କହିବାକୁ ଲାଗିଲେ, ''ପୂରା ପାଞ୍ଚଲକ୍ଷ ଟଙ୍କା... ପାଞ୍ଚଲକ୍ଷ... ପାଞ୍ଚଲକ୍ଷ ଟଙ୍କା !'' ମିଷ୍ଟର ପେଟ୍ରିକ୍ ଅନ୍ୟମାନଙ୍କ ପାଇଁ ଗିଲାସ ଭରିଲେ । ଅଗ୍ରନକ ସେଠ ଈଷାଭାଇ ଘାଇଲା ବିରାଡ଼ି ଭଳି ଉଠିପଡ଼ି ପୂର୍ଣିଥରେ ଜମଶେଦ ଉପରକୁ ଝପଟି ଗଲେ— 'ଗ୍ରେର !' ସେ ଛାତିରେ ନିଶ୍ୱାସର ଜୋର ଯେତେ ଥିଲା, ସବୁ ଲଗେଇ ଚିତ୍କାର କଲେ ।

'ସୁରୈୟା ଦିଦୀ, ସୁରୈୟା ଦିଦୀ, ଘାଟଲେଟୱାଲା ଗ୍ରେର ଧରିଛି !' ସଲମା ମତ୍ତନିଶାରେ କହିଲା ଆଉ ଖିଲ ଖିଲ ହସିବାକୁ ଲାଗିଲା ।

ଜମଶେଦ ସେଠ ଈଷାଭାଇର ଜାବରୁ ଛଡ଼େଇ ହୋଇ ପୁଣି ତଳେ ପଡ଼ିଗଲା । କିଛି ସମୟ ପାଇଁ ସବୁ ମୌନ ହୋଇଗଲା । ମିଷ୍ଟର ଜାବେରୀ ସେଠ୍ ଘାସଲେଟବାଲାକୁ କୋଠରି ବାହାରକୁ ନେଇ ଆସିଲେ । ଜମଶେଦ କହୁଣୀ ଭରାଦେଇ ଗାଲିଚାରୁ ଉଠିଲା, ରୁମାଲରେ ମୁହଁ ହାତରୁ ରକ୍ତ ପୋଛିଲା । ତା'ପରେ କୁକୁର ଭଳି ଗୁରି ହାତଗୋଡ଼ ଲଗେଇ ଗୁଲି ଝିଅଙ୍କ ପଟକୁ ମୁହେଁଇଲା । ସେ ବେଶ୍ କଇଁ କଇଁ ହୋଇ କାନ୍ଦୁଥାଏ । ସେ ଠିଆ ହୋଇ ପଡ଼ି ସଲମା ଉପରକୁ ନଇଁଆସି କହିଲା... 'ସୁରୈୟା ମୁଁ ଗ୍ରେର ନୁହେଁ... ତାକୁ କହିଦିଅ ସୁରୈୟା ମୁଁ ଗ୍ରେର ନୁହେଁ... କହିଦିଅ ଜମଶେଦିଆ ଗ୍ରେର ନୁହଁ... !''

'ୟୁ ଆର ରିଏଲୀ ଭେରୀ ଡ୍ରଂକ୍ ମିଷ୍ଟର ଜମଶେଦ !' ସଲମା ବିରକ୍ତିରେ ମୁହଁ ବୁଲେଇ କହିଲା ।

ଅଗ୍ରନକ ସେ ଗାଇବାକୁ ଲାଗିଲା ... 'ନିଆଁ ଲାଗି ସୁନ୍ଦର ବନ ଜଳିଗଲାରେ... !'

ସୁରୈୟା ଦୀର୍ଘନିଶ୍ୱାସ ନେଇ ସୋଫାରୁ ଉଠିପଡ଼ିଲା ଓ ସଲମା ସାଙ୍ଗରେ ମିଶି ତାକୁ ଟେକାଟେକି କରିନେଇ ବଡ଼ ସୋଫାରେ ଶୁଏଇ ଦେଲା । ବାକି ଅତିଥିମାନେ ବି

ବାରରୁ ଉଠି ଚାଲି ଯାଇଥିଲେ । ମିଷ୍ଟର ପେଟ୍ରିକ୍ କପଡ଼ାରେ ବାରର ଓଦା ଚଟାଣ ପୋଛିନେଲା ଆଉ ବାହାରକୁ ଚାଲିଗଲା । ଜମଶେଦ ସୋଫାରେ ପଡ଼ି ପଡ଼ି ଏକ ଅତି ପୁରୁଣା ଥିଏଟର ଗୀତ ଗାଇବା ଆରମ୍ଭ କରିଦେଲା...

ଆପଦର ନିଆଁ ଝୁଲ ମୁଁ ପଲକରେ ନାଚ ନଚେଇ ଦେବି
ପଲକରେ ନିଆଁ ଜଳେଇ ଦେବି...
ଯାହାକୁ ଚାହିଁଲି ମାରିଲି ତାକୁ ପୁଅବାର ଆହା ପୁଅବାର
ପୁଅବାର... ପୁଅବାର... ପୁଅବାର...
ହୁର୍ରେ ହିପ୍ ହିପ୍... ହୁର୍ରେ ହିପ୍ ହିପ୍... ହିପ୍‌ହିପ୍...
ହିପ୍ ହିପ୍... ହିପ୍ ହିପ୍... ହିପ୍ ହିପ୍...

'ୟସ୍ ସାର, ଅଲରାଇଟ୍ ସାର' ଜମଶେଦ ଉଠି ସେଲ୍ୟୁଟ ମାରିଲା ଆଉ ପୁଣି ଶୋଇପଡ଼ିଲା ।

ମିଷ୍ଟର ପେଟ୍ରିକ ସେଦିନ ଡାକବିଡ଼ାଟି ଧରି ଭିତରକୁ ଆସିଲା । ''ସର, କେବୁଲ୍ ଆସିଛି । ସଂଧ୍ୟା ଡାକରେ ଚଟଗାଁବରୁ ଦୁଇଟି ଚିଠି ଆସିଛି। ଜରୁରୀ । ଟିକିଏ ଦେଖି ନିଅନ୍ତୁ ।''

'ଗେଟ୍ ଆଉଟ୍'

'ସର, ଖାନ୍ ବାହାଦୁରଙ୍କର ଏଗ୍ରିମେଣ୍ଟ । ମିଷ୍ଟର ଜନସନ୍‌ଙ୍କର କେବୁଲ... ମୋଷ୍ଟ ଅର୍ଜେଣ୍ଟ' ମିଷ୍ଟର ପେଟ୍ରିକ କହିଲା ।

ଜମଶେଦ ସୋଫା ଉପରେ ଠିଆ ହୋଇପଡ଼ି ପୁଣି ଗାଇବା ଆରମ୍ଭ କରିଦେଲା...

'ଏ ଅଜବ କଉତୁକ ଦେଖାଇଲା ଶୀରାଁ
ତେଣେ ହାତେ ମଂଜୁଆତୀ ଲଗାଇଲା ଶୀରାଁ
ପୁଣି 'କୋହକନ' ଦେଲା ମନେ ନିଆଁ ଜାଳି
ନିଆଁ ଲାଗି ସୁନ୍ଦର ବନ ଜଳିଗଲାରେ ।'

(ଏହା ପ୍ରସିଦ୍ଧ ଶୀରାଁ ଫରହାଦ ପ୍ରେମ କଥାର । 'କୋହକନ'— ଶୀରାଁର ପ୍ରେମୀ ଫରହାଦର ଉପାଧି । ସେ ଶୀରାଁର ଆଦେଶରେ ପାହାଡ଼ କାଟୁଁ କାଟୁଁ ପ୍ରାଣ ବିସର୍ଜନ କରିଥିଲା— ଉର୍ଦ୍ଦୁ ହିନ୍ଦୀ ଶବ୍ଦକୋଶ— ମୁହମ୍ମଦ ମୁସ୍ତଫା ଖାନ୍ 'ମଦ୍‌ଦାହ'— ପୃଷ୍ଠା ୧୪୦— ଅନୁବାଦକ)

ସଲମା ଗୋଟାଏ ମେଜ ଉପରକୁ ଚଢ଼ିଯାଇ ବସିପଡ଼ିଥିଲା ଆଉ ଆଣ୍ଠୁ ଉପରେ ମୁଣ୍ଡରଖି ଚଟାଣକୁ ଅନେଇ ରହିଥିଲା । ଜମଶେଦ ସୋଫା ଉପରୁ ଡେଇଁପଡ଼ି ତା ଆଡ଼କୁ ମୁହେଁଇଲା ।

'ଗୁଲାଲ ଜୁଲ୍ଫୋ ମେଁ ଉନକୀ ପଡ଼ା ଥା ହୋଲୀ ମେଁ,
ତୋ ଲାଲା ବୋଲା କି ମୁଷ୍କେ ଖତନ ମେ ଆଗଲଗୀ ।''

[ହୋରି ସମୟରେ ତାଙ୍କର କେଶରେ ଅବିର ପଡ଼ିଥିଲା ଯେ 'ଲାଲା' (ସ୍ନେହ ସଂବୋଧନଟିଏ) କହିଲା କସ୍ତୁରୀ ପ୍ରଦେଶରେ ନିଆଁ ଲାଗିଛି]

ସେ ସଲମାର ବାଳ ଆଦରରେ ଆଉଁସି ଆଣିଲା । ସଲମା ରାଗରେ ମୁହଁ ବୁଲେଇ ନେଲାରୁ ସେ ଡେଇଁଲା ଭଳି ମେଜ ଉପରକୁ ଚଢ଼ି ଆସିଲା ଆଉ ତା ସାମନାରେ ଆଣ୍ଠୁ ମାଡ଼ି ବସିପଡ଼ି ଏଡ଼େ ପାଟିରେ ଗାଇ ବସିଲା ।

'ଏ ଗୁଣ ତୋ'ଠାରେ ହିଁ, ଦେଖିଲି ପିୟା ରାଗିଥିଲେ
ହୋଇଛି ରଙ୍ଗିଆ ତୋ ମୁହଁଟି ସିନା ରାଗ ଲାଗି...
ତେଣୁ ବୁଲବୁଲ ବି ଗଲା ଜାଣିଗଲା ବଗିଚ୍ଚାରେ...
ଲାଗିଛି ନିଆଁ
ଆରେ ହାଁ ଲାଗିଛି ନିଆଁ ।'

'ୟୁ ସଟ୍-ଅପ୍ ପ୍ଲିଜ୍ ।' ସଲମା ବିବ୍ରତ ହୋଇ କହିଲା । ଆଉ ପବନରେ ତା'ପରେ ହାତ ହଲେଇବାକୁ ଲାଗିଲା ଜମଶେଦ ।

'ମୁଁ ତା' ସରଳ କଥା କେଉଁ ଭଳି ବଖାଣିବି
ସଂଜ ଲାଲିମା ଦେଖି କହୁଛି ମୋ ଯୁବା ମନ
ଅଜବ ତମଶା ଅଛି ଆକାଶର ଚକରେ...
ଲାଗିଲା ନିଆଁ
ହଁ ଲାଗିଲା ନିଆଁ ।'

'ସୁରୈୟା ଦିଦୀ' ସଲମା ମେଜରୁ ଓହ୍ଲେଇ ପଡ଼ି ଡାକିଲା । ସୁରୈୟା କାନ୍ଥକୁ ଆଉଜି ଘୁମେଇ ପଡ଼ିଥିଲା । ସେ ଗୋଟିଏ ଆଖି ଖୋଲି ଚାହିଁଲା ।

'ପରୀ ସୁନା, ମତେ ବୁଝେଇ ଦିଅ ଡାର୍ଲିଙ୍ଗ ସୁରୈୟା ଦିଦୀ କେମିତି... କାହିଁକି ଆଉ କୋଉ ପଟୁ । ଆଦି... ଆଦି... ।' ଜମଶେଦ ଆଙ୍ଗୁଠି ହଲେଇ ହଲେଇ ସଲମାକୁ ପଚାରିଲା ।

'ସର୍' ପୁଣି ଥରେ ମୁହଁ ଖୋଲିଲା ମିଷ୍ଟର ପେଟ୍ରିକ— 'ସର ଡାକ ଦେଖିନିଅନ୍ତୁ ।'

'ଅଲ...ରାଇଟ୍, ଅଲ୍ ରାଇଟ୍ ୟୁ ବ୍ଲେକ ମେନ୍— ଗୋଲାମର ଗ୍ଲେଲାମର ତୋଲାମ... ନୌକରର ଚୌକର... ସୁବିଧା ଖୋର ! ମିଷ୍ଟର ଏସ୍,ଡି.ଜନସନ ସାହବ ବାହାଦୁର ଆଇ.ସି.ଏସ୍ ରିଟାୟର୍ଡ୍‌କୁ କେବୁଲ ମାର୍ ଆଉ ଦେଖ ମୋର ଜାସ୍ତି ଟାଇମ୍ ବରବାଦ କଲେ ଏମିତି ଠୋକେଇ କରିବି, ଏମିତି କରିବି ଯେ ଜନମି ଥିଲୁ ବୋଲି ତୋର ଦୁଃଖ ହେବ ।' ଏଇଆ କହି ସେ ବ୍ୟବସାୟୀ ଚିଠି ସବୁ ଖୋଲି ବସିଲା । ମିଷ୍ଟର ପେଟ୍ରିକ ଚଞ୍ଚଳ ଫାଉନ୍‌ଟେନ୍ ପେନ୍ ଦେଲା । ସେ ଉପରେ ଉପରେ ଆଖି ବୁଲେଇ ନେଲା । ଆଖି ବନ୍ଦ କରି ଗୋଟାଏ ଫର୍ମ ଉପରେ ସ୍ୱାକ୍ଷର କଲା । ଆଉ ବାକି ଚଟାଣ ଉପରକୁ ଫୋପାଡ଼ି

ଦେଲା । ପେଟ୍ରିକ ବାହାରକୁ ଗ୍ଡ଼ିଗଲା । ଗୋଟାଏ ଲଫାପାରେ ଭାରତର ଟିକଟ ଆଉ ମୋହର ଲାଗିଥିଲା । ଜମଶେଦ ସେଇଭଳି ମଦ ନିଶାରେ ଲଫାପା ଖୋଲିଲା ଆଉ ଚିଠି ଉପରେ ଆଖି ବୁଲେଇ ନେଲା । କପାଳରେ ଗାରଟାଣି ହୋଇ ଯାଉଥାଏ । ସେ ଅପଲକ ଆଖିରେ ଚିଠିଟି ପଢୁଥାଏ—

ଶୁରୁ ଆଲ୍ଲାହ କେ ନାମସେ...

ଦରଘା ଶରୀଫ ନିକଟ, ମୌଜା ଗ୍ରାମ ମୋହମ୍ମଦ ଗଂଜ, ତହସୀଲ ହିରୌନୀ,

ଜିଲ୍ଲା ମଲିକ ପୁର, ଉତ୍ତର ପ୍ରଦେଶ । ୧୪ ଜୁନ୍ ସନ୍ ୧୯୬୧

ମୋର ନୟନପିତୁଲା ସୌଭାଗ୍ୟଶାଳୀ ସୁପୁତ୍ର ଜମଶେଦ,

ଈଶ୍ୱର ତୁମର ମଙ୍ଗଳ କରନ୍ତୁ ।

ଜାଣିବ ଯେ ଗଲା ୧୨ ଜୁନ୍ ଶୁକ୍ରବାର ଦିନ ରାତି ଦଶଟାରେ ଆମର ପ୍ରିୟ ଝିଅ ମଜୁରୁନ୍ନିସା ଟି.ବି.ରେ ସ୍ୱର୍ଗାରୋହଣ କଲା । ଈଶ୍ୱର ତାକୁ ଦେଇଥିଲେ ଓ ନେଇଗଲେ । ସ୍ୱର୍ଗୀୟାକୁ ଖାନକାହ (ମଠ)ର କବରଖାନାରେ, ସ୍ୱର୍ଗୀୟ ଭାଇଙ୍କ ପାଖରେ ପାର୍କ କଡ଼ରେ କବର ଦିଆଗଲା । ସେ ସ୍ୱର୍ଗୀୟା ମଲାବେଳେ ତମକୁ କ୍ଷମା କରିଯାଇଛି । ତମର ଈଶ୍ୱର ବି ତମକୁ କ୍ଷମା କରନ୍ତୁ ।

ଶୁଭାକାଂକ୍ଷୀ

ତମର କାକା

ସୈୟଦ ମଜହର ଅଲୀ ।

ଜମଶେଦ ଚିଠିଟିକୁ ମୁଠେଇ ଧରି ବେଶ୍ ଜୋରରେ ମକଚିବାକୁ ଲାଗିଲା । ଆଉ ଥରେ ପଢ଼ିଲା ଆଉ ପୂରାସଳଖି ବସିଲା ।

ସୁରେୟା ଆଉ ସଲମା ଅନେକ ଦୂରରେ କୁଶନ ଭରାଦେଇ କାନ୍ଥକୁ ଲାଗି ବାଁକେଇ ବାହୁରେ ମୁଣ୍ଡରଖି ଶୋଇଥିଲେ । ବାହାରର ନାଚ ଗୀତ ସରିସାରିଥିଲା । ଆଉ ଅତିଥିଙ୍କର ଭିଡ଼ ବି କମି କମି ଆସୁଥାଏ ।

କୋଠରିରେ ଶ୍ମଶାନର ନୀରବତା ଭରିଗଲା । ନିର୍ଜନ ଖାନକାହର ସବୁ କବାଟ ଜୋରରେ ଖୋଲିଗଲେ ଆଉ ଧଡ଼ଧଡ଼ ବାଡ଼େଇ ହେଲେ । ଆରେ, ଈଶ୍ୱର କୃପାଳୁ ତା'ର ଭକ୍ତକୁ କେତେ ବିରାଟ ସଂପତ୍ତି ଦେଇଥାଏ... ଧୈର୍ଯ୍ୟର ସଂପତ୍ତି । ଧୈର୍ଯ୍ୟର ସଂପତ୍ତି ! ବଡ଼ବାପା ବାଳ ଝାଡ଼ି ତାଙ୍କର ନାରଙ୍ଗୀ 'କଫନୀ' ସଜାଡ଼ି ଧରି ତାଙ୍କର ଶୂନ୍ୟ କୋଠରି ଭିତରୁ ଅନେଇଲେ । କଠଉ ପିନ୍ଧି, ଖଟ୍ ଖଟ୍ କରି ସିଢ଼ି ଓହ୍ଲେଇ ଆସି ପୁଣି ତାଙ୍କର କବର ଭିତରକୁ ପଶିଗଲେ । ପବନ ଜୋର୍ ଜୋର୍ ଶିମୁଳି ଗଛମାନଙ୍କରେ ଭଉଁରୀ କାଟିଲା । ବେଶ ଥଣ୍ଡା ଥିଲା ପବନ । ହେଲେ ତାହା ଲୁ.ର ଜଳନ୍ତ ଘାତ ପାଲଟିଗଲା... ସାଏଁ ସାଏଁ.. ସାଏଁ ସାଏଁ... ଜୂ ଦୂଁ... ଧୂଁ ଧୂଁ...ଧୂଁ... ଝଡ଼ିବର୍ଷା ଆରମ୍ଭ ହୋଇଗଲା ଆଉ

ଜଙ୍ଗା କବର ବର୍ଷା ପାଣିରେ ତିନ୍ତିବାକୁ ଲାଗିଲା । ବାଦଲ ରହିଲା ନାହିଁ- ଜହ୍ନ ଉଇଁଲା... 'ସଧବାର କବର, 'ଜବେଁ' ରାତିରେ ଗୁମେଲୀ ଭଳି ମହକି ଯାଏ... ' ଛେଳି ଆଡ଼େଇ ଯାଉଥିବା ମାଇକିନାଟି କହିଲା । ଜମଶେଦ ଜୋର୍‌ଜୋର୍ କାନ୍ଦିବାକୁ ଲାଗିଲା ।

'ନିଶା ତମର ଏଯାଏଁ ଉତୁରି ନାହିଁ ? ସୁରୈୟା ଆଖିଖୋଲି ଥଙ୍ଗା କଲାଭଳି ପଗ୍ରରିଲା ।

ଆବିଦ ଅଂସରୀ ଚଞ୍ଚଳ ପାଦରେ ସିଢ଼ିରେ ତେ୍ୈ ତେଇଁ ଧଇଁସଇଁ ହେଇ ଲାଉଞ୍ଜରେ ପହଞ୍ଚିଲା । ଆଉ ଡାକ ପକେଇଲା— 'ମଂସୂର... ମନସୂର... ।'

ମଂସୂର ଗୋଟିଏ ହାତରେ ଗିଲାସ, ଅନ୍ୟ ହାତରେ ରିସିଭର ଧରି ଫୋନ ଉପରକୁ ନଇଁ ଆସିଥିଲା । ଆବିଦ ତା' ପାଖକୁ ଆସି ଗ୍ରରିପଟକୁ ଦେଖିଲା ଆଉ ଧୀର ଗଳାରେ କହିଲା— 'ମଂସୂର ... ପ୍ରଳୟ ଗ୍ରଲିଗଲା ... !'

ମନ୍‌ସୂର ଆଖି ଟେକି ତାକୁ ଅନେଇଲା ଆଉ ରିସିଭରକୁ ହାତରେ ଲୁଚେଇ ଜବାବ ଦେଲା... 'ମୁଁ ଜାଣି ସାରିଲିଣି ।' ସେ ରିସିଭିରକୁ ଗୋଟାଏ ମିନିଟ ଲାଗି ଧରିଥାଏ ଆଉ ପରେ ପୁଣି ଫୋନ୍ ଉପରେ ରଖିଦେଇ ଚଟାଣ ଉପରେ ବସିପଡ଼ିଲା । ଲାଉଞ୍ଜ ଖାଲିଥାଏ । ଆବିଦ ଟେଲିଫୋନ୍ ପଟକୁ ଆଗେଇଗଲା ।

'ବେକାର !' ମଂସୂର ହାତ ବଢ଼େଇ ତାକୁ ଅଟକାଇ ନେଲା ।

'ପୁଲିସ କହୁଛି ସେ ଆତ୍ମହତ୍ୟା କଲା ଆଉ ଜେଲ ଅଫିସରଙ୍କ କଥା ହେଲା ପୁଲିସ ତାକୁ ଥାର୍ଡ ଡିଗ୍ରୀ...' ଆବିଦ ଗ୍ରରିପଟକୁ ସତର୍କ ହୋଇ ଅନେଇଲା ଆଉ ତୁରନ୍ତ ତୁନି ପଡ଼ିଲା । ଡ୍ରଇଂ ରୁମର କବାଟ ଧୀରେ ଖୋଲିଲା । ଲାଉଞ୍ଜର କଥାବାର୍ତ୍ତାର ଶବ୍ଦରେ ଡ୍ରଇଂରୁମ୍‌ରେ ଦିବାନ୍ ଉପରେ ଶୋଇଥିବା ସୁରୈୟାର ନିଦ ଭାଙ୍ଗିଗଲା । ସେ କବାଟ ପୂରା ଖୋଲି ବାହାରକୁ ଅନେଇଲା— 'ହେଲୋ ମନସୂର ଆବିଦ... ୟୁ ସୋ ଏଣ୍ଡ ସୋ... ତମେମାନେ କ'ଣ ସବୁ ମିସ୍‌କୋଟ କରୁଛ ?' ଏତିକି କହିଦେଇ ସେ ପୁଣି କବାଟ ଦେଇ କୁଶନ ଉପରେ ପଡ଼ିଯାଇ ପୁଣି ଶୋଇଗଲା ।

ଲାଉଞ୍ଜରେ ସେମାନେ ଦୁହେଁ ଫେସ୍‌କୋ ତଳେ ଚଟାଣ ଉପରେ ଦଶ ପନ୍ଦର ମିନିଟ୍ ପାଇଁ ସେମିତି ଚୁପ୍‌ଗ୍ରପ୍ ବସି ରହିଲେ...

ଅନେକ ବେଳ ପରେ ମଂସୂର ଧୀରେ ଧୀରେ କହିଲା—

'ଜାନ ବେଚନେ ଆୟେ ତୋ ବେଦାମ ବେଚ ଦୀ

ଐ ଏହଲେ ମିସ୍ର ବଜା ଏ ତକଲ୍ଲୁଫ ତୋ ଦେଖିଏ... ।'

(ଜୀବନ ବିକି ଦେବାକୁ ଆସି ବିନା ମୂଲ୍ୟରେ ବିକିଦେଲି । ମିଶ୍ର ନିବାସୀଙ୍କର ଶିଷ୍ଟାଗ୍ରର ତ ଦେଖ)

ଆବିଦ ଘଡ଼ି ଦେଖି ଉଠିଲା ଆଉ କହିଲା— 'ମୁଁ ଗ୍ରଲିଲି ପ୍ରେସ୍... ।'

'ଏ ଖବର ଛାପିବା ପାଇଁ ଚବିଶ ଘଣ୍ଟାର ନିଷେଧ ଅଛି । ବସ ।' ମଂସୂର କହିଲା ଓ ତା'ର ହାତ ଧରି ଚଟାଣରେ ବସେଇ ଦେଲା । ପାଖ ଟେବୁଲରେ ଥୁଆ ହୋଇଥିବା କଡ଼ା ମଦ ବୋତଲ ଉଠେଇ ଗିଲାସରେ ଢାଳି ଏକାଥରକେ ଖାଲି କରିଦେଲା । ଆବିଦ ଆଉ ଗିଲାସେ ଭରି ପିଇବା ଆରମ୍ଭ କଲା । ସେ ଝାଳନାଳ ହୋଇ ଯାଉଥାଏ ।

'ମୁଁ ଯାଉଛି' ସେ ପୁଣି କହିଲା 'ଇଏ ମୋର ଭାରି ବଡ଼ ସ୍କୁପଟିଏ !'

ମଂସୂର ମୁଣ୍ଡ ନୁଆଁଇ ଗ୍ଲାସରେ ଉଠି ଆସିଥିବା ଫେଣକୁ ଦେଖିଲା । ଆଉ ଧୀରେ ଧୀରେ କହିଲା— 'ଇଏ... ମୋର ସ୍କୁପ୍... ଯେ ତୋର ଆଉ ମୋର ଦି'ଜଣଙ୍କଠୁଁ ବଡ଼ ।'

'ଏ ରାତି... ଏ ରାତି ସେଇ ଫାଡ଼ାର ଗଛ...' ଆବିଦ ଭେଁ ଭେଁ କାନ୍ଦିଲା ଭଳି ଆଳାପ କଲା ଆଉ ସେଇ ଫ୍ରେସ୍‌କୋରେ ଭରା ଦେଇ ହିକା ମାରିଲା ।

ଦୁହେଁ ପୁଣି ମୌନ ହୋଇଗଲେ । ଆବିଦ ଆଉ ଗିଲାସେ ଚଢ଼େଇଲା । 'ମୁଁ ଯେ ଅନ୍ଧାର ରାହାରେ...' ସେ ପୁଣି ହିକ୍‌କା ମାରିଲା— 'ସେ ଫୈଜ ଅହମଦ ଫୈଜ— ଗ୍ରେଟ ମେନ୍ ଦି ଲନଠନ୍... ଜିନ୍ଦାବାଦ... ମଲା...।'

'ଜିନ୍ଦାବାଦ... ଚିୟର୍ସ... ଫର ୟୋର ହେଲଥ... ଓ୍ୱାଲେକମ ସଲାମ—' ମଂସୂର ଠିଆ ହୋଇ କହିଲା, ଆଉ ପୁଣି ବସିଗଲା । ଭିତରେ ସ୍ୱରବଦ୍ଧ ଘଣ୍ଟାଟି କୁଁକୁଁ କୁକୁ.. କୁଁକୁଁ କୁକୁ.. କୁଁକୁଁ କୁକୁ କରିବା ଆରମ୍ଭ କଲା । ଅଧଘଣ୍ଟା ଆଉ ଚାଲିଗଲା ।

'ଇଏ କିଏ... ।' ମଂସୂର ପଚାରିବାକୁ ଇଚ୍ଛା କଲା; ହେଲେ ଚାରିପଟକୁ ଦେଖି ଚୁପ୍ ଦେଲା ।

'ଇଏ କିଏ ?' ଆବିଦ ହିକ୍‌କା ମାରି ପଚାରିଲା ।

'ଇଏ କିଏ... ହୁକ୍କ ?' ମଂସୂର କିଛି ସମୟ ପରେ ପୁଣି କହିଲା ।

'ଇଏ କିଏ... ଫିଙ୍ଗିଛି ଶବ... ଯଉବନର... ରାହାରେ... ହିକ୍... ।' ଆବିଦ୍ କହିଲା ।

'ଏଇନେ ଚାଲିଛୁଁ ଆମେ... ଲଢ଼େଇର ରାହାରେ...' କହିଲା ମଂସୂର ।

କେତୋଟି ୟୁରୋପିୟନ ଝିଅ ତାଙ୍କର ଖସ୍‌ଖସ୍ ହେଉଥିବା ଇଭିନିଂ ଗାଉନ୍ ଆଣ୍ଠୁ ଉପରକୁ ଟେକି ଖିଲଖିଲ ହସି ହସି ଆଲିୟାର ଡ୍ରେସିଂରୁମ ପଟକୁ ଚାଲିଗଲେ ।

'ସେ ଜୋର ଆଉ ଅତ୍ୟାଚାରର ହାତ ମୋଡ଼ି ମକଚି ବାହାରି ଆସିଲା—' ଆବିଦ କହିଲା ।

'ଅନ୍ଧାର ରାତି ଥିଲା.. ହୁକ୍... ହେଲେ ସେ ଚାଲିଗଲା ।' ମଂସୂର କହିଲା ।

'ତେବେ ସେ କା'ର ଶବ ଯେ ଏଇନେ ବି ଗୋଡ଼ ବେଡ଼ି ଲାଗିଛି ?' ମଂସୂର କହିଲା ।

'ଜେଲ ଅଫିସରମାନଙ୍କର ବୟାନ ହେଲା— ତାର ହାତ ପାପୁଲିରେ କଣ୍ଟା ମରା ହେଲା... ହୁକ୍' ଆବିଦ କହିଲା ।

ବୈରା ଉଛୁଳି ଆସୁଥିବା ସ୍ୱଚ୍ଛ ପିଆଲା ଚକ୍ ଚକ୍ ରୂପେଲି ଟ୍ରେରେ ନେଇ ପାଖକୁ ଆସିଲା । ସେମାନଙ୍କର ଖାଲି ପିଆଲା ନେଇଗଲା ଆଉ ସେମାନଙ୍କୁ ନୂଆ ଗିଲାସ ଧରେଇ ଆଗକୁ ବଢ଼ିଗଲା ।

'ଆରେ, ଈଶ୍ୱର କୃପାଳୁ ତାର ଭକ୍ତଙ୍କୁ କେତେ ସଂପଦା ଦିଏ... ।' ଡ୍ରଇଂରୁମରୁ ଜମଶେଦର କଥା ଶୁଭିଲା । ସେ ସୋଫା ଉପରେ ଠିଆ ହୋଇ ଶୂନ୍ୟକୁ ହାତ ହଲଉ ଥାଏ ।

ସେ ଦୁଃଖର ସଂଧ୍ୟାର ଛାଇଥିଲା ଆଉ ଥିଲା ଏକ ଚେତାବନୀ । ଆମେ ଇ ଏଇନେ ତାକୁ ଦଳି ନ ଦଉ ଯେମିତି । ଏ ଦଳିଦେବା ଜିନିଷଟି କେମିତି କ'ଣ ଧରିତ୍ରୀର ଥାତି ହେବ ।' ମଂସୂର କହିଲା ଆଉ ଗିଲାସ ଖାଲି କରିଦେଲା । 'କହ ମିଷ୍ଟର ଆବିଦ ଅଂସାରୀ, କାହିଁକି ଧରତୀର ଥାତି ହବ ? ନା... ନା... ବଢ଼ିଚ୍ଲ, ଦଳି ଚ୍ଲ ।' ସେ ଆଙ୍ଗୁଠି ଟେକି କହିଲା ।

'ଦଳା ବି ତ... ହୁଇ୍... ପଂତରଝରାର କଢ଼ ସବୁ ଏ ଶବ, ଏ ମୃତ୍ୟୁର ମୂର୍ତ୍ତି... କେତେବେଳେ ହେଲା ଉରେଇଲାଣି, ରକ୍ତ ସରସର ହୋଇ ରହିଛି ପାଦର ମୁଣ୍ଡଯାଏ ।... ଜମି ରହିଥିବା ରକ୍ତରେ ମୋର ହିଁ ରକ୍ତର ବାସ୍ନା ଅଛି ।'

'ବାସ୍ନା' ସେ ଏତେ ଜୋର୍‌ରେ କହିଲା ଯେ ଆବିଦ ଡେଇଁ ଠିଆ ହୋଇପଡ଼ିଲା ଆଉ ତା'ଠାରୁ ଅଧିକ ଗର୍ଜନ କରି କହିଲା—

'ଏ ମୋ ସ୍କୁପ କହି ରଖୁଛି । ଏ ମୋ କେରିୟରର ସବୁଠାରୁ ବଡ଼ ସ୍କୁପ ।' ସେ ଲାଉଞ୍ଜରୁ ତଳେ କିଆରି ଉପରକୁ ଡେଇଁ ପଡ଼ିଲା ଆଉ ଲଡ଼ବଡ଼ ହେଇ, ଦଉଡ଼ି, ଚଉକିମାନଙ୍କରେ ଝୁଣ୍ଟି ଧକ୍କା ଖାଇ, ଯୋଉଠି ଜଣେ ଅଧେ ଅତିଥି ମଦନିଶାରେ ଏଣେତେଣେ ଗଡ଼ି ଯାଇଥିଲେ, ସେମାନଙ୍କୁ ଡେଇଁ ଦ୍ରୁତଗତିରେ ଫାଟକ ଡେଇଁ ପହଞ୍ଚି ସୁରୈୟାର ନୀଳ ଫୋକ୍ସ ୱାଗନକୁ ଚଢ଼ିଯାଇ ଥାଟ୍‌ରେ ତାର ଖବରକାଗଜ ଅଫିସକୁ ଛୁଟିଗଲା ।

ମଂସୂର ତାକୁ ଯିବାବେଳେ ଦେଖିଲା ଆଉ ମୁଣ୍ଡ ହଲେଇ କହିଲା— 'ଆବିଦ ମିଆଁ, ମୁଁ ତୋ ପହଞ୍ଚିବା ଆଗରୁ ମୋ ଖବରକାଗଜକୁ ଫୋନ କରିସାରିଛି ।' ତା'ପରେ ସେ ମଧ୍ୟ କିଆରୀକୁ ଡେଇଁ ପଡ଼ିଲା ଆଉ ମୁଣ୍ଡ ନୁଆଁଇ କଙ୍କଡ଼ା ଭଳି ତେରେଛା ତେରେଛା ଚ୍ଲିରେ ଅନ୍ଧାରରେ କୁଆଡ଼େ ହଜିଗଲା ।

ସୁରୈୟା ଉଠିପଡ଼ି ଆଖି ମଳି ସଲମାର ବାହୁଧରି ହଲେଇ ଦେଇ କହିଲା... । 'ଉଠ ସଲମା, କ'ଣ ଏଠି ରାତିସାରା ଶୋଇଯିବା ଇଚ୍ଛା ନା କ'ଣ ?'

'ମତେ ଶୋଇବାକୁ ଦିଅ ସୁରୈୟା ଦିଦୀ, ମୁଁ ବେଶ ଥକି ଯାଇଛି ।' ସଲମା କଡ଼ ଲେଉଟେଇ କହିଲା ।

ଜମଶେଦ ସୋଫା ଉପରୁ ଡେଇଁପଡ଼ି ଟୁଳଟୁଳ ହେଇ ଏ ଝିଅଙ୍କ ପାଖକୁ ଆସି ସଲମାର ମୁହଁ ଉପରେ ମୁହଁ ରଖି ପଗ୍ୱରିଲା... 'ସୁନାପରୀ, ଟିକିଏ କହ ତ ଡାର୍ଲିଙ୍ଗ ସୁରୈୟା ତମର କେମିତି ଦିଦୀ, କାହିଁକି, କୋଉଭଳି ଦିଦୀ... ଏଁ !'

ସଲମା ହଡ଼ବଡ଼େଇ ଉଠିଲା । ଆଉ ଜମଶେଦକୁ ପୂରା ତାକତ ଖଟେଇ ଠେଲିଦେଇ ଘୃଣାରେ କହିଲା— 'କିପ୍ ଏଓ୍ୱେ ୟୁ ଡର୍ଟି ଡଗ୍ !'

'କ'ଣ ସୁନା.. ? ମୁଁ ଡର୍ଟି ଡଗ୍ ଆଉ ତୁ ? ତୁ କ'ଣ ? ୟୁ ଡର୍ଟି ବ୍ଲଡ଼ି ବିଚ୍ ।'

ସୁରୈୟା ରାଗରେ ନିଆଁ ହୁଳ ଭଳି ଉଠିପଡ଼ି ଜମଶେଦ ଗାଲରେ ତାର ସବୁ ଶକ୍ତି ଖଟେଇ ଚଟକଣାଟିଏ ବସେଇଦେଲା—

'ଜମଶେଦ ଅଲୀ ସୈୟଦ, ତମେ ଯେତେ ନିଶାରେ ବି ଥାଅ ନା କାହିଁକି, ତମେ ମୋ ସାମ୍ନାରେ 'ଛୋଟି ବିଟିୟା'ର ବେଇଜ୍ଜତି କଲେ ମୁଁ ତମର ଦାନ୍ତ ଭାଙ୍ଗିଦେବି । ଖୁଣ କରିଦେବି ('ଛୋଟି ବିଟିୟା' ସାନ ଝିଅ ପାଇଁ ସ୍ନେହସୂଚକ ପ୍ରୟୋଗ ।)

'ଆହା ହାଃ.. ହା..ହାଃ..ହା.. ବାଃ... ! 'ସାନ ଝିଅ'— ଏ ଆପଣଙ୍କର ସାନ ଝିଅ ! ଆପଣ ତାର ଅମ୍ମା... ଆଦରଣୀୟ ମାତା... ବୈ ଖୁଶ୍ ଚରା ନବୂଦୀ... ଛପ୍ପର ପେ ଭୈଁସ କୁଦୀ... (ଏହାତ ଆଶ୍ଚର୍ଯ୍ୟ କଥା ଯେ ତମେ କୋଉଠି ହେଲେ ନଥିଲ ଆଉ ଛପର ଉପରକୁ ପୋଢ଼ ଡେଇଁ ପଡ଼ିଲା) ! ଆଜି ରାତିରେ ବେଶ ବଡ଼ ବଡ଼ ରହସ୍ୟ ସବୁ ଖୋଲୁଛି... ମୋତେ ଚଉଦ ଦୁଣେ ଅଠାଇଶ ଭୁବନ ଦିଶୁଛି ।' ତା'ପରେ ସେ ଜୋର ଜୋର ଗାଇବା ଆରମ୍ଭ କଲା... 'ଆଜି ରାତି.. ଆଜି ରା... ଆଜି... ରା...ତି.. ଆ...ଜି... ରା...ତି ।' ଆଉ ଦିବାନ୍ ତଳେ ପଡ଼ିଥିବା ଗାଲିଗ୍ୱ ଉପରେ ଧମ୍ କିନା ବସି ପଡ଼ିଲା ।

ଥରଥର କମ୍ପୁଥାଏ ସଲମା । ସେ ସୁରୈୟାକୁ ଜାବୁଡ଼ି ଧଇଲା, ଯେମିତି ସେ ତାର ଆଶ୍ରୟ ଲୋଡୁଛି ।

ସୁରୈୟା ଏକାଏକ ସଚେତନ ହେଲା ଆଉ ଧୀର ଗଳାରେ ଜମଶେଦକୁ କହିଲା— 'ଜମଶେଦ, ସଲମା ତମ ଅଫିସରେ ଗ୍ୱରିମାସ ହେଲା କାମ କଲାଣି ଆଉ ତମେ ଏଇଆ ବି ଜାଣିନ ଯେ ସେ କିଏ... କା'ର ଝିଅ !'

'ମୋତେ ମାଡ଼ାମଙ୍କର ବଂଶ ପରମ୍ପରା ଆଉ ହିଷ୍ଟ୍ରି ସିଟ୍ ଜାଣିବାର ଆଦୌ ଦରକାର ନାହିଁ । ତାଙ୍କର ପର୍ସନଲ ଫାଇଲ ମୋର ଏସିଏଣ୍ଟ ମନ୍ତ୍ରୀ ମିଷ୍ଟର ପେଟ୍ରିକ ଡିଲ କରୁଛି । ମୋର ଗରଜ ହେଲା— ଇଏ ମୋର ଗ୍ରକର ଆଉ ମୋର କ୍ଲାଏଣ୍ଟସ୍‌ଙ୍କୁ ଏଣ୍ଟରଟେନ୍ କରିବା ବାଲୀ... ମିସ ଛପନଛୁରୀ...' ତା'ପରେ ସେ ପୁଣି ଗାଇବା ଆରମ୍ଭ କରିଦେଲା... 'ଏମିତି ନ ହେଉ କେହି ଯେ ପଛେ ଦେଶ.. ଆଗେ ଦଶ !'

ସୁରୈୟା ରାଗରେ ନିଜକୁ ସମ୍ଭାଳି ନପାରି ପୁଣି ତିନି ଗ୍ୱରି ଚଟକଣା ବସେଇ ଦେଲା । ସେ ହାତ ଆଗକୁ କରି ସୁରୈୟାର ହାତକୁ ଅଟକେଇବାର ଚେଷ୍ଟା କରୁଥାଏ ।

ସଲମା ଡରି ଡରି ସୁରୈୟାକୁ ପାଖକୁ ଟାଣି ଆଣିବାର ଚେଷ୍ଟା କରି କହୁଥାଏ... 'ସୁରୈୟା ଦିଦୀ... ଆଉ.. ଈଶ୍ୱରଙ୍କ ଦୁହାଇ.. ସୁରୈୟା ଦିଦୀ ।'

ସୁରୈୟା ଚିତା ଭଳି ଝପଟି ଆସି ପୁଣି ଜମଶେଦ ଆଗରେ ଠିଆ ହେଲା । ବିଦ୍ରୂପ କରି କହିଲା— 'ହଁ, ଜମଶେଦ ଅଲୀ ସୈୟଦ, ଆଜି ରାତିଟି ସତରେ ଅନେକ ଅନେକ ରହସ୍ୟ ଖୋଲିଯିବାର ରାତି ।'

ସେ ସୁରୈୟାର ଉଗ୍ରରୂପ ଦେଖି ଡରିଗଲା । ତା'ପରେ ହାତ ଯୋଡ଼ି ପକେଇ କହିଲା— 'ଡାର୍ଲିଙ୍ଗ, ମତେ ମାରନାଇଁ, ଧମକାଅ ନାଇଁ ।'

ପିଞ୍ଜରା ଭିତରେ ଆବଦ୍ଧ ବାଘୁଣୀ ଭଳି ଏଣେତେଣେ ଘୂରି ଘୂରି ସୁରୈୟା କହିବା ଆରମ୍ଭ କଲା— 'ଜମଶେଦ ଅଲୀ ସୈୟଦ, ଆଜି ଖାଇବା ଟେବୁଲରେ ମୋର ପହିଲା କରି ତମର ଅବ୍‌ବାଜାନ୍‌ଙ୍କ ସାଙ୍ଗରେ ଭେଟ ହେଲା ଆଉ ମୁଁ ତାଙ୍କୁ ସାଙ୍ଗେ ସାଙ୍ଗେ ଚିହ୍ନିଲି । ମୋହମ୍ମଦ ଗଂଜରେ ସେ ପ୍ରାୟ ଆମ ସାଙ୍ଗରେ ଭେଟ ହେବାକୁ ଆମ ଘରକୁ ଆସୁଥିଲେ ।'

ଜମଶେଦର ଚେହେରା ମଉଳି ଯାଇଥିବା ଦେଖି ସେ ଖିଲଖିଲ ହସିଲା— 'ଜମଶେଦ ଡାର୍ଲିଙ୍ଗ, ମୁଁ କୋଉ ତାଲୁକଦାରର ଝିଅ ନୁହେଁ । ମୁଁ କୋଉ ମସୌରୀ କନ୍‌ଭେଣ୍ଟରେ ପାଠ ପଢ଼ିନାହିଁ । କୋଉ ଶାନ୍ତିନିକେତନର ଚେହେରା ପର୍ଯ୍ୟନ୍ତ ଦେଖିନାଇଁ... ମୁଁ ସ୍ୱର୍ଗତ ସୈୟଦ ଜବ୍‌ବାର ହୁସୈନ୍, ଗ୍ରାମ, ମୋହମ୍ମଦ ଗଂଜ, ଜିଲ୍ଲା ମାଲିକପୁରର ଝିଅ । ତମେ ବି କାନପୁରର କୋଉ ପ୍ରସିଦ୍ଧ ଓକିଲର ପୁଅ ନୁହଁ । ତମେ ବି ସେଇ ମାଲିକପୁର ଜିଲ୍ଲା, ମୋହମ୍ମଦ ଗଂଜ ଗାଆଁର ଗ୍ରାମ ସୈୟଦ ମଜହର ଅଲୀର ପୁତୁରା; ଆଉ ତମେ କୋଉ କର୍ଣ୍ଣେଲ ବ୍ରାଉନ୍ ସ୍କୁଲ, ଡେରାଡୁନରେ ପାଠ ପଢ଼ିନ । ତମେ ଆଉ ମୁଁ.. ଆମେ ଦୁହେଁ ଆମର ପବ୍ଲିକ୍ ରିଲେଶନ୍ସ ଲାଗି କୋଉ ଏକ୍ସପାର୍ଟ ତିଆରି ଅଭିନେତା... ମନସୂର ଅହମ୍ମଦ ଖାନ୍ ଜିନ୍ଦାବାଦ । ମୋ ତୋଟି ଶୁଖିଯାଉଛି... କହି ସେ ଚଟାଣ ଉପରେ ବସି ପଡ଼ିଲା ।

ଜମଶେଦ୍ ଚୁପ୍‌ଚାପ ଉଠିଲା ଆଉ ବାର୍‌ରୁ ଦି' ଗିଲାସ ଢାଳି ଆଣିଲା ।

'ଆସ ଆମେ ଦୁହେଁ ପ୍ରିୟ ପ୍ରେସ ଏଜେଣ୍ଟ ମଂସୂର ଅହମ୍ମଦ ଖାନ୍‌ଙ୍କର ସ୍ୱାସ୍ଥ୍ୟ ଲାଗି ପିଇବା ।' ସୁରୈୟା ବେଶ ଗମ୍ଭୀର ଭାବରେ ଜମଶେଦର ଗିଲାସରେ ଗିଲାସ ଛୁଏଁଇଲା । ଜମଶେଦ ତାକୁ ଆକୁଳ ଅଥଚ ଅସଭ୍ୟ ଭଳି ଦେଖିଲା ।

'ବୁଚା ବେଗମ ପିଇସୀର ଝିଅ... ବସନ୍ତୀ ବେଗମ୍ ।'

ସେ କହି ଚାଲିଥିଲା— 'ତମର କାକା ସୈୟଦ ମଜହର ଅଲ୍ଲୀ ବିପଦ ମୁଣ୍ଡେଇବାକୁ ହେଉଥିଲେ ବି ନିଜ ମାଲିକାଣୀ ନବାବ ଶମ୍‌ସଆରା ବେଗମ ବିରୋଧରେ ସାକ୍ଷ୍ୟ ଦେଇଥିଲେ ଆଉ ମୋତେ ମିର୍ଯ୍ୟାଁ ନୌରୋଜର କବ୍‌ଜାରୁ ମୁକ୍ତ କରିଥିଲେ । ସେ ମୋତେ ସୁରକ୍ଷା ଦେଇଥିବା ଈଶ୍ୱର ଦୂତ । ସେ ତମ ଲାଗି ବି ଈଶ୍ୱର ଦୂତ । ତେବେ ତମେ ତାଙ୍କୁ ବି ଚିହ୍ନିଲ ନାଇଁ କିମ୍ବା ତାଙ୍କୁ ମର୍ଯ୍ୟାଦା ବି ଦେଇନ ।'

'ଛୋଟି ବିଟିୟା (ସଲମା, ଓଡ଼ିଆରେ କୁନୀ ଭଳି ସ୍ନେହସୂଚକ ଡାକ)ର ବାପା ମିର୍ଜା କମରୁଦ୍ଦିନ ଅହମ୍ମଦ ମୋତେ ଆଶ୍ରୟ ଦେଇଥିଲେ । ସେ ଅନ୍ୟର ମଙ୍ଗଳ କରିବା ବଦଳରେ କିଛି ଇଚ୍ଛା କରୁନଥିବା ମଣିଷଟିଏ । ସେ ମୋର ଦ୍ୱିତୀୟ ସୁରକ୍ଷାକାରୀ ଈଶ୍ୱର ଦୂତ.. ମୋର ତୃତୀୟ ସୁରକ୍ଷାକାରୀ.... ।' କହୁ କହୁ ସେ ହଠାତ୍ ରହିଗଲା । କିଛି ବେଳ ପରେ ଆପେ ଆପଣାକୁ ସମ୍ଭାଳିନେଇ ପୁଣି କହିଲା— 'ମୋର ସବୁଠାରୁ ବଡ଼ ସଂରକ୍ଷକ ମନସୁର ଅହମ୍ମଦ ଖାନ୍ ଆଉ ମୋର ଅନ୍ତିମ ଆଶ୍ରୟସ୍ଥଳ ସୁରଜରଲାଣ୍ଡର ସେଇ ବେଙ୍କ୍, ଯୋଉଠି ତମର ସମ୍ପତ୍ତି ଜମା ହେଇଛି । ଆସ ତମର ସେଇ ସ୍ୱାସ୍ ଏକାଉଣ୍ଟ ନାଆଁରେ ପିଆଯାଉ ।' ସେ ପୁଣି ଗିଲାସ ବଜେଇଲା। ଦୁଇବର୍ଷ ପେରିସରେ ରହି ମଧ୍ୟ ସେ କେବେହେଲେ ଏତେ ମଦ ପିଇ ନଥିଲା, ଯେତେ ସେ ଆଜି ସଂଧ୍ୟାରୁ ଏ ପର୍ଯ୍ୟନ୍ତ ପିଉଛି।

ଜମଶେଦ ତରି ତରି ସଲମାକୁ ଦେଖିଲା, ଯେତେବେଳେ ସେ ଛୁଆଟିଏ ଭଳି. ହାତ ମୁଠା କରି ଆଖି ମଳୁଥିଲା; ଆଉ ସୁରୈୟାର ପଣତ କାନି ଧରି ତା'ରି ଉତ୍ତୁଆଳରେ ଶଙ୍କିଯାଇ ବସିଥାଏ ।

କୁହୁଡ଼ିଘେରା ଆମ୍ରତୋଟାରେ ଉଷୁମ ଆଉ ଈଷତ୍ ଆଲୋକିତ ତମ୍ବୁ ଭିତରେ ସେଇ ଛୋଟିଆ ଝିଅଟି ଛତା ନେଇ ପାତଳ ମଧୁର ସ୍ୱରରେ 'ଥେଁକ୍ୟୁ' କହିଲା ।

କୋଠରି ଭିତରେ ଥରେଇ ଦେଲାଭଳି ନୀରବତା ଘେରି ରହିଥିଲା । ଦୁଇଟିଯାକ ବ୍ୟସ୍ତବିବ୍ରତ ଅସହାୟ ଝିଅ, ମୋହମ୍ମଦ ଗଂଜ ମନ୍ଦିରର ସୀତା ମୂର୍ତ୍ତି ଭଳି ତା ସାମନାରେ ବସି ରହିଥିଲେ । ସେ ଆଣ୍ଠେଇ ପଡ଼ି ନଇଁଗଲା ଆଉ ଧୀର ବାଷ୍ପରୁଦ୍ଧ କଣ୍ଠରେ କହିଲା— 'ମୋର ମଂଜୁରିଆ ମୋତେ ମରିବା ଆଗରୁ କ୍ଷମା କରିଦେଇ ଯାଇଛି । ସଲମା, ସୁରୈୟା, ତୁମେ ଦୁହେଁ ବି ମୋତେ କ୍ଷମା କରିଦିଅ ।'

'କେସେରା... ସେରା...' ଦି ତାଲାରୁ ଉଚ୍ଚୈସ୍ୱରରେ ଗୀତ ଶୁଭିଲା । ରାତିର ଗହନ ନୀରବତାରେ ଫେୟରୀର କେହି ବୟଫ୍ରେଣ୍ଡ୍ ରେଡିଓ ଗ୍ରାମରେ ଜୋରିସ୍ ଡେର ରେକର୍ଡ଼ ଲଗେଇ ଦେଇଥିଲା । ହଠାତ୍ ଆପଣା ଥାନରୁ ଉଠିପଡ଼ି ଜମଶେଦ ସିଢ଼ି ପାଖକୁ ଯାଇ ପାଟିକଲା... 'ଆରେ ଏ ଫରହତିଆ, ହାଲ୍ଲା ବନ୍ଦ କର ।' ସେ ଏତେ ଜୋରରେ ପାଟି କରିଥିଲା ଯେ ସାରା ଜମଶେଦ ହାଉସରେ କେବଳ ତାରି ପାଟି ଶୁଣାଗଲା । ଫେୟରୀ ଘାବରେଇ ଯାଇ ଉପରୁ ତଳକୁ ଉଁହୁକି ଅନେଇଲା ଆଉ ଡେଡୀଙ୍କର ପାଟି ଆଉ କହିବା ଢଙ୍ଗ ଲାଗି ବିସ୍ମିତା ହେଲା । ଡେଡୀ ଆଜି ପର୍ଯ୍ୟନ୍ତ ତାକୁ ସେଇ ଗାଉଁଲୀ ଅସଭ୍ୟ ନାଆଁରେ ଡାକି ନଥିଲେ ।

ସେ ଆସି ପୁଣି ସେଇ ଚଟାଣ ଉପରେ ବସିଗଲା । ମ୍ୟୁଜିକଲ କ୍ଲକଟି ମଧୁର ସ୍ୱରରେ ବଜେଇଲା ରାତି ଦୁଇ... ।

ସୁରୈୟା ଆଖି ବନ୍ଦ କରିନେଲା । ଧୀରେ ଧୀରେ କହିଲା— 'ସଲମାନ୍... ସଲମାନ୍... ତମେ ବି ମୋତେ କ୍ଷମା କରିଦିଅ । ତମେ ଯୋଉଠି ବି ଥାଅ ନା କାହିଁକି, ଯେକୌଣସି ଅବସ୍ଥାରେ ଥାଅ ନା କାହିଁକି, ମୋତେ କ୍ଷମା କରିଦିଅ, କ୍ଷମା କରିଦିଅ... ଏମିତି ଭାବରେ ମରିବାକୁ ଦିଅନାଇଁ ।'

କୋଠରିରେ ପୁଣିଥରେ ଶ୍ମଶାନର ନୀରବତା ଖେଳିଗଲା ।

ଜମଶେଦ କପାଳରେ ଦି' ହାତ ଥାପି ଏମିତି ବସି ଯାଇଥାଏ, ଯେମିତି ମଶାଣି ଜଗାଳି ଅନେକଗୁଡ଼ିଏ କବର ଖୋଳି ଥକା ମାରି ବସିଯାଇଛି । 'ନିଆଁ ଲାଗି ସୁନ୍ଦର ବନ ଜଳିଗଲାରେ... ।' ସେ ବସିଲା କଣ୍ଠରେ ଗାଇଲା ଆଉ ଗିଲାସରେ ଯାହା କିଛି ବଳକା ଥିଲା ଗୋଟାଏ ଢୋକରେ ପିଇନେଇ ଆଖି ମଳିଲା ଆଉ ଅତି କରୁଣ ସ୍ୱରରେ ଗାଇ ବସିଲା—

'ଜଲୀ ହୈ ଲାଶ ମେରୀ, ଆତ୍ଶେ ଜୁଦାରେ ମେଁ

'ମଦଦ୍ କୋ ପହୁଁଚ୍ଚେ ସନମ ଅବ କଫନ ମେଁ ଆଗ ଲଗୀ' (ଆତିଶ = ଉଜ୍ଜ୍ୱଳ ଆଲୋକ, ଅଗ୍ନି । ସନମ = ପ୍ରିୟତମ । କଫନ = ଶବ ଉପରେ ଘୋଡ଼ାଇବା ବସ୍ତ୍ର)

ତାପରେ ସେ କହିଲା— ବସନ୍ତୀ ବେଗମ୍, ତମେ ଆମ ଗାଁଆର ଚପାତୀ ଭାଣ୍ଡକୁ ମନେପକଉଛ ! ଏ ଗୀତଟି ସେ ଗାଉଥିଲା ।

ସୁରୈୟା ତା ଆଗରେ ଖୁଟୁମୁଟୁ ହୋଇ ବସିଗଲା । ଆଉ ତା' ସ୍ୱରରେ ସ୍ୱର ମିଳେଇ ଗାଇବା ଆରମ୍ଭ କରିଦେଲା 'ମଦଦ୍ କୋ ପହୁଁଚ୍ଚେ ସନମ ଅବ କଫନ ମେ ଆଗ ଲଗୀ'— କିଛି ସମୟ ପରେ ସୁରୈୟା ଚିତ୍କାର କଲା ଭଳି ଗାଇଲା ସେଇ ଗୀତ ।

ତା' ପରେ ସେମାନେ ଦୁହେଁ ଚୁପ୍ ହେଲେ । ସଲମା ଚୁପ୍‌ଚାପ୍ ଗାଲିଚାକୁ ଅନେଇ ରହିଥାଏ । ହଠାତ୍ ଏଡ଼େ ପାଟିରେ ଏକାନିଃଶ୍ୱାସରେ ଗାଇବା ଆରମ୍ଭ କଲା ସୁରୈୟା 'ପଲ ନ ଲାଗେଁ ମୋରୀ ଅଖିଆଁ ପିଉ, ପଲ ନ ଲାଗେଁ ମୋରୀ ଅଖିଆଁ । ପିଉ ନ ଲାଗେଁ... ପଲ ନ ଲାଗେଁ... ପଲନ ... * ।' ସଲମା ଡରିଯାଇ ତା କାନ୍ଧରେ ହାତ ଦେଇ କହିଲା.. 'ସୁରୈୟା ଦିଦୀ... ସୁରୈୟା ଦିଦୀ.. ଶୋଇପଡ଼ନ୍ତୁ... ପାଣି ପିଇ ନିଅନ୍ତୁ ଟିକିଏ !'

'ନା ମୁଁ ପୂରା ଭଲ ଅଛି ଛୋଟି ବିଟିୟା !' ସେ କହିଲା, ପଣତକାନିରେ ଝାଳେଇଲା ମୁହଁ ପୋଛିନେଲା । ତେବେ ଲୁହଧାର ଅନବରତ ଛୁଟି ଚାଲିଥାଏ । ତା'ପରେ ସେ ଧୀରେ ଧୀରେ କହିଲା 'ଜମଶେଦ, ମୋର ବି ଚପାତୀ ଭାଣ୍ଡର ଆଉ ଆଉ ଗୀତ ମନେଅଛି । ଶୁଣେଇବି ?' ତା'ପରେ ସେ ଛାତି କରତି ଦେଲା ଭଳି ସ୍ୱରରେ ଗାଇ ବସିଲା

---

* ଏ ଦୁଇଟି ଗୀତ ଉତ୍ତର ପ୍ରଦେଶୀ ଲୋକ ନାଟକର । ପିଉ=ପ୍ରିୟତମ । ମେଁହଦୀ = ମଞ୍ଜୁଆତି । କଜ ଅଦାଈ = ଠାଣୀ — ଅନୁବାଦକ)

'ଦିନ କୋ ଆ ସକତେ ନ ଥେ,
ଆନେ କୋ କ୍ୟା ରାତ ନଥା ।
ମେହଁଦୀ ପାଁବ ମେ ନ ଥା ଆପକେ,
ବରସାତ ନ ଥା... କଜ ଅଦାଈ କେ ସିବା
ଔର କୋଈ ବାତ ନ ଥା'' *

ତା'ପରେ ସେ ପୂରା ମୌନ ହୋଇ କୋଳ ଉପରେ ହାତ ରଖିବସିଲା ।

ସେମାନେ ତିନିହେଁ ଭଙ୍ଗା ଗିଲାସ, ଏଣେତେଣେ ପଡ଼ିଥିବା ଖାଲି ବୋତଲ, ଚଟାଣ ଉପରେ ଢଳିଯାଇଥିବା ମଦ, ଭାଙ୍ଗିରୁଜି ଯାଇଥିବା ଚିପସ୍‌ଗୁଡ଼ିକ ମଝିରେ ମୁଣ୍ଡ ପୋତି ଏମିତି ବସିଥିଲେ, ସତେ ଯେମିତି ସାରା ଦୁନିଆଁଟା ଧ୍ୱସ୍ତବିଧ୍ୱସ୍ତ ହୋଇଯାଇଛି । ଆଉ ସେମାନେ ଏ ଜଳିଯାଇଥିବା ପୃଥିବୀର ଅନ୍ତିମ ପ୍ରାଣୀ ।

ସେତେବେଳେ ଧଡ଼କିନା କବାଟ ଖୋଲିଲା ଆଉ ସେଠ୍ ଈଷା ଭାଇ ମୂସାଭାଇ ଘାସଲେଟବାଲା ଭିତରକୁ ଧସେଇ ପଶିଲା। ସେ ଆଗକୁ ବଢ଼ିଆସି ଷ୍ଟାମ୍ପ ପେପରଟିଏ ଜମଶେଦର ନାକ ସାମନାରେ ହଲେଇ ହଲେଇ କହିଲା—

'ଚଟଗାଁବରୁ ଟ୍ରଙ୍କକଲ ଆସିସାରିଛି ଜମଶେଦ ଭାଇ— ଏଇଠି ସାଇନ କର । ମୁଁ ଘରକୁ ଯିବି ।'

ଜମଶେଦ ମୁଣ୍ଡ ଟେକି ତାକୁ ଦେଖିଲା । ତା'ପରେ ଆଖି ମଳିଲା । ଆଉ ଧୀରେ ଧୀରେ ମନେପକେଇଲା ସେ କିଏ । ତା'ପରେ ସେ ଉଠି ଠିଆହେଲା ଆଉ ଆଖି ପୂରା ଖୋଲି ନିଜେ ନିଜକୁ ଦେଖିଲା— ଆଉ ସେତେବେଳେ ସେ ନିଜେ କିଏ ମନେପକେଇଲା । —ସେ ପ୍ରସିଦ୍ଧ ବିଜନେସ୍ ମେଗନେଟ ଜମଶେଦ ଅଲୀ ସୈୟଦ । ଆଜି ସଂଧ୍ୟାରେ ତା'ର ଭବ୍ୟ କୋଠରିର ହାଉସ ଓ୍ୱାର୍ମିଙ୍ଗ ପର୍ବ ସରିଛି । ଏ କୋଠି ସେ ସାଢ଼େ ଗ୍ୟରିଲକ୍ଷ ଟଙ୍କା ଖର୍ଚ୍ଚ କରି ତିଆରି କରିଛି । ତା'ର ସବୁ କୋଠରି ଏଆର କଣ୍ଡିସନ୍‌ଡ଼ । ହାଉସ ଟେଲିଫୋନ ସବୁଠେଇଁ ଲାଗିଛି । ସହରର ପ୍ରତିଷ୍ଠିତ ସୁସମ୍ପନ୍ନ ଯୁବକମାନଙ୍କ ଭିତରେ ତା'ର ଗଣତି । ଆଉ ସମ୍ଭ୍ରାନ୍ତ ପରିବାରର ଝିଅଗୁଡ଼ିକ, ବିଶେଷ କରି ଅଭିଆତ୍ତ୍ୱୀ ସବୁ ବେଗମ ଜମଶେଦ ଅଲୀ ସୈୟଦ ବୋଲେଇବାକୁ ବ୍ୟାକୁଳ । ଆଜି ସକାଳେ ସେ ଦଶଲକ୍ଷ ଟଙ୍କାର କାରବାର ପାଇଁ ଚୁକ୍ତି କରିଛି, ସେଥିପାଇଁ ତାକୁ ଜନସନ୍‌ର କେବୁଲ୍‌ର ଜବାବ ଦେବାର ଥିଲା । ତାପରେ ଚଟଗାଁବ ଟ୍ରଙ୍କକଲ । ଆଉ ତା'ପରେ ନୂଆ କାରବାର ନେଇ ଗୋଟାଏ ଜର୍ମାନୀ ଫାର୍ମ ସାଙ୍ଗରେ କଥାହେବା ପାଇଁ କାଲି ତୃତୀୟ ପ୍ରହର ବେଳକୁ ତାକୁ ୟୁରୋପ ଯିବାକୁ ପଡ଼ିବ । ସେ ଦୀର୍ଘନିଶ୍ୱାସ ପକେଇ ସିଗାରେଟ ଧରେଇଲା ଆଉ ମିଷ୍ଟର ଘାସଲେଟଓ୍ୱାଲା ସାଙ୍ଗରେ ଅଫିସ ରୁମ୍‌କୁ ଗ୍ଲଲିଗଲା ।

ସେତେବେଳେ ରାତି ସାଢ଼େ ତିନ । ମିଷ୍ଟର ପ୍ରେଟ୍ରିକ ଡ୍ରଇଂରୁମକୁ ଆସି ମଲମାକୁ

କହିଲା— 'ମିସ ମିର୍ଜା, ବସ ଓ୍ୱାଣ୍ଟସ୍ ୟୁ !' ସଲମା ଗାଲିଗ୍ରରୁ ଉଠିଲା, ବେଗରୁ ଦର୍ପଣ ବାହାର କରି ମୁହଁ ସଫା କଲା ଆଉ ଦ୍ରୁତ ପାଦରେ ଅଫିସ ରୁମରେ ପହଞ୍ଚିଲା ।

'ମିସ୍ ମିର୍ଜା'

'ୟସ୍ ସର !'

'ଆପଣଙ୍କୁ ରବିବାର ଦିନ ମଧ୍ୟ କଷ୍ଟ ଦେବାକୁ ପଡୁଛି । ସକାଳ ନଅଟାରେ, କାଲି, ମିଷ୍ଟର ବେଲ କୋକ୍ସ ଓ ତାଙ୍କର ଗ୍ରୁପ୍ ବି.ଓ.ଏ.ସି ରେ ଆସି ପହଞ୍ଚିବେ । ସାଢ଼େ ନଅଟା ବେଳକୁ ଜାପାନୀ ଦି'ଜଣ ବି ପହଞ୍ଚିଯିବେ । ଆପଣ ସକାଳେ ଏୟାରପୋର୍ଟକୁ ଗ୍ଲଲିଯିବେ । ସେମାନଙ୍କ ଲାଗି ମେଟ୍ରୋପୋଲରେ ରୁମ୍ ବୁକ୍ କରେଇ ଦିଅନ୍ତୁ । ଦି'ପହର ବେଳେ ଲଞ୍ଚ ଖୁଏଇ ଦେବେ ।'

ବସ ମୁଣ୍ଡ ନୁଏଇଁ ଏସବୁ କଥା କହିଥିଲେ... 'ମୁଁ ନିଜେ ଆସିପାରିବି ନାହିଁ । କାରଣ କାଲି ଫ୍ଲାଇ କରିଯିବା ଆଗରୁ ମୋତେ ଅନେକ କାମ ସାରିବାକୁ ହେବ । ଦେଖନ୍ତୁ କାଲି ଯେମିତି ଦଶଟା ସୁଦ୍ଧା ଆପଣମାନେ ମେଟ୍ରୋପୋଲରେ ପହଞ୍ଚି ଯାଇଥିବେ ।'

'ୟସ୍ ସାର !' ସଲମା ସିଧା ଠିଆ ହୋଇ ନର୍ମଳ କଣ୍ଠରେ ସାହସ ସହିତ କହିଲା ।

'ଗୁଡ଼ ନାଇଟ୍ !'

'ଗୁଡ଼ ନାଇଟ୍ !'

'ମିଷ୍ଟର ପେଟ୍ରିକ, କାଦିର ବକ୍ସକୁ କହ ମିସ୍ ସାହବଙ୍କୁ ନେଇ ଘରେ ପହଞ୍ଚେଇ ଆସିବ ।' ସଲମା ରୁମରୁ ବାହାରକୁ ଗ୍ଲଲିଗଲା ।

ମିଷ୍ଟର ପେଟ୍ରିକ ପୁଣି ଡ୍ରଇଁରୁମକୁ ଆସି କହିଲା 'ମିସ୍ ହୁସେନ, ଆପଣଙ୍କୁ ମିଷ୍ଟର ସୈୟଦ ଡାକୁଛନ୍ତି ।'

'ସୁରୈୟା' ଜମଶେଦ ସୈୟଦ ଆଖି ନ ଉଠେଇ କହିଲା— 'ସନ୍ଧ୍ୟାରେ ତମର ଟିକଟ ବି ଆସିଯାଇଛି । ଘରକୁ ଯାଇ ପେକିଙ୍ଗ କରିନେବ । କାଲି ଅଢ଼େଇଟାରେ ଏଆରପୋର୍ଟରେ ପହଞ୍ଚିଯିବା କଥା । ଏଇନେ ପେରିସ୍‌ରୁ କେବଲ୍ ଆସିଛି । ତମର ପ୍ରଦର୍ଶନୀ ଜୁଲାଇ ଦିନ ହେବ ବୋଲି ସେମାନେ ଆୟୋଜନ କରୁଛନ୍ତି । ସେତିକି ସମୟ ଆମେ ଜେନେଭାରେ ରହିପାରିବା । ଆଚ୍ଛା, କାଲି ଦେଖାହେବ । ଗୁଡ଼ନାଇଟ୍ ସୁରୈୟା !'

ଗୁଡ଼ନାଇଟ କହି ସେ ମଧ୍ୟ ବାହାରକୁ ଗ୍ଲଲିଗଲା । ଆଉ କିଛି ବେଳ ପରେ ଫେରିଆସି କହିଲା— 'ମୋ କାର୍ ଅନ୍ତର୍ଦ୍ଧାନ ହୋଇଯାଇଛି । ବୋଧହୁଏ ମନସୁର ନେଇଯାଇଛି ।'

'ମିଷ୍ଟର ପେଟ୍ରିକ୍, ପତେହଗୁଲକୁ କହ ଆଲିୟା ବିବିର ଗାଡ଼ିନେଇ ମିସ୍ ସାହେବଙ୍କୁ ଛାଡ଼ିଦେଇ ଆସିବ ।'

'ୟସ ସର ।'

ତା'ପରଦିନ ବିଦେଶୀ ଅତିଥିମାନଙ୍କର କଥା ତୁଟେଇ ସଲମା ମେଟ୍ରୋପୋଲର

ଦୋକାନମାନଙ୍କରୁ ଅନେକ ଜିନିଷ କିଣିଲା । ଦାମୀ ଚକଲେଟ୍, ଟଫୀ, ବିସ୍କୁଟ, ଡ୍ରାଇଫ୍ରୁଟ୍, ସାରା ବତୁରା ଫଳ ଡବା, ଥ୍ରୀ କେସେଲ୍ସ ସିଗାରେଟ୍ର ପୂରା ଗୋଟାଏ କାର୍ଟୁନ୍, ଏକ୍କା ଭେଲଭା ଆଉ ଶେମ୍ପୋର କେତୋଟି ବୋତଲ, ଭଲ ଶେଭିଙ୍ଗ୍ ସୋପ୍, ଟୁଥପେଷ୍ଟ, ବୁକ୍ ଷ୍ଟଲରୁ ଅନେକ ପେପରବେକ୍, ନୂଆ ନୂଆ ପତ୍ରିକା । ଆଉ ଘରେ ଆସି ପହଞ୍ଚିଲା । ମାମୁଙ୍କୁ ଗୋଟି ଗୋଟି କରି ଜିନିଷ ଦେଖେଇ, ରାତିରେ ଖାଇ ସାରିବା ପରେ ସେସବୁକୁ ଏକାଠି ବଡ଼ ପାର୍ସଲଟାଏ ବାନ୍ଧି ମୁଣ୍ଡ ପାଖକୁ ରଖି ତା ଉପରେ ହାତଦେଇ ଶୋଇ ପଡ଼ିଲା ।

ଜଣେ ଭଦ୍ରଲୋକଙ୍କ ହାତରେ ସେ ପ୍ରତି ପନ୍ଦର ଦିନରେ ପାର୍ସଲଟିଏ କରି ସଲମାନ ପାଖକୁ ପଠାଏ । ସେ ଭଦ୍ରଲୋକ ତା' ଘରକୁ ଆସି ନେଇଯାଆନ୍ତି । ଗଲାଥର ଏଥର ସେ ନିଜେ ଆସିପାରିବେ ନାହିଁ ବୋଲି କହିଥିଲେ ବୋଲି ସଲମା ନିଜେ ତାହା ତାଙ୍କ ପାଖକୁ ପହଞ୍ଚାଇ ଆସିବାକୁ କହିଥିଲା ।

ସକାଳୁ ସେଇ ପାର୍ସଲଟି ସେ ଅଫିସକୁ ନେଇ ଆସିଥିଲା । ଅଫିସକୁ ପହଞ୍ଚି ସେଇ ଭଦ୍ରଲୋକଙ୍କର ଫୋନ ନମ୍ବର ଦେଖିବାକୁ ଡାଇରେକ୍ଟରୀ ଖୋଲିଲା । ତା'ରି ଭିତରେ ମିଷ୍ଟର ପେଟ୍ରିକ ଭିତରକୁ ଆସିଲେ ଆଉ ଲଫାପାଟିଏ ସଲମା ହାତକୁ ବଢ଼େଇ କହିଲେ— 'ବସ୍ଙ୍କର ଚିଠି ।' ଆଉ ବାହାରକୁ ଚାଲିଗଲେ । ମିସ୍ ଡିସୁଜା ଆସି କେତୋଟି କାଗଜ ଟେବୁଲ ଉପରେ ରଖିଦେଇ ଚାଲିଗଲେ । ସେ ଝରକା ପାଖକୁ ଯାଇ ଲଫାପା ଖୋଲିଲା ।

'ଛୋଟି ବିଟିୟା,

ପଅରଦିନ ରାତିରେ ଅତ୍ୟଧିକ ନିଶାରେ ଓ କିଛିଟା ପାଗଳାମିରେ ମୁଁ ଆପଣଙ୍କ ପ୍ରତି ଯେଭଳି ବ୍ୟବହାର କଲି, ମୁଁ ସେଥିପାଇଁ ଆପଣଙ୍କଠାରୁ ନିର୍ମଳ ମନରେ କ୍ଷମା ଚାହୁଁଛି । ମୁଁ ଜାଣୁଛି ଯେ ମୁଁ କ୍ଷମାର ଯୋଗ୍ୟ ମଧ୍ୟ ନୁହେଁ । ମୋର ନୀଚପଣ ସତ୍ତ୍ୱେ ଆପଣ ସେଇ ଉତ୍ସାହ ଓ ବଡ଼ପଣରେ ମୋର କାମ କଲେ ଆଉ ମୋ ପାଇଁ ଆତିଥେୟର ଦାୟିତ୍ୱ ବେଶ ସୁନ୍ଦର ଭାବରେ ନିର୍ବାହ କଲେ । ପଅରିଦିନ ରାତିରେ ଅଫିସରେ ବସି ଆପଣଙ୍କୁ ଏଆରପୋର୍ଟ ଆଉ ମେଟ୍ରୋପୋଲ ଯିବାକୁ କହିବା ପୂର୍ବରୁ ମୁଁ ଆପଣଙ୍କ ସମ୍ବନ୍ଧରେ ଏକ ଗୁରୁତ୍ୱପୂର୍ଣ୍ଣ ନିର୍ଣ୍ଣୟ ନେଇସାରିଥିଲି ।

ମୋ ପାଖରେ ଚାକିରି କରିବା ଆପଣଙ୍କର ବଡ଼ପଣ ଓ ଆଭିଜାତ୍ୟର ସମ୍ପୂର୍ଣ୍ଣ ବିରୋଧୀ । ଆପଣ ଓ ଆପଣଙ୍କର ପ୍ରତିଷ୍ଠାର ଅସମ୍ମାନ । ମୋର ନିର୍ଣ୍ଣୟ ହେଲା— ମୁଁ ଆପଣଙ୍କୁ ଆଉ ଅଧିକ ଯନ୍ତ୍ରଣା ଦେଇପାରିବି ନାହିଁ । ମୁଁ ବୁଝିପାରୁନାହିଁ ଆପଣଙ୍କୁ କ'ଣ ବୋଲି ଲେଖିବି ଆଉ କେଉଁ ଭାଷାରେ ଆପଣଙ୍କୁ ବିଶ୍ୱାସ ଦେବି ଯେ ଆପଣଙ୍କ ପ୍ରତି ମୋର ହୃଦୟ ଭିତରେ ଯଥେଷ୍ଟ ସମ୍ମାନ ରହିଛି । ମୁଁ ଯାହା କହିବାକୁ ଯାଉଛି, କହିବାକୁ ସାହସ କରିପାରୁନାହିଁ । ଆଉ ସେଇ ଉଚିତ ଶବ୍ଦ ଖୋଜୁଛି, ଯାହା ଜରିଆରେ ଆପଣଙ୍କ ସରଳ ଓ ଦୁଃଖୀ ମନକୁ ଆହତ ନକରି ମୁଁ ମୋ କଥା କହିଦେଇ ପାରିବି ।

ଛୋଟି ବିଟିୟା, ପଅରଦିନ ରାତିରେ ମୁଁ ଆପଣଙ୍କର ଆଲମାରୀରୁ ଅନେକ ଗୋପନ ଜିନିଷ ବାହାର କଲି । ସେସବୁକୁ ପୋଛାପୋଛି କରି ପୁଣି ରଖି ତାଲା ପକେଇ ଦେଇଛି । ମୁଁ ମୋ ଶବର ନିଜେ ପୋଷ୍ଟମର୍ଟମ କଲି ଆଉ ତାକୁ ଜୀବନର ଶବାଗାରରେ ବରଫ ସିଲ ତଳେ ଦବେଇ ଦେଇଛି । ଆଜି ମୁଁ ଠିକ୍ ସେଇ ଜମଶେଦ ସୈୟଦ, ଯାହାକୁ ଆପଣ ଗଲା ଗ୍ରିମାସ ହେଲା ଜାଣନ୍ତି। ଆପଣ ଖୁବ୍ ଭଲଭାବରେ ଜାଣନ୍ତି ଯେ ମୁଁ ଅତ୍ୟନ୍ତ ନୀଚ, ନିଷ୍ଠୁର, ମତଲବୀ, ଶଠ ଓ ସ୍ୱାର୍ଥପର ମଣିଷଟିଏ । ମୁଁ ଏଭଳି ଜଣେ ମଣିଷ, ଯା ଲାଗି କୌଣସି ପ୍ରକାର ପୁରୁଣା ଆଦର୍ଶ, ନିଷ୍ଠା, ଭଦ୍ରତା ଆଦି ଆଦି ବୃଥା କଥା । ତେବେ ପଅରଦିନ ରାତିରେ ମୁଁ ଯେତେବେଳେ ଜାଣିଲି ଯେ ଆପଣ ପ୍ରସିଦ୍ଧ ମିର୍ଜା ସାହେବଙ୍କ ଝିଅ, ସେତେବେଳେ ମୋର ପାଦତଳୁ ମାଟି ଖସିଗଲା । ସେ କଥା ଜାଣି ମୋତେ ଯେଉଁ ଦ୍ୱିତୀୟ ଆଘାତ ଲାଗିଲା, ଯାହା ମୋତେ ଦୋହଲାଇ ଦେଲା; ତା'ର ସମ୍ବନ୍ଧ ସମ୍ପୂର୍ଣ୍ଣ ଭାବରେ ମୋର ବ୍ୟବସାୟିକ ସ୍ୱାର୍ଥ ସହିତ ରହିଛି। ମୋର ଛୋଟପଣ ଆଉ କମନ୍‌ସେନ୍ସ ସାଙ୍ଗରେ ଅଛି । ସେ ମାନସିକ ଧକ୍କା ହେଲା— ଆପଣ କେବଳ ମିର୍ଜା ସାହେବଙ୍କର ଝିଅ ନୁହନ୍ତି, ତା ସାଙ୍ଗରେ ଆପଣ ଆପଣଙ୍କ ଭାଇର ଭଉଣୀ ବି । ଛୋଟି ବିଟିୟା, ଆପଣ ଏବେ ଜାଣିସାରିଛନ୍ତି ଯେ ମୁଁ ଜଣେ ସେଲ୍ଫମେଡ଼ ମଣିଷ, ଆଉ ମୋର ସବୁଠାରୁ ବଡ଼ ଲକ୍ଷ୍ୟ ହେଲା, ମୋର ନିଜର ଲାଭ । ଆପଣ ଏହା ବି ଜାଣନ୍ତି ଯେ ମୋର କାରବାର କେଉଁ କେଉଁ ବିଦେଶୀ ରାଷ୍ଟ୍ର ସାଙ୍ଗରେ ଅଛି । ଯେତେବେଳେ ସେମାନେ ଜାଣିବେ ଯେ ମୋର କନ୍‌ଫିଡେନସିଏଲ ସେକ୍ରେଟେରୀ କେଉଁ ଲୋକର ସହୋଦରା ଭଉଣୀ, ସେତେବେଳେ ତାହା କିଭଳି ପ୍ରାଣଘାତୀ ହେବ !

ଛୋଟି ବିଟିୟା, ମୁଁ ସବୁ ଦିଗରୁ ବାହ୍ୟତଃ ପରୋକ୍ଷରେ ଥାଇ ଆପଣଙ୍କର ସାହାଯ୍ୟ କରିବି । ଆପଣଙ୍କ ପାଇଁ କୌଣସି ନା କୌଣସି ଭଲ ଅଫିସରେ ଭଲ ଚାକିରିଟିଏର ବ୍ୟବସ୍ଥା କରିଦେବି । ଆପଣ ଓ ଆପଣଙ୍କର ମାଆଙ୍କର ସେବା ମୋର ପ୍ରଥମ କର୍ତ୍ତବ୍ୟ। ବିଟିୟା, ମୁଁ ଆପଣଙ୍କୁ ଆପଣଙ୍କଠାରୁ ବଡ଼ ଭାବରେ କିଛି କହିବାକୁ ଚାହୁଁଛି । ଆପଣ ଜାଣିସାରିଛନ୍ତି ଯେ ଦୁନିଆ କେତେ ନୀଚ । ମୁଁ ବି ଏଇ ଦୁନିଆର ମଣିଷଟିଏ । ଆପଣଙ୍କ ଭାଇ ଏ ଦୁନିଆ ସାଙ୍ଗରେ ରାଜିନାମା କରି ନ ପାରି, ହାତ ମିଳେଇ ନ ପାରି ବା ଅସ୍ୱୀକାର କରିଦେଇ ତା'ର ଶାସ୍ତି ଭୋଗ କରୁଛି । ମୋର ଆଶା ଓ ବିଶ୍ୱାସ ଯେ ତାକୁ ଖୁବ୍ ଶୀଘ୍ର ଜଣାପଡ଼ିବ ବା ଜଣାପଡ଼ି ଯିବଣି ଯେ ତା'ର ଅନୁଭବ, ବିଦ୍ରୋହାତ୍ମକ ଆଦର୍ଶ, ଆଇଡିଏଲିଜମ୍ ସବୁକିଛି ନିରର୍ଥକ, ଭୁଲ୍ । ଆପଣ ଆପଣଙ୍କର ସ୍ଥିତି ଓ ତାର ତାଡ଼ନାରେ ବାଧ୍ୟ ହୋଇ ମୋ ଜରିଆରେ ଦୁନିଆ ସାଙ୍ଗରେ କିଛି ପରିମାଣରେ ଗତି କରିଥିଲେ; ଯେଉଁଭଳି ମୋ ଜରିଆରେ ହାତ ମିଳେଇ ସୁରୈୟା ଏ ଧରତୀରେ ତା'ର ସ୍ଥାନ କରିନେଇଛି । ମୋର ବିଶ୍ୱାସ ଯେ ଅନ୍ତିମ ନିର୍ଣ୍ଣୟ ନେବା ପୂର୍ବରୁ ତାକୁ ନିଜ ସାଙ୍ଗରେ ବେଶ୍ ଜୁଝିବାକୁ ପଡ଼ିଥିବ.

ସାମ୍ନାସାମ୍ନି ହୋଇଥିବ, ତେବେ ତାକୁ ଜଣାପଡ଼ିସାରିଛି, ଆଉ ଆପଣ ମଧ୍ୟ ଦେଖିସାରିଛନ୍ତି ଯେ ଏ ଦୁନିଆ ଗୋଟାଏ ବିରାଟ ବ୍ଲେକ ମାର୍କେଟ । ସେଠାରେ ବୁଦ୍ଧି, ମନ ଓ ଆତ୍ମାକୁ ମଧ୍ୟ ବେଶ କିଛି ଅଧିକ ଅଧିକ ଦରରେ ନିଲାମ ଡାକି ବିକାକିଣା କରାଯାଇ ପାରିବ । ବଡ଼ ବଡ଼ କଳାକାର, ଇଣ୍ଟଲେକ୍ ଚୁଏଲ, ଈଶ୍ୱରଙ୍କୁ ମାନୁଥିବା ଧାର୍ମିକ ଲୋକଙ୍କୁ ମୁଁ ଏଇ ବ୍ଲେକ ମାର୍କେଟରେ ବିକ୍ରି ହୋଇଯାଇଥିବା ଦେଖିଛି । ମୁଁ ସାଧାରଣତଃ ସେଇମାନଙ୍କର ବିକାକିଣା କରିଥାଏଁ ।

ମୁଁ ଏକଥା ଆପଣଙ୍କୁ ଏଇ କାରଣରୁ କହୁଛି ଯେ ଆପଣ ବୌଦ୍ଧିକ ସ୍ତରରେ ବଡ଼ ହୋଇଯାଆନ୍ତୁ । ଜୀବନ ସମ୍ବନ୍ଧରେ ଆପଣଙ୍କର ସୁଖ ସ୍ୱପ୍ନ ଓ ଭ୍ରମଧାରଣା ରହି ନଯାଉ, ନତୁବା ଆପଣଙ୍କୁ ଅନେକ କିଛି ମାନସିକ ଆଘାତ ମୃତ୍ୟୁ ପର୍ଯ୍ୟନ୍ତ ସହିବାକୁ ପଡ଼ିବ। ମୁଁ ଚାହେଁ ଯେ ଆପଣ ଜୀବନକୁ ଡରିବା ଛାଡ଼ିଦିଅନ୍ତୁ । ଜୀବନର ଶଠତା, ବିଶ୍ୱାସଘାତକତା, ନୀଚତାର ମୁକାବିଲା ସେଇ ସେଇ ଅସ୍ତ୍ରରେ କରନ୍ତୁ । ଦୁନିଆର ଅଧିକାଂଶ ମଣିଷ ଜଙ୍ଗଲର ହିଂସ୍ର ପଶୁ । ଆଉ ଆମକୁ ସେଇ ବଣ୍ୟ ନୀତିକୁ ସ୍ୱୀକାର କରିବାକୁ ପଡ଼ିବ। ମୁଁ ଭଲ ଭାବରେ ଜାଣେ ଯେ ଆପଣ ଆପଣଙ୍କର ବର୍ତ୍ତମାନର ଚାକିରିରେ କି ବନ୍ଧନ ଭିତରେ ରହିଥିଲେ । ମୁଁ ଚାହୁଁଛି ଯେ ଆପଣ ଜୀବନର ଦୁଃସ୍ଥିତିକୁ ଅତି ଶୀଘ୍ର କାବୁ କରିନିଅନ୍ତୁ ।

ମୁଁ ଏ ଚିଠି ଏଆରପୋର୍ଟରୁ ଲେଖୁଛି । ମୁଁ ଆଉ ସୁରୈୟା ମାସକ ପାଇଁ ୟୁରୋପ ଯାଉଛୁ । ଆମେ ଦୁହେଁ ଫେରିବା ପରେ ଆପଣଙ୍କୁ ପ୍ରସନ୍ନ ଦେଖିବୁ ବୋଲି ଆଶା କରୁଛୁ।

ଶେଷରେ ବଡ଼ ଭାବରେ ମୋର ଆଉ ଏକ ପରାମର୍ଶ ଯେ ଆପଣ ଏଣିକି ବିବାହ କରିନିଅନ୍ତୁ । ଆପଣ ଏବେ ଯେଉଁଭଳି ଅଛନ୍ତି, ସେମିତି ରହିଥିଲେ ହୁଏତ ଆପଣଙ୍କର ଆଗାମୀ ଜୀବନ ଉପରେ ତାର ଭଲ ପ୍ରଭାବ ପଡ଼ିବ ନାହିଁ । ମୁଁ ଜେନେଭାରୁ ଫେରି ମୋର ପାଖାପାଖି ଆପଣଙ୍କ ପାଇଁ ଫ୍ଲାଟ୍‌ଟିଏର ଚେଷ୍ଟା କରିବି, ଯେମିତି ଆପଣ ବି ହାଉସିଂ ସୋସାଇଟିରେ ପ୍ରବେଶାଧିକାର ପାଇଯିବେ ।

ଆପଣଙ୍କର ମାଆଙ୍କୁ ମୋର ପ୍ରଣାମ କହିବେ । ମୋର ସ୍ନେହାଶୀର୍ବାଦ ଆପଣଙ୍କ ପାଇଁ ରହିଥିବ । ବିଶ୍ୱାସ କରନ୍ତୁ, ମୁଁ ସର୍ବଦା ଆପଣଙ୍କର ଶୁଭାକାଙ୍କ୍ଷୀ ଓ ଉଚିତ ବନ୍ଧୁ ହୋଇ ରହିଥିବି ।

ବିଦାୟ

ଏକାନ୍ତ ଆପଣଙ୍କର

ଜମଶେଦ

ସଲମା ହାତରୁ ଚିଠିଟି ଖସିପଡ଼ିଲା । ତଳେ ଚଉକି ଉପରେ ସକାଳର ଖବରକାଗଜ ଥୁଆ ହୋଇଥିଲା ତା'ର ପ୍ରଥମ ପୃଷ୍ଠାରେ ମୋଟା ମୋଟା ଅକ୍ଷରରେ ମଂସୂର ଅହମଦ ଖାନ୍‌ର ଫଟୋ ଛପା ହୋଇଥିଲା ।

କୁର୍ରତୁଲଐନ୍ ହୈଦରଙ୍କର ଜନ୍ମ ୧୯୨୭ରେ ଆଲିଗଡ଼ରେ ହୋଇଥିଲା । ତାଙ୍କର ପିତା ସଜ୍ଜାଦ ହୈଦର ୟିଲଦିରମ ଏବଂ ମାତା ନଜର ସଜ୍ଜାଦ ହୈଦର ଉଭୟେ ତାଙ୍କ ସମୟର ସୁପରିଚିତ କଥାକାର । ସେ କିଶୋର ଅବସ୍ଥାରେ ହିଁ ଲେଖିବା ଆରମ୍ଭ କରି 'ଫୁଲ' ଓ 'ସାକୀ' ପତ୍ରିକାରେ ପ୍ରକାଶିତ ତାଙ୍କର ପ୍ରଥମ କାହାଣୀ ପାଇଁ ଚର୍ଚ୍ଚିତା ହେଲେ । ସେ ୧୯୪୭ ରେ ଲକ୍ଷ୍ନୌ ବିଶ୍ୱବିଦ୍ୟାଳୟରୁ ଇଂରେଜୀରେ ଏମ୍. ଏ. କଲେ । ସେହି ବର୍ଷ ତାଙ୍କର ପ୍ରଥମ କାହାଣୀ-ସଂଗ୍ରହ 'ସିତାରୋଁ ସେ ଆଗେ' ପ୍ରକାଶିତ ହେଲା । ଦ୍ୱିତୀୟ କଥା-ସଂଗ୍ରହ ୧୯୫୨ରେ ପ୍ରକାଶ ପାଇଲା । ସାରସ୍ୱତ କ୍ଷେତ୍ରରେ ତାଙ୍କର ମହତତ୍ତ୍ୱପୂର୍ଣ୍ଣ ଯୋଗଦାନ ନିମନ୍ତେ ତାଙ୍କୁ ସୋଭିଏତ୍‌ଭୂମି ନେହେରୁ ପୁରସ୍କାର, ସାହିତ୍ୟ ଅକାଦେମି ପୁରସ୍କାର, ଗାଲିବ୍ ପୁରସ୍କାର, ଇକ୍‌ବାଲ୍ ପୁରସ୍କାର ତଥା ଜ୍ଞାନପୀଠ ପୁରସ୍କାର ପ୍ରଦାନ କରି ସମ୍ମାନିତ ଏବଂ ଭାରତ ସରକାରଙ୍କ ଦ୍ୱାରା 'ପଦ୍ମଶ୍ରୀ'ରେ ଅଲଙ୍କୃତ କରାଯାଇଛି ।

ବହିଟିର ଓଡ଼ିଆ ଅନୁବାଦ କରିଛନ୍ତି ସୁପରିଚିତ କବି, କଥାକାର ଏବଂ ଅନୁବାଦକ ଶ୍ରୀ ଶ୍ରୀନିବାସ ଉଦ୍‌ଗାତା । ତାଙ୍କର ଅନେକ ମୌଳିକ ଏବଂ ଅନୂଦିତ ପୁସ୍ତକ ଉଭୟ ଓଡ଼ିଆ ଏବଂ ହିନ୍ଦୀ ଭାଷାରେ ପ୍ରକାଶିତ ହୋଇଛି ।

**ମୂଲ୍ୟ : ୧୦୦ ଟଙ୍କା**
**ISBN : 81-260-0858-X**

